ଲେଖକ :

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

ପ୍ରକାଶକ :

ପ୍ରଜାତନ୍ତ୍ର ପ୍ରଚାର ସମିତି

ପ୍ରଜାତନ୍ତ୍ର ବିଲ୍ଡିଙ୍ଗ୍ସ,

କଟକ-୨

ନୂତନ ସଂସ୍କରଣ

୧୯୮୯

ମୁଦ୍ରଣ :

ପ୍ରଜାତନ୍ତ୍ର ପ୍ରେସ

କଟକ-୨

ମୂଲ୍ୟ : ଚାଳିଶ ଟଙ୍କା ମାତ୍ର

# ଭୂମିକା

ଖ୍ରୀ: ୧୯୫୭ ସାଲରେ ଭାରତସରକାରଙ୍କ ଠାରୁ ସାହାଯ୍ୟ ଯୋଗାଡ଼ କରି 'ସାରଳାଦାସ ମହାଭାରତ'ଟିର ତଥାକଥିତ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବାରେ ଯେତିକି ମୁଁ ମୋର କରିବାର କଥା ଥିଲା ସେତିକ ନାନା କାରଣରୁ ମୁଁ ଆଜିସୁଦ୍ଧା ସମ୍ପୂର୍ଣ୍ଣ କରିପାରିନାହିଁ । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ପୁସ୍ତକର ସମ୍ପାଦନାର ଦାୟିତ୍ୱ ଅର୍ପଣ କଲାବେଳେ ସେ ଜିଦ୍ କରି କହିଥିଲେ ମୋତେ ଭୂମିକା ଲେଖିଦେବାକୁ ଏବଂ ସମ୍ପାଦନାରେ ସାହାଯ୍ୟ କରିବାକୁ । ସମ୍ପାଦନାରେ ସାହାଯ୍ୟ ତ କରି-ପାରିଲି ନାହିଁ, ଭୂମିକା ମଧ୍ୟ ଲେଖିବାର ସୁଯୋଗ ଘଟିଲା ନାହିଁ । ତେଣୁ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ଆର୍ତ୍ତବଲ୍ଲଭ ସମ୍ପାଦିତ ସାରଳାଦାସ ମହାଭାରତର ଯେଉଁ ତ୍ରୁଟି ରହିଯାଇଛି, ସେଥିପାଇଁ ମୁଁ ମଧ୍ୟ ଦାୟୀ । ଦୋଷ ଦର୍ଶାଇବା ମୋର ଉଦ୍ଦେଶ୍ୟ ନୁହେଁ, ଉଦ୍ଦେଶ୍ୟ ଭବିଷ୍ୟତ ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରିବା । ପ୍ରଥମ ତ୍ରୁଟି—ବିଭିନ୍ନ ଅଞ୍ଚଳରୁ ପୋଥି ବା ମୁଦ୍ରିତ ପୁସ୍ତକ ସଂଗୃହୀତ ହୋଇନାହିଁ । ବଙ୍ଗଳା ଅକ୍ଷରରେ ଓଡ଼ିଆ ଭାଷାର ସାରଳା ମହାଭାରତର ବିରାଟପର୍ବ ବଙ୍ଗ-ସାହିତ୍ୟ ପରିଷଦ ପୁସ୍ତକାଗାରରେ ଅଛି । ମେଦିନୀପୁର ଅଞ୍ଚଳରେ ଓଡ଼ିଆ ସାରଳାଦାସ ମହାଭାରତ ବଙ୍ଗଳା ଅକ୍ଷରରେ ମୁଦ୍ରିତ ହୋଇ ବହୁକାଳ ଚାଲିଥିଲା । ସାରଳାଦାସ ମହାଭାରତର ଅନୁବାଦ ତେଲୁଗୁ ଭାଷାରେ ମଧ୍ୟ ହୋଇଥିଲା । ଏତଦ୍‌ବ୍ୟତୀତ ଓଡ଼ିଶାର ଅନ୍ୟ ଅଞ୍ଚଳମାନଙ୍କରେ ଏ ମହାଭାରତ ପ୍ରଚଳିତ ଥିଲା । ଏସବୁ ସଂଗୃହୀତ ହୋଇ ସଂସ୍କରଣଟି ସମ୍ପାଦିତ ହୋଇଥିଲେ ଭଲ ହୋଇଥା'ନ୍ତା । ଦ୍ୱିତୀୟତଃ ପ୍ରାଚୀନ ଓଡ଼ିଆ ଭାଷାରେ ବହୁ ଦ୍ରାବିଡ଼ ଶବ୍ଦ ବ୍ୟବହୃତ ହେଉଥିଲା । ଆଜି ପର୍ଯ୍ୟନ୍ତ ମଧ୍ୟ ବହୁ ଦ୍ରାବିଡ଼ ଶବ୍ଦ ଓଡ଼ିଆ ଭାଷାରେ ବ୍ୟବହୃତ ହେଉଛି; ଯଥା--ରାଉତ, ଜେନା ଇତ୍ୟାଦି । ଗ୍ରାମମାନଙ୍କର ନାମ ମଧ୍ୟ ଓଡ଼ିଆ ଶବ୍ଦରେ ଅନେକ ଅଞ୍ଚଳରେ ଅଛି । ଜଗନ୍ନାଥ ମନ୍ଦିର ପୂଜାବିଧିରେ ବ୍ୟବହୃତ ବହୁ ଶବ୍ଦ ଦ୍ରାବିଡ଼ ଭାଷାର । ଏଣୁ ସାର୍ଦ୍ଧ ପାଞ୍ଚଶହ ବର୍ଷ ପୂର୍ବେ ଲିଖିତ ସାରଳାଦାସ ମହାଭାରତର ବହୁ ଶବ୍ଦ ଯେ ଦ୍ରାବିଡ଼ ଭାଷାରୁ ଆହୃତ—ଏଥିରେ ସନ୍ଦେହ ନାହିଁ । ଏଣୁ ତେଲୁଗୁ ଭାଷାରେ ଅନୂଦିତ ମହାଭାରତ ସହିତ ଏ ଅଞ୍ଚଳର ପୋଥିସବୁ ମିଳାଇଥିଲେ ଶବ୍ଦାର୍ଥ ବୁଝିବା ସହଜ ହୋଇଥା'ନ୍ତା ।

ଯେତେଆଡ଼ୁ ସଂଗ୍ରହ କଲେ ମଧ୍ଯ ସେ ମହାଭାରତ ବା ସେ ସମସ୍ତକାର ସାହିତ୍ୟର କୌଣସି ସଂସ୍କରଣକୁ ଲେଖକଙ୍କ ସମ୍ପୂର୍ଣ୍ଣ ଲେଖା ବୋଲି କହିହେବ ନାହିଁ । କାରଣ ମୂଳହସ୍ତଲେଖାରୁ ପ୍ରତିଲିପି ଶତ ଶତ ନୁହେଁ, ସହସ୍ର ସହସ୍ର ହସ୍ତ ମଧ୍ୟଦେଇ ଆମଠାରେ ପହଞ୍ଚିଛି । ଏଣୁ ଇଚ୍ଛାକୃତ ପ୍ରକ୍ଷେପ ବା ଲେଖନକାରର ଦୋଷ ହେତୁ ମୂଳଲେଖାର ଯେ ବହୁ ପରିବର୍ତ୍ତନ ଘଟିଥିବ—ଏଥିରେ ସନ୍ଦେହର ଅବକାଶ ନାହିଁ । ତଥାପି ମୋଟାମୋଟି ଏକ ଶୁଦ୍ଧ ସଂସ୍କରଣ ଯେ ପ୍ରକାଶିତ ହେଲା ଏବଂ ଭବିଷ୍ୟତ ଗବେଷଣା ପାଇଁ ବିଶ୍ୱାସଯୋଗ୍ୟ ଉପାଦାନ ମିଳିଲା, ଏଥିପାଇଁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ତାଙ୍କର ସହାୟକମାନେ ଏବଂ ପ୍ରକାଶକ ଓଡ଼ିଶା ସରକାର ଧନ୍ୟବାଦର ପାତ୍ର ।

ଇତିମଧ୍ୟରେ ପ୍ରକାଶିତ ସାରଳାଦାସ ମହାଭାରତ ଭଲ ଭାବରେ ଅଧ୍ୟୟନ କରିବାର ସୁଯୋଗ ପାଇଲି । ଆର୍ତ୍ତବାବୁଙ୍କୁ ଦେଇଥିବା ପ୍ରତିଶ୍ରୁତି ମୁଁ ପାଳନ କରୁଛି ତାଙ୍କର ସ୍ମୃତିକୁ ମାନସପଟରେ ରଖି । ଭୂମିକା ମଧ୍ୟ ଲେଖିଛି । ଯଥାଶୀଘ୍ର ପ୍ରକାଶିତ ହେବ ।

ଇତିହାସ ଗବେଷଣା କ୍ଷେତ୍ରରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କେବଳ ଓଡ଼ିଶାରେ ନୁହେଁ, ଭାରତରେ ମଧ୍ୟ ସୁବିଖ୍ୟାତ । ବହୁକାଳରୁ ସେ ଇତିହାସର ଦୃଷ୍ଟିକୋଣରୁ ସାରଳା ମହାଭାରତର ଗବେଷଣା କରି-ଆସିଛନ୍ତି । 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ତାଙ୍କର ଗବେଷଣାର ଫଳ । ବାଲ୍ମୀକି, କାଳିଦାସ ଓ ଅନ୍ୟାନ୍ୟ ବିଶିଷ୍ଟ କବିମାନଙ୍କ ପରି ସାରଳାଦାସଙ୍କର ଯେ ସମ୍ୟକ୍ ଭୌଗୋଳିକ ଜ୍ଞାନ ଥିଲା, ଏହା ଡକ୍ଟର ପାଣିଗ୍ରାହୀଙ୍କ ଗବେଷଣାରୁ ସ୍ପଷ୍ଟ ପ୍ରମାଣିତ ହେଉଛି । ଏକଦା କବି ଶବ୍ଦର ଅର୍ଥ ହେଲା ଜ୍ଞାନୀବ୍ୟକ୍ତି । ବହୁ ବିଷୟରେ, ରାଜନୀତି, ଯୁଦ୍ଧନୀତି, ଅର୍ଥନୀତି, ଜ୍ୟୋତିଷ, ଅଙ୍କଶାସ୍ତ୍ର ପ୍ରଭୃତି ବହୁ ବିଷୟରେ ଜ୍ଞାନ ନଥିଲେ ଜଣେ କବି ହୋଇ ପାରୁନଥିଲେ । ସାରଳାଦାସ ମହାଭାରତ ପଢ଼ିଲେ ଜଣାଯାଏ, ବହୁ ବିଷୟରେ ସେ ପ୍ରଗାଢ଼ ଜ୍ଞାନ ଅର୍ଜନ କରିଥିଲେ । ଡକ୍ଟର ପାଣିଗ୍ରାହୀ କେବଳ ତାଙ୍କର ଐତିହାସିକ ଓ ଭୌଗୋଳିକ ଜ୍ଞାନର ଆବରଣ ଉନ୍ମୋଚନ କରିଛନ୍ତି, ଏହା ଯେ ସେ ସମୟର ଇତିହାସକୁ ସୁବୋଧ କରିଛି ଏଥିରେ ସନ୍ଦେହ ନାହିଁ । 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ଇତିହାସ ତଥା ସାହିତ୍ୟର ସେବକମାନଙ୍କ ଏକ ଅବଶ୍ୟ ପାଠ୍ୟ ପୁସ୍ତକ ହେବ, ଏହା ମୁଁ ଆଶାକରେଁ ।

[signature]

୧୯୭୭

# ପୁରପଦ

ପଞ୍ଚଦଶ ଶତାବ୍ଦୀ ଥିଲା ଓଡ଼ିଆ ଜାତୀୟ ଜୀବନର ପ୍ରଚଣ୍ଡ ଉନ୍ମେଷକାଳ । ଏ ସମୟରେ ଆଦିକବି ସାରଳାଦାସଙ୍କ ଆବିର୍ଭାବ ସ୍ୱାଭାବିକ ଥିଲା । କଠୋର ସଂଗ୍ରାମ ଏବଂ ପ୍ରଗାଢ଼ ଆତ୍ମନିୟନ୍ତ୍ରଣ ଉପରେ ତତ୍‌କାଳୀନ ଓଡ଼ିଶାର ସାମାଜିକ ଜୀବନ ଆଧାରିତ ଥିଲା । ଭାରତବର୍ଷର ଅନ୍ୟପ୍ରାନ୍ତରେ ମୁସଲମାନ ରାଜତ୍ୱ ପ୍ରତିଷ୍ଠିତ ହୋଇ ଚାଲିଥିବାବେଳେ ଏବଂ ଅଧିକାଂଶ କ୍ଷେତ୍ରରେ ସେମାନେ ଅମାନୁଷିକ ବର୍ବରଲୀଳା ଚଳାଇଥିବାବେଳେ, ଓଡ଼ିଶା ହିଁ ଥିଲା ଏକମାତ୍ର ଦେଶ ଯେଉଁଠାରେ ପଞ୍ଚଦଶ ଶତାବ୍ଦୀରେ କେବଳ ସୂର୍ଯ୍ୟବଂଶୀ କପିଳେନ୍ଦ୍ର ଦେବ ନୁହନ୍ତି, ଏକାଦଶ ଶତାବ୍ଦୀରୁ ପ୍ରବଳ ପରାକ୍ରମୀ ଗଙ୍ଗବଂଶର ରାଜାମାନେ ଓଡ଼ିଶାରେ ସୁବର୍ଣ୍ଣ ଯୁଗର ଭିତ୍ତି ପକାଇଥିଲେ । ଗଙ୍ଗବଂଶର ଚୋଡ଼ଗଙ୍ଗ ଦେବଙ୍କଠାରୁ ଆରମ୍ଭକରି ସୂର୍ଯ୍ୟବଂଶର ପ୍ରତାପରୁଦ୍ର ଦେବଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ଉତ୍କଳୀୟ ରାଜା ଅନେକ ଯୁଦ୍ଧ ଲଢ଼ିଛନ୍ତି । ଅନେକ ରାଜ୍ୟ ଜୟ କରିଛନ୍ତି । ସାରଳା ଦାସଙ୍କ ସମୟରେ କପିଳେନ୍ଦ୍ର ଦେବ, ତାଙ୍କ ଜୀବନସାରା ଉତ୍କଳର ସୀମା ସୁରକ୍ଷା କରିବା ସକାଶେ ଦୀର୍ଘ କାଳ ଧରି ଯୁଦ୍ଧରେ ହିଁ ବ୍ୟାପୃତ ଥିଲେ । କୁହାଯାଏ, ଅଶ୍ୱପୃଷ୍ଠରେ ହିଁ ସେ ଜୀବନ କଟାଇ ଶେଷରେ କୃଷ୍ଣାନଦୀ କୂଳରେ ପରଲୋକ ପ୍ରାପ୍ତ ହେଲେ । ଭାରତର ଅନ୍ୟ ପ୍ରାନ୍ତରେ ମଠମନ୍ଦିର ଭୂଲୁଣ୍ଠିତ ହୋଇଥିବାବେଳେ, ଓଡ଼ିଶା ଏକ ବିଶାଳ ଓ ବଳିଷ୍ଠ ସାମ୍ରାଜ୍ୟ ଭାବେ ପ୍ରତିଷ୍ଠିତ ହୋଇଥିଲା । ଏ ଅଞ୍ଚଳରେ ଶାନ୍ତି ବିରାଜମାନ କରୁଥିବାରୁ ସ୍ୱାଭାବିକ ଭାବେ ଏଠାରେ ସାରସ୍ୱତ ସାଧନା ପାଇଁ କ୍ଷେତ୍ର ସୃଷ୍ଟି ହେବା ସମ୍ଭବ ଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆଦିକବି ସାରଳା ଦାସଙ୍କ ସାହିତ୍ୟ ଚର୍ଚ୍ଚା ହିଁ ଏ ଜାତିକୁ ନିଜର ଐତିହ୍ୟ ଜାଣିବା ପାଇଁ ଆଜି

ସୁଯୋଗ ଦେଇଛନ୍ତି । ମହାଭାରତ ଜରିଆରେ ହେଉ କି ତାଙ୍କ ରଚିତ ଅନ୍ୟ ସାହିତ୍ୟ କୃତି ଜରିଆରେ ହେଉ, ସାରଳା ଦାସ ନିଜର ଲେଖନୀ ମାଧ୍ୟମରେ ସାମାଜିକ ଜିଜ୍ଞାସା ଓ ଜାତୀୟ ଭାବମାନଙ୍କୁ ଉଲ୍ଲେଖ କରିବା ସହିତ ଦୁଃଖ, ଦୈନ୍ୟ, ଅଭାବ, ଅସନ୍ତୋଷ ସମୟରେ ପ୍ରେରଣାର ବାରି ବର୍ଷଣ କରି ଏ ଜାତିକୁ ଧନ୍ୟ କରିଛନ୍ତି ।

ଓଡ଼ିଆ ଭାଷାରେ ଶୂଦ୍ରମୁନି ସାରଳା ଦାସ 'ମହାଭାରତ' ରଚନା କରିବା ପୂର୍ବରୁ ଏ ଭୂଖଣ୍ଡରେ ସଂସ୍କୃତର ପ୍ରାଧାନ୍ୟ ଥିଲା । ଅନ୍ୟ ଭାଷାରେ ମହାଭାରତ ମଧ୍ୟ ଲେଖା ଯାଇଥିଲା । ବିଶେଷକରି ତତ୍କାଳୀନ ଉତ୍କଳ ଭୂଖଣ୍ଡର ଚତୁଃପାର୍ଶ୍ୱରେ ମହାଭାରତର ଚର୍ଚ୍ଚା ଆଞ୍ଚଳିକ ଭାଷାରେ ହେଉଥିଲା । ତେଲେଗୁରେ ନନ୍ନୟ ଭଟ୍ଟ ଏକାଦଶ ଶତାବ୍ଦୀରେ ମହାଭାରତ ରଚନା କରିଥିଲେ କିନ୍ତୁ ତାହା ମୁଖ୍ୟତଃ ଭାବାନୁବାଦ । ମରାଠୀ ଭାଷାରେ ଏକନାଥଙ୍କ ପୁଅ ମୁକ୍ତେଶ୍ୱର ପଞ୍ଚଦଶ ଶତାବ୍ଦୀରେ ମହାଭାରତ ରଚନା କରି ଅନେକ ମୌଳିକ ସୃଷ୍ଟି ସନ୍ନିବେଶିତ କରିଥିଲେ । କନ୍ନଡ଼ ଭାଷାରେ ଦଶମ ଶତାବ୍ଦୀରେ 'ପମ୍ପା' ରଚନା କରିଥିଲେ 'ବିକ୍ରମାର୍ଜ୍ଜୁନ' ଯାହାକି ମହାଭାରତ ଅବଲମ୍ବନରେ ଲିଖିତ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ମହାଭାରତ ନୁହେଁ । ଅଷ୍ଟାଦଶ ଶତାବ୍ଦୀରେ ଯାଇ ହିନ୍ଦୀରେ ଗୋକୁଳ ନାଥ, ମହାଭାରତ ପ୍ରଣୟନ କରିଥିଲେ । ଅସମୀୟା ଭାଷାରେ ଅନେକ ଦିନ ଧରି ସମ୍ପୂର୍ଣ୍ଣ ମହାଭାରତ ନ ଥିଲା । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ କାଶୀରାମ ବଙ୍ଗଳା ଭାଷାରେ ବିରାଟପର୍ବ ପର୍ଯ୍ୟନ୍ତ ଲେଖି ପ୍ରାଣତ୍ୟାଗ କରିବା ପରେ ତାଙ୍କ ପୁତୁରା ନନ୍ଦରାମ ବାକି ଅଂଶତକ ଲେଖିଛନ୍ତି ବୋଲି କୁହାଯାଏ । ଉଲ୍ଲେଖଯୋଗ୍ୟ ଯେ, ପ୍ରତିବେଶୀ ଭାଷାରେ ସାରଳା ଦାସଙ୍କ ମହାଭାରତ ଅନୂଦିତ ହୋଇ ଅଧିକ ଲୋକପ୍ରିୟ ହୋଇଥିଲା । ବଙ୍ଗଳାଲିପି, ସାରଳା ମହାଭାରତ ପୋଥି ଏବେ ପୁସ୍ତକାଗାରରେ ରହିଛି । ତେଲୁଗୁ ଭାଷାରେ ମଧ୍ୟ ମିଳୁଛି । ଏହା ସାରଳା ଦାସଙ୍କ ସାହିତ୍ୟକୃତିର ପ୍ରଭାବର ସୂଚନା ଦିଏ ।

ସାରଳା ଦାସ ଅନୁବାଦକ ନ ଥିଲେ କମ୍ବା ବ୍ୟାସଙ୍କ ଅନୁକରଣରେ ଓଡ଼ିଆ ମହାଭାରତ ରଚନା କରିନାହାନ୍ତି । ସେ ଥିଲେ ସ୍ୱପ୍ନଦ୍ରଷ୍ଟା, ଯିଏ ଉତ୍କଳର ପ୍ରଗତି, ବିଭବ, ଶକ୍ତି ସ୍ୱବୃ ଦେଖି ଅଭିମାନ, ଅହଙ୍କାର, ଉଚ୍ଛୃଙ୍ଖଳତାକୁ ମଧ୍ୟ ଦେଖିଛନ୍ତି । ସାମରିକ ରାଜନୀତି କମ୍ବା ଭୌତିକ ଜୃକଚକ୍ୟ ଓ ପ୍ରାଚୁର୍ଯ୍ୟ ଯେ ସୁଖମୟ ନୁହେଁ ଏ ଚେତାବନୀ ମଧ୍ୟ ସେ ନିଜର କାବ୍ୟ ଜରିଆରେ ପ୍ରଦାନ କରିଯାଇଛନ୍ତି । ଅନେକ ପ୍ରସଙ୍ଗ ସେ ନିଜେ ନିଜ ଲେଖନୀରୁ ସୃଷ୍ଟି କରି ସ୍ୱରଚିତ ମହାଭାରତରେ ସନ୍ନିବେଶିତ କରି ନିଜର ସାମର୍ଥ୍ୟ ପ୍ରମାଣିତ କରିଯାଇଛନ୍ତି । 'ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ' ତା' ମଧ୍ୟରୁ ଗୋଟିଏ । ସାରଳାଦାସଙ୍କ ମହାଭାରତରେ ଅତ୍ୟଧିକ ବର୍ଣ୍ଣନା-ବିଳାସ ରହିଛି ସତ କିନ୍ତୁ ଏ ଜାତି କଦାପି ତାହାକୁ ଅବସର-ବିନୋଦନ ସାମଗ୍ରୀଭାବେ ଗ୍ରହଣ କରିପାରିନାହିଁ । କାରଣ, ସାରଳାଙ୍କ ମହାଭାରତରେ ବ୍ୟାସଙ୍କ ଚରିତ୍ର ଆମେ ପାଠ କରୁଥିଲାବେଳେ, ପଞ୍ଚଦଶ ଶତାବ୍ଦୀର ଉତ୍କଳର ରାଜନୈତିକ ଚିତ୍ର ଆମ ଆଖି ଆଗକୁ ଆସିଥାଏ । ରାଜସୂୟଯଜ୍ଞ କାଳରେ ଦିଗ୍ବିଜୟୀ ପାଣ୍ଡବ ଭୀମଙ୍କର କୁଣ୍ଡୀନଗରର ରାଜା ଭୀଷ୍ମକ ତଥା ତାଙ୍କର ଦୁଇପୁତ୍ର ରୁକ୍ମଣ ଏବଂ ରୁକ୍ମାଙ୍ଗଦଙ୍କ ସହିତ ହୋଇଥିବା ଯୁଦ୍ଧ ସହ କପିଳେନ୍ଦ୍ରଙ୍କ କୋଣ୍ଡାବିଡୁ ଦୁର୍ଗ ଅଧିକାର ଏକ ସମାନ୍ତରାଳ ଚିତ୍ର ବୋଲି ଡକ୍ଟର ପାଣିଗ୍ରାହୀ ମତଦାନ କରିଛନ୍ତି । ସେହିଭଳି, ବାହାମନି ରାଜ୍ୟ ଇତ୍ୟାଦି ସହ ସଂଘର୍ଷକୁ ପୌରାଣିକ ପ୍ରଲେପ ଦେଇ ତାହାର ଯଥାଯଥ ବର୍ଣ୍ଣନା କରିଛନ୍ତି ।

ସାରଳା ଦାସ ମହାଭାରତ ମୁଖ୍ୟତଃ ଯୁଦ୍ଧ ବିଗ୍ରହର କାହାଣୀ । ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାର ରାଜନୈତିକ ପରିସ୍ଥିତି ମଧ୍ୟ ସେହିଭଳି ଥିଲା । ତେଣୁ ସମସାମୟିକ ଘଟଣାର ବହୁ ଚିତ୍ର ସାରଳା ମହାଭାରତରୁ ମିଳିପାରିବ ବୋଲି ବିଶ୍ୱାସ କରାଯାଉଛି । ବାଦ୍ୟର ନାମ, ଅସ୍ତ୍ରଶସ୍ତ୍ରର

ନାମ, ରଥ ଓ ଅଶ୍ୱର ବର୍ଣ୍ଣନା, ସୈନ୍ୟସଜ୍ଜାର କୌଶଳ, ସୈନ୍ୟ-ବାହିନୀର ବିଭାଗୀକରଣ, ଯୋଦ୍ଧାମାନଙ୍କର ବ୍ୟବହୃତ ପୋଷାକ ଓ ଅଳଙ୍କାର ଇତ୍ୟାଦି ଅନେକର ବର୍ଣ୍ଣନା ସାରଳା ଦାସ ପ୍ରଦାନ କରିଛନ୍ତି । ସେ ଯେଉଁ ଶବ୍ଦ ବ୍ୟବହାର କରିଛନ୍ତି ତାହା ଯେ ସବୁ ଓଡ଼ିଆ, ସେ କଥା କୁହାଯାଇ ପାରିବନାହିଁ ।

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ଲିଖିତ ଏ ପୁସ୍ତକ ୧୯୭୬ରେ ପ୍ରକାଶିତ ହୋଇଥିଲା । ଏବେ ଏହାର ଦ୍ୱିତୀୟ ମୁଦ୍ରଣ କରାଯାଇଛି, ଏହାର ଅଭାବ ଅନୁଭୂତ ହେବାରୁ । ସାରଳା ଦାସଙ୍କ ଐତିହାସିକ ଓ ଭୌଗୋଳିକ-ଜ୍ଞାନର ପରିସୀମାକୁ ଡକ୍ଟର ପାଣିଗ୍ରାହୀ ଉନ୍ମୋଚନ କରିଛନ୍ତି ବୋଲି ଡକ୍ଟର ମହତାବ, ପ୍ରଥମ ସଂସ୍କରଣରେ 'ଭୂମିକା' ଲେଖି ମତବ୍ୟକ୍ତ କରିଛନ୍ତି ।

ଆଜ ପ୍ରଜାତନ୍ତ୍ର ପ୍ରଚାର ସମିତିର ୪୨ତମ ଜନ୍ମ ବାର୍ଷିକୀରେ ଏ ପୁସ୍ତକର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରି ଆମେ ଆନନ୍ଦିତ । ଓଡ଼ିଆ ସମାଜକୁ ଏହା ଦିଗ୍‌ଦର୍ଶନ ଦେଇପାରିବ ବୋଲି ଆମର ବିଶ୍ୱାସ ।

**ଭର୍ତ୍ତୃହରି ମହତାବ**
ଅଧ୍ୟକ୍ଷ
ପ୍ରଜାତନ୍ତ୍ର ପ୍ରଚାର ସମିତି

# ସୂଚୀପତ୍ର

# ନିବେଦନ

ସାରଳା ସାହିତ୍ୟର ଐତିହାସିକ ଦିଗ ସମ୍ବନ୍ଧରେ ମୋର କେତେଗୁଡ଼ିଏ ପ୍ରବନ୍ଧ ୧୯୫୭ ଠାରୁ ଝଙ୍କାରରେ ପ୍ରକାଶିତ ହୋଇ ଆସିଥିଲା । ବର୍ତ୍ତମାନ ସେଗୁଡ଼ିକୁ ଅନ୍ୟ କେତେକ ପ୍ରବନ୍ଧ ସହିତ ପୁସ୍ତକାକାରରେ ସହୃଦୟ ଓ ସୁଧୀ ପାଠକମାନଙ୍କ- ଠାରେ ଉପସ୍ଥାପନ କରି ଆଶା କରୁଛି ଯେ, ସେମାନେ ପ୍ରବନ୍ଧଗୁଡ଼ିକୁ ଯେପରି ଉଦାର ଦୃଷ୍ଟିରେ ଦେଖିଥିଲେ, ପୁସ୍ତକଟିକୁ ମଧ୍ୟ ସେହିପରି ଉଦାର ଦୃଷ୍ଟିରେ ଦେଖିବେ । ସାରଳା ମହାଭାରତ ଗୋଟିଏ ସାଗରୋପମ ଗ୍ରନ୍ଥ । ଏହି ଗ୍ରନ୍ଥରେ ଯେଉଁ ତଥ୍ୟମାନ ଅଛି, ସେଗୁଡ଼ିକୁ ସମ୍ୟକ୍ ଆଲୋଚନା କଲେ ବହୁ ପୁସ୍ତକ ଲିଖିତ ହୋଇପାରିବ । ଏ ପୁସ୍ତକରେ କେତେକ ଐତିହାସିକ ଓ ଭୌଗୋଳିକ ତଥ୍ୟ ଆଲୋଚନା କରାଯାଇଛି, କିନ୍ତୁ ଏ ଆଲୋଚନାରେ ଯେ ସାରଳା ମହାଭାରତର ଐତିହାସିକ ଓ ଭୌଗୋଳିକ ତଥ୍ୟଗୁଡ଼ିକ ନିଃଶେଷିତ ହୋଇଯାଇଛି, ଏପରି ଦାବୀ କରାଯାଉନାହିଁ । ଓଡ଼ିଶାରେ ବହୁ ସୁଯୋଗ୍ୟ ସନ୍ତାନ ଜନ୍ମଗ୍ରହଣ କରିଛନ୍ତି ଓ କରିବେ । ମୁଁ ଆଶା କରୁଛି ଯେ ସେମାନେ ଅଦୂର ଓ ଦୂର ଭବିଷ୍ୟତରେ ସାରଳା ସାହିତ୍ୟକୁ ବିଭିନ୍ନ ଦିଗରୁ ଆଲୋଚନା କରି ବହୁ ପୁସ୍ତକ ଲେଖିପାରିବେ । ସେତେବେଳେ ମୋର ଏହି ପୁସ୍ତକଟି ଗୋଟିଏ ପ୍ରାରମ୍ଭିକ ଚେଷ୍ଟାର ଫଳ ବୋଲି ହୁଏତ ବିବେଚିତ ହେବ ।

ମୁଁ କଦାପି କଳ୍ପନା କରିପାରେ ନାହିଁ ଯେ, ଓଡ଼ିଶା ଧନ ଓ ଜ୍ଞାନରେ ସବୁଦିନେ ଅନୁନ୍ନତ ହୋଇ ରହିବ । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶାରେ ଗୋଟାଏ ଦୀର୍ଘ ଅନ୍ଧକାରମୟ ଯୁଗ ଚାଲିଥିଲା । ତାହାର ଅବସାନ ଘଟିଛି, କିନ୍ତୁ ପୂର୍ଣ୍ଣମାତ୍ରାରେ ଆଲୋକ ଆସିନାହିଁ । ଏହି ଅର୍ଦ୍ଧ- ଆଲୋକିତ ଯୁଗରେ ଓଡ଼ିଶାରେ ବିଭିନ୍ନ ଶ୍ରେଣୀର ଶିକ୍ଷିତ ଦେଖାଯାନ୍ତି । କେତେକ କହନ୍ତି ଯେ ଅତୀତର ଆଲୋଚନା ଅନାବଶ୍ୟକ; କେତେକ ଭାବନ୍ତି ଯେ ଅସାଧୁ ଉପାୟରେ ଓ ଟଣାଓଟରା ଏକଦେଶଦର୍ଶୀ ଯୁକ୍ତି ବଳରେ ସୁଦ୍ଧା ଓଡ଼ିଶାର ଅତୀତକୁ ଖୁବ୍ ବଡ଼ ବୋଲି ଦେଖାଇ ପାରିଲେ ଓଡ଼ିଶା ମଧ୍ୟ ଖୁବ୍ ବଡ଼ ହୋଇଯିବ । ଅନ୍ୟ କେତେକ ଭାବନ୍ତି ଯେ ଓଡ଼ିଶାର ଅତୀତରେ ଯାହା ଘଟିଥିଲା ଓ ଯେବେ ଯାହା ଘଟିଥିଲା, ସେ ସମସ୍ତଙ୍କୁ ଯଥାଯଥ ଭାବରେ ପ୍ରକାଶ କରିପାରିଲେ ଇତିହାସରୁ ପ୍ରକୃତ ପ୍ରେରଣା ମିଳିପାରିବ । ଆମର ଇତିହାସ ହେଉଛି ଦୁଃଖସୁଖ ସମନ୍ୱିତ ଘଟନା-

ପ୍ରବାହର ଗୋଟାଏ ବିବରଣୀ, ଏହା ନିରବଚ୍ଛିନ୍ନ ସୁଖର କାହାଣୀ ନୁହେଁ । ଇତିହାସରୁ ଯଦି ଆମ୍ଭେମାନେ ଶିକ୍ଷା ବା ପ୍ରେରଣା ପାଇବାକୁ ଚାହୁଁ, ତେବେ ତାକୁ ସତ୍ୟାଶ୍ରିତ କରିବାକୁ ପଡ଼ିବ । ତାକୁ ଭାବପ୍ରବଣତାମୟ କଲେ ସେଥିରୁ କ୍ଷଣିକ ଉତ୍ତେଜନା ଛଡ଼ା ଅନ୍ୟ କିଛି ମିଳିବ ନାହିଁ ।

ମୁଁ ପିଲାଦିନରୁ ଇତିହାସକୁ ଶେଷୋକ୍ତ ଦୃଷ୍ଟିରୁ ଦେଖି ଆସିଛି । ଭାରତ ଓ ଭାରତ ବାହାରର ବହୁ ପଣ୍ଡିତଙ୍କ ଶିକ୍ଷା ଓ ସାହଚର୍ଯ୍ୟରୁ ମୁଁ ଏହା ମଧ୍ୟ ଉପଲବ୍ଧି କରିଛି ଯେ ସମସ୍ତ ଗବେଷଣାର ମୂଳ ଲକ୍ଷ୍ୟ ହେଉଛି ସତ୍ୟର ସ୍ୱରୂପକୁ ଉଦ୍‌ଘାଟନ କରିବା । ଏଣୁ ୧୯୫୬ ମସିହାରେ ଯେତେବେଳେ ଝଙ୍କାରରେ ସାରଳାଦାସଙ୍କ ଜନ୍ମସ୍ଥାନ ଓ ଜନ୍ମକାଳ ସମ୍ବନ୍ଧରେ ଆଲୋଚନା ଚାଲିଲା, ସେତେବେଳେ ଯେଉଁମାନେ ତାଙ୍କ ଜନ୍ମସ୍ଥାନକୁ ଝଙ୍କଡ଼ ବୋଲି ଓ ତାଙ୍କୁ ଗଜପତି କପିଳେଶ୍ୱରଙ୍କ ସମସାମୟିକ ବୋଲି ମତପ୍ରକାଶ କଲେ, ମୁଁ ସେମାନଙ୍କ ସହିତ ଏକମତ ହୋଇପଡ଼ିଥିଲି । ସାରଳାଦାସଙ୍କ ବାସସ୍ଥାନ ଓ ଜନ୍ମକାଳ ସମ୍ବନ୍ଧରେ ଏହି ମତ ନୂତନ ନ ଥିଲା । ୧୯୫୬ ମସିହାର ବହୁ ପୂର୍ବରୁ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ସ୍ୱର୍ଗତ ମନମୋହନ ଚକ୍ରବର୍ତ୍ତୀ, ପଣ୍ଡିତ ବିନାୟକ ମିଶ୍ର, ଡକ୍ଟର ହରେକୃଷ୍ଣ ମହତାବ, ଅଧ୍ୟାପକ ପ୍ରଭାତ କୁମାର ମୁଖର୍ଜୀ ପ୍ରଭୃତି ପ୍ରଖ୍ୟାତ ପଣ୍ଡିତମାନେ ଏହି ମତ ପ୍ରକାଶ କରିସାରିଥିଲେ । କିନ୍ତୁ ୧୯୫୬ ବେଳକୁ ସାରଳାଦାସଙ୍କ ଜନ୍ମସ୍ଥାନ ଓ ତାଙ୍କ ସାହିତ୍ୟର ଜନ୍ମକାଳ ସମ୍ବନ୍ଧରେ ଆଉ କେତୋଟି ନୂତନ ମତ ଆବିର୍ଭୂତ ହୋଇଥିଲା । ଏହି ନୂତନ ମତଗୁଡ଼ିକର ମୂଳତଥ୍ୟ ଏହି ଯେ ସାରଳା ମହାଭାରତର ଆଦ୍ୟପର୍ବରେ ବର୍ଣ୍ଣିତ ମହାରାଜା କପିଳେଶ୍ୱର ଓଡ଼ିଶାର ପ୍ରଖ୍ୟାତ ଗଜପତି କପିଳେଶ୍ୱର ନୁହନ୍ତି, ସେ କପିଳ ନରସିଂହ, କପିଳସିଂହ ବା ଆଉ କୌଣସି ବ୍ୟକ୍ତି ହୋଇପାରନ୍ତି । ସାରଳା ସାହିତ୍ୟର ରଚନାକାଳ ପଞ୍ଚଦଶ ଶତାବ୍ଦୀ ନୁହେଁ; ଏହାର ରଚନ କାଳ ନବମ, ଏକାଦଶ ବା ଚତୁର୍ଦ୍ଦଶ ଶତାବ୍ଦୀ ହୋଇପାରେ । ସାରଳାଦାସଙ୍କ ବାସସ୍ଥାନ ଝଙ୍କଡ଼ରେ ନୁହେଁ, କୋଣାର୍କ ପାଖର କଣିଆର ଅବସ୍ଥିତ ଥିଲା । ସାରଳା ସାହିତ୍ୟର ଜନ୍ମକାଳ ସମ୍ବନ୍ଧୀୟ ନୂତନ ମତ ବିରୁଦ୍ଧରେ ଝଙ୍କାରର ସୁଯୋଗ୍ୟ ସମ୍ପାଦକ ଡକ୍ଟର ହରେକୃଷ୍ଣ ମହତାବ ଝଙ୍କାରରେ ଗୋଟିଏ ସମ୍ପାଦକୀୟ ଲେଖି ପୂର୍ବମତକୁ ସମର୍ଥନ କରିଥିଲେ । ମୁଁ ତାଙ୍କ ସହିତ ଏକମତ ହୋଇପଡ଼ିଥିଲି ।

ଏସବୁ ଆଲୋଚନା ଚାଲିଥିବାବେଳେ ମୁଁ ଦିଲ୍ଲୀରେ ଥିବାରୁ ଓଡ଼ିଆ ପୁସ୍ତକମାନ ମୋତେ ଦୁର୍ଲଭ ଥିଲା । ଏଣୁ ସାରଳା ମହାଭାରତର ଏକ ସେଟ୍ ଗ୍ରନ୍ଥପାବଦ୍ଧ ମୋ'ପାଖକୁ ପଠାଇଦେବା ପାଇଁ ମୁଁ ଝଙ୍କାର ସହିତ ସମ୍ପୃକ୍ତ ପ୍ରଜାତନ୍ତ୍ର ପ୍ରଚାର ସମିତି ପାଖକୁ ପତ୍ର

ଲେଖି ଅନୁରୋଧ କରିଥିଲି । ସମିତି ତତ୍‌କ୍ଷଣାତ୍ ମୋର ଅନୁରୋଧ ରକ୍ଷା କରିଥିଲେ ଏହା ହିଁ ହେଲା ମୋର ସାରଳା ସାହିତ୍ୟ ଆଲୋଚନା ଆରମ୍ଭର ମୂଳ କାହାଣୀ । ଏହାପରେ ଆଲୋଚନା କିପରି ରୂପ ଧାରଣ କଲା ଓ କାହିଁକି ଦୀର୍ଘକାଳ ପରେ ବର୍ତ୍ତମାନ ତାହା ପୁସ୍ତକାକାରରେ ପ୍ରକାଶିତ ହେଉଛି, ଏ ସମସ୍ତର ଆଭାସ ମଧ୍ୟେ ମଧ୍ୟେ ଏହି ପୁସ୍ତକରୁ ହିଁ ସୁଧୀପାଠକେ ପାଇପାରିବେ ।

ଯେଉଁମାନେ ସାରଳା ମହାଭାରତକୁ କପିଳେଶ୍ୱରଦେବଙ୍କ ବହୁ ପୂର୍ବର ଗ୍ରନ୍ଥ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ, ସେମାନେ ମୋତେ ଏ ପୁସ୍ତକ ଲେଖିବା ପାଇଁ ପ୍ରକାରାନ୍ତରରେ ପ୍ରେରଣା ଦେଇଥିଲେ । ଜ୍ଞାନଚର୍ଚ୍ଚାରେ ମତ ପ୍ରକାଶ କରିବା ପାଇଁ ସମସ୍ତଙ୍କ ଅଧିକାର ରହିଛି । କାହାରି କାହାରି ମତ ଅବାସ୍ତବ ଓ ଅଗ୍ରହଣୀୟ ହେଲେ ମଧ୍ୟ ତାକୁ ଅପାଠ୍ୟ ବୋଲି କୁହାଯାଇ ପାରିବ ନାହିଁ । କିନ୍ତୁ ଜ୍ଞାନାଲୋଚନାବେଳେ ଅଯଥା ଅଭିଯୋଗ ଓ ଆକ୍ଷେପ ସର୍ବଥା ନିନ୍ଦନୀୟ । ସାରଳା ସାହିତ୍ୟ ଆଲୋଚନାରେ ରତ ଥିବାବେଳେ ମୋ' ପ୍ରତି ଅଯଥା ଅଭିଯୋଗ ଓ ଆକ୍ଷେପ କରାଯାଇଥିଲା । ପ୍ରଜାତନ୍ତ୍ର ପ୍ରଚାର ସମିତି ମୋତେ ଏକ ସେଟ୍ ସାରଳା ମହାଭାରତ ଦେବା ଓ ମୁଁ ତାହା ଗ୍ରହଣ କରିବା, ଗୋଟିଏ ଗର୍ହିତ କାର୍ଯ୍ୟ ବୋଲି କୌଣସି ନିରପେକ୍ଷ ସୁଧୀବ୍ୟକ୍ତି କହିବେ ନାହିଁ; ମାତ୍ର ତାହା ମଧ୍ୟ ତୀବ୍ର ସମାଲୋଚନାର ବିଷୟବସ୍ତୁ ହୋଇଥିଲା । ଏ ଆଲୋଚନା ଲେଖିଲାବେଳେ ମୋତେ କଟାକ୍ଷ, ବିଦ୍ରୂପ, ଅଭିଯୋଗ ଏବଂ ପ୍ରତ୍ୟକ୍ଷ, ପରୋକ୍ଷ ଓ ପ୍ରକାରାନ୍ତର ବିରୁଦ୍ଧ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏ ଆଲୋଚନା କେତେକ ବର୍ଷ ଧରି ବନ୍ଦ କରିଦେବା ବେଳେ ବିରୁଦ୍ଧବାଦୀମାନେ ବୋଧହୁଏ ଆଶ୍ୱସ୍ତିର ନିଶ୍ୱାସ ମାରିଲେ, ମାତ୍ର ସେମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି କୌଣସି ଦୃଷ୍ଟିରୁ ଏ ସାହିତ୍ୟର ଆଲୋଚନା କଲେ ନାହିଁ । ଏଣୁ ଜଣାପଡ଼ିଲା ଯେ ମୋର ଲେଖାକୁ ବନ୍ଦ କରିଦେବା ହିଁ ବିରୁଦ୍ଧବାଦୀମାନଙ୍କ ପ୍ରଧାନ ଉଦ୍ଦେଶ୍ୟ ଥିଲା । କିନ୍ତୁ ବିରୁଦ୍ଧବାଦୀମାନଙ୍କ ସମାଲୋଚନା ସତ୍ତ୍ୱେ ପ୍ରଜାତନ୍ତ୍ର ପ୍ରଚାର ସମିତିର କର୍ମକର୍ତ୍ତାଗଣ, ଙ୍କ ସହିତ ସମ୍ପୃକ୍ତ କର୍ମକର୍ତ୍ତାଗଣ ଏବଂ ଏ ସଂସ୍ଥାମାନଙ୍କର ପ୍ରଧାନ ପୁରୋଧା ଡକ୍ଟର ହରେକୃଷ୍ଣ ମହତାବ ମୋତେ ସବୁ ସମୟରେ ସାହାଯ୍ୟ ଓ ଉତ୍ସାହ ଦେଇ-ଆସିଛନ୍ତି । ଫଳତଃ ସେମାନଙ୍କ ସାହାଯ୍ୟ ଓ ଉତ୍ସାହଦାନ ହେତୁରୁ ହିଁ ଏ ଆଲୋଚନା ବର୍ତ୍ତମାନ ପୁସ୍ତକାକାରରେ ପ୍ରକାଶ ପାଉଛି । ମୁଁ ଏମାନଙ୍କ ଠାରେ ଅକୁଣ୍ଠିତ ଚିତ୍ତରେ ମୋର ଗଭୀର କୃତଜ୍ଞତା ଜଣାଉଛି ।

କୌଣସି ଗବେଷଣାଗ୍ରନ୍ଥ ସମ୍ପୂର୍ଣ୍ଣ ଅଭ୍ରାନ୍ତ ନୁହେଁ କିମ୍ବା କୌଣସି ଜ୍ଞାନ ସମ୍ପୂର୍ଣ୍ଣ ଅଭ୍ରାନ୍ତ ନୁହେଁ । ଏହି କ୍ଷୁଦ୍ରଗ୍ରନ୍ଥଟିକୁ ସୁଧୀପାଠକମାନଙ୍କ ଠାରେ ଉପସ୍ଥାପନ

କଲ୍ଗ ପରେ ଏଥିରେ ଥିବା ସମସ୍ତ ବିଷୟର ଅଭ୍ରାନ୍ତତା ଦାବୀ କରାଯାଉନାହିଁ; କିନ୍ତୁ ମିଥ୍ୟା, ଅଳୀକ ଦେଶପ୍ରୀତି ଓ ଭାବପ୍ରବଣତା ଯେଉଁ ମୂଳସତ୍ୟକୁ ମ୍ଳାନ କରିବାକୁ ଯାଉଥିଲେ, ସେହି ସତ୍ୟ ଏ ପୁସ୍ତକର ବିଭିନ୍ନ ଆଲୋଚନାମାନଙ୍କରୁ ଅମ୍ଳାନ ଓ ଅବିନଶ୍ୱର ହୋଇ ବାହାରି ଆସିଛି ବୋଲି ହିଁ କୁହାଯାଉଛି । ସାରଳା ସାହିତ୍ୟ କପିଳେଶ୍ୱରଦେବ ଗଜପତି ( ଖ୍ରୀ: ୧୪୩୫–୧୪୬୭ ) ଓ ପୁରୁଷୋତ୍ତମଦେବ ଗଜପତିଙ୍କ ( ଖ୍ରୀ: ୧୪୬୭–୧୪୯୭ ) ଅମଳରେ ହିଁ ରଚିତ ହୋଇ ଓଡ଼ିଆ ସାହିତ୍ୟର ପ୍ରାଣପ୍ରତିଷ୍ଠାତା ହୋଇପାରିଥିଲା । ଏହି ମୌଳିକ ସତ୍ୟକୁ ସମୁଜ୍ଜ୍ୱଳ କରିବା ପାଇଁ ଏ ପୁସ୍ତକରେ ଯେଉଁ ସବୁ ପ୍ରମାଣମାନଙ୍କ ଅବତାରଣା କରାଯାଇଛି, ସେଥିମଧ୍ୟରୁ ପରେ ଯଦିବା କେତେକ ଭ୍ରାନ୍ତ ବୋଲି ପ୍ରତିପାଦିତ ହୁଏ, ତଥାପି ସୁଦ୍ଧା ବାକି ଯାହା ରହିବେ, ସେମାନେ ସମ୍ମିଳିତ ଭାବରେ କୃଷ୍ଣଙ୍କ ପରି ମିଥ୍ୟା, ମୋହ, ଅଳୀକ ଦେଶପ୍ରୀତି ଇତ୍ୟାଦିର ସପ୍ତଫେଣୀ ନାଗକୁ ପଦତଳରେ ଦଳିଦେବେ ଓ ସମସ୍ତ ଭାବପ୍ରବଣତାର ବେଲୁନ୍‌କୁ ଫୁତ୍କାରରେ ଫଟାଇଦେବେ ।

ଶିକ୍ଷାନବିସ ରୂପେ ଓ କର୍ମଚାରୀ ରୂପେ ମୁଁ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗରେ ଚଉଦବର୍ଷ ବିତାଇଥିଲି । ଏହି ଦୀର୍ଘ ସମୟରେ ମୁଁ ଅବିଭକ୍ତ ତଥା ବିଭକ୍ତ ଭାରତର ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମାଞ୍ଚଳରେ ଅବସ୍ଥିତ ବହୁ ପ୍ରାଚୀନ ସ୍ଥାନକୁ ଦେଖିବାର ଓ ସେମାନଙ୍କ ଇତିହାସ ଜାଣିବାର ସୁଯୋଗ ପାଇଥିଲି । ଏ ପୁସ୍ତକରେ ଆଲୋଚିତ ଅଧିକାଂଶ ଅଞ୍ଚଳ ଓ ସ୍ଥାନକୁ ମୁଁ ସ୍ୱଚକ୍ଷୁରେ ଦେଖିଥିଲି ।

ଏ ପୁସ୍ତକରେ କଟକର ରାଧାରମଣ ପ୍ରେସରୁ ୧୯୫୫–୫୭ ମସିହାରେ ପ୍ରକାଶିତ ସାରଳା ମହାଭାରତ ଓ ଅରୁଣୋଦୟ ପ୍ରେସରୁ ୧୯୫୩ ମସିହାରେ ପ୍ରକାଶିତ ଚଣ୍ଡୀପୁରାଣ ବ୍ୟବହୃତ ହୋଇଛି । ପୃଷ୍ଠାଙ୍କଗୁଡ଼ିକ ଏହି ସଂସ୍କରଣମାନଙ୍କ ପୃଷ୍ଠାଙ୍କ ବୋଲି ଧରିବାକୁ ପାଠକମାନଙ୍କୁ ଅନୁରୋଧ ।

୧୯୬୫ରେ ମୋ ଦ୍ୱାରା ଇଂରାଜୀରେ ଲିଖିତ **Sarala Dasa** ନାମକ ପୁସ୍ତକ ଦିଲ୍ଲୀ ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ପ୍ରକାଶିତ ହେବା ପରେ ଭାରତ ତଥା ପୃଥିବୀ ସାରଳା ସାହିତ୍ୟର ମହତ୍ତ୍ୱ ଜାଣିବା ପାଇଁ ସୁଯୋଗ ପାଇଛନ୍ତି ।

ଗ୍ରନ୍ଥକାର

୨।୧୦।୧୯୭୬
ଦଶହରା

# ପ୍ରଥମ ପରିଚ୍ଛେଦ

## ଓଡ଼ିଶାର ବାହ୍ମଣୀ ରାଜ୍ୟ ସହିତ ସଂଘର୍ଷର ଚିତ୍ର

କବିଗୁରୁ ସାରଳାଦାସ ଓଡ଼ିଶାର ବ୍ୟାସ ଓ ଓଡ଼ିଆ ସାହିତ୍ୟର ଜନ୍ମଦାତା । ତାଙ୍କ ସାହିତ୍ୟର ରଚନାକାଳ ଯଥାଯଥ ଭାବରେ ନିରୂପିତ ନ ହେଲେ ପରବର୍ତ୍ତୀ ଓଡ଼ିଆ ସାହିତ୍ୟର କ୍ରମବିକାଶ ମଧ୍ୟ ଯଥାଯଥ ଭାବରେ ନିରୂପିତ ହୋଇପାରିବ ନାହିଁ । ଏ ବିଷୟରେ ଏକାଧିକ ପ୍ରବନ୍ଧ ପ୍ରକାଶିତ ହୋଇଥିଲେ ହେଁ ସାରଳାଦାସଙ୍କ ଗ୍ରନ୍ଥାବଳୀରୁ ତାଙ୍କ ସାହିତ୍ୟର ରଚନାକାଳ ସମ୍ବନ୍ଧରେ ଯେଉଁ ସବୁ ଐତିହାସିକ ତଥ୍ୟ ମିଳୁଛି, ତାହାର ସମ୍ୟକ ଆଲୋଚନା କୌଣସିଠିରେ ହୋଇ ନାହିଁ । କୌଣସି ସାମାନ୍ୟ ବିଷୟ ଉପରେ ଗୁରୁତ୍ୱ ଆରୋପ କରି ଲେଖକମାନେ ସାରଳା ସାହିତ୍ୟର ରଚନାକାଳ ସମ୍ବନ୍ଧରେ ସ୍ୱ ସ୍ୱ ମତ ପ୍ରକାଶ କରିଥିବାରୁ ବହୁ ଭ୍ରାନ୍ତ ଓ ଅଳୀକ ଧାରଣା ସୃଷ୍ଟି ହୋଇଯାଉଛି । ଆମ୍ଭେମାନେ ଯାହା କଳ୍ପନା କରୁଁ, ତାହା ଇତିହାସ ନୁହେଁ । ଯାହା ପ୍ରମାଣ ଉପରେ ପ୍ରତିଷ୍ଠିତ ହୁଏ, ତାହା ହିଁ ଇତିହାସ । ଏହି ମୌଳିକ ନୀତିଟିକୁ ଏ ପ୍ରବନ୍ଧରେ ସର୍ବତ୍ର ପ୍ରୟୋଗ କରିବାର ଚେଷ୍ଟା କରାଯାଇଛି ।

---

❊ ସାରଳା ସାହିତ୍ୟର ଆଲୋଚନା ପାଇଁ ଡକ୍ଟର ହରେକୃଷ୍ଣ ମହତାବଙ୍କ ନିର୍ଦ୍ଦେଶମତେ ପ୍ରଜାତନ୍ତ୍ର ପ୍ରଚାର ସମିତି ମୋତେ ଏ ସାହିତ୍ୟର ସମସ୍ତ ଗ୍ରନ୍ଥ ପଠାଇ ଦେଇଥିବାରୁ ଏ ଆଲୋଚନା ସମ୍ଭବପର ହୋଇପାରିଛି । ଏଥିପାଇଁ ମୁଁ ଡକ୍ଟର ମହତାବ ଓ ପ୍ରଜାତନ୍ତ୍ର ପ୍ରଚାର ସମିତି ଠାରେ କୃତଜ୍ଞ ।

ସାରଳା ସାହିତ୍ୟର ଜନ୍ମକାଳ ସମ୍ବନ୍ଧରେ ଯେଉଁ ବିଭିନ୍ନ ମତ ପ୍ରକାଶ ପାଇଛି, ସେଗୁଡ଼ିକର ସଂକ୍ଷିପ୍ତ ଆଲୋଚନା ସର୍ବାଦୌ ବିଧେୟ ବୋଲି ମନେ ହେଉଛି । ଏ ସମ୍ବନ୍ଧରେ ତିନୋଟି ମତ ପ୍ରକାଶ ପାଇଛି । ଅତି ନିକଟରେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ସାରଳା ଦାସଙ୍କ ଜନ୍ମକାଳ ୯ମ ଶତାବ୍ଦୀ ବୋଲି ଧରିନେଇଛନ୍ତି । ଦ୍ୱିତୀୟ ମତ ଏହି ଯେ ସାରଳା ଦାସ ଗଙ୍ଗରାଜତ୍ୱ କାଳରେ ଜନ୍ମଗ୍ରହଣ କରିଥିଲେ । ଏହି ମତକୁ ଏକାଧିକ ଲେଖକ ସମର୍ଥନ କରିଛନ୍ତି । ତୃତୀୟ ମତ ଅନୁସାରେ କବିଙ୍କ ଗ୍ରନ୍ଥମାନଙ୍କର ରଚନାକାଳ ହେଉଛି କପିଳେଶ୍ୱର ବା କପିଳେନ୍ଦ୍ରଙ୍କ ରାଜତ୍ୱକାଳ (ଖ୍ରୀ. ୧୪୩୫ରୁ ଖ୍ରୀ. ୧୪୬୭) । ମନମୋହନ ଚକ୍ରବର୍ତ୍ତୀ, ମୃତ୍ୟୁଞ୍ଜୟ ରଥ ଓ ଗୋପୀନାଥ ନନ୍ଦ ପ୍ରଭୃତି ସ୍ୱର୍ଗୀୟ ପଣ୍ଡିତମାନେ ଏହି ତୃତୀୟ ମତର ସମର୍ଥକ ।

ବର୍ଣ୍ଣନାଚତୁର ସାରଳାଦାସ ଭୁବନେଶ୍ୱରସ୍ଥ ମନ୍ଦିରମାନଙ୍କର ବର୍ଣ୍ଣନା କରି ନାହାନ୍ତି ବୋଲି ଶ୍ରୀଯୁକ୍ତ ମହାନ୍ତି କବିଙ୍କୁ ମନ୍ଦିରମାନଙ୍କ ପୂର୍ବର ଅର୍ଥାତ୍ ନବମ ଶତାବ୍ଦୀର କବି ବୋଲି ଧରି ନେଇଛନ୍ତି । ଏପରି ଯୁକ୍ତି କିନ୍ତୁ ବିଜ୍ଞାନସମ୍ମତ ନୁହେଁ । ହୁଏନସାଂ ଭାରତର ପ୍ରାୟ ସର୍ବାଞ୍ଚଳରେ ପରିଭ୍ରମଣ କରିଥିଲେ ମଧ୍ୟ ତାଙ୍କ ବିବରଣୀରେ ମାତ୍ର ତିନି ଚାରୋଟି ଭାରତୀୟ ରାଜାଙ୍କ ନାମ ଉଲ୍ଲେଖ କରିଛନ୍ତି । ଏଥିରୁ ପ୍ରମାଣିତ ହେଉନାହିଁ ଯେ ତାଙ୍କ ସମୟର ଭାରତରେ ଅନ୍ୟ ରାଜା ଆଉ ନ ଥିଲେ । ହୁଏନସାଂଙ୍କ ବୌଦ୍ଧକ୍ଷେତ୍ରମାନ ଦେଖିବା ପ୍ରଧାନ ଲକ୍ଷ୍ୟ ଥିଲା । ଏଣୁ ତାଙ୍କ ବିବରଣୀରୁ ଯାହା ନ ମିଳୁଛି, ତାହା ତାଙ୍କ ସମୟର ଭାରତରେ ନ ଥିଲା ବୋଲି ଧରିନେଲେ ମାରାତ୍ମକ ଭ୍ରମ ହେବ । ସାରଳା ଦାସଙ୍କ ଲକ୍ଷ୍ୟ ଥିଲା ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗର ପୁରାଣ ପ୍ରକାଶ କରିବା । ଏଣୁ ତାଙ୍କ ସାହିତ୍ୟରୁ ଯାହା ନ ମିଳୁଛି, ତାହା ତାଙ୍କ ସମୟର ଓଡ଼ିଶାରେ ନ ଥିଲା ବୋଲି ଧରିନେବା ମଧ୍ୟ ସେହିପରି ମାରାତ୍ମକ ଭ୍ରମ ହେବ । ତା'ଛଡ଼ା ଆଧୁନିକ ଓ ପ୍ରାଚୀନ ଦୃଷ୍ଟିଭଙ୍ଗୀ ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । ଆଜିକାଲି ଶିକ୍ଷିତମାନେ କୌଣସି ଦେବାଳୟକୁ ଗଲେ ମନ୍ଦିରକୁ ହିଁ ପ୍ରାଧାନ୍ୟ ଦିଅନ୍ତି ଓ ମନ୍ଦିରର କାରୁକଳା ଇତ୍ୟାଦି ବିଷୟରେ ପ୍ରବନ୍ଧ ଲେଖନ୍ତି; କିନ୍ତୁ ପ୍ରାଚୀନକାଳରେ ମନୀଷୀମାନେ ଦେବତାଙ୍କୁ ହିଁ ପ୍ରାଧାନ୍ୟ ଦେଉଥିଲେ ଓ ତାଙ୍କର ମାହାତ୍ମ୍ୟ ପ୍ରକାଶ ପାଇଁ କବିତା ଇତ୍ୟାଦି ଲେଖିଥିଲେ । ବର୍ଣ୍ଣନା-ଚତୁର ସାରଳା ଦାସ ଉତ୍କଳର ପ୍ରଧାନ ପ୍ରଧାନ ଦେବଦେବୀଙ୍କ ମହାତ୍ମ୍ୟ ବର୍ଣ୍ଣନା କରିବାକୁ ଆଦୌ ଭୁଲିନାହାନ୍ତି, ମାତ୍ର କୌଣସି ଦେଉଳ ସମ୍ବନ୍ଧରେ ପଦେ ସୁଦ୍ଧା କହି ନାହାନ୍ତି । ଏଥିରୁ ପ୍ରମାଣିତ ହେଉ ନାହିଁ ଯେ ତାଙ୍କ ସମୟର ଓଡ଼ିଶାରେ ଗୋଟିଏ ସୁଦ୍ଧା ମନ୍ଦିର ନ ଥିଲା ।

ମୋଟକଥା, ଗୋପୀନାଥ ବାବୁଙ୍କ ଯୁକ୍ତି ଆଦୌ ମାନବର ନୁହେଁ । ଏଣୁ ଏ ସମ୍ବନ୍ଧରେ ଅଧିକ କହିବା ଅନାବଶ୍ୟକ ମନେ ହେଉଛି । ଦ୍ୱିତୀୟ ମତର ସମର୍ଥକମାନଙ୍କ ପ୍ରଧାନ ଯୁକ୍ତି ଏହି ଯେ ସାରଳା ମହାଭାରତର ଆଦିପର୍ବରେ ଯେଉଁ କପିଳେଶ୍ୱର ରାଜାଙ୍କ ନାମ ଉଲ୍ଲେଖ ରହିଛି, ତାହା ଗଙ୍ଗବଂଶୀୟ ରାଜା କପିଳନରସିଂହଙ୍କର ନାମାନ୍ତର ମାତ୍ର । (ସାରଳା ସ୍ମରଣିକା, ପ୍ରକାଶକ ପ୍ରଚାରସମିତି, ପୃ. ୧୦) ଏଣୁ କବି ଗଙ୍ଗରାଜତ୍ୱରେ ହିଁ ଜନ୍ମଗ୍ରହଣ କରି ତାଙ୍କ ଗ୍ରନ୍ଥମାନ ଲେଖିଥିଲେ । ଏହି ଯୁକ୍ତିର ମୂଳଭିତ୍ତି ହିଁ ଭ୍ରମାତ୍ମକ ଓ ଅସଙ୍ଗତିପୂର୍ଣ୍ଣ; ଏଣୁ ଗ୍ରହଣୀୟ ନୁହେଁ । ତାମ୍ର ଶିଳାଲେଖ, ଗଙ୍ଗବଂଶାନୁଚରିତମ୍ ଓ ମାଦଳାପାଞ୍ଜିରୁ ଗଙ୍ଗରାଜାମାନଙ୍କ ପୂର୍ଣ୍ଣ-ବଂଶାବଳୀ ମିଳୁଛି, ମାତ୍ର ଏଥିମଧ୍ୟରୁ କୌଣସିଟିରେ କପିଳନରସିଂହଙ୍କ ନାମ ମିଳୁନାହିଁ । ଏଣୁ କପିଳ ନରସିଂହଙ୍କ ନାମଟି ଯେ ସମ୍ପୂର୍ଣ୍ଣ କପୋଳକଳ୍ପିତ ଏଥିରେ ସନ୍ଦେହର ଅବକାଶ ରହୁନାହିଁ । କପିଳନରସିଂହନାମଧେୟ ଜଣେ ଗଙ୍ଗରାଜ ଥିଲେ ବୋଲି ଯଦି ବା ଯୁକ୍ତି ଛଳରେ ଧରାଯାଏ, ତଥାପି କପିଳନରସିଂହ ନାମଟି କିପରି ଯେ କପିଳେଶ୍ୱରରେ ପରିଣତ ହେଲା ତାହା ବୁଦ୍ଧିର ଅଗୋଚର ହୋଇ ପଡ଼ୁଛି । ଗଙ୍ଗବଂଶର ଏକାଧିକ ରାଜାଙ୍କ ନାମ ନରସିଂହ ଥିବାରୁ ପୃଥକ୍ ଭାବରେ ଚିହ୍ନିତ କରିବା ପାଇଁ ଆମଦେଶର କିମ୍ବଦନ୍ତୀରେ ପ୍ରଥମ ନରସିଂହଙ୍କୁ ଲାଙ୍ଗୁଳା ନରସିଂହ ନାମରେ ଆଖ୍ୟାତ କରାଯାଇଛି, କିନ୍ତୁ କୌଣସିଠାରେ ଏହାଙ୍କୁ ଲାଙ୍ଗୁଳେଶ୍ୱର ବୋଲି କୁହାଯାଇ ନାହିଁ । ଏଣୁ କପିଳନରସିଂହ ବୋଲି ଯଦି ବା କୌଣସି ଗଙ୍ଗ-ରାଜାଙ୍କ ନାମ ଥିଲା, ତାଙ୍କୁ ସାରଳା ଦାସ କାହିଁକି ଯେ କପିଳେଶ୍ୱର ବୋଲି ଲେଖିବେ, ତାହା ସାଧାରଣ ଜ୍ଞାନର ସୀମାତୀତ ହୋଇ ପଡ଼ୁଛି ।

ତୃତୀୟ ମତର ସମର୍ଥକମାନଙ୍କ ପ୍ରଧାନ ଯୁକ୍ତି ଏହି ଯେ ସାରଳାଦାସ ତାଙ୍କ ମହାଭାରତ ଆଦିପର୍ବର ଆରମ୍ଭରେ କପିଳେଶ୍ୱର ଦେବ ରାଜାଙ୍କ ନାମ ଉଲ୍ଲେଖ କରିଛନ୍ତି । ଏଣୁ ଓଡ଼ିଶାର ସୁବିଖ୍ୟାତ ଗଜପତି କପିଳେଶ୍ୱର ଦେବଙ୍କ ରାଜତ୍ୱକାଳ ମଧ୍ୟରେ ( ଖ୍ରୀ. ୧୪୩୫ ଠାରୁ ଖ୍ରୀ. ୧୪୬୭ ମଧ୍ୟରେ ) ତାଙ୍କ ଗ୍ରନ୍ଥମାନ ଲେଖା ଆରମ୍ଭ ହୋଇଥିଲା ।

( ୨ )

ତୃତୀୟ ମତକୁ ପ୍ରମାଣ ଉପରେ ପ୍ରତିଷ୍ଠିତ କରାଯାଇଛି; କିନ୍ତୁ ସାରଳା ଦାସଙ୍କ ଗ୍ରନ୍ଥମାନଙ୍କରେ ଥିବା ଅନ୍ୟାନ୍ୟ ପ୍ରମାଣ ସାହାଯ୍ୟରେ ଏହାକୁ ଦୃଢ଼ୀଭୂତ କରି ଅକାଟ୍ୟ କରିବାର ପ୍ରୟାସ ଆଜଯାଏ କରାଯାଇନାହିଁ । ସାରଳାଦାସଙ୍କ ବର୍ଣ୍ଣିତ କପିଳେଶ୍ୱର ଯେ ଉତ୍କଳ ସମ୍ରାଟ କପିଳେଶ୍ୱର ଛଡ଼ା ଅନ୍ୟ କେହି ହୋଇ ନ ପାରନ୍ତି,

ଏ ସମ୍ବନ୍ଧରେ ସାମାନ୍ୟ କେତୋଟି ପ୍ରମାଣ ସଂଗ୍ରହ କରି ଲେଖକ 'ସାରଳା ସ୍ମରଣିକା'ରେ ପ୍ରବନ୍ଧ ଟିଏ ପ୍ରକାଶ କରିଛି, ମାତ୍ର ଏଥିରେ ସମସ୍ତ ପ୍ରମାଣ ବିଶ୍ଳେଷିତ ହୋଇପାରିନାହିଁ । ଏଣୁ ସମସ୍ତ ପ୍ରମାଣ ବିଶ୍ଳେଷଣ କରିବାର ପ୍ରୟାସ କରାଯାଉଛି ।

(କ) ସାରଳା ଦାସ ଯେପରି ଭାବରେ କପିଳେଶ୍ୱରଙ୍କ ନାମ ଉଲ୍ଲେଖ କରିଛନ୍ତି, ସେଥିରୁ ହିଁ ପ୍ରମାଣିତ ହେଉଛି ଯେ ତାଙ୍କ ବର୍ଣ୍ଣିତ କପିଳେଶ୍ୱର ଉତ୍କଳର ଗଜପତି କପିଳେଶ୍ୱରଙ୍କ ଛଡ଼ା ଅନ୍ୟ କେହି ହୋଇ ନ ପାରନ୍ତି । ଆଦିପର୍ବର ଯେଉଁ ଅଂଶରେ କପିଳେଶ୍ୱରଙ୍କ ନାମ ଉଲ୍ଲେଖ ଅଛି, ତାହା ଛାପା ବହିରେ ନିମ୍ନୋକ୍ତ ମତେ ପ୍ରକାଶିତ ହୋଇଛି :—

ବିଜୟ ଶ୍ରୀରାମ କୃଷ୍ଣ ସୁଭଦ୍ରା ଏ ତିନି
ଚାରିଲକ୍ଷ ବତିଶ ସହସ୍ର ଦେବ ଯେନି ।
କଳିମଳ ବିଧ୍ୱଂସିନୀ କୋଟି ଦେବୀ ପୂଜା
ପ୍ରଣାମ ମାନେ ଖଣ୍ଡଇ କପିଳେଶ ରାଜା ।

ଆଦ୍ୟପର୍ବ, ପୃ. ୩ ✻

ଏହି ପଦ ଦୁଇଟିକୁ ପଢ଼ି ଅର୍ଥ ବୁଝିବାକୁ ଚେଷ୍ଟା କଲାବେଳେ ଗୋଟିଏ ଗାଉଁଲି ଗୀତ ଆପେ ଆପେ ମନେପଡ଼ିଯାଏ—'ସଜନାଗଛ ମୂଳେ କୁଢ଼େଇଲି ପାଉଁଶ' ତୋତେ ଦେଖି ମୋର ଭାଗି ଗଲା ଶରଧା ।' ଦ୍ୱିତୀୟ ପଦଟିର ପ୍ରଥମ ପଦ ସହିତ ତ କୌଣସି ସମ୍ବନ୍ଧ ନାହିଁ, ତା'ଛଡ଼ା ଦ୍ୱିତୀୟ ପଦଟି ଏକାବେଳକେ ଅର୍ଥଶୂନ୍ୟ ହୋଇପଡ଼ିଛି । ପ୍ରକାଶକ ଏଠାରେ ଦାଣ୍ଡି ବୃତ୍ତିକୁ ଚଉଦ-ଅକ୍ଷର ବୃତ୍ତିରେ ପରିଣତ କରିବାକୁ ଯାଇ 'ସଂଶୋଧନ' ଅସ୍ତ୍ରରେ ଅର୍ଥର ବେକକୁ କାଟି ପକାଇଛନ୍ତି । ପ୍ରଥମ ପଦରେ କୁହାଯାଇଛି ଯେ, ରାମ, କୃଷ୍ଣ ଓ ସୁଭଦ୍ରା ଚାରିଲକ୍ଷ ବତିଶ ସହସ୍ର ଦେବ ଯେନି ବିଜୟ କରିଛନ୍ତି, ଆଉ ଦ୍ୱିତୀୟ ପଦରେ କୁହାଯାଉଛି ଯେ କପିଳେଶ ରାଜା କଳିମଳ-ବିଧ୍ୱଂସିନୀ କୋଟି ଦେବୀପୂଜାକୁ ପ୍ରଣାମ ମାନେ ଖଣ୍ଡି ପକାଉଛନ୍ତି ! ପୌରାଣିକ ମାନେ ଜାଣନ୍ତି ଯେ, ଦେବତାମାନଙ୍କ ସଂଖ୍ୟା ହେଉଛି ତେତିଶ କୋଟି ଓ କଳିଯୁଗର ଆୟୁକାଳ ହେଉଛି ଚାରିଲକ୍ଷ ବତିଶ ସହସ୍ର ବର୍ଷ; କିନ୍ତୁ 'ସଂଶୋଧନ' ଫଳରେ ଦେବତା ସଂଖ୍ୟା ଚାରିଲକ୍ଷ ବତିଶ ସହସ୍ର ହୋଇଯାଇଛି ଓ କପିଳେଶ୍ୱର

---

✻ ଏହି ପୁସ୍ତକରେ ଉଦ୍ଧୃତ ହୋଇଥିବା ସମସ୍ତ ପୃଷ୍ଠାଙ୍କ ରାଧାରମଣ ପ୍ରେସରୁ ୧୯୫୬ରେ ପ୍ରକାଶିତ ହୋଇଥିବା ସାରଳା ମହାଭାରତର ପୃଷ୍ଠାଙ୍କ ବୋଲି ଧରିନେବାକୁ ପାଠକମାନଙ୍କୁ ଅନୁରୋଧ ।

କପିଳେଶରେ ପରିଣତ ହୋଇଛନ୍ତି । ସାରଳା ସାହିତ୍ୟ ଗୁପ୍ତ ଅକ୍ଷରରେ କପଟ ଭାବରେ ଆମ୍ଭମାନଙ୍କ ନିକଟରେ ଆସି ପହଞ୍ଚିଛି, ତାହା କେବଳ ଏହି ପଦ ଦୁଇଟିରୁ ହିଁ ସହଜରେ ଅନୁମିତ ହେବ ।

ଭାଗ୍ୟକୁ ଆଜ ସୁଦ୍ଧା କୌଣସି କୌଣସି ପ୍ରାଚୀନ ତାଳପତ୍ର ପୋଥିରେ ସାରଳା ଦାସଙ୍କ ମୌଳିକ ଲେଖାର ଅନେକାଂଶ ରହିଛି । ଅଧ୍ୟାପକ ବଂଶୀଧର ମହାନ୍ତି 'ସାରଳା ସ୍ମରଣିକା'ରେ (ପୃ. ୬୭) ତାଳପତ୍ର ପୋଥିରୁ ଦ୍ୱିତୀୟପଦଟିକୁ ପ୍ରକାଶ କରିଛନ୍ତି :—

"କଳିକାଳ ଧ୍ୱଂସିଣ ଭୋଗେଣ କୋଟିପୂଜା
ପ୍ରଣମିତେ ଖଟନ୍ତି କପିଳେଶ୍ୱର ମହାରାଜା ।"

କପିଳେଶ୍ୱର ମହାରାଜା (ପୁଣ୍ୟ ହେତୁରୁ) କଳିକାଳକୁ ଧ୍ୱଂସ କରି କୋଟି ପୂଜା ଓ ଭୋଗ ଦ୍ୱାରା ପ୍ରଣାମ ପୂର୍ବକ (ସେମାନଙ୍କୁ) ଖଟୁଛନ୍ତି । ଯେଉଁମାନଙ୍କୁ କପିଳେଶ୍ୱର ମହାରାଜା ଖଟୁଛନ୍ତି, ସେମାନଙ୍କ ନାମ ଉପର ପଦରେ କୁହାଯାଇଛି । ସେମାନଙ୍କ ନାମ ହେଉଛି ରାମ, କୃଷ୍ଣ ଓ ସୁଭଦ୍ରା । ସାରଳା ଦାସ ଏଠାରେ କପିଳେଶ୍ୱର ମହାରାଜଙ୍କୁ ଜଗନ୍ନାଥଙ୍କ ସେବକ ରୂପେ ବର୍ଣ୍ଣନା କରିଛନ୍ତି । ଏଣୁ ସେ ଓଡ଼ିଶାର କୌଣସି ସାମନ୍ତରାଜା ବା ଅନ୍ୟ ଦେଶୀୟ ରାଜା ହୋଇ ନ ପାରନ୍ତି । ଓଡ଼ିଶାର ଗଜପତି ହିଁ ଯେ ଜଗନ୍ନାଥଙ୍କ ପ୍ରଧାନ ସେବକ, ଏ କଥାଟି ଅତି ପ୍ରାଚୀନ କାଳରୁ ଆରମ୍ଭ ହୋଇ ଆଜି ପର୍ଯ୍ୟନ୍ତ ଚାଲିଆସିଛି । ଗଜପତିଙ୍କ ପ୍ରତିଭୂ ଆଜି ସୁଦ୍ଧା ଜଗନ୍ନାଥଙ୍କ ପ୍ରଧାନ ସେବକ । ଗଙ୍ଗରାଜା ଅନଙ୍ଗଭୀମଦେବ ଓଡ଼ିଶା ସାମ୍ରାଜ୍ୟକୁ ଜଗନ୍ନାଥଙ୍କୁ ସମର୍ପଣ କରି ତାଙ୍କର ପ୍ରତିଭୂ ରୂପେ ରାଜ୍ୟଶାସନ କରିଥିବାର ପ୍ରମାଣ ଆଜିକାଲି ମିଳୁଛି । ସେହିଦିନ ଠାରୁ ଓଡ଼ିଶା ସାମ୍ରାଜ୍ୟ ହେଲା ଜଗନ୍ନାଥଙ୍କର ଓ ଗଜପତି ହେଲେ ତାଙ୍କର ସେବକ ଓ ପ୍ରତିନିଧି ମାତ୍ର । ତ୍ରିବାଙ୍କୁଡ଼ ରାଜ୍ୟର ପ୍ରଥା ପରି ଓଡ଼ିଶା ରାଜ୍ୟରେ ମଧ୍ୟ ଏହି ପ୍ରଥା ବଦ୍ଧମୂଳ ହୋଇଯାଇଥିଲା । ଏଣୁ ଯେଉଁ କପିଳେଶ୍ୱର ମହାରାଜଙ୍କୁ ସାରଳା ଦାସ ଜଗନ୍ନାଥଙ୍କ ସେବକ ରୂପେ ବର୍ଣ୍ଣନା କରିଛନ୍ତି, ସେ ଓଡ଼ିଶାର ଗଜପତି କପିଳେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ହୋଇ ନ ପାରନ୍ତି । ସମ୍ରାଟ କପିଳେଶ୍ୱରଙ୍କ ଜଣେ ନାତିଙ୍କ (ହମ୍ମିର ଦେବଙ୍କ ପୁତ୍ର) ନାମ ମଧ୍ୟ କପିଳେଶ୍ୱର ଥିଲା । ସେ ତାଙ୍କ ପିତାମହଙ୍କ-ଦ୍ୱାରା ବିଜିତ ଦକ୍ଷିଣାଞ୍ଚଳର ଶାସକ ରୂପେ ନିଯୁକ୍ତ ହୋଇଥିବା କଥା ଦକ୍ଷିଣ ଆରକଟ୍ ଜିଲାର ନୁନ୍ନୁର ନାମକ ସ୍ଥାନରୁ ପ୍ରାପ୍ତ ପ୍ରାଚୀନ ଲେଖରୁ ପ୍ରମାଣିତ ହୁଏ, ମାତ୍ର ସେ କୌଣସି ସମୟରେ ଓଡ଼ିଶାର ଗଜପତି ହୋଇ ନ ଥିଲେ ।

ଯଦି ସାରଳା ସାହିତ୍ୟ କପିଳେଶ୍ୱରଙ୍କ ରାଜତ୍ୱରେ ହିଁ ରଚିତ ହୋଇଥିଲା, ତାହାହେଲେ ସେଥିରେ ସମସାମୟିକ ସାମାଜିକ ଓ ଐତିହାସିକ ଚିତ୍ର ପ୍ରତିଫଳିତ ହୋଇଥିବା ନିତାନ୍ତ ସମ୍ଭବ । ସେପରି ଚିତ୍ର ସାରଳା ସାହିତ୍ୟରୁ ମିଳୁଛି କି ? ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି, ଏହି ପ୍ରଶ୍ନ ଉତ୍ଥାପନ କରିଛନ୍ତି, ଆଉ ସାରଳା ସାହିତ୍ୟରେ କପିଳେଶ୍ୱରଙ୍କ ସମସାମୟିକ ସାମାଜିକ ଓ ଐତିହାସିକ ଚିତ୍ର ନାହିଁ ବୋଲି ଭାବି ସେ ଏହି ସାହିତ୍ୟକୁ ନବମ ଶତାବ୍ଦୀରେ ସ୍ଥାନ ଦେଇଛନ୍ତି । ଭାରତରେ ସାମାଜିକ ବ୍ୟବସ୍ଥା ଶତ ଶତ ବର୍ଷ ଧରି ଅପରିବର୍ତ୍ତିତ ଅବସ୍ଥାରେ ରହିଛି । ଏଣୁ କୌଣସି ସାହିତ୍ୟର କାଳ ନିର୍ଣ୍ଣୟ ପାଇଁ ସାମାଜିକ ଚିତ୍ରରୁ କୌଣସି ପ୍ରକାର ପ୍ରମାଣ ସଂଗ୍ରହ କଲେ, ସେପରି ପ୍ରମାଣ ନିର୍ଭରଯୋଗ୍ୟ ହୋଇପାରିବ ନାହିଁ, ମାତ୍ର ଇତିହାସ ସବୁ ସମୟରେ ବଦଳି ଗ୍ଲଲିଛି । ଏଣୁ ସାରଳା ସାହିତ୍ୟରୁ ଯେଉଁ ଐତିହାସିକ ଚିତ୍ର ମିଳୁଛି, ତାହାରି ଉପରେ ହିଁ ବେଶୀ ଭାବରେ ନିର୍ଭର କରିବାକୁ ପଡ଼ିବ । ଗୋପୀନାଥ ବାବୁ ଯେପରି ଭାବରେ ସାରଳା ସାହିତ୍ୟରୁ ଇତିହାସ ଖୋଜିଛନ୍ତି, ସେଥିରେ ତାଙ୍କୁ ଇତିହାସ ନ ମିଳିବାର କଥା । ସାରଳା ଦାସଙ୍କ ଗ୍ରନ୍ଥମାନ ଐତିହାସିକ ଗ୍ରନ୍ଥ ନୁହେଁ । ଏଣୁ ସେଗୁଡ଼ିକରୁ ସିଧାସଳଖ ଭାବରେ ଇତିହାସ ପାଇବାର ଆଶା କଲେ ଆମ୍ଭମାନଙ୍କ ବିଷୟ ପ୍ରତି ଯଥାଯଥ ଦୃଷ୍ଟିଭଙ୍ଗୀର ଅଭାବ ସୂଚିତ ହେବ । ସାରଳା ଦାସ ଯଦି ତାଙ୍କ ଗ୍ରନ୍ଥମାନଙ୍କରେ କୌଣସି ସମସାମୟିକ ଐତିହାସିକ ଘଟଣା ଲେଖିଥାନ୍ତି, ତାହାହେଲେ ସେପରି ଘଟଣାକୁ ସେ ଯଥାସାଧ୍ୟ ଗୁପ୍ତ ଓ ବିକୃତ କରି ଲେଖିଥିବେ । ତାଙ୍କ ଲେଖାମାନ ମୁଖ୍ୟତଃ ଧର୍ମଗ୍ରନ୍ଥ । ସେଥିରେ ଆଖି ଆଗରେ ଘଟିଯାଇଥିବା କଳିଯୁଗର ଘଟଣାମାନ ଯଥାଯଥ ଭାବରେ ପ୍ରକାଶିତ ହେଲେ, ଧର୍ମଗ୍ରନ୍ଥ ହିସାବରେ ସେଗୁଡ଼ିକର ମହତ୍ତ୍ୱ ନଷ୍ଟ ହୋଇଯିବାର ଯଥେଷ୍ଟ ଆଶଙ୍କା ଥିଲା । ତା'ଛଡ଼ା ସମସାମୟିକ ଘଟଣାମାନଙ୍କୁ ଯଥାଯଥ ଭାବରେ ପ୍ରକାଶ କରିବାରେ ରାଜଭୟ ମଧ୍ୟ ବିଦ୍ୟମାନ ଥିଲା । ସାରଳା ଦାସ ସଂସ୍କୃତ ମହାଭାରତକୁ ସମ୍ପୂର୍ଣ୍ଣ ଅନୁସରଣ ବା ଅନୁବାଦ ନ କରି ତାଙ୍କ ବିଚିତ୍ର କଳ୍ପନାରୁ ବହୁ ନୂତନ ଆଖ୍ୟାୟିକା ଓ ବହୁ ନୂତନ କଥା ଲେଖିଯାଇଛନ୍ତି । ଖାଲି କଳ୍ପନା ବଳରେ ବହୁ କଥା ଲେଖିବାବେଳେ ସେ ବାଧ୍ୟ ହୋଇ ଭାରତ ଓ ଉତ୍କଳର କିମ୍ବଦନ୍ତୀ ଓ ସମସାମୟିକ ଘଟଣାରୁ ଉପାଦାନ ସଂଗ୍ରହ କରିଛନ୍ତି । ରାଜା କୃଷ୍ଣ ସିଂହଙ୍କ ପରି ସେ ଯଦି ମୂଳ ସଂସ୍କୃତ ମହାଭାରତକୁ ଅନୁସରଣ କରି ତାଙ୍କ ମହାଭାରତ ଲେଖିଥାନ୍ତେ, ତାହାହେଲେ ସେଥିରେ ଓଡ଼ିଶା ଇତିହାସର ବିନ୍ଦୁ ବିସର୍ଗ ମଧ୍ୟ ସ୍ଥାନ ପାଇ ନ ଥାନ୍ତା ।

ସାରଳା ସାହିତ୍ୟରେ କଅଣ ଓ କପରି ଭାବରେ ଐତିହାସିକ ଚିତ୍ର ପ୍ରତିଫଳିତ ହୋଇଛି, ତାହା ହିଁ ବର୍ତ୍ତମାନ ଉଲ୍ଲିଖିତ ଦୃଷ୍ଟିଭଙ୍ଗୀରୁ ଆଲୋଚନା କରାଯାଉ ।

(ଖ) ଆଖ୍ୟାୟିକା—ରାଜସୂୟ ଯଜ୍ଞ ପାଇଁ ପଶ୍ଚିମଦିଗ ରାଜା ନିମନ୍ତ୍ରଣ-କାରଣ ଭୀମଙ୍କର ଗମନ । ସଭାପର୍ବ, ପୃ. ୫୧—୫୮ । ସାରାଂଶ—ଭୀମ ସମଦଣ୍ଡ ଚଳାଇ ଯାଉଁ ଯାଉଁ କାରଣ ନାମକ ପର୍ବତ ପାଖରେ ପହଞ୍ଚିଲେ । ସେଠାରେ ଗୁଣଭଦ୍ରା ନାମକ ନଦୀଟିଏ ବହିଯାଉଛି । ଏହା ପାଖରେ କୁଣ୍ଡୀନଗରରେ ଭୀଷ୍ମକ ବୋଲି ଜଣେ ରାଜା ଥିଲେ । ତାଙ୍କ ଦୁଇ ପୁଅଙ୍କ ନାମ ରୁକ୍ମଣ ଓ ରୁକ୍ମାଙ୍ଗଦ । ସେମାନେ ଭୀମଙ୍କ ସଙ୍ଗେ ଯୁଦ୍ଧ କଲେ, କିନ୍ତୁ ଶେଷରେ ହାରିଯାଇ ରାଜସୂୟ ଯଜ୍ଞକୁ ଗଲେ ।

ଉଦ୍ଧୃତାଂଶ—

"କରଣ ନାମରେ ତହିଁ ଏକଇ ପର୍ବତ
ଗୁଣଭଦ୍ରା ବୋଲି ତହିଁ ବହେ ଏକ ତୀର୍ଥ ।
× × ×
କୁଣ୍ଡୀନଗ୍ର ବୋଲି ତହିଁ ନଗ୍ର ଯେ ଗୋଟିଏ
ଭୀଷ୍ମକ ବୋଲି କରଣ ତହିଁର ଯେ ରାଜେ ।
ରୁକ୍ମଣ ଯେ ରୁକ୍ମାଙ୍ଗଦ ଏହି ପୁତ୍ର ଦୁଇ
ରୁକ୍ମଣୀ ଦେବୀ ତାହାର ଦୁହିତା ଅଟଇ ।"

ଟୀକା—ଇତିହାସରୁ ଜଣାଯାଏ ଯେ ଗୋଦାବରୀ ଓ କୃଷ୍ଣାର ମଧ୍ୟବର୍ତ୍ତୀ ଧନଶାଳୀ ରେଡ଼ିରାଜ୍ୟ କୋଣ୍ଡବିଡ଼ୁ ଓ ରାଜମହେନ୍ଦ୍ରୀକୁ କେନ୍ଦ୍ର କରି ପ୍ରତାପଶାଳୀ ହୋଇ ଉଠିଥିଲା । ଏହି ରାଜ୍ୟର ଶେଷ ପ୍ରତାପଶାଳୀ ରାଜା ଅଲ୍ଲଡ଼ରେଡ୍ଡୀଙ୍କ ୧୪୨୩ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ଅଲ୍ଲୟବେମ ରାଜା ହେଲେ । ବୀରଭଦ୍ର ଓ ଦୋଡ଼ୁ ନାମକ ତାଙ୍କର ଅନ୍ୟ ଦୁଇ ଭାଇ ରାଜ୍ୟ-ଶାସନରେ ତାଙ୍କୁ ସାହାଯ୍ୟ ମଧ୍ୟ କରିଥିଲେ, ମାତ୍ର ଏକ ତରଫରୁ ବିଜୟନଗରର ରାଜା ଓ ଅନ୍ୟ ତରଫରୁ ଓଡ଼ିଶାର ରାଜା ଏହି ରାଜ୍ୟକୁ ଆକ୍ରମଣ କରିବାକୁ ଲାଗିଲେ । ବିଜୟନଗରର ରାଜା ଦ୍ୱିତୀୟ ଦେବରାୟ ୧୪୨୮ ଖ୍ରୀଷ୍ଟାବ୍ଦ ବେଳକୁ ସମସ୍ତ ତେଲୁଗୁଭାଷୀ ଉପକୂଳ ଅଞ୍ଚଳ ଅଧିକାର କରିନେଲେ । ଏହାର କିଛି ବର୍ଷ ପରେ କପିଳେଶ୍ୱର ଉତ୍କଳର ସିଂହାସନ ଅଧିକାର କଲେ ଓ ୧୪୪୭ ଖ୍ରୀଷ୍ଟାବ୍ଦ ବେଳକୁ ଦେବରକୋଣ୍ଡାର ବେଲମ ରାଜବଂଶ ସାହାଯ୍ୟରେ ରେଡ୍ଡୀ ରାଜ୍ୟ ତଥା କୋଣ୍ଡବିଡ଼ୁ ଦୁର୍ଗ ଅଧିକାର କରି ନେଇଥିଲେ ।

ଏହି ଘଟଣାବଳୀ ହିଁ ଉଲ୍ଲିଖିତ ଆଖ୍ୟାୟିକାରେ ପ୍ରଚ୍ଛନ୍ନ ଭାବରେ ପ୍ରତିଫଳିତ ହୋଇଛି । ଏଠାରେ କବି କୂର୍ମ ପର୍ବତକୁ କରଣ ପର୍ବତ, କୃଷ୍ଣଭଦ୍ରା ବା କୃଷ୍ଣାନଦୀକୁ

ଗୁଣଭଦ୍ରା ଓ କୋଣ୍ଡବଡ଼କୁ କୁଣ୍ଡୀନଗର ବୋଲି ଲେଖିଦେଇ ଭ୍ରମ ସୃଷ୍ଟି କରିଛନ୍ତି । ସାରଳା ଦାସ ଏଗୁଡ଼ିକର ଯଥାଯଥ ନାମ ଯେ ଜାଣି ନ ଥିଲେ ଏପରି ନୁହେଁ । ତାଙ୍କ ଗ୍ରନ୍ଥର ଅନେକ ସ୍ଥାନରେ ସେ କୃଷ୍ଣା ନଦୀକୁ କୃଷ୍ଣା, କୃଷ୍ଣଭଦ୍ରା, କୃଷ୍ଣବେଣୀ ଇତ୍ୟାଦି ରୂପେ ଲେଖିଛନ୍ତି; ଆଉ କୂର୍ମ ପର୍ବତକୁ କୂର୍ମ ପର୍ବତ ବୋଲି (ମଧ୍ୟ, ପୃ. ୬୮୯) ଓ କୋଣ୍ଡବଡ଼କୁ କୁଣ୍ଡାବେଦୀ ବୋଲି (ବିରାଟ, ପୃ. ୮୭) ମଧ୍ୟ ଲେଖିଛନ୍ତି; କିନ୍ତୁ ସମସାମୟିକ ସ୍ଥାନ ଓ ଘଟନାବଳୀକୁ ପୌରାଣିକ ଭାବରେ ଉପସ୍ଥାପିତ କରିବାପାଇଁ ସେ ଏଠାରେ ସେଗୁଡ଼ିକୁ ପରିବର୍ତ୍ତନ କରିଦେଇଛନ୍ତି । କୋଣ୍ଡବଡ଼ୁ ଦୁର୍ଗର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ଗୁଣ୍ଟୁର ଠାରୁ ପ୍ରାୟ ୬୦ ମାଇଲ ଦକ୍ଷିଣ ପୂର୍ବ ଦିଗରେ ଚେନାଲି ନିକଟରେ ଅବସ୍ଥିତ ଅଛି ଓ ବର୍ତ୍ତମାନ ସୁଦ୍ଧା ଏହା ପୂର୍ବ ନାମରେ ଅଭିହିତ ହେଉଛି । ଶ୍ରୀକୂର୍ମ ପର୍ବତରେ ଥିବା ଶ୍ରୀକୂର୍ମେଶ୍ୱର ମନ୍ଦିର ଗାତ୍ରରେ ବହୁ ଓଡ଼ିଶା ରାଜାଙ୍କ ଓ କପିଳେଶ୍ୱର ଦେବଙ୍କ ଶିଳାଲେଖ ମଧ୍ୟ ବର୍ତ୍ତମାନ ବିଦ୍ୟମାନ ଅଛି । ଏଠାରେ ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଭୀମ ଯେଉଁ ବାରୁଣା-ବତରୁ (ଦିଲ୍ଲୀ ଅଞ୍ଚଳରୁ) ବାହାରିଥିଲେ, ତାହାର ଠିକ୍ ଦକ୍ଷିଣକୁ ହେଉଛି କୁଣ୍ଡୀନଗର ବା କୋଣ୍ଡବଡ଼ୁ, ମାତ୍ର ତାହା ଓଡ଼ିଶାର ଠିକ୍ ପଶ୍ଚିମ ଦିଗରେ ଅବସ୍ଥିତ । କବି ଏହି ଆଖ୍ୟାୟିକା ଲେଖିବା ବେଳେ ଏହି ଦୁର୍ଗ ସହିତ ଓଡ଼ିଶାର ସଂଘର୍ଷ କଥା ମନ ମଧ୍ୟରେ ରଖିଥିବାରୁ, ଭୀମ ପଶ୍ଚିମ ଦିଗର ଯେଉଁ ରାଜ୍ୟମାନ ଜୟ କରିଥିଲେ, ସେମାନଙ୍କ ମଧ୍ୟରେ କୁଣ୍ଡୀନଗରକୁ ଭର୍ତ୍ତି କରି ଦେଇଛନ୍ତି ।

(ଗ) ଆଖ୍ୟାୟିକା—ରାଜସୂୟ ଯଜ୍ଞ ପାଇଁ, ଅର୍ଜ୍ଜୁନଙ୍କର ରାଜାମାନଙ୍କୁ ନିମନ୍ତ୍ରଣ । ଦରଦସେନ ଓ ଜମାଗୋଷ୍ଠର ପରାଜୟ । (ସଭାପର୍ବ, ପୃ. ୧୪୦ ପୃ. ୧୫୩) । ସାରାଂଶ—ଶଙ୍ଖପୁର ନାମକ ନଗରର ରାଜା ଜମାଗୋଷ୍ଠ ପାଖକୁ ଭାଖାମଣ୍ଡଳର ରାଜା ଦରଦସେନ କର ଦେବା ପାଇଁ ମୁନେହି (ଦୂତ) ପଠାଇଲେ, ମାତ୍ର ଜମାଗୋଷ୍ଠ କର ନ ଦେବାରୁ ଦରଦସେନ ସୈନ୍ୟସାମନ୍ତ ସହ ଶଙ୍ଖପୁରକୁ ଅବରୋଧ କଲେ । ଶଙ୍ଖପୁର ଏହିପରି ଭାବରେ ୬ ବର୍ଷ କାଳ ଅବରୁଦ୍ଧ ହୋଇ ରହିଥିବା ବେଳେ ଅର୍ଜ୍ଜୁନ ସସୈନ୍ୟ ସେଠାରେ ଉପସ୍ଥିତ ହୋଇ ଅମରଚୂଡ଼ ପର୍ବତରେ ଅବସ୍ଥାନ କଲେ ଓ ଯୁଦ୍ଧ ବନ୍ଦ କରିବା ପାଇଁ ଦରଦସେନ ପାଖକୁ ଶ୍ରୀମୁଖ ପଠାଇଲେ । ଦରଦସେନ ମନ୍ତ୍ରୀ ସୁରସାହିଙ୍କ କଥା ନ ମାନି ଅର୍ଜ୍ଜୁନଙ୍କ ସହିତ ଯୁଦ୍ଧ କଲେ, ମାତ୍ର ପରାସ୍ତ ହୋଇ ଶଙ୍ଖପୁରରେ ପ୍ରବେଶ କଲେ ଓ ଜମାଗୋଷ୍ଠଙ୍କ ସହିତ ମିଳିମିଶି ଗଲେ । ଅର୍ଜ୍ଜୁନ ଜମାଗୋଷ୍ଠଙ୍କ ପାଖକୁ ଦୂତ ପଠାଇଲେ, ମାତ୍ର ଜମାଗୋଷ୍ଠ ଦୂତକୁ ମାରି ପକାଇଲେ । ତା'ପରେ ଅର୍ଜ୍ଜୁନ ଉଭୟ ରାଜାଙ୍କ ସହିତ ଯୁଦ୍ଧ କରି ଉଭୟଙ୍କୁ ପରାସ୍ତ କଲେ । ଜମାଗୋଷ୍ଠଙ୍କୁ ରଥରେ ବାନ୍ଧି ରଖିଲେ ଓ ଦରଦସେନ ଯେତେ କହିଲେ ମଧ୍ୟ ତାଙ୍କୁ ଛାଡ଼ିଲେ ନାହିଁ ।

ଉଦ୍ଧୃତାଂଶ—

ଶଙ୍ଖପୁର ବୋଲି କରି ନଗର ଗୋଟିଏ
ତହିଁର ନୃପତି ଅଟେ ଜମାଗୋଷ୍ଠ ରାୟେ ।
× × ×
ଦାରଦସେନ ଆଜ୍ଞାରେ ଚଳିଲେ ମୁନେହି
ଜମାଗୋଷ୍ଠ ରାଜା ଆଗେ ବାର୍ତ୍ତା ଯାଇଁ କହି ।
ଜମାଗୋଷ୍ଠ ବୋଲେ କରେ ତୁମ୍ଭ କନ ନାହିଁ
କି କର ଦେବ ସେ ଅସୁ ତା'ର ଦଣ୍ଡ ବାହି ।
× × ×
ସମଦଣ୍ଡ ଘେନି ଭୂଷା ମଣ୍ଡଳାଧିକାରୀ
ଶଙ୍ଖମଣ୍ଡଳକୁ ଆସି କରିଦେଲେ ଜୁରି ।
× × ×
ଦ୍ୱାଦଶ ବର୍ଷ ବେଢ଼ିଲି ଦାରଦ ନୃପତି
ଗୁପ୍ତଗୃହ ପେଷେ ଜମାଗୋଷ୍ଠ ନରପତି ।
× × ×
ଜମାଗୋଷ୍ଠକୁ ଦାରଦ ବେଢ଼ିଥିବା କାଳେ
ଶାଖା (ଶଙ୍ଖ) ନଗ୍ରେ ଧନଞ୍ଜୟ ଯାଇଁ ବଜେ କଲେ ।
× × ×
ଅମରଚୂଡ଼ ପର୍ବତେ ବଜେ ଫାଲଗୁନି
ଯାଣେ ଜଣାଇଲେ ଜୟ ବିଜୟ ଯେ ବେନି ।
× × ×
ଆସ୍ଥାନେ ଥାଇ ଦେଖଇ ସେ ଦାରଦସେନ
ସୁରସାହି ମନ୍ତ୍ରୀକି ସେ ପୁଚ୍ଛଇ ବଚନ ।
× × ×
ଦାରଦସେନ ପଳାଇ ପଣେ ଶଙ୍ଖ ନଗ୍ରେ
ଦୂତ ଦେଖି ଜଣାଇଲେ ଜମାଗୋଷ୍ଠ ଆଗେ ।
× × ×
ଆସ୍ଥାନୁ ଓହ୍ଲାଇ କରି ରାଜା ଜମାଗୋଷ୍ଠ
ପ୍ରଣାମ କଲି ଦାରଦସେନ ପାଦ ପୃଷ୍ଠ ।

ଦାରଦସେନ କିପରି ପ୍ରତାପଶାଳୀ ଥିଲେ ତାହା ଜମାଗୋଷ୍ଠଙ୍କ ମନ୍ତ୍ରୀଙ୍କର ମୁଖରେ ଓ ସ୍ୱୟଂ ଦାରଦସେନଙ୍କର ମୁଖରେ ପ୍ରକାଶ କରାଯାଉଛି :—

ଆମ୍ଭ ଯୋଦ୍ଧା ସୈନ୍ୟ ତାଙ୍କୁ ନୋହିବେ ସମାନ
ପ୍ରଚଣ୍ଡ ବ୍ରହ୍ମସାହିକ କଲ ସେ ନିଧନ ।

× × ×

କେତେ ଦୁଷ୍ଟ ଧ୍ୱଂସିଲି ମୁଁ ଏହି ମହୀସ୍ଥଳେ ।
ଅରୁଣଗିରି ଧ୍ୱଂସିଲି ମୋର କରତଳେ ॥

ଟୀକା—ଇତିହାସରୁ ଜଣାଯାଏ ଯେ ବାହ୍ମାମନି ରାଜ୍ୟର ସୁଲ୍‌ତାନ୍ ଅଲଉଦ୍ଦିନ୍‌ଙ୍କ ମୃତ୍ୟୁ ପରେ ୧୪୫୮ ଖ୍ରୀଷ୍ଟାବ୍ଦରେ ତାଙ୍କ ପୁତ୍ର ହୁମାୟୁନ ସୁଲ୍‌ତାନ୍ ହେଲେ । ଏ ଜଣେ ଅସୀମ ଅତ୍ୟାଚାରୀ ରାଜା ଥିଲେ । ଏଣୁ ଜଲାଲ ଖାନ୍ ନାମକ ଜଣେ ମୁଖ୍ୟ ଅମାତ୍ୟ ସୁଲ୍‌ତାନ୍ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ତେଲିଙ୍ଗାନାର ଆଧୁନିକ ନାଲଗୋଣ୍ଡା ଜିଲ୍ଲାକୁ ପଳାଇ ଆସିଲେ ଓ ସେଠାରେ ସ୍ଥାନୀୟ ବେଲମ ରାଜବଂଶ ଠାରୁ ସାହାଯ୍ୟ ପାଇଁ ତେଲିଙ୍ଗାନାର ପ୍ରଧାନ ଦୁର୍ଗ ଦେବରକୋଣ୍ଡକୁ ଅଧିକାର କଲେ । ଏହି ଘଟନା ପୂର୍ବରୁ ତେଲିଙ୍ଗାନା ବାହ୍ମାମନିମାନଙ୍କ କରଦ ରାଜ୍ୟ ଥିଲା । ଏଣୁ ହୁମାୟୁନ ଜଲାଲ ଖାନ ତଥା ବେଲମମାନଙ୍କୁ ଜବଦ କରିବାକୁ ଖାଓଜାଜାହାନ୍ ଓ ନିଜାମ ଉଲମୁଲ୍‌କଙ୍କ ଅଧୀନରେ ସୈନ୍ୟ ପଠାଇଲେ । ଏମାନେ ଦେବରକୋଣ୍ଡାକୁ ବହୁଦିନ ଯାବତ୍ ଅବରୋଧ କଲେ, ମାତ୍ର ଅବରୁଦ୍ଧ ସୈନ୍ୟ ଆତ୍ମସମର୍ପଣ କଲେ ନାହିଁ । ଇତ୍ୟବସରରେ ବେଲମବଂଶୀୟ ହିନ୍ଦୁ-ମୁଖ୍ୟମାନେ ଗୁପ୍ତ ଭାବରେ ଗଜପତି କପିଳେଶ୍ୱରଙ୍କ ପାଖକୁ ଖବର ପଠାଇଲେ । ବେଲମ ରାଜବଂଶ କୋଣ୍ଡବିଡ଼ୁ ଦଖଲ କରିବାରେ କପିଳେଶ୍ୱରଙ୍କୁ ସାହାଯ୍ୟ କରି-ଥିବାରୁ କପିଳେଶ୍ୱରଙ୍କ ଏହି ବଂଶ ସହିତ ବନ୍ଧୁତ୍ୱ ଥିଲା । ଏଣୁ କପିଳେଶ୍ୱର ଖବର ପାଇବା ମାତ୍ରେ ଏପରି ଗୁପ୍ତ ଓ ଦ୍ରୁତ ଭାବରେ ଆସି ସସୈନ୍ୟ ଦେବରକୋଣ୍ଡା-ଠାରେ ପହଞ୍ଚିଲେ ଯେ ବାହ୍ମାମନି ସୈନ୍ୟ ଅତର୍କିତ ଅବସ୍ଥାରେ ଘେରରେ ପଡ଼ି-ଗଲେ । ଏ ଦିଗରୁ ଗଜପତିଙ୍କ ସୈନ୍ୟ ଓ ସେ ଦିଗରୁ ଅବରୁଦ୍ଧ ଦୁର୍ଗରୁ ବହିର୍ଗତ ସୈନ୍ୟ ଏକାବେଳେକେ ବାହ୍ମାମନି ସୈନ୍ୟ ଉପରେ ଆକ୍ରମଣ ଚଳାଇଲେ । ଫଳରେ ବାହ୍ମମନି ସୈନ୍ୟ ଏକାବେଳକେ ବିଧ୍ୱସ୍ତ ହୋଇ ଛତ୍ରଭଙ୍ଗ ଦେଲେ ଓ ଦେବରକୋଣ୍ଡା ତଥା ତେଲିଙ୍ଗାନା ଗଜପତି ସାମ୍ରାଜ୍ୟର ଅଙ୍ଗୀଭୂତ ହେଲା ।

ଏହି ଐତିହାସିକ ଘଟନା ସହିତ ସାରଳା ଦାସଙ୍କ ବର୍ଣ୍ଣିତ ଉଲ୍ଲିଖିତ ଆଖ୍ୟାୟିକା ପ୍ରାୟ ମିଳିଯାଉଛି । ଜମାଗୋଷ୍ଠ ସହିତ ଜଲାଲଖାନ ଓ ଦରଦସେନ ସହିତ ହୁମାୟୁନଙ୍କୁ ସମାନ କଲେ ଅନ୍ୟ ବିବରଣ ସବୁ ମେଳ ଖାଇଯାଉଛି; କିନ୍ତୁ ସାରଳା ଦାସଙ୍କ ବର୍ଣ୍ଣନାରେ ସାମାନ୍ୟ ପାର୍ଥକ୍ୟ ରହିଛି । ତାଙ୍କ ଆଖ୍ୟାୟିକା

ଅନୁସାରେ ଜଲାଲ୍ ଖାନ୍ ବା ଜମାଗୋଷ୍ଠ ଶେଷ ପର୍ଯ୍ୟନ୍ତ ବାହାମନ ସୈନ୍ୟ ସହିତ ମିଳି ମିଶି ଯାଇଥିଲେ । ଇତିହାସରୁ ଏ କଥା ମିଳୁ ନ ଥିଲେ ମଧ୍ୟ ଏହାକୁ ଅସମ୍ଭବ ବୋଲି କହିବା ଠିକ୍ ହେବ ନାହିଁ । ବରଞ୍ଚ ମୁସଲମାନ୍ ଜଲାଲ୍ ଖାଁ ହିନ୍ଦୁମାନଙ୍କ ଜୟ ଦେଖି ଶେଷ ପର୍ଯ୍ୟନ୍ତ ମୁସଲ୍‌ମାନ୍‌ମାନଙ୍କ ସହିତ ଯୋଗ ଦେଇଥିବା କଥା ଅଧିକ ସମ୍ଭବଜନକ ମନେ ହେଉଛି । ଏଠାରେ ସ୍ମରଣ ରଖିବା ଉଚିତ ଯେ ଇତିହାସ ଜରିଆରେ ଆମ୍ଭମାନଙ୍କୁ ସମସ୍ତ ଘଟନା ବର୍ତ୍ତମାନ ମିଳୁନାହିଁ । ମୁସଲ୍‌ମାନ ଐତିହାସିକ ଫେରିସ୍ତାଙ୍କ ଇତିହାସ ହିଁ ଏ ବିଷୟରେ ଆମ୍ଭମାନଙ୍କ ପ୍ରଧାନ ଅବଲମ୍ବନ । ସେ ଦେବରକୋଣ୍ଡା ଯୁଦ୍ଧର ଫଳାଫଳ ବର୍ଣ୍ଣନା କରିବାକୁ ଯାଇ ମୁସଲ୍‌ମାନ୍ ସୈନ୍ୟ ସମ୍ପୂର୍ଣ୍ଣ ରୂପେ ପରାଜିତ ହୋଇଥିବା କଥା ସ୍ୱୀକାର କରିଥିଲେ ମଧ୍ୟ ଜଲାଲ୍‌ଖାନ୍‌ଙ୍କ ତରଫରୁ ଯେ କି ବିଶ୍ୱାସଘାତକତା ହୋଇଥିଲା, ତାହା ଲେଖି ନାହାନ୍ତି ।

ଦରଦସେନଙ୍କୁ କାହିଁକି ହୁମାୟୁନ୍‌ଙ୍କ ସହିତ ସମାନ କରାଯାଇଛି, ଏ କଥାଟା ଏଠାରେ ଟିକିଏ ସ୍ପଷ୍ଟ କରିଦେବା ଉଚିତ ମନେ ହେଉଛି । ଦରଦସେନର ପ୍ରତାପ ବର୍ଣ୍ଣନା କରିବାକୁ ଯାଇ ସାରଳା ଦାସ କହିଛନ୍ତି, ଏହି ବ୍ରହ୍ମସାହି ଯେ ବାହାମନ ରାଜ୍ୟ ଓ ଅରୁଣଗିରି ଯେ ଉଦୟଗିରି, ଏଥିରେ ସନ୍ଦେହର ଅବକାଶ ନାହିଁ । ସାହି ଅର୍ଥ ରାଜ୍ୟ ଓ ଅରୁଣ ଅର୍ଥ ଉଦୟ । ସିଧା ସଳଖ ଭାବରେ ବାହାମନ ରାଜ୍ୟ ଓ ଉଦୟଗିରି ଦୁର୍ଗ ବୋଲି ନ କହି ସାରଳା ଦାସ ଏଠାରେ ଭ୍ରମ ସୃଷ୍ଟି କରିବାର ଚେଷ୍ଟା କରିଛନ୍ତି । ହୁମାୟୁନ୍‌ଙ୍କ ଅତ୍ୟାଚାରରେ ବାହାମନ ରାଜ୍ୟ ଧ୍ୱସ୍ତ-ବିଧ୍ୱସ୍ତ ହୋଇଯାଇଥିଲା । ବିଜୟନଗର ସାମ୍ରାଜ୍ୟ ଓ ବାହାମନ ରାଜ୍ୟ ମଧ୍ୟରେ ବଂଶାନୁକ୍ରମେ ସଂଘର୍ଷ ସବୁବେଳେ ଲାଗି ଆସିଥିଲା । ଆଉ ବିଜୟନଗର ସାମ୍ରାଜ୍ୟର ଆନ୍ଧ୍ର ଦେଶ ତରଫକୁ ଥିବା ଉଦୟଗିରି ଦୁର୍ଗର ଅଧିକାର ହିଁ ଅନେକ ସମୟରେ ବାହାମନମାନଙ୍କ ଆକ୍ରମଣର ପ୍ରଧାନ ଲକ୍ଷ୍ୟସ୍ଥଳ ଥିଲା ।

ସାରଳା ଦାସ ଦରଦସେନଙ୍କୁ ବାହାମନ ରାଜ୍ୟ ଓ ଉଦୟଗିରି ଦୁର୍ଗର ଧ୍ୱଂସକାରୀ ରୂପେ ବର୍ଣ୍ଣନା କରିଥିବାରୁ ଶେଷ ପର୍ଯ୍ୟନ୍ତ ସେ ହୁମାୟୁନ ବୋଲି ଧରା ପଡ଼ିଯାଉଛନ୍ତି । ଏ ଆଖ୍ୟାୟିକାର ଜମାଗୋଷ୍ଠ, ଦରଦସେନ ଓ ସୁରସାହି ନାମ-ଗୁଡ଼ିକ ରୂପାନ୍ତରିତ ଐତିହାସିକ ନାମ ବୋଲି ମନେହୁଏ । ହୁମାୟୁନ ନିଜାମ ଉଲ୍‌ମୁଲ୍‌କୁଙ୍କୁ ଦେବରକୋଣ୍ଡ ଜୟ ପାଇଁ ପଠାଇଥିଲେ । ଜଲାଲ୍‌ଖାନଙ୍କ ପୁଅର ନାମ ଥିଲା ସିକନ୍ଦର ସାହା ।

ଏହି ଆଖ୍ୟାୟିକାରେ ବର୍ଣ୍ଣିତ ଅଛି ଯେ ଅର୍ଜ୍ଜୁନ ଅମରଚୂଡ଼ ପର୍ବତରେ ଯାଇ ଅବସ୍ଥାନ କରିଥିଲେ । ଅମରଚୂଡ଼ ଯେ ଦେବରକୋଣ୍ଡା ⁕ ବା ଦେବକୋଣ୍ଡା ଏଥିରେ ମଧ୍ୟ କୌଣସି ସନ୍ଦେହ ରହେ ନାହିଁ । ତେଲଗୁ ଭାଷାରେ କୋଣ୍ଡା ଅର୍ଥ ପର୍ବତ । ଏଣୁ ଦେବକୋଣ୍ଡା ଅର୍ଥ ଦେବପର୍ବତ । ଅମର ଅର୍ଥ ଦେବ ଓ ଚୂଡ଼ା ଅର୍ଥ ଶୃଙ୍ଗ ବା ପର୍ବତ । ଏଣୁ ଅମରଚୂଡ଼ ଅର୍ଥ ମଧ୍ୟ ଦେବପର୍ବତ ବା ଦେବକୋଣ୍ଡା । ସାରଳାଦାସ ପ୍ରଥମେ ଏହି ଦୁର୍ଗକୁ ଶଙ୍ଖପୁର ବୋଲି ବର୍ଣ୍ଣନା କରି ଭ୍ରମ ସୃଷ୍ଟି କରି ଦେଲେ, ମାତ୍ର ଶେଷ ବେଳକୁ ପ୍ରକୃତ ନାମଟି ମଧ୍ୟ ପ୍ରଚ୍ଛନ୍ନ ଭାବରେ କହିଗଲେ ।

ସାରଳା ଦାସଙ୍କ ବହୁ ଆଖ୍ୟାୟିକାରେ ଇତିହାସ ଏପରି ବିଚିତ୍ର ଭାବରେ ଜଡ଼ିତ ହୋଇ ରହିଛି ।

---

⁕ ଦେବରକୋଣ୍ଡା ଦୁର୍ଗର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅଛି ଓ ଏହାର ପୂର୍ବ ନାମ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ଅଛି । ତେଲଙ୍ଗନାର ନାଲଗୋଣ୍ଡା ଜିଲ୍ଲାରେ ଏହା କୃଷ୍ଣା ନଦୀର ପାର୍ଶ୍ୱରେ ଅବସ୍ଥିତ । ପୂର୍ବେ ଏହି ନିଜାମ ରାଜ୍ୟ ହାଇଦ୍ରାବାଦରେ ଥିଲା; କିନ୍ତୁ ବର୍ତ୍ତମାନ ଆନ୍ଧ୍ର ଦେଶରେ ମିଶି ଯାଇଛି ।

# ଦ୍ୱିତୀୟ ପରିଚ୍ଛେଦ

## ଓଡ଼ିଶାର ବିଜୟନଗର ସାମ୍ରାଜ୍ୟ ସହିତ ସଂଘର୍ଷର ଚିତ୍ର

କପିଳେଶ୍ୱର ଗଜପତିଙ୍କ ଦ୍ୱାରା ଦେବରକୋଣ୍ଡା ଦୁର୍ଗ ଅଧିକୃତ ହେବା ସମୟର ଘଟନାବଳୀ ସାରଳା ମହାଭାରତରେ ଯେପରି ଭାବରେ ପ୍ରକାଶ ପାଇଛି, ତାହା ପ୍ରଥମ ପରିଚ୍ଛେଦ (ଗ)ରେ ଆଲୋଚିତ ହୋଇଛି । ଏହି ଆଲୋଚନାକୁ ପରିତ୍ୟାଗ କରି ଅନ୍ୟ ଆଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ଏ ସମ୍ବନ୍ଧରେ ଆଉ କେତୋଟି କଥା କହିବା ଆବଶ୍ୟକ ମନେ କରୁଛି । ସାରଳା ଦାସ ଅର୍ଜ୍ଜୁନଙ୍କ ଦ୍ୱାରା ଧରଦସେନ ଓ କମାଗୋଷ୍ଠୀର ପରାଜୟ ବିଷୟକ ଯେଉଁ ଆଖ୍ୟାୟିକା ଲେଖିଛନ୍ତି, ସେପରି ଆଖ୍ୟାୟିକା ସଂସ୍କୃତ ମହାଭାରତରେ ବା ଅନ୍ୟ କୌଣସି ପୁରାଣରେ ନାହିଁ । ଏଣୁ ଏହି ଆଖ୍ୟାୟିକା କବିଙ୍କ ସମ୍ପୂର୍ଣ୍ଣ କଳ୍ପନା-ପ୍ରସୂତ କିମ୍ବା କୌଣସି ଐତିହାସିକ ଘଟନାବଳୀ ଉପରେ ପ୍ରତିଷ୍ଠିତ । ଏହି ଆଖ୍ୟାୟିକାକୁ ସମ୍ପୂର୍ଣ୍ଣ କଳ୍ପନା-ପ୍ରସୂତ ବୋଲି କହିବା ସମ୍ଭବପର ହେଉ ନାହିଁ, କାରଣ ଐତିହାସିକ ଯୁଦ୍ଧସ୍ଥଳ ଦେବର-କୋଣ୍ଡାକୁ ଏଥିରେ ସାରଳା ଦାସ ଅର୍ଥାନ୍ତରରେ ଅମରଚୂଡ଼ ବୋଲି କହିଛନ୍ତି, ଆଉ ଏଥିରେ ଐତିହାସିକ ରାଜ୍ୟ ବାହାମନୀ ଓ ଐତିହାସିକ ଦୁର୍ଗ ଉଦୟଗିରିର ଅବତାରଣା ମଧ୍ୟ କରିଛନ୍ତି । ତା' ଛଡ଼ା ଐତିହାସିକ ଦେବରକୋଣ୍ଡା ଯୁଦ୍ଧର ଘଟଣାବଳୀ ସହିତ ଆଖ୍ୟାୟିକାର ଘଟଣାବଳୀ ପ୍ରାୟ ମେଳ ଖାଇଯାଉଛି । ଏପରିକି କ୍ଷୁଦ୍ର କ୍ଷୁଦ୍ର ଘଟଣାମାନଙ୍କର ମଧ୍ୟ ମେଳ ଦେଖାଯାଉଛି । ଫେରିସ୍ତା ଲେଖିଛନ୍ତି ଯେ, ଓଡ଼ିଶାର ଯେଉଁ ସୈନ୍ୟ ଦେବରକୋଣ୍ଡା ଯୁଦ୍ଧରେ ନିୟୋଜିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ଦଶହଜାର ପଦାତିକ ଓ ଶହଶହ ଅଶ୍ୱାରୋହୀ ଥିଲେ । ଏହା ଏକ ଆନୁମାନିକ ସଂଖ୍ୟା ଓ ଏହି ସଂଖ୍ୟା ଗୁପ୍ତଚରମାନଙ୍କ ଦ୍ୱାରା ହିଁ ନିର୍ଣ୍ଣିତ ହୋଇଥିବ । ଶତ୍ରୁ ତରଫରୁ ଗୁପ୍ତଚର ଆସି ଯେ ସୈନ୍ୟ କଳନା କରୁଛନ୍ତି, ଏକଥା ଓଡ଼ିଶାର ରଣ-ବିଶାରଦମାନେ ମଧ୍ୟ ଜାଣିପାରିଥିବେ । ଏହି କ୍ଷୁଦ୍ର ଘଟଣାଟିକୁ ମଧ୍ୟ ସାରଳା ଦାସ ଲେଖି ଯାଇଛନ୍ତି :—

ରାଜାର ଆଜ୍ଞାରେ ଦୂତେ ଚଳିଲେ ଗୋପନେ
ରାତ୍ରକାଳେ ପଶିଲେ ସେ ରତୁକା କାନନେ ।
ଗୁପତେ ମିଳିଲେ ଯାଇ ଅର୍ଜୁନର ଆଗେ
କହିଲେ ତାଙ୍କର ସୈନ୍ୟ ବୃତ୍ତାନ୍ତ କପଟେ ।

ସଭାପର୍ବ, ୧-୭ ।

କବି ବର୍ଣ୍ଣିତ ରତୁକାକାନନ ଯେ କେଉଁ ସ୍ଥାନ, ତାହା ଲେଖକ ସ୍ଥିର କରି-ପାରିନାହିଁ; କିନ୍ତୁ ଏହାକୁ କାଳ୍ପନିକ ବୋଲି ମଧ୍ୟ ଧରିପାରୁନାହିଁ । ସୀମାବଦ୍ଧ ଜ୍ଞାନ ଦ୍ୱାରା ଯାହା ସ୍ଥିରୀକୃତ ହୋଇ ନ ପାରୁଛି, ତାକୁ ଅଳୀକ ବା କାଳ୍ପନିକ ବୋଲି କହିବା ଠିକ୍ ହେବ ନାହିଁ ।

କେବଳ ବ୍ୟକ୍ତିମାନଙ୍କ ନାମକୁ ସାରଳା ଦାସ ଖୋଲିଖୋଲି ଭାବରେ ଲେଖିପାରି ନାହାନ୍ତି । ଏହି ଆଖ୍ୟାୟିକାରେ ଯଦି ସେ କପିଳେଶ୍ୱର ଓ ମୁସଲମାନ୍ ଯୋଦ୍ଧାମାନଙ୍କ ନାମ ଖୋଲିଖୋଲି ଭାବରେ ଲେଖିଦେଇଥାନ୍ତେ, ତାହାହେଲେ ତାଙ୍କ ଗ୍ରନ୍ଥ ଆଉ ମହାଭାରତ-ପଦବାଚ୍ୟ ହୋଇ ରହି ନ ଥାନ୍ତା । ଏହା ହିଁ ଥିଲି ତାଙ୍କର ବିପଦ ! ତଥାପି ଅର୍ଜୁନ ଦେବରକୋଣ୍ଡାରେ ଯେ, ମୁସଲମାନ୍ ରାଜା ସହିତ ହିଁ ଯୁଦ୍ଧ କରିଥିଲେ, ଏ କଥାର ଆଭାସ ତାଙ୍କ ଆଖ୍ୟାୟିକାରେ ଯଥେଷ୍ଟ ଭାବରେ ରହିଛି । ସେ ଦରଦସେନଙ୍କୁ 'ଭିଖାମଣ୍ଡଳ'ର ରାଜା ବୋଲି କହିଛନ୍ତି । ସାରଳା ଦାସଙ୍କ ଗ୍ରନ୍ଥକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ସେ ସବୁବେଳେ ଭାରତର ମୁସଲମାନ୍-ଅଧିକୃତ ଅଞ୍ଚଳମାନଙ୍କୁ ଭିଖାମଣ୍ଡଳ ବା ମ୍ଳେଚ୍ଛାର ମଣ୍ଡଳ ବୋଲି କହିଛନ୍ତି । ସେ ଏହି ଶବ୍ଦ ଦୁଇଟି ତାଙ୍କ ଗ୍ରନ୍ଥରେ ଏତେଥର ବ୍ୟବହାର କରିଛନ୍ତି ଯେ, ବାହୁଲ୍ୟ ଭୟରେ ଏଠାରେ ଉଦାହରଣ ଦିଆଯାଉନାହିଁ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ—ସାରଳା ଦାସ ଯେ ଏହି ଶବ୍ଦ ଦୁଇଟିକୁ ମୁସଲମାନ୍ ଅର୍ଥରେ ହିଁ ବ୍ୟବହାର କରିଛନ୍ତି, ତା'ର ପ୍ରମାଣ କଅଣ ? ଏହାର ଉତ୍ତରରେ ଏତିକି କୁହାଯାଇପାରେ ଯେ, ଏହି ଶବ୍ଦ ଦୁଇଟିର ବ୍ୟୁତ୍ପତ୍ତି ମଧ୍ୟରେ ହିଁ ପ୍ରମାଣ ନିହିତ ହୋଇ ରହିଛି । ଭିଖା ଓ ମ୍ଳେଚ୍ଛାର ଶବ୍ଦ ଦୁଇଟି ଯଥାକ୍ରମେ ସଂସ୍କୃତ ଭକ୍ଷ ଓ ମ୍ଳେଚ୍ଛ ଶବ୍ଦରୁ ହିଁ ଉତ୍ପତ୍ତି ହୋଇଛି (Monier-Williams Sanskrit English Dictionary, ପୃ-୭୫୧ ଓ ପୃ-୮୦୩ ଦ୍ରଷ୍ଟବ୍ୟ) । ଭକ୍ଷ ଶବ୍ଦର ଅର୍ଥ ହେଉଛି ଲୋଭୀ, ସର୍ବଭକ୍ଷ । ମୁସଲମାନ୍‌ମାନେ ସର୍ବଭକ୍ଷ, ଏକଥା ଠିକ୍ ନୁହେଁ, ମାତ୍ର ଯେହେତୁ ସେମାନେ ହିନ୍ଦୁମାନଙ୍କ ଅଭକ୍ଷ୍ୟ ଗୋମାଂସାଦି ଖାଉଥିଲେ,

ନୈଷ୍ଠିକ ହିନ୍ଦୁ ଚକ୍ଷୁରେ ସେମାନେ ଘୃଷ ବା ଘୃଖା ରୂପେ ପରିଚିତ ହେଉଥିଲେ । ଘୃଷ୍ଟ ଶବ୍ଦର ଅର୍ଥ ହେଉଛି ସିନ୍ଧୁଦେଶୀୟ ଘୋଟକ । ଘୃଷ୍ଟ ଶବ୍ଦରୁ ଘୃଖ ଶବ୍ଦଟିର ଉତ୍ପତ୍ତି ହୋଇଥିଲା, ଆଉ ଏହି ଘୃଖ ବା ସିନ୍ଧୁଦେଶୀୟ ଅଥବା ବିଦେଶୀୟ ଘୋଟକର ବ୍ୟବସାୟରେ ଯେଉଁମାନେ ଲିପ୍ତ ଥିଲେ, ସେମାନଙ୍କୁ ଘୃଖାର ବୋଲି କୁହାଯାଉଥିଲା । ✻ ଭାରତକୁ ମୁସଲ୍‌ମାନ୍‌ମାନଙ୍କ ଆଗମନର ବହୁପୂର୍ବେ ସୁଦ୍ଧା ଉତ୍ତମ ଓ ତେଜସ୍ୱୀ ଘୋଟକ ପାଇଁ ସିନ୍ଧୁଦେଶ ପ୍ରସିଦ୍ଧି ଲାଭ କରିଥିଲା, ସେଥିପାଇଁ ଘୋଡ଼ାର ଅନ୍ୟନାମ ଥିଲା ସୈନ୍ଧବ । ଭାରତରେ ସିନ୍ଧୁଦେଶ ସର୍ବପ୍ରଥମେ ମୁସଲ୍‌ମାନ୍‌ମାନଙ୍କଦ୍ୱାରା ଅଧିକୃତ ହେବାପରେ ମଧ୍ୟ ଘୋଟକ ପାଇଁ ତା'ର ପୂର୍ବ ପ୍ରସିଦ୍ଧି ବଜାୟ ରହିଲା । ମୁସଲ୍‌ମାନ୍‌ମାନେ ଖାଲି ସିନ୍ଧୁଦେଶରୁ ନୁହେଁ, ଆରବ ଓ ପାରସ୍ୟ ଦେଶରୁ ମଧ୍ୟ ଉତ୍ତମ ଅଶ୍ୱ ଆମଦାନୀ କରି ଭାରତର ବିଭିନ୍ନ ଅଞ୍ଚଳରେ ବିକୁଥିଲେ । ବସ୍ତୁତଃ ଭଲ ଘୋଡ଼ାର ବ୍ୟବସାୟ ମୁସଲ୍‌ମାନମାନଙ୍କ ଏକପ୍ରକାର ଏକଚାଟିଆ ଥିଲା । ଘୋଟକ-ବ୍ୟବସାୟୀରୂପେ ବଖ୍‌ତିୟାର ଖିଲିଜି ଓ ହୋସାଙ୍ଗ୍ ସାହା ଯଥାକ୍ରମେ ବଙ୍ଗ ଓ ଓଡ଼ିଶାକୁ ଆକ୍ରମଣ କରିଥିବା କଥା ଇତିହାସପ୍ରସିଦ୍ଧ ହୋଇ ରହିଛି । ଭଲ ଘୋଡ଼ା ସିନ୍ଧୁଦେଶରୁ, ଆରବରୁ, ପାରସ୍ୟରୁ ବା ଆଉ ଯେଉଁ ଦେଶରୁ ଆସିଲେ ସୁଦ୍ଧା ଜନସାଧାରଣ ତାକୁ ଘୃଖା ବା ସିନ୍ଧୁଦେଶୀୟ ଘୋଡ଼ା ବୋଲି ଭାବୁଥିଲେ, ଆଉ ତା'ର ବ୍ୟବସାୟୀକୁ ଘୃଖାର ବୋଲି କହୁଥିଲେ । ଏହି ହେତୁରୁ ସାରଳାଦାସ ଘୃଖାର ମଣ୍ଡଳ ଓ ଘୃଖାର ଅଶ୍ୱକୁ ମୁସଲମାନ୍ ଦେଶ ଓ ମୁସଲମାନ୍ ଘୋଡ଼ା ଅର୍ଥରେ ହିଁ ବାରମ୍ବାର ବ୍ୟବହାର କରି-ଯାଇଛନ୍ତି । ଆଲୋଚ୍ୟ ଆଖ୍ୟାୟିକାରେ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ଯୁଦ୍ଧରେ ଯେଉଁ ରାଜା ଅର୍ଜୁନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ, ସାରଳାଦାସ ତାଙ୍କୁ ଘୃଖାମଣ୍ଡଳ-ଅଧିକାରୀ ଆଉ 'ବ୍ରହ୍ମସାହୀ' ବା ବାହାମନୀ ରାଜ୍ୟ ଓ ଅରୁଣଗିରି' ବା ଉଦୟଗିରିର ଧ୍ୱଂସକର୍ତ୍ତା ରୂପେ ବର୍ଣ୍ଣନା କରିଥିବାରୁ, ସେ ଯେ ବାହାମନୀ ରାଜ୍ୟର ମୁସଲମାନ୍ ରାଜା, ଏ ବିଷୟରେ ସନ୍ଦେହ କରିବାର କାରଣ ରହୁନାହିଁ ।

ସାରଳାଦାସ କୌଣସି ଠାରେ ମୁସଲ୍‌ମାନ୍‌ମାନଙ୍କୁ ଯବନ ବା ମ୍ଳେଚ୍ଛ ବୋଲି କହି ତୁଚ୍ଛ ତାଚ୍ଛଲ୍ୟ କରି ନାହାନ୍ତି । ଅଧିକାଂଶ ସମୟରେ ସେ ସେମାନଙ୍କୁ 'ଅଲେଖ-ପୁରୁଷ' ବା 'ମହାବ୍ରହ୍ମୀ' ବୋଲି କହିଛନ୍ତି । ଅଲେଖଧର୍ମୀମାନେ ଶୂନ୍ୟବାଦୀ ଓ ପିତୁଳା ପୂଜାର ବିରୋଧୀ, ଆଉ ମହାବ୍ରହ୍ମୀମାନେ ଏକେଶ୍ୱରବାଦୀ ଓ ପିତୁଳା

---

✻ ଲୁହାରୁ ଲୁହାର, ଚମରୁ ଚମାର ଓ କୁମ୍ଭରୁ କୁମ୍ଭାର ଶବ୍ଦର ଉତ୍ପତ୍ତି ହେବା ପରି ଘୃଖରୁ ଘୃଖାର ଶବ୍ଦଟିର ଉତ୍ପତ୍ତି ହୋଇଥିଲା ।

ପୂଜାର ବିରୋଧୀ । ମୁସଲ୍‌ମାନମାନେ ମଧ୍ୟ ଏକେଶ୍ୱରବାଦୀ ଓ ପିତୁଳାପୂଜାର ବିରୋଧୀ । ଏହି ହେତୁରୁ ମୁସଲ୍‌ମାନ୍‌ମାନେ ସାରଳାଦାସଙ୍କ ଦ୍ୱାରା ଅଲେଖଧର୍ମୀ ବା ମହାବ୍ରହ୍ମୀ ନାମରେ ବିଖ୍ୟାତ ହୋଇଛନ୍ତି । ଆଲୋଚ୍ୟ ଆଖ୍ୟାୟିକାରେ ଦରଦସେନ ଜମାଗୋଷ୍ଠୀଙ୍କୁ ଅଲେଖ ପୁରୁଷ ବୋଲି କହିଛନ୍ତି—

> ଅସ୍ତ୍ର ଶସ୍ତ୍ର ତା ଶରୀରେ ନ ପାରଇ ଭେଦି
> ଅଲେଖ ପୁରୁଷ ତୁମ୍ଭେ ବୃଥା ହେଲି ଧନ୍ଦି ।
> ସଭାପର୍ବ, ପୃ. ୧୪୭ ।

ଏହିସବୁ ପ୍ରମାଣରୁ ଜଣାଯାଏ ଯେ ଅର୍ଜୁନ ଅମରଚୂଡ଼ ପର୍ବତ ବା ଦେବରକେଣ୍ଡାରେ ଯେଉଁମାନଙ୍କ ସହିତ ଯୁଦ୍ଧ କରିଥିଲେ, ସେମାନେ ଥିଲେ ମୁସଲମାନ । ଏଣୁ ଏହି ଆଖ୍ୟାୟିକାର ଅର୍ଜୁନ ଯେ କପିଳେଶ୍ୱର ଗଜପତି, ଆଉ ତାଙ୍କ ଶତ୍ରୁମାନେ ଯେ ବାହମନୀ ରାଜ୍ୟର ମୁସଲମାନ ରାଜା, ଅମାତ୍ୟ ଓ ସୈନ୍ୟ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ରାଜସୂୟ ଯଜ୍ଞ ଉପଲକ୍ଷରେ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଯାଇ ଅର୍ଜୁନ ଅମରଚୂଡ଼ ପର୍ବତଠାରୁ ଜମାଗୋଷ୍ଠୀକୁ ରଥରେ ବାନ୍ଧି ଯେଉଁ ଯେଉଁ ଦେଶ ଓ ଯେଉଁ ଯେଉଁ ରାଜାମାନଙ୍କ ପାଖକୁ ଗଲେ, ତାହା ହିଁ ବର୍ତ୍ତମାନ ଆଲୋଚ୍ୟ ବିଷୟ । ସାରଳା ଦାସ ଖାଲି ମହାଭାରତ ଲେଖିଛନ୍ତି କି ମହାଭାରତ ଛଳରେ ଓଡ଼ିଶାର ଇତିହାସ ଲେଖିଛନ୍ତି, ତାହା ଏହି ଆଲୋଚନାରୁ ଆପେ ଆପେ ଜଣାପଡ଼ିଯିବ ।

(ଘ) ଆଖ୍ୟାୟିକା—ଅର୍ଜୁନଙ୍କର ମୃତ ସୈନ୍ୟ ଜୀବିତ ଓ ସଂକଳ୍ପ, ଭୈରବ, ଉଦୟଗିରି, ଉତ୍ତର କୋଶଳ ଏବଂ ନନ୍ଦୀଗ୍ରାମ ରାଜାମାନଙ୍କୁ ନିମନ୍ତ୍ରଣ, କଳିଙ୍ଗରାଜା ସହିତ ଯୁଦ୍ଧ । ସଭାପର୍ବ, ପୃ. ୧୫୩-୧୬୨ । ସାରାଂଶ—କାମାକ୍ଷୀ-ଦେବୀଙ୍କୁ ସ୍ତୁତି କରିବାରୁ ଅମରଚୂଡ଼ ପର୍ବତ ଯୁଦ୍ଧରେ ମରିଯାଇଥିବା ଅର୍ଜୁନଙ୍କ ସୈନ୍ୟ ଜୀବିତ ହୋଇ ପଡ଼ିଲେ । ତା' ପରେ ଅର୍ଜୁନ ସଂକଳ୍ପ ବନରେ ପ୍ରବେଶ କଲେ । ସେଠାରେ ସାଙ୍କାଳୀ ଦେଶରେ ବା ଶାଲରୁ ଦେଶରେ ସର୍ବେଶ୍ୱର ବୋଲି ପର୍ବତ ରହିଛି । ଗନ୍ଧର୍ବ ରାଜା ଶାଲୁ ଅର୍ଜୁନଙ୍କ ଆସିବା କଥା ଶୁଣିବା ମାତ୍ରେ ରଥରେ ବସି ଶୂନ୍ୟ ମାର୍ଗରେ ଥରେ ଦେଖିଗଲେ । ତା' ପରେ ତାଙ୍କ ସାରଥି ନାମକ ମନ୍ତ୍ରୀଙ୍କୁ ପଚାରିବାରୁ ସେ କହିଲେ ଯେ ଅର୍ଜୁନ କୃଷ୍ଣଙ୍କ ଆଜ୍ଞାରେ ଏ ଦିଗକୁ ଆସିଛନ୍ତି, ଆଉ ସେ ନିଜେ କୃଷ୍ଣ ସ୍ୱରୂପ, ଏଣୁ ତାଙ୍କ ସହିତ ବିବାଦ କରିବା ଉଚିତ ହେବ ନାହିଁ । ସାଲୁ ରାଜା ମନ୍ତ୍ରୀଙ୍କ କଥା ମାନି ଅର୍ଜୁନଙ୍କ ନିମନ୍ତ୍ରଣ ଗ୍ରହଣ କଲେ; କିନ୍ତୁ ରଥରେ

ବନ୍ଦୀ ହୋଇଥିବା ଜମାଗୋଷ୍ଠକୁ ଛାଡ଼ିଦେବା ପାଇଁ ତାଙ୍କୁ ଅନୁରୋଧ କଲେ । ଅର୍ଜ୍ଜୁନ କିନ୍ତୁ ଏ କଥା ଶୁଣିଲେ ନାହିଁ । ଜମାଗୋଷ୍ଠକୁ ପୂର୍ବ ପରି ରଥରେ ବାନ୍ଧି ରଖିଲେ । ଉଦ୍ଧୃତାଂଶ (ପୃ. ୧୫୪—୫୫) :—

ଆପଣା ସଇନ ଘେନି ବୀରବର ପାର୍ଥ
ବିଜୟ କରିଲେ ତହୁଁ ସକଳ୍ପ ବନସ୍ତ ।
ସର୍ବେଶ୍ୱର ବୋଲି ଅଛି ଏକଇ ପର୍ବତ
ଶାକଳ୍ପଦେଶ ସେଠାରେ ଅଛି ଅବସ୍ଥିତ ।
ସେହି ଦେଶକୁ ବିଜୟ କଲେ ଫାଲଗୁନି
ରଥଗଜ-ଚମକାଇ ପଶିଲେ ସଇନ ।
ସେ ଦେଶରେ ରାଜା ଶାଲୁନାମେ ନରପତି
ଗଜଅଶ୍ୱ ନାହିଁ ତା'ର ସଇନ ପଦାତି ।
ଏକଗୋଟି ରଥେ ଶାଲୁ ଚଳେ ଅନ୍ତରୀକ୍ଷେ
ଗନ୍ଧର୍ବ ରାଜା ଅଟଇ ସେହୁ ଯେ ପ୍ରତ୍ୟକ୍ଷେ ।
ଅର୍ଜ୍ଜୁନ ବିଜୟ କଲେ ସେ ଶାଲୁର ରାଜ୍ୟେ
ଘାରଟମକ ନିଶାଣ ଢୋଲ ଆଦି ବାଜେ ।
କାହିଁର ଶବଦ ଏହୁ ଉଲ୍‌କାପାତ ଜାଣି
ସାରଧ ନାମ ମନ୍ତ୍ରୀକି ପୁଛେ ନୃପମଣି ।
ସାରଧ ବୋଇଲା ରାଜସୂୟ ଯଜ୍ଞ ଅର୍ଥେ
ପାଣ୍ଡବ ଅର୍ଜ୍ଜୁନ ଆସେ ଏହି ଦିଗପଥେ ।
ଆଜ୍ଞା ଦେଇଛନ୍ତି ତାଙ୍କୁ ଚଞ୍ଚଳାବଲ୍ଲଭ
ମୁଁ ଜାଣେ ପାର୍ଥ ପ୍ରତ୍ୟକ୍ଷ ଅଟେ ବାସୁଦେବ ।
× × ×
ମନ୍ତ୍ରୀର ବଚନ ଶୁଣି ସାନନ୍ଦ ସେ ରାଜ୍ୟେ
ଯମଦଣ୍ଡ ଘେନି କରି ପାଗ୍ରେଛିଣ ଯାଏ ।
ଶୁଣି ଶାଲୁ ପ୍ରଣିପାତ ହୋଇ ପାଦତଳେ
ସ୍ୱାମୀ ଜମାଗୋଷ୍ଠ ବନ୍ଧା ମନ୍ଦବୁଦ୍ଧି ବଳେ ।
ଯାହା ଅରଜିଲା ସେହୁ ପାଇଲା ଯୁକତେ
ଏହାକୁ ବନ୍ଧନୁ ମୁକ୍ତ କର ମୋ' ଅଗ୍ରତେ ।
× × ×
ପାର୍ଥ ବୋଲେ ମହାରାଜା ଅଟୁ ତୁହି ଶାଲୁ
ଜମାଗୋଷ୍ଠ ରାଜା ପାଇଁ କପାଁ ତୁହି ବୋଲୁ ।

ଟୀକା—ଇତିହାସରୁ ଜଣାଯାଏ ଯେ କପିଳେଶ୍ୱର ଗୋଦାବରୀ-କୃଷ୍ଣା ଅବବାହିକା ଏବଂ ଦେବରକୋଣ୍ଡା ଓ ଉଆଭଙ୍ଗଲ ଜୟ କରିବା ପରେ ହିଁ ସେ ବିଜୟନଗର ରାଜ୍ୟର ପ୍ରଧାନ ଶତ୍ରୁ ହୋଇପଡ଼ିଥିଲେ । ଏତେଦିନ ଯାଏ ଦାକ୍ଷିଣାତ୍ୟରେ ସାର୍ବଭୌମ କ୍ଷମତା ବିସ୍ତାର ପାଇଁ ବିଜୟନଗର ଓ ବାହାମନୀ ରାଜ୍ୟ ମଧ୍ୟରେ ହିଁ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା, ମାତ୍ର ଦାକ୍ଷିଣାତ୍ୟର ରାଜନୀତି କ୍ଷେତ୍ରରେ ବର୍ତ୍ତମାନ କପିଳେଶ୍ୱର ମଧ୍ୟ ନୂତନ ପ୍ରତିଦ୍ୱନ୍ଦ୍ୱୀ ରୂପେ ପରିଣତ ହେଲେ । ବିଜୟ-ନଗରର ରାଜା ମଲ୍ଲିକାର୍ଜୁନ ବାହାମନୀ ରାଜ୍ୟ ପ୍ରତି ତାଙ୍କର ପୂର୍ବବିରୋଧ ଓ ଈର୍ଷା ଭୁଲିଯାଇ ଏହି ନୂତନ ଶତ୍ରୁକୁ କିପରି ପ୍ରତିରୋଧ କରିବେ, ତାହା ହିଁ ଚିନ୍ତା କରିବାକୁ ଲାଗିଲେ । ସେ ବିଜୟନଗରରୁ ଆସି ଆଧୁନିକ ଅନନ୍ତପୁର-ଜିଲ୍ଲାସ୍ଥ ପେଣ୍ଣୁକୋଣ୍ଡାରେ ଉପସ୍ଥିତ ହେଲେ ଓ କପିଳେଶ୍ୱରଙ୍କ ଅଗ୍ରଗତିର ପ୍ରତିରୋଧ ପାଇଁ ତାଙ୍କ ସାମନ୍ତ ରାଜା ସାଳୁବ ନରସିଂହଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ । * ଏହି ସାଳୁବ ନରସିଂହ ବିଜୟନଗର ରାଜ୍ୟର ସାମନ୍ତରାଜା ଥିଲେ ହେଁ ଉତ୍ତରରେ ଗୁଣ୍ଟୁର ଜିଲ୍ଲା ଠାରୁ ଦକ୍ଷିଣରେ ତାଞ୍ଜୋର ଜିଲ୍ଲା ପର୍ଯ୍ୟନ୍ତ ସମସ୍ତ ଉପକୂଳ ଅଞ୍ଚଳ ଏହାର ଅଧୀନରେ ହିଁ ଥିଲା, ଆଉ ଏହି ଅଞ୍ଚଳରେ ଉତ୍ତର ତରଫରେ ଉଦୟଗିରି-ନାମକ ଓ ଦକ୍ଷିଣ ତରଫରେ ଚନ୍ଦ୍ରଗିରି ନାମକ ଦୁଇଟି ସୁଦୃଢ଼ ଦୁର୍ଗ ଅବସ୍ଥିତ ଥିଲା । ବସ୍ତୁତଃ ଏହାଙ୍କ ରାଜ୍ୟ କୃଷ୍ଣା ଓ କାବେରୀ ନଦୀଦ୍ୱୟର ମଧ୍ୟବର୍ତ୍ତୀ ଉପକୂଳ ଅଞ୍ଚଳରେ ହିଁ ଅବସ୍ଥିତ ଥିଲା । ଏହି ରାଜ୍ୟର ରାଜଧାନୀ ଥିଲା କାଞ୍ଚି ବା ଚିଙ୍ଗଲପୁଟ ଜିଲ୍ଲାସ୍ଥ ଆଧୁନିକ କାଞ୍ଜିବେରମ୍ ।

---

* "About the end of this period we hear of his ( Mallikarjuna ) in residence in Penukonda with his minister Timma 'on business connected with the administration of his kingdom of Narasimha'. This could only mean that he moved eastward from his Capital and was for sometime on the frontiers of the rising chieftain Saluva Narasimha either to protect his own dominions, or as is more likely, to be prepared to support Narasimha against the ruler of Orissa and his Muslim allies,." ( Cambridge History of India, Vol. III, P. 493 )

ବିଜୟନଗର ରାଜ୍ୟ ସହିତ ଓଡ଼ିଶା ରାଜ୍ୟର ଯେଉଁ ସଂଘର୍ଷ ଘଟିଥିଲା, ତା'ର ବିବରଣ ବିଜୟନଗର ଇତିହାସରୁ ବା ଓଡ଼ିଶା ଇତିହାସରୁ ମିଳେ ନାହିଁ, ମାତ୍ର ଏହାର ଫଳାଫଳ ସ୍ଥୂଳ ଭାବରେ ଜଣାଯାଇଛି । ଓଡ଼ିଶାର ଆକ୍ରମଣ ଫଳରେ ନେଲୋର ଜିଲ୍ଲାସ୍ଥ ଉଦୟଗିରି ଦୁର୍ଗ ବହୁବର୍ଷ ଧରି ଓଡ଼ିଶା ସାମ୍ରାଜ୍ୟର ଅଙ୍ଗୀଭୂତ ହୋଇ ରହିଥିଲା । କପିଳେଶ୍ୱରଙ୍କ ରାଜତ୍ୱରେ ଓ ତାଙ୍କ ପୁତ୍ର ପୁରୁଷୋତ୍ତମଙ୍କ ରାଜତ୍ୱରେ ଏହି ଦୁର୍ଗ ଓଡ଼ିଶା ସାମ୍ରାଜ୍ୟରେ ସାମିଲ୍ ହୋଇ ରହିଥିଲା, ମାତ୍ର ପ୍ରତାପରୁଦ୍ରଙ୍କ ଅମଳରେ ଏହା ଓଡିଶା ଅଧୀନରେ କେତେକ ବର୍ଷ ରହି କୃଷ୍ଣଦେବ ରାୟଙ୍କ ଆକ୍ରମଣ ଫଳରେ ପୁଣି ବିଜୟନଗର ରାଜ୍ୟରେ ସାମିଲ୍ ହୋଇଥିଲା ।

ଇତିହାସର ଘଟଣାବଳୀ ସହିତ ସାରଳା ଦାସଙ୍କ ଉଲ୍ଲିଖିତ ଆଖ୍ୟାୟିକାର ଘଟଣାବଳୀ ବହୁ ପରିମାଣରେ ମେଳ ଖାଇଯାଏ । ସାରଳା ଦାସ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ରଣାଙ୍ଗନରୁ ଅର୍ଜୁନଙ୍କୁ ଯେଉଁଦେଶକୁ ଘେନି ଆସିଛନ୍ତି, ତା'ର ନାମ ଏକ ଜାଗାରେ 'ସାକଳଦେଶ' ଓ ଅନ୍ୟଜାଗାରେ 'ସାଲୁର ରାଜ୍ୟ' ବୋଲି କହିଛନ୍ତି । ଅତଏବ ଉଭୟ ନାମ ଏକ ରାଜ୍ୟକୁ ହିଁ ବୁଝାଉଛି । ଏହି ରାଜ୍ୟର ରାଜାଙ୍କ ନାମ ଥିଲା 'ସାଲୁ' । ଏହି ସାଲୁ ଯେ ସାଲୁବ ନରସିଂହ ଏ ବିଷୟରେ ସନ୍ଦେହର କାରଣ ନାହିଁ । ସାଲୁ ବା ସାଲୁବ ନରସିଂହ ରାଜ୍ୟରେ ପହଞ୍ଚି ଅର୍ଜୁନ ଯେଉଁ ପର୍ବତ ଦେଖିଲେ, ସାରଳା ଦାସ ସେଠାରେ ସେ ପର୍ବତର ନାମ ଦେଇଛନ୍ତି ସର୍ବେଶ୍ୱର, ମାତ୍ର ଅନ୍ୟତ୍ର ତାକୁ ଶ୍ରୀଗିରି ବୋଲି ମଧ୍ୟ କହିଛନ୍ତି । ସର୍ବେଶ୍ୱର ବା ଶ୍ରୀଗିରି ଶ୍ରୀଶୈଳମ୍‌ର ରୂପାନ୍ତର ମାତ୍ର । ନଲଗୋଣ୍ଡା ଜିଲ୍ଲାର ଦେବରକୋଣ୍ଡା ତରଫରୁ ନେଲୋରର ଉଦୟଗିରିକୁ ଆସିବାବେଳେ ବାଟରେ କୃଷ୍ଣାନଦୀର ଉତ୍ତରରେ ରାଇଚୁର ଜିଲ୍ଲା ଓ ଏହି ନଦୀର ଦକ୍ଷିଣରେ କାରନୁଲ୍ ଜିଲ୍ଲା ପଡ଼େ । ଏହି ନଦୀର ଦକ୍ଷିଣ ପଟରେ ହିଁ ସାଲୁବ ନରସିଂହଙ୍କ ରାଜ୍ୟ ଥିଲା । କୃଷ୍ଣା ନଦୀର ଦକ୍ଷିଣପଟରେ କାରନୁଲ ଜିଲ୍ଲାରେ ଶ୍ରୀଶୈଳମ୍ ବିଦ୍ୟମାନ ରହି ବର୍ତ୍ତମାନ ସୁଦ୍ଧା ଏହି ନାମରେ ଅଭିହିତ ହେଉଛି । ସାଲୁବ ନରସିଂହଙ୍କର ସାରାଧି ନାମକ ମନ୍ତ୍ରୀ ଥିଲେ କି ନା ଏ କଥା ଇତିହାସରୁ ମିଳୁନାହିଁ । ଏଣୁ ତାଙ୍କ ସମ୍ବନ୍ଧରେ କିଛି କହିବା ସମ୍ଭବପର ହେଉନାହିଁ । ପୌରାଣିକ କାବ୍ୟରେ କବି ସାଲୁରାଜାଙ୍କୁ ଆକାଶମାର୍ଗରେ ଉଡ଼ାଇ ଆଣି ଅର୍ଜୁନଙ୍କୁ ଦେଖାଇ ଦେଇଛନ୍ତି; କିନ୍ତୁ ପ୍ରକୃତ ଘଟଣା ପରମ୍ପରାରୁ ଏହା ହିଁ ସୂଚିତ ହେଉଛି ଯେ ଅର୍ଜୁନ ବା ଓଡ଼ିଶାର ରାଜା ସାଲୁ ବା ସାଲୁବ ନରସିଂହଙ୍କ ରାଜ୍ୟରେ ପହଞ୍ଚିବା ମାତ୍ରେ ସାଲୁବ ଓଡ଼ିଶା ରାଜାଙ୍କ ସୈନ୍ୟ କଳନା କରିବାକୁ ଚେଷ୍ଟା କରିଥିଲେ । ସାଲୁରାଜା କାହିଁକି ଜମାଗୋଷ୍ଠକୁ ଛାଡ଼ି ଦେବା ପାଇଁ ଅର୍ଜୁନଙ୍କୁ ଅନୁରୋଧ କଲେ, ଏ କଥାର

ତାତ୍ପର୍ଯ୍ୟ ବୁଝିବାକୁ କଷ୍ଟକର ହୁଏନାହିଁ । ଓଡ଼ିଶା ଓ ବିଜୟନଗର ମଧ୍ୟରେ ବାହାମନି ରାଜ୍ୟର ଯେଉଁ ଅଞ୍ଚଳ ଥିଲା, ତାହା କପିଳେଶ୍ୱରଙ୍କ ଦ୍ୱାରା ଅଧିକୃତ ହୋଇଯିବାରୁ ବିଜୟନଗର ରାଜ୍ୟର ଆକ୍ରମଣ ପାଇଁ ଓଡ଼ିଶାର ପଥ ସୁଗମ ହୋଇଗଲା । ଏହା ବିଜୟନଗର ରାଜ୍ୟ ପ୍ରତି ଏକ ନୂତନ ବିପଦ ହୋଇପଡ଼ିଥିଲା, ଆଉ ଏହି ବିପଦ ପ୍ରତି ଯେ ବିଜୟନଗର ରାଜା ମଲ୍ଲିକାର୍ଜୁନ ଓ ତାଙ୍କ ସାମନ୍ତ ରାଜା ସାଲୁବ ନରସିଂହ ଅବହିତ ଥିଲେ, ଏ କଥା ଇତିହାସରୁ ନିଶ୍ଚିତ । ଜମାଗୋଷ୍ଠି ଏଠାରେ ବାହାମନି ରାଜ୍ୟର ପ୍ରତୀକ ମାତ୍ର । ବାହାମନି ରାଜ୍ୟ ମୁସଲମାନ ରାଜ୍ୟ ହୋଇଥିଲେ ହେଁ ତା'ର ପୂର୍ବ-ଦକ୍ଷିଣାଞ୍ଚଳ ଓଡ଼ିଶା ଦ୍ୱାରା ଅଧିକୃତ ହେବାରେ ବିଜୟନଗର ରାଜା ବା କାଞ୍ଚି ରାଜାଙ୍କର ଆନନ୍ଦିତ ହେବାର କାରଣ ନ ଥିଲା ।

ସାଲୁ ବା ସାଲୁବ ନରସିଂହଙ୍କ ରାଜ୍ୟରେ ପହଞ୍ଚିବା ପରେ ଅର୍ଜୁନ ଯେଉଁ ସ୍ଥାନରେ ଉପସ୍ଥିତ ହୋଇଥିଲେ, ସାରଳା ଦାସ ତା'ର ନାମ ଦେଇଛନ୍ତି ଭୈରବ ଦେଶ ବା ଭୈରବ କଟକ । ଏ ସ୍ଥାନର ରାଜା ରୁଦ୍ରପୂଜକ ଓ ତାଙ୍କ ବେଶଭୂଷା ମଧ୍ୟ ରୁଦ୍ର ଦେବତା ପରି । ଅର୍ଜୁନ ଏହି କଟକରେ ପହଞ୍ଚିବା ମାତ୍ରେ ଭୈରବ ରଥରେ ବସି ଘୋର ରବରେ ଡାକ ଦେଲା, ମାତ୍ର ପରେ ଅର୍ଜୁନଙ୍କ ବଶ୍ୟତା ସ୍ୱୀକାର କଲା ।

ତହୁଁ ବୀର ଅରଜୁନ ଆଟକୁ ଚଳାଇ
ଭୈରବ ଦେଶେ ବିଜେ କରିଲେକ ଯାଇ ।
ଭୈରବ ଦେଶେ ମହା ଭୈରବ ନୃପତି
ରୁଦ୍ର ଦେବତାଙ୍କୁ ପୂଜା ବୋଲଏ ସେ ଯତି ।
× × ×
ଶିବସ୍ୱରୂପେ ଅଟନ୍ତି ମହାଯୋଗୀ ତେଜୀ
ଚତୁର୍ଭୁଜ ଡମ୍ବରୁ ଯେ ଘନ ଘନ ବାଜି ।
× × ×
ଭୈରବ ଡାକ ଦେଲା ନିଜ ରଥେ ବସି
ଅଦଭୂତେ ମୋ କଟକେ କମ୍ପା ପଶୁ ଆସି ।

ସଭାପର୍ବ, ପୃ. ୧୬୫ ।

ଅର୍ଜୁନ ବା ଓଡ଼ିଶାର ରାଜା ଶ୍ରୀଶୈଳମ୍ ଠାରୁ ଉଦୟଗିରି ଆଡ଼କୁ ଅଗ୍ରସର ହେବାବେଳେ ପୂର୍ବଘାଟ ପର୍ବତମାଳା ନିଶ୍ଚୟ ଅତିକ୍ରମ କରିଥିବେ । ଏଠାରେ ପୂର୍ବ-ଘାଟ ପର୍ବତ ନିରବଚ୍ଛିନ୍ନ ଭାବରେ ଉତ୍ତରରୁ ଦକ୍ଷିଣ ଆଡ଼କୁ ବିସ୍ତାରିତ ହୋଇଛି ଓ

ବର୍ତ୍ତମାନ ଏହା ନାଲ୍ଲମଲଇସ୍ ପର୍ବତ ଶ୍ରେଣୀ ନାମରେ ଅଭିହିତ ହେଉଛି । ଏଠାରେ ଏହି ପର୍ବତଶ୍ରେଣୀର ଏକମାତ୍ର ଗିରିପଥ ହେଉଛି ନନ୍ଦକନମ୍ ପାସ୍ ବା ଘାଟୀ । ପୌରାଣିକ ସାରଳା ଦାସ ନନ୍ଦ ନାମଟିକୁ ପାଇବା ମାତ୍ରେ ତାକୁ ଭୈରବରେ ପରିଣତ କରି ଭ୍ରମ ସୃଷ୍ଟି କରି ଦେଇଛନ୍ତି । ଆଉ ଏହି କଟକର ରାଜାଙ୍କୁ ମଧ୍ୟ ଶିବୋପାସକ କରିଦେଇଛନ୍ତି । ନନ୍ଦକନମ୍ ଘାଟି ଅତିକ୍ରମ କରିବା ପରେ ହିଁ ଉପକୂଳ ଅଞ୍ଚଳରେ ଉଦୟଗିରି ଦୁର୍ଗ ପଡ଼େ । ଏଣୁ ଏଠାରେ ସାଳୁବ ନରସିଂହଙ୍କ ରକ୍ଷୀ ଦଳ ସମାବେଶିତ ହୋଇଥିବା ନିତାନ୍ତ ସମ୍ଭବପର କଥା । ଏହି ରକ୍ଷୀଦଳ ହିଁ ଘୋର ରାବ କରି ଅର୍ଜୁନ ବା ଓଡ଼ିଶା ରାଜାଙ୍କ ଗଡ଼ପଥ ଅବରୋଧ କରିଥିଲେ । ସାରଳା ଦାସଙ୍କ ବର୍ଣ୍ଣିତ ଭୈରବକଟକ ନନ୍ଦକନମ୍ ଘାଟୀ ଛଡ଼ା ଯେ ଅନ୍ୟ କୌଣସି ସ୍ଥାନ ହୋଇ ନ ପାରେ, ତାହା ଅର୍ଜୁନଙ୍କର ପରବର୍ତ୍ତୀ ଗଡ଼ପଥ ବର୍ଣ୍ଣନାରୁ ପରିଷ୍କାର ଭାବରେ ଜଣାଯାଉଛି—

ଭୈରବକୁ ଚଳାଇଣ ଚଳିଲେ ଅର୍ଜୁନ
ଉଦୟ ମଣ୍ଡଳେ ଯାଇ ପ୍ରବେଶ ବହନ ।
ଉଦୟଗିରି ବୋଲିଣ ପର୍ବତ ଗୋଟିଏ
ସେ ପର୍ବତେ ବିଜେ କଲେ ଯାଇ ଧନଞ୍ଜୟେ ।

ଉଦୟଗିରି ଦୁର୍ଗର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ନେଲ୍ଲୋର ଜିଲ୍ଲାରେ ରହିଛି ଓ ତାହା ବର୍ତ୍ତମାନ ସୁଦ୍ଧା ପୂର୍ବ ନାମରେ ଅଭିହିତ ହେଉଛି । ଏହି ଦୁର୍ଗ ୧୪୬୩ ଖ୍ରୀଷ୍ଟାବ୍ଦ ଠାରୁ ୧୫୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶା ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ଥିଲା । ଏହି ଦୁର୍ଗରୁ କପିଳେଶ୍ୱର ଗଜପତିଙ୍କର ଦୁଇଟି ଶିଳାଲେଖ ମିଳିଛି, ଆଉ ଏଥିମଧ୍ୟରୁ ଗୋଟିକରେ ତାଙ୍କ ଅମଳରେ ଏଠାରେ ଦୁଇଟି ମନ୍ଦିର ନିର୍ମିତ ହୋଇଥିବା କଥା ଉଲ୍ଲେଖ ରହିଛି । ଏହାର ଉତ୍ତରରେ ମୁନ୍ନେୟରୁ ନାମକ କ୍ଷୁଦ୍ର ନଦୀ ଓ ଦକ୍ଷିଣରେ ପେନାର ନଦୀ ପ୍ରବାହିତ ହେଉଛି, ଆଉ ଏହାର ପୂର୍ବରେ ସମୁଦ୍ର ଓ ପଶ୍ଚିମରେ ପୂର୍ବଘାଟର ନାଲ୍ଲମଲଇସ୍ ପର୍ବତଶ୍ରେଣୀ ରହିଛି । ଏହାର ଭୌଗୋଳିକ ପରିସ୍ଥିତି ହିଁ ଏହାର ରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିଥିଲା ।

ସାରଳା ଦାସ ଅର୍ଜୁନଙ୍କୁ ଦେବରକୋଣ୍ଡାରୁ ଯେପରି ଭାବରେ ଆଣି ଉଦୟଗିରି ଦୁର୍ଗଠାରେ ପହଞ୍ଚାଇଛନ୍ତି, ସେଥିରେ ଜଣେ ସମରନିପୁଣର ଭୌଗୋଳିକ ଜ୍ଞାନ ପ୍ରଦର୍ଶିତ ହୋଇଛି । ଏହି ସ୍ଥାନମାନଙ୍କୁ ନିଜେ ଦେଖି ସେ ଏପରି ଜ୍ଞାନ ଅର୍ଜନ କରିଥିବେ, କିମ୍ବା କୌଣସି ସମରବେତ୍ତାଠାରୁ ତାହା ସମ୍ୟକ

ଭାବରେ ଶୁଣିଥିବେ । ନଚେତ୍ ଏପରି ଯଥାଯଥ ବର୍ଣ୍ଣନା କଦାପି ସମ୍ଭବପର ହୋଇ ନ ଥାନ୍ତା । ଓଡ଼ିଶାର ରାଜା ଯେଉଁ ପଥରେ ଆସି ଉଦୟଗିରି ଦୁର୍ଗ ଅଧିକାର କରିଥିଲେ, ସେ ପଥର ବିବରଣ କୌଣସିଠାରୁ ମିଳିନାହିଁ, ମାତ୍ର ସାରଳା ଦାସ ଏଠାରେ ସେହି ପଥର ବିଶଦ ଓ ଯଥାଯଥ ବିବରଣ ଦେଇଛନ୍ତି ।

ତା'ପରେ ସାରଳା ଦାସ ଅର୍ଜ୍ଜୁନଙ୍କୁ ଉଦୟଗିରି ଦୁର୍ଗଠାରୁ ନେଇ ବିଜୟ-ନଗର ରାଜ୍ୟରେ ପହଞ୍ଚାଇଛନ୍ତି—

"ସେଠାରୁ ପ୍ରୟାଣ କଲେ ପାର୍ଥ ବୀରବର
ବିଜୟ ମଣ୍ଡଳ ବୋଲି ଏକଇ ନଗର ।
ସେ ରାଜ୍ୟ ଭିତରେ ଯାଇ ପଶିଲେ ସଇନ
ବାରତା ପାଇଣ ରାଜା ଆସେ ସୈନ୍ୟ ଘେନ ।"

ମାତ୍ର ରାଜାମାନଙ୍କୁ ରାଜସୂୟ ଯଜ୍ଞକୁ ନିମନ୍ତ୍ରଣ କରିବା ପାଇଁ ନକୁଳଙ୍କର ଦକ୍ଷିଣ ଦିଗର ଯାତ୍ରାରେ ହିଁ ବିଜୟନଗର ରାଜ୍ୟର କଥା ବେଶୀ ଭାବରେ ରହିଛି । ଏଣୁ ଏଠାରେ ଏହି ଆଖ୍ୟାୟିକାର ଅବତାରଣା କରିବା ମଧ୍ୟ ଆବଶ୍ୟକ ମନେ ହେଉଛି ।

(ଙ) ଆଖ୍ୟାୟିକା—ଶ୍ରୀ ଗିରିପର୍ବତେ ତ୍ରେତାଯୁଗର ସୁଷେଣଙ୍କ ବିବରଣ ଇତ୍ୟାଦି । ସଭାପର୍ବ, ପୃ. ୧୮୮–୧୯୧ । ସାରାଂଶ : ଏହି ଆଖ୍ୟାୟିକାର ଠିକ୍ ପୂର୍ବ ଆଖ୍ୟାୟିକାରେ ସାରଳା ଦାସ ନକୁଳଙ୍କୁ ଦକ୍ଷିଣ ଦିଗର ବିଭିନ୍ନ ଦେଶରେ ବୁଲାଇ ଆଣି ପଦ୍ମନାଭ ନାମକ ପର୍ବତରେ ପହଞ୍ଚାଇଛନ୍ତି, (ପୃ. ୧୮୮) । ଏହି ପର୍ବତରେ ବିଷ୍ଣୁ ମନ୍ଦିର ଅଛି ଓ ତହିଁରେ ଅନନ୍ତଶାୟୀ ବିଷ୍ଣୁ ବିଜେ କରିଛନ୍ତି । ଶେଷଶାୟୀ ବିଷ୍ଣୁଙ୍କୁ ପୂଜା କରି ନକୁଳ ଏହିଠାରୁ ରୁଦ୍ରଗିରିକୁ ଗଲେ ଓ ରୁଦ୍ରଗିରିରୁ କାବେରୀ ରାଜ୍ୟରେ ପ୍ରବେଶ କଲେ । କାବେରୀ ରାଜ୍ୟରେ ପହଞ୍ଚିବା ମାତ୍ରେ ବିଜୟନଗରବାସୀ ସମସ୍ତେ ଜାଣିଗଲେ । ତା'ପରେ ନକୁଳ ଶ୍ରୀଗିରି ପର୍ବତରେ ବିଜେ କଲେ । ଶ୍ରୀଗିରି ପର୍ବତରେ ଥିବାବେଳେ କାଞ୍ଚିନଗରର ରାଜା ଅଜାନୁ ତାଙ୍କ ଗୁରୁ ଓ ମନ୍ତ୍ରୀଙ୍କ କଥା ମାନି ନକୁଳଙ୍କ ସହିତ ଏହି ପର୍ବତରେ ଦେଖା କଲେ, ମାତ୍ର ତା' ପୂର୍ବରୁ ସେଠାରେ ସେ ଶ୍ରୀ ମଲ୍ଲିକାନାଥ ବା ଶ୍ରୀ ମଲ୍ଲିକାର୍ଜ୍ଜୁନ ନାମକ ଲିଙ୍ଗଙ୍କୁ ଦର୍ଶନ କରିଥିଲେ । ନକୁଳ ମଧ୍ୟ ଶ୍ରୀଗିରି ପର୍ବତରେ କ୍ଷେତ୍ରପାଳ ଶ୍ରୀରାମଜଙ୍ଗମ ନାମକ ରାଜା ଠାରୁ ମଲ୍ଲିକାର୍ଜ୍ଜୁନ ଲିଙ୍ଗର ଉତ୍ପତ୍ତି ବିବରଣ ଶୁଣିଥିଲେ ।

ଉଦ୍ଧୃତାଂଶ [ପୃ. ୧୮୮—୧୮୯]—

ତହୁଁ ସେ ନକୁଳବୀର ଥାଟକୁ ଚଳାଇ
ପଦ୍ମନାଭ ପରବତେ ବିଜେ କଲେ ଯାଇଁ ।
ସୈନ୍ୟ ଘେନଣ ଉଠିଲେ ଗିରିର ଉପରେ
ଦେଖି ଏକ ନାରାୟଣ ମନ୍ଦିର ସେଠାରେ ।
ଶିରେ ସପ୍ତଫଣା ହୃଦେ କଉସ୍ତୁଭ ମଣି
ଅନନ୍ତ ଶଯ୍ୟାରେ ନିଦ୍ରା ଦେହ ନୀଳ ଜିଣି ।

× × ×

ଗୃରଶତ ରାଜା ତହିଁ କଲେ ଦରଶନ
ସେ ପର୍ବତରେ ରହିଲେ ସର୍ବେ ଏକଦିନ ।

× × ×

ସେଦିନ ନକୁଳ ବୀର ଦଣ୍ଡକୁ ଚଳାଇ
ରୁଦ୍ରଗିରି ପରବତେ ପ୍ରବେଶିଲ ଯାଇ ।

× × ×

ସେ ନଦୀରେ ସ୍ନାନ କରି ମାଦ୍ରୀର ନନ୍ଦନ
କାବେରୀ ରାଜ୍ୟରେ ଯାଇ ପ୍ରବେଶ ବହିନ ।

× × ×

କାବେରୀ ନଦୀ ହୋଇଛୁ ଐଶାନ୍ୟଗାମିନୀ
ସେ ନଦୀରେ ସ୍ନାନ କଲେ ନକୁଳ ସଇନ ।
ବୀରତୁର ବାଦ୍ୟ ବାଜେ କରିଣ ଶବଦ
ନାନା ରାଜ୍ୟକୁ ଶୁଭିଲା ତାହାର ଯେ ନାଦ ।
ବିଜୟନଗରବାସୀ ସମସ୍ତେ ଜାଣିଲେ
ସମଦଣ୍ଡ ଘେନ ସବ ଯୋଦ୍ଧା ଦଉଡ଼ିଲେ ।
ନକୁଳ ପ୍ରବେଶ ହେଲା ଶ୍ରୀଗିରି-ପର୍ବତେ
ରାଜାଏ ଦର୍ଶନ କଲେ ଆସିଣ ସମସ୍ତେ ।
କାଞ୍ଚନଗ୍ରର ଅଜାନୁ ରାଜା ଚନ୍ଦ୍ରବର୍ତ୍ତୀ
ତାକୁ ଖଟଇ ପଞ୍ଚାଶ ସହସ୍ର ଯେ ହସ୍ତୀ ।

× × ×

ସ୍ୱାମୀ ଦଣ୍ଡ ସାଜ ବେଗେ ସଙ୍କସ୍ଥଳେ ଯିବା
ତୁଙ୍ଗଭଦ୍ରା ନଦୀକୂଳେ ଦର୍ଶନ କରିବା ।

ଗୁରୁଙ୍କ ବଚନେ ରାଜା ମନ୍ତ୍ରୀଙ୍କ ପଚାରି
କହୁତ କହିଲା ମନ୍ତ୍ରୀ ରାଜାକୁ ବିଚାରି ।
ସ୍ୱାମୀ ସୈନ୍ୟ ଘେନି ଚଲ ଶ୍ରୀଗିରି-ପର୍ବତ
ରାଜ୍ୟ ଆଣିବା ନକୁଳ କରି ପୁରୁଷାର୍ଥ ।
X X X
ନୃପତି ବିଜୟ ଯାଇ ଶ୍ରୀଗିରି-ପର୍ବତେ
ଆଗେ କରିଲା ଦର୍ଶନ ଶ୍ରୀମଲ୍ଲିକାନାଥେ ।
ଏହି ପରକାରେ କରି କାବେରୀର ସାଇଁ
ନକୁଳ ଶ୍ରୀମୁରେ ଆସି ଦର୍ଶନ କରଇ ।
ଅନେକ ରତନ ଘେନି କାଞ୍ଚିନଗ୍ର ରାଜା
ନକୁଳ କୁମାରକୁ ସେ କଲା ଦ୍ରବ୍ୟ ପୂଜା ।
ଶ୍ରୀମଲ୍ଲିକା ଅରଜୁନ ଦର୍ଶନ ନିମନ୍ତେ
ଶ୍ରୀରାମଜଙ୍ଗମ ବୋଲି ତହିଁର ନୃପତେ ।
ରୁଦ୍ର ଚିହ୍ନ ବହଇ ସେ ଜଟା କଷାଧାରୀ
ଶ୍ରୀଗିରି-ପର୍ବତେ ସେହୁ କ୍ଷେତ୍ର ଅଧିକାରୀ ।

ଏହି ପଦଗୁଡ଼ିକ ପଢ଼ିବା ମାତ୍ରେ ହିଁ ଜଣାଯାଏ ଯେ, ଏଥିରେ ଯେଉଁ ନାମମାନ କୁହାଯାଇଛି, ସେ ସମସ୍ତ ବିଜୟ ନଗର ରାଜ୍ୟ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ଏଠାରେ ସାରଳା ଦାସ ଏକ ପ୍ରକାର ଖୋଲା ଖୋଲି ଭାବରେ ହିଁ ନାମଗୁଡ଼ିକୁ କହିଦେଇଛନ୍ତି । ଏଣୁ ଏ ନାମଗୁଡ଼ିକର ହିଁ ପ୍ରଥମେ ସଂକ୍ଷିପ୍ତ ପରିଚୟ ଦେଲେ ବିଷୟଟି ଆପେ ଆପେ ସ୍ପଷ୍ଟ ହୋଇଆସିବ ।

ପଦ୍ମନାଭ ପର୍ବତ—ଶ୍ରୀରଙ୍ଗମ୍ । ତ୍ରିଚିନାପଲ୍ଲୀ ସହରର ଅଦୂରବର୍ତ୍ତୀ କାବେରୀ ନଦୀ କୂଳରେ ଅବସ୍ଥିତ । ଏଠାରେ ବିଷ୍ଣୁମନ୍ଦିର ଅଛି ଓ ସେଠାରେ ପଦ୍ମନାଭ ବା ଅନନ୍ତଶାୟୀ ବିଷ୍ଣୁ ମୂର୍ତ୍ତି ଅଦ୍ୟାପି ପୂଜିତ ହେଉଛନ୍ତି । ଏହି ପଦ୍ମନାଭ ମନ୍ଦିରକୁ ହିଁ ପଦ୍ମନାଭ ପର୍ବତ କହି ସାରଳା ଦାସ ସାମାନ୍ୟ ଭ୍ରମ ସୃଷ୍ଟି କରିଦେଇଛନ୍ତି, ମାତ୍ର ଏ ସ୍ଥାନର ନାରାୟଣ ମନ୍ଦିରରେ ଅନନ୍ତଶାୟୀ ବିଷ୍ଣୁ ପୂଜିତ ହେଉଥିବା କଥା ସେ ସ୍ପଷ୍ଟ ଭାବରେ ଲେଖିବାରୁ, ଏହା ଶ୍ରୀରଙ୍ଗମ୍ ଛଡ଼ା ଯେ ଅନ୍ୟ କୌଣସି ସ୍ଥାନ ନୁହେଁ, ଏହା ସହଜରେ ଧରାପଡ଼ିଯାଉଛି । ଶ୍ରୀରଙ୍ଗମ ମନ୍ଦିର ଗାତ୍ରରେ ଗଜପତି କପିଳେଶ୍ୱରଙ୍କ ଜ୍ୟେଷ୍ଠପୁତ୍ର ହମ୍ବିରଦେବଙ୍କ ଗୋଟିଏ ଶିଳାଲେଖ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅଛି । ଏହି ଲେଖରେ ହମ୍ବିରଦେବ ଶ୍ରୀରଙ୍ଗମ୍ ମନ୍ଦିରରେ ଅଖଣ୍ଡ ଦୀପ ଜାଳିବା ପାଇଁ କେତେଗୁଡ଼ିଏ ଗାଈ ଦାନ କରିଥିବା କଥା ଉଲ୍ଲେଖ ଅଛି ।

ରୁଦ୍ରପର୍ବତ—ତାଞ୍ଜୋର । ଶ୍ରୀରଙ୍ଗମ୍‌ର ପଦ୍ମନାଭ ମନ୍ଦିରକୁ ପଦ୍ମନାଭପର୍ବତ କହି ସାରଳା ଦାସ ଯେପରି ଭ୍ରମ ସୃଷ୍ଟି କରିଛନ୍ତି, ତାଞ୍ଜୋରର ଶିବ ବା ରୁଦ୍ର ମନ୍ଦିରକୁ ରୁଦ୍ରପର୍ବତ କହି ସେହିପରି ଭ୍ରମ ସୃଷ୍ଟି କରିଛନ୍ତି । ଓଡ଼ିଶାର ଗଜପତି ଏ ଅଞ୍ଚଳକୁ ଆକ୍ରମଣ କରିବା ପୂର୍ବରୁ ତାଞ୍ଜୋରରେ ଚୋଳରାଜା ରାଜରାଜ ଚୋଳଙ୍କ ଦ୍ୱାରା ନିର୍ମିତ ସୁବିଖ୍ୟାତ ଶିବମନ୍ଦିର ବିଦ୍ୟମାନ ଥିଲା । ଏହା ବର୍ତ୍ତମାନ ମଧ୍ୟ ବିଦ୍ୟମାନ ଅଛି ।

କାବେରୀ ରାଜ୍ୟ—କାବେରୀ ଓ ତୁଙ୍ଗଭଦ୍ରା ଏହି ନଦୀଦ୍ୱୟର ଅବବାହିକାରେ ହିଁ ବିଜୟନଗରର ରାଜ୍ୟ ଅବସ୍ଥିତ ଥିଲା । ଏଣୁ ଏଠାରେ କାବେରୀ ରାଜ୍ୟର ଅର୍ଥ ବିଜୟ ନଗରର ରାଜ୍ୟ ।

କାବେରୀ ନଦୀ—ଏହି ସୁବିଖ୍ୟାତ ନଦୀ ପଶ୍ଚିମଘାଟ ପର୍ବତରୁ ବାହାରି କାରିକେଲ ନିକଟ୍‌ର ସମୁଦ୍ରରେ ପଡ଼ିଛି । ଏହାର କୂଳରେ ତ୍ରିଚିନାପଲ୍ଲୀ, ତାଞ୍ଜୋର ଓ କୁମ୍ଭକୋଣମ ଇତ୍ୟାଦି ପ୍ରସିଦ୍ଧ ସ୍ଥାନ ଅବସ୍ଥିତ ।

ବିଜୟନଗର—ବିଜୟନଗର ରାଜ୍ୟର ରାଜଧାନୀ ବିଜୟନଗର ଓ ହାମ୍ପି ଏହି ଉଭୟ ନାମରେ ଅଭିହିତ ହେଉଥିଲା । ଏହି ରାଜଧାନୀର ବର୍ତ୍ତମାନ ଯେଉଁ ଧ୍ୱଂସାବଶେଷ ରହିଛି, ତାହା ମଧ୍ୟ ଉଭୟ ନାମରେ ପରିଚିତ ହେଉଛି, ମାତ୍ର ହାମ୍ପି ନାମଟି ହିଁ ବର୍ତ୍ତମାନ ବେଶୀ ଭାବରେ ପ୍ରଚଳିତ । ବେଲାରୀ ଜିଲ୍ଲାର ହସପେଟ୍ ରେଲ ଷ୍ଟେସନଠାରୁ ୯ ମାଇଲ ଦୂରରେ ତୁଙ୍ଗଭଦ୍ରା ନଦୀ କୂଳରେ ଏହି ପ୍ରାଚୀନ ନଗରୀର ଧ୍ୱଂସାବଶେଷ ୭ ମାଇଲ ଅଞ୍ଚଳ୍ୟାନ୍ତରେ ବ୍ୟାପି ରହିଛି । ଏଠାରେ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ବହୁ ମନ୍ଦିର ଓ ପ୍ରାଚୀନ କୀର୍ତ୍ତି ସୁରକ୍ଷିତ ହୋଇଛି ଓ ଗୋଟିଏ ମିଉଜିୟମ ମଧ୍ୟ ସ୍ଥାପିତ ହୋଇଛି । ହସପେଟଠାରୁ ୬ ମାଇଲ ଦୂରରେ ଅଳ୍ପ ଦିନ ତଳେ ଯେଉଁ ସୁବିଖ୍ୟାତ ତୁଙ୍ଗଭଦ୍ରା ବନ୍ଧ ନିର୍ମିତ ହୋଇଛି, ତହିଁରୁ ଉତ୍ପାଦିତ ବିପୁଳ ବିଦ୍ୟୁତ୍‌ଶକ୍ତିର ସଦ୍‌ବ୍ୟବହାର ପାଇଁ ହାମ୍ପିର ଅତି ନିକଟବର୍ତ୍ତୀ କମଳାପୁରମ୍‌ଠାରେ ବର୍ତ୍ତମାନ ଗୋଟିଏ ବିଦ୍ୟୁତ୍ କାରଖାନା ଖୋଲାଯାଇଛି । ବେଲାରୀ ଜିଲ୍ଲା ଦ୍ୱିଭାଷୀ ଅଞ୍ଚଳ (କାନାଡ଼ୀ ଓ ତେଲୁଗୁ) । ଏହା ପୂର୍ବ ମାନ୍ଦ୍ରାଜ ପ୍ରଦେଶରେ ଥିଲା; କିନ୍ତୁ ବର୍ତ୍ତମାନ ମୈଶୂରରେ ମିଶିଛି ।

ଶ୍ରୀଗିରି—ଶ୍ରୀଶୈଳମ । ଏହା ଆନ୍ଧ୍ର ପ୍ରଦେଶର କାର୍ଣ୍ଣୁଲ ଜିଲ୍ଲାରେ କୃଷ୍ଣାନଦୀର ଦକ୍ଷିଣ ତଟରେ ଅବସ୍ଥିତ । ଶ୍ରୀଶୈଳମ୍ ମନ୍ଦିରରେ ବର୍ତ୍ତମାନ ସୁଦ୍ଧା କପିଳେଶ୍ୱର ଗଜପତିଙ୍କ ଶିଳାଲେଖ ବିଦ୍ୟମାନ ଅଛି ।

କାଞ୍ଚନଗର—ଚିଙ୍ଗଲପୁଟ ଜିଲ୍ଲାର ପୋଲର ନଦୀକୂଳରେ ଅବସ୍ଥିତ ଆଧୁନିକ କାଞ୍ଚିବେରମ୍ । ଏହା ହିଁ ସାଳୁବ ନରସିଂହଙ୍କ ରାଜଧାନୀ ଥିଲା ।

ଅଜାନୁରାଜା—ଏହା ଏକ ଛଦ୍ମ ନାମ । ଉଦୟଗିରି ଓ କାଞ୍ଚି ଉଭୟ ହିଁ ସାଳୁବ ନରସିଂହ ରାଜ୍ୟରେ ଅବସ୍ଥିତ ଥିଲା । ଉଦୟଗିରି କଥା କହିବାବେଳେ ସାରଳା ଦାସ ଏହାର ରାଜାର ନାମ ସାଲୁ ବା ସାଳୁବ ବୋଲି କହି ପ୍ରକୃତ ଐତିହାସିକ ନାମଟି ପ୍ରକାଶ କରିଛନ୍ତି, ମାତ୍ର ଏଠାରେ ସେହି ସାଳୁବ ନରସିଂହଙ୍କୁ ହିଁ ଅଜାନୁ ଆଖ୍ୟା ଦେଇଛନ୍ତି । ତଥାପି ଏହି ଛଦ୍ମ ନାମରେ ମଧ୍ୟ ତାତ୍ପର୍ଯ୍ୟ ଅଛି । ଅଜାନୁର ଆକ୍ଷରିକ ଅର୍ଥ ହେଉଛି ଜାନୁଶୂନ୍ୟ; କିନ୍ତୁ ଏଠାରେ ଏହାର ଅର୍ଥ ନତଜାନୁ ବା ପରାଜିତ ବୋଲି ହିଁ ବୁଝିବାକୁ ହେବ । କାଞ୍ଚିରାଜା ପ୍ରକୃତରେ ଓଡ଼ିଶାରାଜାଙ୍କ ଦ୍ଵାରା ପରାସ୍ତ ହୋଇଥିଲେ, ନଚେତ୍ ୫୦ ବର୍ଷ ପର୍ଯ୍ୟନ୍ତ ଉଦୟଗିରି ଦୁର୍ଗ ଓଡ଼ିଶାର ଅନ୍ତର୍ଗତ ଥିଲା କିପରି ?

ତୁଙ୍ଗଭଦ୍ରା—ସୁବିଖ୍ୟାତ ନଦୀ । ଏହା ପଶ୍ଚିମଘାଟ ପର୍ବତରୁ ବାହାରି କାର୍ଣ୍ଣୁଲ୍ ନିକଟରେ କୃଷ୍ଣାନଦୀରେ ପଡ଼ୁଛି ।

ଶ୍ରୀରାମଜଙ୍ଗମ୍—ଏହାଙ୍କୁ ଶ୍ରୀଗିରି ପର୍ବତର କ୍ଷେତ୍ରପାଳ ରାଜା ବୋଲି କୁହାଯାଇଛି । ଶ୍ରୀଗିରି ବା ଶ୍ରୀଶୈଳମ ଗୋଟିଏ ସାମରିକ ଘାଟୀ ଥିଲା; ମାତ୍ର ଏହି ସମୟରେ ଏଠାରେ କିଏ କ୍ଷେତ୍ରପାଳ ଥିଲେ, ତାହା ଇତିହାସରୁ ମିଳୁନାହିଁ ।

ଶ୍ରୀମଲ୍ଲିକାନାଥ, ଶ୍ରୀମଲ୍ଲିକାର୍ଜୁନ—ସାରଳାଦାସ ମଲ୍ଲିକାର୍ଜୁନଙ୍କୁ ଶିବଲିଙ୍ଗ-ରୂପେ ବର୍ଣ୍ଣନା କରି ଭ୍ରମ ସୃଷ୍ଟି କରିଛନ୍ତି । ମଲ୍ଲିକାର୍ଜୁନ ବିଜୟନଗରର ରାଜା ୨ୟ ଦେବରାୟଙ୍କ ପୁତ୍ର ଥିଲେ ଓ ପିତାଙ୍କ ମୃତ୍ୟୁ ପରେ ସେ ୧୪୪୭ ଖ୍ରୀଷ୍ଟାବ୍ଦ ଠାରୁ ୧୪୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ଵ କରିଥିଲେ । ଏହାଙ୍କ ରାଜତ୍ଵ-କାଳରେ ହିଁ ଓଡ଼ିଶାର ଗଜପତି କପିଳେଶ୍ଵର ଦେବ ବିଜୟନଗର ରାଜ୍ୟକୁ ଆକ୍ରମଣ କରିଥିଲେ ।

ଏହି ନାମଗୁଡ଼ିକର ପରିଚୟରୁ ହିଁ ସହଜରେ ଜଣାଯିବ ଯେ ସାରଳାଦାସ ଓଡ଼ିଶା ରାଜାଙ୍କ ରାଜ୍ୟ-ଜୟ କଥା ମହାଭାରତ ଛଳରେ ଲେଖିଯାଇଛନ୍ତି । ଏହି ଆଖ୍ୟାୟିକାର ଐତିହାସିକ ତଥ୍ୟ ଓ ସାରଳାସାହିତ୍ୟର ଅନ୍ୟାନ୍ୟ ଐତିହାସିକ ତଥ୍ୟ ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ କ୍ରମଶଃ ଆଲୋଚନା କରାଯିବ ।

ପରିଶେଷରେ ବକ୍ତବ୍ୟ ଏହି ଯେ ସାରଳାଦାସ ତାଙ୍କ ସାହିତ୍ୟର ରଚନା-କାଳ ତଥା ସମସାମୟିକ ଇତିହାସ ସମ୍ବନ୍ଧରେ ତାଙ୍କ ଗ୍ରନ୍ଥମାନଙ୍କରେ ଯେତେ ଉପାଦାନ ରଖିଯାଇଛନ୍ତି, ସେପରି ଉପାଦାନ ଭାରତର କୌଣସି ଅନୈତିହାସିକ

ପ୍ରାଚୀନ ଗ୍ରନ୍ଥରେ ଦେଖାଯାଏ ନାହିଁ । ଏପରି ମତପ୍ରକାଶରେ ଭାବ-ପ୍ରବଣତା, ଅତିରଞ୍ଜନ ବା ଅତିଶୟୋକ୍ତି ନାହିଁ, ମାତ୍ର ସାରଳା ଦାସଙ୍କ ଦୁର୍ଭାଗ୍ୟ ଯେ ଯେତେବେଳେ ଭାରତରେ ଭାଷାସାହିତ୍ୟର ଉନ୍ମେଷ ମାତ୍ର ଘଟିଥିଲା, ସେତିକବେଳେ ତାଙ୍କ ସମ୍ମୁଖରେ କୌଣସି ଭାଷା ସାହିତ୍ୟର ଆଦର୍ଶ ନ ପାଇ ମଧ୍ୟ, ତାଙ୍କ ତ୍ରିକାଳଦର୍ଶୀ ଅନନ୍ୟସାଧାରଣ ପ୍ରତିଭା ଦ୍ୱାରା ତାଙ୍କ ସମୟର ବିରାଟ ଓଡ଼ିଶା ସାମ୍ରାଜ୍ୟ ପରି ଓଡ଼ିଆ ଭାଷାରେ ହିଁ ବିରାଟ ଭାଷା ସାହିତ୍ୟ ଗଢ଼ି ଦେଇଥିଲେ ଓ ଓଡ଼ିଆ ସାହିତ୍ୟର ଜନ୍ମଦାତା ହୋଇଥିଲେ । ସେ ଯଦି ଓଡ଼ିଆ ଛଡ଼ା ଅନ୍ୟ କୌଣସି ଭାଷାରେ ତାଙ୍କ ଗ୍ରନ୍ଥମାନ ଲେଖିଥାନ୍ତେ, ତାହାହେଲେ ତାଙ୍କ ବିରାଟ ସାହିତ୍ୟ ଏତେବେଳକୁ ବିଶ୍ୱ-ବିଖ୍ୟାତ ହୋଇସାରିଥାନ୍ତା; ଆଉ ତହିଁରେ ଥିବା ଜ୍ଞାନ ବିଜ୍ଞାନ ବହୁ ଭାବରେ ଆଲୋଚିତ, ପ୍ରଚାରିତ ଓ ବିନିଯୋଜିତ ହୋଇସାରିଥାନ୍ତା । ତା’ ଛଡ଼ା ତାଙ୍କ ଜନ୍ମସ୍ଥାନ ବା ତାଙ୍କ ସାହିତ୍ୟର ରଚନାକାଳ ପ୍ରଭୃତି ପରି କ୍ଷୁଦ୍ର କ୍ଷୁଦ୍ର ବିଷୟ ପାଇଁ ବର୍ତ୍ତମାନ ବିତଣ୍ଡାର ଅବକାଶ ମଧ୍ୟ ନଥାନ୍ତା । ସାରଳା ଦାସଙ୍କ ମୃତ୍ୟୁ ପରେ ପ୍ରାୟ ପାଞ୍ଚଶ ବର୍ଷ ଅତୀତ ହୋଇଯାଇଛି, ଆଉ ତାଙ୍କ ସାହିତ୍ୟ କ୍ରମ-ବିକୃତ ଓ କ୍ରମ-ବିସ୍ମୃତ ହୋଇଆସିବାବେଳେ ଏହାର ଆଲୋଚନା ପ୍ରତି ବର୍ତ୍ତମାନ ଶ୍ରଦ୍ଧା ଦେଖାଯାଉଛି । ଏହା ନିଶ୍ଚୟ ଶୁଭଲକ୍ଷଣ, ମାତ୍ର ତାଙ୍କ ସାହିତ୍ୟ ସମ୍ବନ୍ଧରେ ଯାହା କୁହାଯାଇଛି ବା ଲେଖାଯାଉଛି ତାହା ତାଙ୍କ ଗ୍ରନ୍ଥମାନଙ୍କରେ ମିଳୁଥିବା ଉପାଦାନ ଉପରେ ହିଁ ପ୍ରତିଷ୍ଠିତ ହେବା ଉଚିତ । କୌଣସି ପ୍ରାଚୀନ ଗ୍ରନ୍ଥର ଆଲୋଚନା ସେହି ଗ୍ରନ୍ଥର ଉପାଦାନ ଉପରେ ହିଁ ବେଶୀ ଭାବରେ ନିର୍ଭର କରେ । ଏଥିପାଇଁ ଆଲୋଚ୍ୟ ଗ୍ରନ୍ଥକୁ ମନ ଓ ଜ୍ଞାନ ଦେଇ ପ୍ରଥମେ ଭଲଭାବରେ ପଢ଼ିବାକୁ ପଡ଼େ । ବର୍ତ୍ତମାନ ସାରଳା-ସାହିତ୍ୟ ସମ୍ବନ୍ଧରେ କେତେକ ଲେଖା ବାହାରୁଛି, ଯେଉଁଥିରେ କି ସେ ସାହିତ୍ୟକୁ ମନ ଓ ଜ୍ଞାନ ଦେଇ ପଢ଼ିଥିବା ପ୍ରମାଣ ମିଳୁନାହିଁ । କଳ୍ପନାମୂଳକ ଓ କୃତ୍ରିମ ଉପାଦାନ ଦ୍ୱାରା ଯେଉଁ ଇତିହାସ ସୃଷ୍ଟି କରାଯାଏ, ତା’ର ସ୍ଥାୟିତ୍ୱ ତ ନାହିଁ, ତା’ଛଡ଼ା ସେପରି ଇତିହାସ ଜାତି ଓ ଦେଶର ନୈତିକତାକୁ ବହୁପରିମାଣରେ କ୍ଷୁଣ୍ଣ କରି ପକାଏ ।

# ତୃତୀୟ ପରିଚ୍ଛେଦ

## ଗଜପତିଙ୍କ ବିଜୟନଗର-ସମ୍ରାଟ ମଲ୍ଲିକାର୍ଜୁନଙ୍କ ସହିତ ସଂଘର୍ଷର ଚିତ୍ର

ରାଜସୂୟ ଯଜ୍ଞ ପାଇଁ ପାଣ୍ଡବମାନଙ୍କ ରାଜାମାନଙ୍କୁ ନିମନ୍ତ୍ରଣ କରିବା ପ୍ରସଙ୍ଗରେ ସାରଳା ଦାସ ଐତିହାସିକ ବିଜୟନଗର ରାଜ୍ୟର ଯେଉଁ ଯେଉଁ ସ୍ଥାନ ଓ ବ୍ୟକ୍ତି-ମାନଙ୍କ ନାମ ଉଲ୍ଲେଖ କରିଛନ୍ତି, ଦ୍ୱିତୀୟ ପରିଚ୍ଛେଦ (ଘ) ଓ (ଙ)ରେ ସେମାନଙ୍କ ସଂକ୍ଷିପ୍ତ ପରିଚୟ ଦିଆଯାଇଛି । ଏହି ପ୍ରସଙ୍ଗରେ କବି ବିଜୟନଗରର ରାଜା ମଲ୍ଲିକାର୍ଜୁନ, ତାଙ୍କ ସାମନ୍ତ ରାଜା ସାଲୁବ ନରସିଂହ, ସାମରିକ ଘାଟି ଶ୍ରୀ ଶୈଳମ୍, ଗିରିପଥ ନନ୍ଦିକନମ୍, ପ୍ରଧାନ ଦୁର୍ଗ ଉଦୟଗିରି, ପ୍ରଧାନ ସ୍ଥାନ ଓ ତୀର୍ଥ ଶ୍ରୀରଙ୍ଗମ୍ ଓ ତାଞ୍ଜୋର, ରାଜଧାନୀ କାଞ୍ଚି ଓ ବିଜୟ ନଗର ଏବଂ ପ୍ରଧାନ ନଦୀ କାବେରୀ ଓ ତୁଙ୍ଗଭଦ୍ରାର ନାମ ଉଲ୍ଲେଖ କରି ବିଜୟନଗର ରାଜ୍ୟର ଏକ ପୂର୍ଣ୍ଣଚିତ୍ର ପ୍ରକାଶ କରିଛନ୍ତି । ଏହାଛଡ଼ା ସାଲୁବ ନରସିଂହଙ୍କ ମନ୍ତ୍ରୀ ସାବିଧ ଓ ସାମରିକ ଘାଟୀ ଶ୍ରୀଶୈଳମ୍‌ର କ୍ଷେତ୍ରପାଳ ରାଜା ଶ୍ରୀରାମ ଜଙ୍ଗମଙ୍କ ନାମ ମଧ୍ୟ କବି ପ୍ରକାଶ କରିଛନ୍ତି, ମାତ୍ର ଶେଷୋକ୍ତ ନାମଦ୍ୱୟ ଇତିହାସରୁ ମିଳୁ ନ ଥିବାରୁ ସେମାନଙ୍କୁ ଯଥାଯଥ-ଭାବରେ ଚିହ୍ନିତ କରାଯାଇ ପାରୁନାହିଁ । କହିବା ବାହୁଲ୍ୟ ଯେ ଏ ସମସ୍ତ ନାମ ମୂଳ ସଂସ୍କୃତ ମହାଭାରତରେ ନାହିଁ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରୁ ସଂସ୍କୃତ ମହାଭାରତର ଲେଖା ଆରମ୍ଭ ହୋଇଥିଲା, ମାତ୍ର ବିଜୟନଗର ରାଜ୍ୟର ଅଭ୍ୟୁଦୟ ଘଟିଥିଲା ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ । ଏଣୁ ବିଜୟନଗର ରାଜ୍ୟର ଐତିହାସିକ ଓ ଭୌଗୋଳିକ ନାମମାନ ସଂସ୍କୃତ ମହାଭାରତରେ ସ୍ଥାନ ପାଇବା କଦାପି ସମ୍ଭବପର ନୁହେଁ । ତଥାପି ଲେଖକ ସାରଳା ମହାଭାରତରେ ସଭାପର୍ବ ସହିତ ସଂସ୍କୃତ ମହାଭାରତର ସଭାପର୍ବକୁ ତୁଳନା କରି ଦେଖିଛି । ଉଭୟର ପରିକଳ୍ପନା ଏକ ହେଲେ ହେଁ ସାରଳା ଦାସଙ୍କ ବର୍ଣ୍ଣିତ ପାଣ୍ଡବମାନଙ୍କର ଦିଗବିଜୟର ବିବରଣୀ ସମ୍ପୂର୍ଣ୍ଣ ମୌଳିକ ଓ ଅଭିନବ । ମୂଳ ସଂସ୍କୃତ ମହାଭାରତ ସହିତ ତା'ର କୌଣସି ସମ୍ପର୍କ ନାହିଁ ।

ଏଣୁ ଏହା ହିଁ ନିଃସନ୍ଦେହରେ ପ୍ରମାଣିତ ହେଉଛି ଯେ, କବି ମହାଭାରତ ଜରିଆରେ ସମସାମୟିକ ଇତିହାସକୁ ହିଁ ପ୍ରଚ୍ଛନ୍ନ ଭାବରେ ଲେଖିଯାଇଛନ୍ତି । ଏହା ସେ ସ୍ୱତଃପ୍ରବୃତ୍ତ ହୋଇ ଲେଖିଛନ୍ତି କିମ୍ବା କାହାରି ପ୍ରରୋଚନାରେ ଲେଖିଛନ୍ତି, କିମ୍ବା ଖାଲି କଳ୍ପନା ବଳରେ ଅନେକ କଥା ଲେଖିବା ବେଳେ ଐତିହାସିକ ଘଟଣାମାନଙ୍କ ସାହାଯ୍ୟ ନେବାକୁ ବାଧ୍ୟ ହୋଇଛନ୍ତି । ଏ ସମସ୍ତ ସମସ୍ୟାର ସମାଧାନ ପାଇଁ ଆମ୍ଭମାନଙ୍କ ପାଖରେ କୌଣସି ପ୍ରମାଣ ନାହିଁ । ସୁତରାଂ ଏ ବିଷୟରେ ବାକ୍ୟ ବ୍ୟୟ କରିବା ଅନାବଶ୍ୟକ ହେବ । ତେବେ ସାରଳା ଦାସ ଯେ, ସମସ୍ତ ଇତିହାସକୁ ମହାଭାରତର ଅନ୍ତର୍ଭୁକ୍ତ ବୋଲି ଭାବୁଥିଲେ, ଏକଥା ତାଙ୍କ ବର୍ଣ୍ଣିତ ତେସ୍ତରି ମହାଭାରତ ନାମକ ଆଖ୍ୟାୟିକାରୁ (ସଭାପର୍ବ ପୃ-୨୦୧-୨) ଜଣାପଡ଼େ । ତାଙ୍କ ମତରେ ମହାଭାରତ ଯୁଦ୍ଧ ଥରେ ନୁହେଁ, ଥର ଥର କରି ତେସ୍ତରି ଥର ଏହି ଭୂ-ଭାରତରେ ଘଟିଯାଇଛି, ଆଉ ଭବିଷ୍ୟତରେ ମଧ୍ୟ ମହାଭାରତ ଯୁଦ୍ଧ ହେବ । ମହାଭାରତର ଏହି ଫର୍ମୁଲା ଅନୁସାରେ ଅତି ଅତୀତ, ନିକଟ ଅତୀତ ଓ ସମସାମୟିକ ସମସ୍ତ ଇତିହାସ ମହାଭାରତର ଅନ୍ତର୍ଭୁକ୍ତ ହୋଇଯାଇଛି । ଅତଏବ ନିକଟ ଅତୀତ ବା ସମସାମୟିକ ଇତିହାସକୁ ମହାଭାରତରେ ସ୍ଥାନ ଦେବା ଦୋଷାବହ ନୁହେଁ, ମାତ୍ର ସମସ୍ତ ଇତିହାସକୁ ଚିରାଚରିତ ପୌରାଣିକ ଖାତିରେ ଓ ମୌଳିକ ମହାଭାରତର ନାୟକ ନାୟିକାମାନଙ୍କ ଜରିଆରେ ହିଁ ପ୍ରକାଶ କରିବାର କଥା । ସାରଳା ଦାସ ତାହା ହିଁ କରିଛନ୍ତି । ସେ ଖାଲି ଓଡ଼ିଆ ସାହିତ୍ୟର ଜନ୍ମଦାତା ନୁହନ୍ତି—ଓଡ଼ିଶା ଇତିହାସର ମଧ୍ୟ ଜନ୍ମଦାତା । ତା' ଛଡ଼ା ସାରଳା ଦାସ ହିଁ ପ୍ରଥମେ ଉତ୍କଳର ବୀର-ଗାଥା ତଥା ଉତ୍କଳର ନଦୀ-ହ୍ରଦ, ବନ ପର୍ବତ, ନଗର, ଜନପଦ, ଦେବଦେବୀ ପ୍ରଭୃତିଙ୍କୁ ସାହିତ୍ୟରେ ସ୍ଥାନ ଦେଇ ଜାତୀୟ ଚେତନା ଜାଗ୍ରତ କରିଯାଇଛନ୍ତି । ତାଙ୍କୁ ଏକାବେଳକେ ବାଦ୍ ଦେଇ ଏ ସମସ୍ତଙ୍କୁ କିଏ ପ୍ରଥମେ ଓଡ଼ିଆ ସାହିତ୍ୟରେ ସ୍ଥାନ ଦେଇଛନ୍ତି ବୋଲି ଆଜି ଯଦି ବାଦାନୁବାଦ ଚାଲେ, ତେବେ ତାହା ଏକ ପକ୍ଷରେ ଆମ୍ଭମାନଙ୍କର ଅକୃତଜ୍ଞତା ଓ ଅନ୍ୟ ପକ୍ଷରେ ଆମ୍ଭମାନଙ୍କ ଅଜ୍ଞତା ଓ ଅକ୍ଷମତାର ପରିଚାୟକ ହେବ ।

ସନ ସାଲ ଦେଇ ନିରେଖ ଇତିହାସ ଲେଖିବାର ପ୍ରଥା ହିନ୍ଦୁମାନଙ୍କ ମଧ୍ୟରେ ନଥିଲା କହିଲେ ଚଳେ । ହିନ୍ଦୁମାନଙ୍କ ମଧ୍ୟରେ ଆଜି ଯେଉଁ ଇତିହାସ ଲେଖିବା ପ୍ରଥା ଦେଖାଯାଉଛି, ତାହା ପାଶ୍ଚାତ୍ୟ ଶିକ୍ଷାର ଫଳ ବା ପାଶ୍ଚାତ୍ୟ ଜଗତର ଦାନ ବୋଲି ହିଁ ବୁଝିବାକୁ ହେବ । ଏଣୁ ପ୍ରାଚୀନ କବି ସାରଳା ଦାସ ସିଧାସଳଖ ଭାବରେ ଇତିହାସ ନ ଲେଖି, ମହାଭାରତ ଜରିଆରେ କାହିଁକି ତାହା ପ୍ରଚ୍ଛନ୍ନ ଭାବରେ ପ୍ରକାଶ କରିଛନ୍ତି ବୋଲି ଯଦି କେହି ପ୍ରଶ୍ନ କରନ୍ତି, ତେବେ

ସେପରି ପ୍ରଶ୍ନ ନିତାନ୍ତ ଅବାନ୍ତର ଓ ଅପ୍ରାସଙ୍ଗିକ ହେବ । କିବା କାହିଁକି କୌଣସି କଥା ଲେଖିଛନ୍ତି ବା କାହିଁକି କୌଣସି କଥା ଲେଖି ନାହାନ୍ତି, ଏହାର କୈଫିୟତ୍ ମାଗିବାର ଅଧିକାର ବା ଉପାୟ ଆମ୍ଭମାନଙ୍କର ନାହିଁ । ଅତଏବ ସେ ଯାହା କହିଛନ୍ତି ବା ଲେଖିଛନ୍ତି ତାହାର ମଧ୍ୟରେ ହିଁ ଆମ୍ଭମାନଙ୍କ ଆଲୋଚନାକୁ ସୀମାବଦ୍ଧ କରିବା ଉଚିତ ।

ଓଡ଼ିଶା ସାମ୍ରାଜ୍ୟ ସହିତ ବିଜୟନଗର ସାମ୍ରାଜ୍ୟର ସଂଘର୍ଷ ଭାରତ ଇତିହାସର ଗୋଟିଏ ସୁବିଦିତ ଘଟନା, ମାତ୍ର ଏହାର ପୂର୍ଣ୍ଣ ବିବରଣ ମିଳିନାହିଁ । ତାମ୍ରଲେଖ, ଶିଳାଲେଖ, ମୁସଲମାନ୍ ଐତିହାସିକ ଓ ପର୍ତ୍ତୁଗୀଜ୍ ଲେଖକମାନଙ୍କ ବିବରଣରୁ ଏ ସଂଘର୍ଷ ସମ୍ବନ୍ଧରେ ଯାହା ମିଳିଛି, ତାହା ଓଡ଼ିଶା ଇତିହାସରେ ପଣ୍ଡିତ କୃପାସିନ୍ଧୁ ମିଶ୍ର, ଅଧ୍ୟାପକ ରାଖାଲ ଦାସ ବେନାର୍ଜି, ଡକ୍ଟର ହରେକୃଷ୍ଣ ମହତାବ ଓ ଅଧ୍ୟାପକ ପ୍ରଭାତକୁମାର ମୁଖାର୍ଜି ପ୍ରଭୃତି ଐତିହାସିକମାନେ ଆଲୋଚନା କରିଛନ୍ତି । A forgotten Empire ନାମକ ଗ୍ରନ୍ଥରେ ସିୱେଲ୍ ସାହେବ ସର୍ବପ୍ରଥମେ ବିଜୟନଗରର ଇତିହାସ ଆଲୋଚନା କରିଛନ୍ତି, ମାତ୍ର ସିୱେଲ୍ ସାହେବଙ୍କ ଗ୍ରନ୍ଥ ଲିଖିତ ହେବାର ବହୁ ବର୍ଷ ପରେ ଅଧ୍ୟାପକ ଏ. କେ. ନୀଳକଣ୍ଠ ଶାସ୍ତ୍ରୀ ଓ ଡକ୍ଟର ଭେଙ୍କଟ ରାମନୟ୍ୟା Further Sources of Vijayanagara History ନାମକ ପ୍ରକାଣ୍ଡ ଗ୍ରନ୍ଥ ଲେଖିଛନ୍ତି, ଆଉ ଏହି ଗ୍ରନ୍ଥରେ ସମସାମୟିକ ବା ପରବର୍ତ୍ତୀ ତେଲଗୁ, ତାମିଲ ଓ ସଂସ୍କୃତ ଗ୍ରନ୍ଥମାନଙ୍କରୁ ବିଜୟନଗର-ଇତିହାସ ସମ୍ବନ୍ଧରେ ଯାହା ପାଇଛନ୍ତି, ତାହା ବିଶଦ ଭାବରେ ଆଲୋଚନା କରିଛନ୍ତି । ଓଡ଼ିଶା ସାମ୍ରାଜ୍ୟ ଓ ବିଜୟନଗର ସାମ୍ରାଜ୍ୟର ସଂଘର୍ଷ ସମ୍ବନ୍ଧରେ ଓଡ଼ିଶାର ସମସାମୟିକ ବା ପରବର୍ତ୍ତୀ ଓଡ଼ିଆ ବା ସଂସ୍କୃତ ଗ୍ରନ୍ଥମାନଙ୍କରୁ ଯାହା ମିଳୁଛି, ତାହା ଏହି ଐତିହାସିକମାନଙ୍କର ହସ୍ତଗତ ହୋଇଥିଲେ ସେମାନଙ୍କ ଦ୍ୱାରା ସେଗୁଡ଼ିକ ଯଥୋଚିତ ଭାବରେ ଆଲୋଚିତ ଓ ନିୟୋଜିତ ହୋଇଥାନ୍ତା, ମାତ୍ର ମାଦଳାପାଞ୍ଜିର ରୂପାନ୍ତର "କଟକ ରାଜବଂଶାବଳୀ" ବ୍ୟତୀତ ଓଡ଼ିଶା ତରଫରୁ ଅନ୍ୟ କୌଣସି ଉପାଦାନ ଥିବା ଗ୍ରନ୍ଥ ଏମାନଙ୍କର ହସ୍ତଗତ ହୋଇ ନଥିଲା । ଫଳରେ ବିଜୟନଗର-ଇତିହାସର ଶେଷ ପ୍ରାମାଣ୍ୟ ଗ୍ରନ୍ଥ Further Sources of Vijayanagara Historyରେ ଓଡ଼ିଶା ଇତିହାସର ଯେଉଁ ଚିତ୍ର ପ୍ରକାଶିତ ହୋଇଛି, ତାହା ଏକତରଫିଆ ହୋଇଯାଇଛି । ଅବଶ୍ୟ ଏଥିପାଇଁ ଏହି ସୁପଣ୍ଡିତ ଐତିହାସିକମାନେ ଦାୟୀ ନୁହନ୍ତି; ଓଡ଼ିଶା ହିଁ ଏଥିପାଇଁ ଦାୟୀ । ଓଡ଼ିଶାର ଶେଷ ସ୍ୱାଧୀନ ରାଜବଂଶ-ଅମଳରେ ଯେଉଁ ବିପୁଳ ଭାଷା-ସାହିତ୍ୟ ସୃଷ୍ଟି ହୋଇଥିଲା, ତା'ର ତୁଳନା ଭାରତୀୟ ଭାଷା-ସାହିତ୍ୟର ଇତିହାସରେ ନାହିଁ; ଅଥଚ ଏହି ବିପୁଳ ଭାଷା ସାହିତ୍ୟର ସନ୍ଧାନ ବନ୍ଧିବା ପାଇଁ ମଧ୍ୟ ଭଲ ଭାବରେ

ଚେଷ୍ଟା ହୋଇନାହିଁ । ଓଡ଼ିଆ ସାହିତ୍ୟର ଜନ୍ମଦାତା ସାରଳା ଦାସ ମହାଭାରତ ଜରିଆରେ ସମସାମୟିକ ଓ ନିକଟ ଅତୀତର ପ୍ରଭୃତି ଇତିହାସ ଓ ଭୂଗୋଳ ଲେଖିଯାଇଛନ୍ତି; ଅଥଚ ତାଙ୍କ ସାହିତ୍ୟ ରଚିତ ହେବାର ପାଞ୍ଚଶ ବର୍ଷ ପରେ ସୁଦ୍ଧା ତାକୁ ବିକୃତ କରିବା ଛଡ଼ା ଆଧୁନିକ ପ୍ରଣାଳୀରେ ତା'ର ସ୍ୱରୂପ ଚିହ୍ନିବା ପାଇଁ ମଧ୍ୟ କେହି ଚେଷ୍ଟା କରି ନାହାନ୍ତି । ଏଣୁ ଓଡ଼ିଶା ଇତିହାସର ଯଥୋଚିତ ଚିତ୍ର ଯଦି କୌଣସି ଐତିହାସିକ ଗ୍ରନ୍ଥରେ ସନ୍ନିବେଶିତ ହୋଇ ନ ଥାଏ, ତାହାହେଲେ ସେଥିପାଇଁ ଗ୍ରନ୍ଥକାରମାନେ ଦାୟୀ ନୁହନ୍ତି ।

ଉଲ୍ଲିଖିତ କାରଣରୁ ଓଡ଼ିଶା ଓ ବିଜୟନଗର ସଂଘର୍ଷ ସମ୍ବନ୍ଧରେ ବହୁ ଐତିହାସିକ ସମସ୍ୟା ଅମୀମାଂସିତ ହୋଇ ରହିଛି, କିମ୍ବା ଏକତରଫିଆ ଭାବରେ ମୀମାଂସିତ ହୋଇଛି ! ଏ ସମସ୍ତ ସମସ୍ୟା ସମାଧାନ ପାଇଁ ସାରଳା ସାହିତ୍ୟ କି କି ଉପାଦାନ ଯୋଗାଉଛି, ତାହା ହିଁ ବର୍ତ୍ତମାନ ଆଲୋଚ୍ୟ ।

ସିଉଏଲ୍ ସାହେବଙ୍କ ପରବର୍ତ୍ତୀ ସମସ୍ତ ବିଜୟନଗର ଇତିହାସ ଲେଖକ, ଏପରି କି Cambridge History of India, Vol. III ମଧ୍ୟ, ଏକ ସ୍ୱରରେ କହିଛନ୍ତି ଯେ ଗଜପତି କପିଳେଶ୍ୱର ବାହାମନି ରାଜ୍ୟର ସୁଲତାନ୍ ସହିତ ଏକଜୁଟ ହୋଇ ବିଜୟନଗର ରାଜ୍ୟ ଆକ୍ରମଣ କରିଥିଲେ । ଏହି ସିଦ୍ଧାନ୍ତରେ ଉପନୀତ ହେବାପାଇଁ ସେମାନେ କବି ଗଙ୍ଗାଧରଙ୍କ ଗଙ୍ଗାଦାସ-ପ୍ରତାପ-ବିଳାସମ୍ ନାମକ ସଂସ୍କୃତ ଗ୍ରନ୍ଥ ଉପରେ ନିର୍ଭର କରିଛନ୍ତି । କବି ଗଙ୍ଗାଧର ଲେଖିଛନ୍ତି ଯେ ବିଜୟନଗରର ପୁରନ୍ଦର ପ୍ରତାପଦେବ ରାୟଙ୍କ (ଦ୍ୱିତୀୟ ଦେବରାୟଙ୍କ) ମୃତ୍ୟୁ ପରେ ତାଙ୍କ ପୁତ୍ର ମଲ୍ଲିକାର୍ଜୁନ ସିଂହାସନ ଆରୋହଣ କରିଥିଲେ । ଏ ଖବର ପାଇବା ମାତ୍ରେ ଓଡ଼ିଶାର ଗଜପତି ଓ ଦାକ୍ଷିଣାତ୍ୟର ସୁଲତାନ୍ (ବାହାମନି ସୁଲତାନ୍) ଏକଯୁଟ୍ ହୋଇ ବହୁ ସଂଖ୍ୟକ ହସ୍ତୀ, ଅଶ୍ୱ ଓ ପଦାତିକ ସହିତ ବିଜୟନଗର ରାଜଧାନୀ ଆକ୍ରମଣ କରିଥିଲେ (୧) ଗଜପତି ଓ ବାହାମନି ସୁଲତାନ୍ ଏକଜୁଟ୍ ହୋଇଥିବା କଥା ଏହି ପ୍ରମାଣ ଉପରେ ହିଁ ପ୍ରତିଷ୍ଠିତ କରାଯାଇଛି ଏବଂ ଅଧ୍ୟାପକ ରାଖାଲ ଦାସ ବେନାର୍ଜୀ ଏହି ମତକୁ ଖଣ୍ଡନ କରିବାକୁ ଚେଷ୍ଟା କରିଥିଲେ ମଧ୍ୟ ପରବର୍ତ୍ତୀ ଐତିହାସିକମାନେ ତାହା ମାନି ନାହାନ୍ତି । (୨) କିନ୍ତୁ ଏ ବିଷୟରେ

(୧) Further Sources of Vijaya-nagara History, Vol. I, p. 102.

(୨) "R. D. Banerji, however, denies that Kapileswara entered into an alliance with the

କେତେଗୁଡ଼ିଏ କଥା ବିଚାର କରିବାର ଅଛି । ପ୍ରଥମତଃ ଗଜପତି ଓ ସୁଲତାନ୍‌ଙ୍କ ସମ୍ମିଳିତ ସୈନ୍ୟ ଯେ ବିଜୟନଗର ଆକ୍ରମଣ କରିଥିଲେ, ଫେରିସ୍ତାଙ୍କ ତାରିଖ-ଇ-ଫେରିସ୍ତାରେ ଏ କଥାର କୁତ୍ରାପି ଉଲ୍ଲେଖ ନାହିଁ । ଦ୍ୱିତୀୟତଃ କପିଳେଶ୍ୱର ବିଜୟନଗର ଆକ୍ରମଣ କରିବା ପୂର୍ବରୁ ବାହାମନି ରାଜ୍ୟର ତେଲିଙ୍ଗନା ତଥା ତାହାର ପ୍ରଧାନ ଦୁର୍ଗ ଦେବରକୋଣ୍ଡା ଓ ଉଆରଙ୍ଗଲ ଦଖଲ କରି ସାରିଥିବାରୁ ସେ ବାହାମନି ରାଜ୍ୟର ପ୍ରଧାନ ଶତ୍ରୁ ହୋଇ ପଡ଼ିଥିଲେ । ଏପରି ଅବସ୍ଥାରେ ବିଜୟନଗର ଆକ୍ରମଣ ପାଇଁ ଉଭୟ ରାଜ୍ୟର ସମବେତ ଚେଷ୍ଟା ଏକପ୍ରକାର ଅସମ୍ଭବ ଥିଲା । ଏଣୁ କବି ଗଙ୍ଗାଧରଙ୍କ କଥା ଏକାବେଳକେ ସତ୍ୟ ବୋଲି ଧରିନେବା କଦାପି ନ୍ୟାୟସଙ୍ଗତ ହେବ ନାହିଁ । କବି ଗଙ୍ଗାଧର ବିଜୟନଗରର ରାଜା ଦ୍ୱିତୀୟ ଦେବରାୟ ଓ ତାଙ୍କ ପୁତ୍ର ମଲ୍ଲିକାର୍ଜ୍ଜୁନଙ୍କ ଯେପରି ସମସାମୟିକ ଥିଲେ, କବି ସାରଳା ଦାସ ମଧ୍ୟ ସେହିପରି ଗଜପତି କପିଳେଶ୍ୱର ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ ସମସାମୟିକ ଥିଲେ । ଗଙ୍ଗାଧର ଓଡ଼ିଶା ଓ ବିଜୟନଗର ସଂଘର୍ଷ ସମ୍ବନ୍ଧରେ ସାମାନ୍ୟ କେତୋଟି କଥା ତାଙ୍କ ଗ୍ରନ୍ଥରେ ଲେଖିଛନ୍ତି, ମାତ୍ର ସାରଳା ଦାସ ଏହି ସଂଘର୍ଷର ଗୋଟିଏ ସମ୍ପୂର୍ଣ୍ଣ ଚିତ୍ର ତାଙ୍କ ମହାଭାରତରେ ପ୍ରକାଶ କରିଛନ୍ତି । ଏହି ଚିତ୍ର ସଙ୍ଗେ ସଙ୍ଗେ ସେ ପଦେ ପଦେ ଭୌଗୋଳିକ ନାମ ମାନ ମଧ୍ୟ ଯଥାଯଥ ଭାବରେ ପ୍ରକାଶ କରିଛନ୍ତି । ଇତିହାସ ଅନୁସାରେ କପିଳେଶ୍ୱର ପ୍ରଥମେ କୋଣ୍ଡବିଡ଼ୁ ଓ ରାଜମହେନ୍ଦ୍ରୀ ସହିତ ରେଡ୍ଡୀ ରାଜ୍ୟ ଏବଂ ତା' ପରେ ଦେବରକୋଣ୍ଡା ଉଆରଙ୍ଗଲ ସହିତ ତେଲଙ୍ଗାନା ଅଧିକାର କରିଥିଲେ । ତେଲିଙ୍ଗାନା ଅଧିକାର ପରେ ସେ ବିଜୟନଗରର କରଦ ରାଜ୍ୟ କାଞ୍ଚି ଓ ସର୍ବଶେଷରେ ଖାସ୍ ବିଜୟନଗର ରାଜ୍ୟକୁ ଆକ୍ରମଣ କରିଥିଲେ । ସାରଳା ମହାଭାରତରେ ଏହି କ୍ରମ ଅକ୍ଷୁଣ୍ଣ ଭାବରେ ପ୍ରଦର୍ଶିତ ହୋଇଛି । ସାରଳା ଦାସ ଓଡ଼ିଶାର ଗଜପତିଙ୍କ ଆଶ୍ରିତ କବି ଥିବାର କୌଣସି ପ୍ରମାଣ ନାହିଁ । ତା' ଛଡ଼ା ସେ ତାଙ୍କ ମହାଭାରତରେ ଇତିହାସକୁ ଏପରି ଅନ୍ତଃସ୍ରୋତା ଫଲ୍‌ଗୁ ପରି ରଖିଛନ୍ତି ଯେ ତାକୁ ଇତିହାସ ବୋଲି ହଠାତ୍ ବୁଝିନେବା କାହାରି ସାଧ୍ୟ ନାହିଁ । ଏସବୁ କାରଣରୁ ସେ ଐତିହାସିକ ସତ୍ୟକୁ ଅଧିକ ଦକ୍ଷତା ସହକାରେ ଓ ଅଧିକ ସ୍ୱାଧୀନ ଭାବରେ ପ୍ରକାଶ କରିଯାଇଛନ୍ତି ।

---

Sultan. The reasons which he brings forward in support of his contention are not very convincing." Further Sources of Vijayanagara History, Vol. I, p. 114.

ଆମ୍ଭେମାନେ ସାରଳା ସାହିତ୍ୟର ଆଲୋଚନାରେ ଅଧିକ ଦୂର ଅଗ୍ରସର ହେଲେ ଏହି ମତର ସତ୍ୟତା ଆପେ ଆପେ ଜଣାପଡ଼ିବ । ଆଶ୍ଚର୍ଯ୍ୟର କଥା ଏହି ଯେ ଗଜପତିଙ୍କ ଯେଉଁ ଯେଉଁ ଜାଗାରେ ହାରିଥିବା କଥା ବା ସମାଧି କରିଥିବା କଥା ଇତିହାସରୁ ମିଳୁଛି, ସାରଳା ମହାଭାରତରେ ସେହି ସେହି ଜାଗାରେ ପାଣ୍ଡବମାନଙ୍କ ହାରିଥିବା ଓ ସମାଧି କରିଥିବା କଥା ଉଲ୍ଲେଖ ରହିଛି । ପକ୍ଷାନ୍ତରେ କବି ଗଙ୍ଗାଧର ଥିଲେ ବିଜୟନଗରର ରାଜାଙ୍କ ଆଶ୍ରିତ କବି ଆଉ ତାଙ୍କ ଭୌଗୋଳିକ ଓ ଐତିହାସିକ ଜ୍ଞାନ ବିଜୟନଗରର ଚତୁଃସୀମା ବାହାରକୁ ପ୍ରସାରିତ ହୋଇଥିବାର ପ୍ରମାଣ ତାଙ୍କ ଗ୍ରନ୍ଥରୁ ମିଳୁନାହିଁ । ଉଭୟ ରାଜ୍ୟର ସଂଘର୍ଷ ସମ୍ବନ୍ଧରେ ସେ ଯେଉଁ ସାମାନ୍ୟ କେତୋଟି କଥା ତାଙ୍କ ଗ୍ରନ୍ଥରେ ଲେଖିଛନ୍ତି ତାହା ପ୍ରଧାନତଃ ଗୁଜବରେ ପ୍ରକାଶ କରିଛନ୍ତି । ଏଣୁ ସେଥିରେ ବିଜୟନଗର ରାଜାଙ୍କ ପ୍ରଶଂସା ଛଡ଼ା ନିନ୍ଦା ସ୍ଥାନ ପାଇବାର ପରିସର ଆଦୌ ନାହିଁ ।

ଉଲ୍ଲିଖିତ ଦୃଷ୍ଟିଭଙ୍ଗିରୁ ଦେଖିଲେ ସାରଳା ଦାସଙ୍କ ବର୍ଣ୍ଣନା ହିଁ ଅଧିକ ବିଶ୍ୱାସଯୋଗ୍ୟ ବୋଲି ପ୍ରତିପାଦିତ ହୁଏ । ବିଜୟନଗର ଆକ୍ରମଣ କଲାବେଳେ ଗଜପତି କପିଳେଶ୍ୱର ଯେ ବାହାମନି ସୁଲତାନଙ୍କ ସାହାଯ୍ୟ ନେଇଥିଲେ, ସାରଳା ଦାସଙ୍କ ବର୍ଣ୍ଣିତ କୌଣସି ଆଖ୍ୟାୟିକାରୁ ଏ କଥାର ଆଭାସ ଆଦୌ ମିଳେ ନାହିଁ । ବରଞ୍ଚ କବି ବାହାମନି ରାଜ୍ୟର ପ୍ରତୀକ କମାଗୋଷ୍ଠକୁ ଅର୍ଜୁନଙ୍କ ରଥରେ ବନ୍ଧାଇ ତାଙ୍କୁ ନେଇ ସାଲୁ ବା ସାଲୁବ ନରସିଂହଙ୍କ ରାଜ୍ୟରେ ପହଞ୍ଚାଇଛନ୍ତି । ସେଠାରେ ସାଲୁ ରାଜା କମାଗୋଷ୍ଠକୁ ଛାଡ଼ି ଦେବାପାଇଁ ଅର୍ଜୁନଙ୍କୁ ଅନୁରୋଧ କରିଛନ୍ତି, ମାତ୍ର ଅର୍ଜୁନ ବିରକ୍ତ ହୋଇ କହିଛନ୍ତି—

"ପାର୍ଥ ବୋଲେ ମହାରାଜା ଅଟୁ ତୁହି ସାଲୁ
କମାଗୋଷ୍ଠ ରାଜା ପାଇଁ କିମ୍ପା ତୁହି ବୋଲୁ ।"

ସାଲୁ ବା ସାଲୁବ ନରସିଂହ କମାଗୋଷ୍ଠକୁ ଛାଡ଼ି ଦେବାପାଇଁ କାହିଁକି ଅର୍ଜୁନ ବା ଓଡ଼ିଶାର ରାଜାଙ୍କୁ ଅନୁରୋଧ କରିଥିଲେ, ସେ କଥା ଦ୍ୱିତୀୟ ଅଧ୍ୟାୟରେ ଆଲୋଚନା କରାଯାଇଛି । ଏଠାରେ ତା'ର ପୁନରାବୃତ୍ତି ଅନାବଶ୍ୟକ ।

ମୋଟ କଥା, କବି ଗଙ୍ଗାଧରଙ୍କ ବର୍ଣ୍ଣନାକୁ ସମ୍ପୂର୍ଣ୍ଣ ସତ୍ୟ ବୋଲି ଧରାଯାଇ ନ ପାରେ, ମାତ୍ର ସେଥିରେ ସାମାନ୍ୟ ସତ୍ୟ ଥାଇ ପାରେ । କପିଳେଶ୍ୱରଙ୍କ ଯେଉଁ ସୈନ୍ୟସାମନ୍ତ ବିଜୟନଗର ରାଜ୍ୟ ଆକ୍ରମଣ କରିଥିଲେ, ସେମାନଙ୍କ ମଧ୍ୟରେ କେତେକ ମୁସଲମାନ ଥିବା ଆଦୌ ଅସମ୍ଭବ ନୁହେଁ । ପୁରୁଷୋତ୍ତମଦେବ ଓ

ପ୍ରତାପରୁଦ୍ର ଦେବଙ୍କ ସୈନ୍ୟ ମଧ୍ୟରେ ଯେ କେତେକ ମୁସଲମାନ ଥିଲେ, ଏହାର ପ୍ରମାଣ ଇତିହାସରୁ ମିଳୁଛି । ଏହି ସମୟରେ ଖାଲି ଓଡ଼ିଶା ନୁହେଁ, ଅନ୍ୟାନ୍ୟ ପ୍ରତାପଶାଳୀ ହିନ୍ଦୁ ରାଜ୍ୟ ମଧ୍ୟ ସୁନିପୁଣ ମୁସଲମାନ ତୀରନ୍ଦାଜ ଓ ଘୋଟକାରୋହୀମାନଙ୍କୁ ବାଡ଼ବୃତ୍ତି ଦେଇ ସେମାନଙ୍କୁ ସୈନ୍ୟସାମନ୍ତର ଅନ୍ତର୍ଭୁକ୍ତ କରି ରଖୁଥିଲେ । ବିଜୟନଗରର ରାଜାମାନେ ବାରମ୍ବାର ବାହାମନି ସୁଲତାନ୍‌ମାନଙ୍କ ଦ୍ୱାରା ପରାଜିତ ହେଉଥିବାରୁ ଦ୍ୱିତୀୟ ଦେବରାୟ ବଡ଼ ଚିନ୍ତାରେ ପଡ଼ିଥିଲେ ଓ ତାଙ୍କ ପାରିଷଦ୍‌ବର୍ଗଙ୍କୁ ଡକାଇ ମନ୍ତ୍ରଣା କରିଥିଲେ । ମନ୍ତ୍ରଣାରେ ଏହାହିଁ ସିଦ୍ଧାନ୍ତ ହୋଇଥିଲା ଯେ ମୁସଲମାନ ସୈନ୍ୟରେ ଅଧିକ ସୁନିପୁଣ ତୀରନ୍ଦାଜ ଓ ଘୋଟକାରୋହୀ ଥିବାରୁ ସେମାନେ ହିନ୍ଦୁମାନଙ୍କୁ ପରାସ୍ତ କରିପାରୁଥିଲେ । ସେହି ସମୟଠାରୁ ଅର୍ଥାତ୍ ୧୪୪୨ ଖ୍ରୀଷ୍ଟାବ୍ଦରୁ ଦ୍ୱିତୀୟ ଦେବରାୟ ବହୁସଂଖ୍ୟକ ମୁସଲମାନଙ୍କୁ ବାଡ଼ବୃତ୍ତି ଦେଇ ତାଙ୍କ ରାଜଧାନୀରେ ରଖିଥିଲେ । ଏପରିକି ସେମାନଙ୍କ ପାଇଁ ସେ ମସ୍‌ଜିଦ୍ ତୋଳି ଦେଇଥିଲେ, ଆଉ କାଳେ ମୁସଲମାନମାନେ ହିନ୍ଦୁ ରାଜାଙ୍କୁ ନମସ୍କାର କରିବା ପାଇଁ କୁଣ୍ଠାବୋଧ କରିବେ ସେଥିପାଇଁ ତାଙ୍କ ସିଂହାସନରେ କୋରାନ୍ ଗ୍ରନ୍ଥକୁ ରଖିଥିଲେ (୩) । ଆବଶ୍ୟକତାବୋଧରୁ ଦ୍ୱିତୀୟ ଦେବରାୟ ଯେପରି ତାଙ୍କ ସୈନ୍ୟ-ସାମନ୍ତ ମଧ୍ୟରେ ମୁସଲମାନ୍‌ମାନଙ୍କୁ ସ୍ଥାନ ଦେଇଥିଲେ, କପିଳେଶ୍ୱର ମଧ୍ୟ ଠିକ୍ ସେହିପରି ଆବଶ୍ୟକତାବୋଧରୁ କେତେକ ମୁସଲମାନ୍‌ମାନଙ୍କୁ ତାଙ୍କ ସୈନ୍ୟ ବିଭାଗରେ ସ୍ଥାନ ଦେଇଥିବା ଅସମ୍ଭବ ନୁହେଁ । ଗଜପତିଙ୍କ ହିନ୍ଦୁ ସୈନ୍ୟ ମଧ୍ୟରେ ମୁସଲମାନ୍‌ମାନଙ୍କୁ ଦେଖି ବିଜୟନଗରବାସୀ ତଥା କବି ଗଙ୍ଗାଧର ସେମାନଙ୍କୁ ବାହାମନି ସୈନ୍ୟ ବୋଲି ଭ୍ରମରେ ପଡ଼ିଥିବା ମଧ୍ୟ ଅସମ୍ଭବ ନୁହେଁ ।

ମୁସଲମାନ୍ ହେଲେ ଯେ ମୁସଲମାନଙ୍କ ଅନୁଗତ ହେବ, ଏପରି ନିୟମ ଭାରତ ଭାଗ ଭାଗ ହେବାବେଳ ଛଡ଼ା ଭାରତ ଇତିହାସର ଅନ୍ୟ କୌଣସି ସମୟରେ କାର୍ଯ୍ୟକାରୀ ହୋଇ ନ ଥିଲା । ସ୍ୱାର୍ଥ ଭେଦରେ ଭାରତର ମୁସଲମାନ୍‌ମାନଙ୍କ ମଧ୍ୟରେ ସୁଦ୍ଧା ବହୁ ବିଭାଗ ସୃଷ୍ଟି ହୋଇଥିଲା । ଯେଉଁମାନଙ୍କ ବାହାମନି ଇତିହାସରେ ଜ୍ଞାନ ଅଛି, ସେମାନେ ଜାଣନ୍ତି ଯେ ବାହାମନି ସୁଲ୍‌ତାନ୍‌ଙ୍କ ସୈନ୍ୟ ଓ କର୍ମଚାରୀମାନଙ୍କ ମଧ୍ୟରେ ଥିବା ଦେଶୀଦଳ ଓ ବିଦେଶୀଦଳ ମଧ୍ୟରେ ଯେଉଁ ବିଷମ ଈର୍ଷା ଓ ଶତ୍ରୁତା ଥିଲା, ବାହାମନି-ରାଜ୍ୟ ତାହାରି ଫଳରେ ହିଁ ଶେଷରେ ଧ୍ୱଂସ ହୋଇ ଖଣ୍ଡ ବିଖଣ୍ଡ ହୋଇଗଲା । ଦେଶୀଦଳର ଷଡ଼ଯନ୍ତ୍ର ଫଳରେ ବହୁଦର୍ଶୀ ଓ ସୁଦକ୍ଷ ବୃଦ୍ଧ ମହମ୍ମଦ ଗାଉଆନ୍‌ଙ୍କୁ ପ୍ରାଣବଳି ଦେବାକୁ ପଡ଼ିଥିଲା । ବସ୍ତୁତଃ ବାହାମନି ଇତିହାସର ଶେଷ ପର୍ଯ୍ୟାୟ ଏହି ଉଭୟ ଦଳ ସଂଘର୍ଷର ଇତିହାସ କହିଲେ ଚଳେ । ଦେଶୀଦଳ ଶେଷ

(୩) Sewel—A Forgotten Empire, p. 72

ପର୍ଯ୍ୟନ୍ତ ଜର୍ଯ୍ୟୀ ହୋଇଥିଲେ, ଆଉ ମୃଦ୍ଧବେଳେ ବାହାମନ-ସୈନ୍ୟଦ୍ୱାରା ବିଜୟ ନଗରରୁ ବନ୍ଦୀ ହୋଇ ଆସିଥିବା ଦୁଇଟି ବ୍ରାହ୍ମଣ ସେନାପତିର ବଂଶଧରମାନେ ମୁସଲମାନ୍ ହୋଇ ପରେ ଧ୍ୱସ୍ତ ବାହାମନ ରାଜ୍ୟର ଦୁଇଟି ଶାଖା ରାଜ୍ୟ ଅଧିକାର କରିଥିଲେ । ଦେଶୀଦଳ ଦାକ୍ଷିଣାତ୍ୟର ମୁସଲମାନମାନଙ୍କ ଦ୍ୱାରା ଓ ବିଦେଶୀ ଦଳ ମଧ୍ୟ-ଏସିଆ ଓ ଆଫଗାନିସ୍ଥାନରୁ ଆସିଥିବା ମୁସଲମାନ୍‌ମାନଙ୍କଦ୍ୱାରା ସଂଗଠିତ ହୋଇଥିଲା । ବାହାମନ ସୁଲତାନ୍‌ମାନେ ବେଶୀଭାବରେ ବିଦେଶୀ ଦଳଦ୍ୱାରା ଚାଳିତ ହୋଇଥିବାରୁ ସେମାନଙ୍କ ରାଜ୍ୟ ଧ୍ୱଂସ ପାଇଗଲା ।

ଲେଖକ ପ୍ରଥମ ଅଧ୍ୟାୟ (ଖ) ରେ ଜମାଗୋଷ୍ଠ ଓ ଦରଦସେନର ଆଖ୍ୟାୟିକା ଆଲୋଚନା କଲାବେଳେ ସାରଳା ଦାସ ବାହାମନ ସୁଲ୍‌ତାନ୍‌ଙ୍କୁ କାହିଁକି ଦରଦସେନ ନାମ ଦେଲେ, ତାହା ବୁଝିବା ପାଇଁ କ୍ଷମ ହୋଇ ନ ଥିଲା, ମାତ୍ର ବର୍ତ୍ତମାନ ଏହି ନାମର ତାତ୍ପର୍ଯ୍ୟ ବୁଝିପାରୁଛି । ଦରଦ ବାହ୍ଳିକର ରାଜା ଥିଲେ, ଆଉ ଜରାସନ୍ଧ, ଶିଶୁପାଳ, ପୌଣ୍ଡ୍ର-ବାସୁଦେବ ପ୍ରଭୃତି ଯେଉଁ ଭାରତୀୟ ରାଜମାନେ ଶ୍ରୀକୃଷ୍ଣଙ୍କ ବିପକ୍ଷ ଦଳ ଥିଲେ ଦରଦ୍ ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ସାରଳା ଦାସ ତାଙ୍କ ମହାଭାରତରେ ଦରଦଙ୍କ କଥା ଲେଖି ନାହାନ୍ତି, ମାତ୍ର ସଂସ୍କୃତ ମହାଭାରତରେ ଦରଦଙ୍କ ପ୍ରତାପ କଥା ବର୍ଣ୍ଣିତ ଅଛି । ରାଜସୂୟ ଯଜ୍ଞ ସମାପନ ପରେ ଶ୍ରୀକୃଷ୍ଣଙ୍କୁ ଅର୍ଘ୍ୟ ଦେବାପାଇଁ ଯେତେବେଳେ ପ୍ରସ୍ତାବ ହେଲା ଓ ଭୀଷ୍ମ ସେହି ପ୍ରସ୍ତାବକୁ ଅନୁମୋଦନ କରି ଶ୍ରୀକୃଷ୍ଣଙ୍କ ଗୁଣ ଗାନ କଲେ, ଶିଶୁପାଳ ତା'ର ଘୋର ପ୍ରତିବାଦ କରି ଭୀଷ୍ମଙ୍କୁ କହିଲେ—"ଯେ ଜନ୍ମ ହେଉଁ ହେଉଁ ପୃଥିବୀ ଫାଟି ପଡ଼ିଥିଲା, ବାହ୍ଳିକର ସେହି ରାଜଶ୍ରେଷ୍ଠ ଦରଦଙ୍କୁ ହିଁ ପ୍ରଶଂସା କର. (୪) ।" ଆଧୁନିକ ବାଲ୍‌ଖ୍‌କୁ ହିଁ ପ୍ରାଚୀନ କାଳରେ ବାହ୍ଳିକ ବୋଲି କୁହାଯାଉଥିଲା (୫) । ହିନ୍ଦୁକୋଷର ଅପରପାର୍ଶ୍ୱରେ ତୁର୍କିସ୍ଥାନ ବା ମଧ୍ୟଏସିଆର ବାଦାକ୍ଷନ୍ ନିକଟରେ ଏହା ଅବସ୍ଥିତ । ବାଲଖ ଓ ବାଦାକ୍ଷନ୍‌କୁ ଜୟ କରିବାପାଇଁ ମୋଗଲ-ସମ୍ରାଟ ସାହାଜାହାନ୍ କୋଟି କୋଟି ଟଙ୍କା ବ୍ୟୟ କରିଥିବା କଥା ଇତିହାସ-ପ୍ରସିଦ୍ଧ

(୪) ଦରଦଂ ସ୍ତୁହି ବାହ୍ଳିକମିମଂ ପାର୍ଥିବ-ସତ୍ତମମ୍ ।
ଜାୟମାନେନ ଯେନେୟମଭବଦ୍ ଦାରିତା ମହୀ ।
ଶ୍ରୀ ମନ୍ମହାଭାରତମ୍ (କୃଷ୍ଣାଚାର୍ଯ୍ୟ-ବ୍ୟାସାଚାର୍ଯ୍ୟ, ବମ୍ବେ, ୧୯୦୭)
ସଭାପର୍ବ, ୬୭ ଅଧ୍ୟାୟ, ପୃ-୯୫ ।

(୫) The Geographical Dictionary of Ancient and Medieval India (N.L.De), p. 19

ହୋଇ ରହିଛି । ଅତଏବ ମହାଭାରତ-ବର୍ଣ୍ଣିତ ଦରଦ ଥିଲେ ମଧ୍ୟ-ଏସିଆର ଜଣେ କୃଷ୍ଣଦ୍ରୋହୀ ରାଜା । ଦରଦଙ୍କ ନାମାନୁସାରେ ସମସ୍ତ ମଧ୍ୟ-ଏସିଆବାସୀଙ୍କୁ ମଧ୍ୟ ସଂସ୍କୃତ ମହାଭାରତରେ ଦରଦ ବୋଲି ଆଖ୍ୟାତ କରାଯାଇଛି (୬) । ସାରଳା ଦାସ ବାହାମନି ରାଜାଙ୍କୁ ଦରଦସେନ ନାମ ଦେଇ ବିଚକ୍ଷଣ ଶକ୍ତି ଦେଖାଇଛନ୍ତି । ବାହାମନି ରାଜ୍ୟର ମୁସଲମାନ-ରାଜା ଏକ ପକ୍ଷରେ ଜଗନ୍ନାଥ ବା କୃଷ୍ଣଦ୍ରୋହୀ ଥିଲେ ଓ ଅନ୍ୟ ପକ୍ଷରେ ମଧ୍ୟଏସିଆରୁ ଆସିଥିବା ସୈନ୍ୟମାନଙ୍କ ଉପରେ ନିର୍ଭର କରୁଥିଲେ । କବି ବାହାମନି ରାଜାଙ୍କୁ ଦରଦସେନ (ଦରଦମାନେ ଅର୍ଥାତ୍ ମଧ୍ୟ-ଏସିଆବାସୀମାନେ ସେନା ଯାହାର) ନାମରେ ଆଖ୍ୟାତ କରି ଏକାଧାରରେ ଯେଉଁ ଶାସ୍ତ୍ର ଜ୍ଞାନ ଓ ରାଜନୀତି-ଜ୍ଞାନ ଦେଖାଇଛନ୍ତି, ତା'ର ପଟାନ୍ତର ନାହିଁ କହିଲେ ଚଳେ । ବାହାମନି ସୁଲତାନ୍ ଯେ ବିଦେଶୀଦଳ ଉପରେ ନିର୍ଭରଶୀଳ ଥିଲେ, ଏ କଥା ଯେଉଁ ଦେଶର କବିଙ୍କୁ ଜଣାଥିଲା, ସେହି ଦେଶର ବିଚକ୍ଷଣ ରାଜନୀତିଜ୍ଞ ଓ ପ୍ରବଳ ପରାକ୍ରମ ଗଜପତି ରାଜା କପିଳେଶ୍ୱରଙ୍କୁ ଯେ ତାହା ଜଣା ନ ଥିଲା, ଏପରି ଭାବିବା ଯୁକ୍ତି-ସଙ୍ଗତ ହେବ ନାହିଁ । ଏଣୁ 'କଣ୍ଟକେନୈବ କଣ୍ଟକଂ' ନୀତିରେ କପିଳେଶ୍ୱର ଦେଶୀ ମୁସଲମାନ୍ ଦଳର ସହଯୋଗିତାରେ ବିଦେଶୀ ଦଳ ଉପରେ ନିର୍ଭରଶୀଳ ବାହାମନି ସୁଲତାନଙ୍କ ଅନେକ ରାଜ୍ୟ ଅଧିକାର କରିଥିବା କଥା ଆଦୌ ଅସମ୍ଭବ ମନେ ହେବ ନାହିଁ ।

ଦରଦସେନ ନାମଟି ଯେପରି ଅତ୍ୟନ୍ତ ଅର୍ଥସୂଚକ, କବିବର୍ଣ୍ଣିତ ପୁଣ୍ଡରୀକ ବାସୁଦେବ ନାମଟି ମଧ୍ୟ ସେହିପରି ଅର୍ଥସୂଚକ । ଏହି ନାମଦ୍ୱାରା ଓ ତତ୍‌ସହିତ

---

(୬) ଗୃହୀତ୍ୱା ତୁ ବଲଂ ସାରଂ ଫଲ୍‌ଗୁନଃ ପାଣ୍ଡୁନନ୍ଦନଃ ।
ଦରଦାନ୍ ସହ କାମ୍ବୋଜୈରଜୟତ୍ପାକଶାସନିଃ ॥ ସଭା, ୨୮ ଅଧ୍ୟାୟ, ପୃ. ୪୫ ।

"ପାଣ୍ଡୁପୁତ୍ର-ଇନ୍ଦ୍ରପୁତ୍ର ଅର୍ଜୁନ ବଳିଷ୍ଠ ବଳିଷ୍ଠ ସୈନ୍ୟ ନେଇ କାମ୍ବୋଜମାନଙ୍କ ସହିତ ଦରଦମାନଙ୍କୁ ମଧ୍ୟ ଜୟ କରିଥିଲେ ।"

କଲହଣଙ୍କ ରାଜତରଙ୍ଗିଣୀରେ ମଧ୍ୟ ବର୍ଣ୍ଣିତ ଅଛି ଯେ କାଶ୍ମୀରର ରାଜା ମୁକ୍ତାପୀଡ଼ ଲଳିତାଦିତ୍ୟ ଦର୍ଦମାନଙ୍କୁ ପରାସ୍ତ କରିଥିଲେ ।

More importance attached to those parts of Kalhana's narrative which refer to his truimphs over Tibetans, Dards and the Turks on the Indus and the slaughter of a king of Gauda" An Advance History of India—Mazumdar, p. 163.

ବର୍ଣ୍ଣିତ ଅନ୍ୟାନ୍ୟ ଘଟନା ଦ୍ୱାରା ସାରଳା ଦାସ ଇତିହାସର ଅନ୍ୟ ଏକ ସମସ୍ୟା ସମାଧାନ ପାଇଁ ମଧ୍ୟ ଉପାଦାନ ରଖିଯାଇଛନ୍ତି । କପିଳେଶ୍ୱର ଗଜପତି ଯେ କାବେରୀ ନଦୀ ଅବବାହିକାର ଶ୍ରୀରଙ୍ଗମ୍, ତ୍ରିଚିନାପଲ୍ଲୀ ଓ ତାଞ୍ଜୋର ପର୍ଯ୍ୟନ୍ତ ଆକ୍ରମଣ କରି ସମସ୍ତ ଉପକୂଳ ଅଞ୍ଚଳ ଅଧିକାର କରିଥିଲେ, ଏ ବିଷୟରେ ମତଦ୍ୱୈଧ ନାହିଁ । ବିଶେଷତଃ ଦକ୍ଷିଣ ଆର୍କଟ ଜିଲ୍ଲାର କୁନ୍ନୁରୁ କାମ୍ବାଇ ଏବଂ ତ୍ରିଚିନାପଲ୍ଲୀ ଜିଲ୍ଲାର ଶ୍ରୀରଙ୍ଗମରୁ ପ୍ରାପ୍ତ ପ୍ରାଚୀନ ଲେଖମାନ ଏହି ଅଧିକାର ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ପ୍ରମାଣ ଯୋଗାଉଛି । ବିଜୟନଗର ଐତିହାସିକମାନେ ମଧ୍ୟ ସ୍ୱୀକାର କରୁଛନ୍ତି—"As a result of this expedition, the kingdom of Orissa reached the greatest extent which it was ever destined to reach, and Kapileswara became the master of a far-flung empire extending from the Ganges to the Kaveri. Further Sources of Vijayanagara History, Vol. I, p. 120. ଏହି ଅଭିଯାନ ଫଳରେ ଓଡ଼ିଶା ରାଜ୍ୟର ବିସ୍ତୃତି ଚରମ ସୀମାରେ ପହଞ୍ଚିଥିଲା ଓ କପିଳେଶ୍ୱର ଗଙ୍ଗାଠାରୁ କାବେରୀ ନଦୀ ପର୍ଯ୍ୟନ୍ତ ସୁବିସ୍ତୃତ ସାମ୍ରାଜ୍ୟର ଅଧୀଶ୍ୱର ହୋଇଥିଲେ; କିନ୍ତୁ ପ୍ରତାପରୁଦ୍ର ଗଜପତିଙ୍କ ଅନନ୍ତବର୍ମଣ ତାମ୍ର ଶାସନରେ କପିଳେଶ୍ୱରଙ୍କ ଦ୍ୱାରା ବିଜୟନଗର-ରାଜଧାନୀ ଅଧିକୃତ ହୋଇଥିବା ସ୍ପଷ୍ଟ କଥା ସ୍ପଷ୍ଟ ଭାବରେ ଲେଖା ହୋଇଥିଲେ ମଧ୍ୟ ଏ କଥା ସ୍ୱୀକାର କରିବାକୁ ଐତିହାସିକମାନେ କୁଣ୍ଠିତ ହୋଇଛନ୍ତି । ଏ କ୍ଷେତ୍ରରେ ମଧ୍ୟ ସେମାନେ ବିଜୟନଗର-ରାଜାଙ୍କ ଆଶ୍ରିତ ଓ ସ୍ତାବକ କବି ଗଙ୍ଗାଧରଙ୍କ କଥାକୁ ଅତିମାତ୍ରାରେ ବିଶ୍ୱାସ କରି ତାମ୍ର ଶାସନର ପ୍ରମାଣକୁ ଏକପ୍ରକାର ଅଗ୍ରାହ୍ୟ କରିଛନ୍ତି । କପିଳେଶ୍ୱରଙ୍କ ସୈନ୍ୟ ବିଜୟନଗର ଦୁର୍ଗ ଅବରୋଧ କରିବା ସମୟର ଘଟନାକୁ ବର୍ଣ୍ଣନା କରି କବି ଗଙ୍ଗାଧର ଲେଖିଛନ୍ତି—"ଗୁହାରୁ ସିଂହ ଶିଶୁ ବହିର୍ଗତ ହେଲା ପରି ମଲ୍ଲିକାର୍ଜ୍ଜୁନ ତାଙ୍କ ରାଜଧାନୀରୁ ବହିର୍ଗତ ହୋଇଥିଲେ ଓ ଅବରୋଧକାରୀମାନଙ୍କ ସୈନ୍ୟଙ୍କୁ ଯୁଦ୍ଧରେ ପରାସ୍ତ କରି ତଡ଼ି ଦେଇଥିଲେ ( Further Sources, p. 115 )" ବିଜୟନଗରର ରାଜା ମଲ୍ଲିକାର୍ଜ୍ଜୁନ ସିଂହଶିଶୁ ପରି ବାହାରି ଆସିବା ମାତ୍ରେ ଯେ ଶତମୂର୍ଦ୍ଧରେ ବିଜୟୀ କପିଳେଶ୍ୱରଙ୍କ ସୈନ୍ୟ ଶୃଗାଳ ଶିଶୁପରି ପଳାଇ ଆସିଥିବେ, ଏପରି କଥା ମୂଳରୁ ହିଁ ବିଶ୍ୱାସଯୋଗ୍ୟ ହେଉନାହିଁ । ସାରଳା ଦାସ ଆମ୍ଭମାନଙ୍କୁ ଏ ବିଷୟରେ କି ପ୍ରମାଣ ଯୋଗାଉଛନ୍ତି, ତାହା ହିଁ ବର୍ତ୍ତମାନ ଆଲୋଚନା କରାଯାଉ ।

(ଚ) ଆଖ୍ୟାୟିକା—ଶ୍ରୀମନ୍ତଙ୍କର ପୁଣ୍ଡ୍ରରାଜ-ବାସୁଦେବ ରାଜା ସହିତ ଯୁଦ୍ଧ ଓ ତାହାର ବନ୍ଧନ । ସଭାପର୍ବ, ପୃ. ୧୦୨—୧୦୬ । ସାରାଂଶ—ରାଜସୂୟ ଯଜ୍ଞ

ଉପଲକ୍ଷ୍ୟରେ ଦିଗ୍‌ବିଜୟ କରି ଯାଉଁ ଯାଉଁ ଭୀମ କରବୀର ଦେଶରେ ଯାଇ ପହଞ୍ଚିଲେ । ସେଠାରେ କୌଶିକୀ ନଦୀ ନୈର୍ଋତ ମେଖଳାରୁ ବାହାରି ବହି ଚାଲିଛି । ସେ ଦେଶର ରାଜାଙ୍କ ନାମ ପୁଣ୍ଡ୍ରୀକ-ବାସୁଦେବ । ସେ ଅସୀମ ଧନଶାଳୀ ଓ ପ୍ରତାପଶାଳୀ, ମାତ୍ର ସେ ଜଗନ୍ନାଥଙ୍କୁ ନିନ୍ଦା କରନ୍ତି । ଜଗନ୍ନାଥଙ୍କ ଦେହର ରଙ୍ଗ କଳାପରି ତାଙ୍କ ଦେହର ରଙ୍ଗ ମଧ୍ୟ କଳା । ସେ କାଠର ହାତରେ କାଠ ଶଙ୍ଖ ଚକ୍ର ଧରି କାଠର ଗରୁଡ଼ ଉପରେ ବସି ବାହାରନ୍ତି । ଭୀମସେନଙ୍କ ସୈନ୍ୟ ନଦୀର ପୂର୍ବ ଭାଗରେ ଥିବା କଥା ଜାଣି ପୁଣ୍ଡ୍ରୀକ ବାସୁଦେବଙ୍କ ସୈନ୍ୟ ନଦୀର ପଶ୍ଚିମ-ଭାଗରୁ ଶର-ବୃଷ୍ଟି କଲେ । ଏହା ଦେଖି ଭୀମ ପ୍ରଥମେ ନଦୀକୁ ଡେଇଁପଡ଼ି ନଦୀ ପାରି ହୋଇଗଲେ ଓ ପରେ ତାଙ୍କ ସୈନ୍ୟ ମଧ୍ୟ ତାଙ୍କୁ ଅନୁସରଣ କରି ନଦୀ ଅତିକ୍ରମ କରିଗଲେ । ଭୀଷଣ ଯୁଦ୍ଧ ହେଲା । ଭୀମ ପୁଣ୍ଡ୍ରୀକ-ବାସୁଦେବଙ୍କୁ ଯୁଦ୍ଧରେ ହରାଇ ନିଜ ରଥରେ ତାଙ୍କୁ ବାନ୍ଧି ପକାଇଲେ, ଆଉ କହିଲେ, ଯେ ଜଗନ୍ନାଥଙ୍କୁ ନିନ୍ଦା କରୁଛି, ସେ ତାକୁ କଦାପି ଛାଡ଼ିବେ ନାହିଁ ।

ଉଦ୍ଧୃତାଂଶ :—

ସେଠାରୁ ଉତ୍ତର ମୂର୍ତ୍ତି ହୋଇଣ ମାରୁତି
କରବୀର ଆଡ଼କୁ ସେ ରଥ ଚଳାବନ୍ତି ।
ତହିଁ କଉଶିକୀ ନାମେ ଅଛି ନଦୀଗୋଟି
ନୈର୍ଋତ ମେଖଳାରୁ ସେ ଧାରି ଆସେ ଫୁଟି ।
× × ×
ଭୀମସେନ ରହିଛନ୍ତି ନଦୀ ପୂର୍ବ ଭାଗେ
କରବୀର ଥାଟ ମିଳେ ପଶ୍ଚିମର ଭାଗେ ।
ପୁଣ୍ଡ୍ରୀକ-ବାସୁଦେବ-ପକ୍ଷ ଯେତେ ଯୋଧୀ
ନଦୀ ସେପାରେ ଥାଇଣ ଭୀମେ ଶର ବିନ୍ଧି ।
× × ×
ନଦୀ ପାରି ହୋଇ ବୀର ଉଠୁଁ ଗଲଗାଜି
କରବୀର ସଇନଏ ପଳାଇଲେ ଭାଜି ।
ଏକା ମାରୁତି ଅଛନ୍ତି ପଶ୍ଚିମର କୂଳେ
ଭୀମଙ୍କର ସୈନ୍ୟ ଡେଇଁ ପଡ଼ିଲେ ସେ ଜଳେ ।
× × ×
ଲକ୍ଷେ ରାଜାଙ୍କ ଭଣ୍ଡାରେ ଥିବ ଯେତେ ଧନ
ପୁଣ୍ଡ୍ରୀକ ମୁକୁଟକୁ ନୋହିବ ସମାନ ।

କାଠ ବେନଭୁଜେ ବ୍ରେଷ୍ଣୁ ଶଙ୍ଖ ଚକ୍ରଧାରେ
କୃଷ୍ଣେ [illegible] କାଠ ଖେଗପୃଷ୍ଠେ [illegible] ।
[illegible] ପ୍ରତାପାଗ୍ନି କାଳ ବସୁଦେବ-ବଳା
ଜଗନ୍ନାଥଙ୍କ ସ୍ୱରୂପେ ବର୍ଣ୍ଣି ଦଶେ କଲା ।

×          ×          ×

ଶ୍ରୀମ ବୋଲେ ପ୍ରଭୁଙ୍କୁ ଏ କରଇ ଅବଜ୍ଞା
ମୋ' ଦେହେ ସହି ନୁହଇ ଏସନ ପ୍ରତିଜ୍ଞା ।

×          ×          ×

ଏହା କହି ରାଜାକେଶ ଗ୍ରହି ପାଟଡ଼ୋରେ
ବନ୍ଧନ କଲେ ତାହାଙ୍କୁ ରଥର ଖମ୍ବରେ ।

**ଟୀକା**—ପ୍ରତାପରୁଦ୍ର ଦେବଙ୍କ ଅନନ୍ତବର୍ମ୍ମଣ ତାମ୍ର ଶାସନର ଅଷ୍ଟମ ଶ୍ଳୋକରେ ବର୍ଣ୍ଣିତ ଅଛି ଯେ, କପିଳେଶ୍ୱର କର୍ଣ୍ଣାଟର ରାଜଧାନୀ ବିଦ୍ୟାନଗରୀକୁ ଅବରୋଧ କରି ତାହାର ରାଜାଙ୍କୁ କର ଦେବାପାଇଁ ବାଧ୍ୟ କରିଥିଲେ । ବିଜୟ-ନଗରର ଅପରନାମ ଥିଲା ବିଦ୍ୟାନଗର (୭) । ତା'ଛଡ଼ା କପିଳେଶ୍ୱରଙ୍କ ଜ୍ୟେଷ୍ଠପୁତ୍ର ହମ୍ବିରଦେବଙ୍କ ଗୋଟିଏ ଲେଖାରେ ବର୍ଣ୍ଣିତ ଅଛି ଯେ, ସେ ହାମ୍ପି ଅଧିକାର କରିଥିଲେ । ବିଜୟନଗରର ରାଜଧାନୀ ବର୍ତ୍ତମାନ ସୁଦ୍ଧା ବିଜୟନଗର ଓ ହାମ୍ପି ଏହି ଉଭୟ ନାମରେ ଅଭିହିତ ହେଉଛି । କବି ଗଙ୍ଗାଧର ମଧ୍ୟ କପିଳେଶ୍ୱରଙ୍କ ବିଜୟନଗର ରାଜଧାନୀର ଆକ୍ରମଣ କଥା ଲେଖିଛନ୍ତି, ଯଦ୍ୱାରା ସେ ଏଥିରେ ତାଙ୍କ ରାଜାଙ୍କୁ ହିଁ ଜୟୀ କରାଇଛନ୍ତି । ଏତେ ପ୍ରମାଣ ସତ୍ତ୍ୱେ କପିଳେଶ୍ୱର ବିଜୟନଗରର ରାଜଧାନୀ ପର୍ଯ୍ୟନ୍ତ ପହଞ୍ଚିଥିଲେ କି ନା ଏ ବିଷୟରେ ଐତିହାସିକ-ମାନେ ସନ୍ଦେହ ପ୍ରକାଶ କରିଛନ୍ତି । ଉଲ୍ଲିଖିତ ଆଖ୍ୟାୟିକାରେ ସାରଳା ଦାସ କପିଳେଶ୍ୱରଙ୍କ ଦ୍ୱାରା ବିଜୟନଗର ରାଜଧାନୀର ଆକ୍ରମଣ କଥା ହିଁ ପ୍ରଚ୍ଛନ୍ନ ଭାବରେ ଲେଖିଛନ୍ତି । ଉଲ୍ଲିଖିତ ଆଖ୍ୟାୟିକାରେ ଥିବା କରବୀରପୁର ଓ ପୁଣ୍ଡରୀକ ବାସୁଦେବଙ୍କୁ ଯଥାଯଥ ଭାବରେ ଚିହ୍ନିତ କରିପାରିଲେ ଏହି ଉକ୍ତିର ସହଜରେ ସତ୍ୟତା ଜଣାଯିବ ।

(୭) Further Sources of Vijayanagara History, Vol. I, P. 161.

ପଦ୍ମାବତୀ ନଗରୀର ଅନ୍ୟ ନାମ ଥିଲା ବିଜୟନଗର (ବିଦ୍ୟାନଗର) ଓ କରବୀରପୁର (୮) । ଏହି ହେତୁରୁ ସାରଳା ଦାସ ଏଠାରେ ବିଜୟନଗରକୁ (ବା ବିଦ୍ୟାନଗରକୁ) କରବୀରପୁର ନାମରେ ଆଖ୍ୟାତ କରିଛନ୍ତି । ସେ ଏଠାରେ କରବୀରପୁରକୁ ବିଜୟନଗର ଅର୍ଥରେ ହିଁ ଯେ, ବ୍ୟବହାର କରିଛନ୍ତି, ଏକଥା ଏ ଦେଶର ରାଜାଙ୍କ ନାମରୁ ମଧ୍ୟ ଜଣାପଡ଼ୁଛି । ପୌଣ୍ଡ୍ରିକ-ବାସୁଦେବ ପ୍ରକୃତରେ ଗୋଟିଏ ପୌରାଣିକ ନାମ, ମାତ୍ର ଏହି ନାମକୁ ଏଠାରେ ପୁଣ୍ଡରୀକ-ବାସୁଦେବରେ ପରିଣତ କରି ସାରଳା ଦାସ ଭ୍ରମ ସୃଷ୍ଟି କରିବାର ବିଚିତ୍ର କୌଶଳ ଦେଖାଇଛନ୍ତି । ପୁଣ୍ଡ୍ର—ଦେଶରେ (ଉତ୍ତରବଙ୍ଗ ଦେଶରେ) ବାସୁଦେବ ନାମକ ଜଣେ କୃଷ୍ଣଦ୍ୱେଷୀ ରାଜା ଥିବା କଥା ମହାଭାରତ ଓ ହରିବଂଶରେ ଉଲ୍ଲେଖ ରହିଛି । ଏହି ପୌଣ୍ଡ୍ରକ ବାସୁଦେବ ଜରାସନ୍ଧ, ଶିଶୁପାଳ, ଦରଦ ପ୍ରଭୃତି ରାଜା ସହିତ ବନ୍ଧୁତା ବାନ୍ଧି ଓ କୃଷ୍ଣଙ୍କ ପରି ଶଙ୍ଖ-ଚକ୍ର ଇତ୍ୟାଦି ଧରି ନିଜକୁ ସ୍ୱୟଂ ବାସୁଦେବ (ଶ୍ରୀକୃଷ୍ଣ ବୋଲି, ମନେ କରୁଥିଲେ ଓ ପରିଚୟ ମଧ୍ୟ ଦେଉଥିଲେ । ଶେଷକୁ ତାଙ୍କ ଅହଙ୍କାର ଏତେ ବେଶୀ ହୋଇଥିଲା ଯେ ସେ ଦ୍ୱାରକା ଆକ୍ରମଣ କରିଥିଲେ, ମାତ୍ର ସେଠାରେ ସେ ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ ହୋଇଥିଲେ (୯) । ଏହି ପୌଣ୍ଡ୍ରକ ବାସୁଦେବଙ୍କୁ ସାରଳା ଦାସ ପୁଣ୍ଡରୀକ-ବାସୁଦେବରେ ପରିଣତ କରିବା ପରେ ଏହାର କିପରି ଅର୍ଥ ହେଉଛି, ତାହାହିଁ ବର୍ତ୍ତମାନ ଦେଖାଯାଉ । ପୁଣ୍ଡରୀକ ଅର୍ଥ ହେଉଛି ଶ୍ୱେତପଦ୍ମ

---

(୮) N. L. De—The Geographical Dictionary of Ancient and Medieval India, P. 143.

(୯) କ—ହରିବଂଶ (ସଂସ୍କୃତ ୨୮୯ ଠାରୁ ୨୮୮ ଅଧ୍ୟାୟ ଦ୍ରଷ୍ଟବ୍ୟ ।
ଖ—କୃଷ୍ଣାଚାର୍ଯ୍ୟ—ବ୍ୟାସାଚାର୍ଯ୍ୟ ସମ୍ପାଦିତ ଶ୍ରୀମନ୍ମହାଭାରତମ୍, ସଭାପର୍ବ, ୧୪ଶ ଅଧ୍ୟାୟ, ପୃ-୨୪ ଦ୍ରଷ୍ଟବ୍ୟ ।

ଆତ୍ମାନଂ ପ୍ରଥିକାନାତି ଲୋକେଽସ୍ମିନ୍ ପୁରୁଷୋତ୍ତମମ୍
ଆଦତ୍ତେ ସତତଂ ମୋହାଦ୍ ଯଃ ସ ଚିହ୍ନଂ ଚ ମାମକମ୍ ।
ବଙ୍ଗପୁଣ୍ଡ୍ର କିରାତେଷୁ ରାଜା ବଳସମନ୍ୱିତଃ
ପୌଣ୍ଡ୍ରକୋ ବାସୁଦେବେତି ଯୋଽସୌ ଲୋକେଽଭିବିଶ୍ରୁତଃ ॥

ଶ୍ରୀକୃଷ୍ଣ କହୁଛନ୍ତି—ବଙ୍ଗ, ପୁଣ୍ଡ୍ର ଓ କିରାତ ଦେଶର ବଳଶାଳୀ ରାଜା ମୋହାବଶରେ ମୋର ଚିହ୍ନ (ଅର୍ଥାତ୍ ଶଙ୍ଖ ଚକ୍ର ଇତ୍ୟାଦି) ବହନ କରି ନିଜକୁ ଜଗତରେ ପୁରୁଷୋତ୍ତମ ବୋଲି ପରିଚୟ ଦେଉଛି ଓ ପୌଣ୍ଡ୍ରକ-ବାସୁଦେବ ବୋଲି ଜଗତରେ ବିଖ୍ୟାତ ହୋଇଛି ।

ବା ମଲ୍ଲିକା ଆଉ ବାସୁଦେବ ଅର୍ଥ ହେଉଛି ଶ୍ରୀକୃଷ୍ଣ ବା ଅର୍ଜ୍ଜୁନ (୧୦) । ଏଣୁ ପୁଣ୍ଡରୀକ-ବାସୁଦେବ ଅର୍ଥ ହେଉଛି ମଲ୍ଲିକାର୍ଜ୍ଜୁନ । ମୋଟ କଥା ସାରଳାଦାସଙ୍କ ବର୍ଣ୍ଣିତ କରବୀରପୁରର ରାଜା ପୁଣ୍ଡରୀକ-ବାସୁଦେବ ଇତିହାସ-ବର୍ଣ୍ଣିତ ବିଜୟନଗରର ରାଜା ମଲ୍ଲିକାର୍ଜ୍ଜୁନ ବ୍ୟତୀତ ଅନ୍ୟ କେହି ନୁହନ୍ତି ! ପୌଣ୍ଡ୍ରକ ବାସୁଦେବ ଯେପରି କୃଷ୍ଣନିନ୍ଦୁକ ଥିଲେ, ପୁଣ୍ଡରୀକ-ବାସୁଦେବ ବା ମଲ୍ଲିକାର୍ଜ୍ଜୁନ ମଧ୍ୟ ସେହିପରି ଜଗନ୍ନାଥନିନ୍ଦକ ଥିବା କଥା ଆମ ଦେଶର କାଞ୍ଚିକାବେରୀ କିମ୍ବଦନ୍ତୀରେ ଅଦ୍ୟାପି ପ୍ରଚଳିତ ଅଛି । ଏହି କିମ୍ବଦନ୍ତୀରେ ଏହାହିଁ ସୂଚିତ ହୋଇଛି ଯେ କର୍ଣ୍ଣାଟ-ରାଜା ଜଗନ୍ନାଥଙ୍କୁ ନିନ୍ଦା କରୁଥିଲେ, ଆଉ ଗଜପତି ରାଜା ଜଗନ୍ନାଥଙ୍କୁ ସେବା କରୁଥିବାରୁ ତାଙ୍କୁ ଚଣ୍ଡାଳ ମନେକରି କନ୍ୟା ଦେବାକୁ ଅସମ୍ମତ ହୋଇଥିଲେ ।

---

(୧୦) ସାରଳାଦାସ ବହୁସ୍ଥାନରେ ଅର୍ଜ୍ଜୁନଙ୍କୁ ବାସୁଦେବ ବୋଲି ବର୍ଣ୍ଣନା କରିଛନ୍ତି; ଯଥା :—

ଆଜ୍ଞା ଦେଇଛନ୍ତି ତାକୁ ଚଞ୍ଚଳା-ବଲ୍ଲଭ
ମୁଁ ଜାଣେ ପାର୍ଥ ପ୍ରତ୍ୟକ୍ଷେ ଅଟେ ବାସୁଦେବ !

ସଭାପର୍ବ, ପୃ. ୧୫୪ ।

# ଚତୁର୍ଥ ପରିଚ୍ଛେଦ

## ଓଡ଼ିଶା ଓ ବିଜୟନଗରର ସଂଘର୍ଷର ଚିତ୍ର

ତୃତୀୟ ପରିଚ୍ଛେଦରେ ପ୍ରଦର୍ଶିତ ହୋଇଛି ଯେ ସାରଳା ଦାସଙ୍କ ବର୍ଣ୍ଣିତ କରବୀରପୁରର ରାଜା ପୁଣ୍ଡ୍ରୀକ ବାସୁଦେବ ଇତିହାସ-ବର୍ଣ୍ଣିତ ବିଜୟନଗରର ରାଜା ମଲ୍ଲିକାର୍ଜ୍ଜୁନ ବ୍ୟତୀତ ଅନ୍ୟ କେହି ନୁହନ୍ତି । ଏହି ଆଲୋଚନାକୁ ପରିତ୍ୟାଗ କରି ଅନ୍ୟ ଆଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ଏ ସମ୍ବନ୍ଧରେ ଆଉ କେତୋଟି କଥା କହିବା ଆବଶ୍ୟକ ମନେ ହେଉଛି । ସାରଳାଦାସ ପୁଣ୍ଡ୍ରୀକ ବାସୁଦେବଙ୍କୁ "ତ୍ରିକାଳ-ବାସୁଦେବ କଳା" ବୋଲି ବର୍ଣ୍ଣନା କରିଛନ୍ତି । ଆଉ ଜଗନ୍ନାଥଙ୍କ ରଙ୍ଗ ପରି ତାଙ୍କ ଦେହର ରଙ୍ଗ ମଧ୍ୟ କଳା ଥିଲା ବୋଲି କହିଛନ୍ତି । ମଲ୍ଲିକାର୍ଜ୍ଜୁନଙ୍କ ଦେହର ରଙ୍ଗ କଅଣ ଥିଲା, ତାହା କହିବା ସମ୍ଭବ ନୁହେଁ, ମାତ୍ର କର୍ଣ୍ଣାଟ ଅଞ୍ଚଳର ଲୋକମାନଙ୍କ ଦେହର ରଙ୍ଗ ଯେ ସାଧାରଣତଃ କଳା, ଏଥିରେ ମତଦ୍ୱୈଧର ସମ୍ଭାବନା ନାହିଁ । ମଲ୍‌ଲିକାର୍ଜ୍ଜୁନଙ୍କ ପିତାଙ୍କର ନାମ ଥିଲା ଦେବରାୟ (ଦ୍ୱିତୀୟ ଦେବରାୟ) । ତାମ୍ରଶିଳାଲେଖ, ମୁଦ୍ରା, ସମସାମୟିକ ଭାଷା ଓ ସଂସ୍କୃତ ସାହିତ୍ୟରେ ଏହାଙ୍କୁ ଅଧିକାଂଶ ସ୍ଥଳରେ ପ୍ରୌଢ଼ ଦେବରାୟ (୧) ବା ପ୍ରତାପଦେବ ରାୟ ବୋଲି ବର୍ଣ୍ଣନା କରାଯାଇଛି । ଚତୁର୍ଥକାଳ ହେଉଛି ବୃଦ୍ଧାବସ୍ଥା ଓ ତୃତୀୟ କାଳ ହେଉଛି ପ୍ରୌଢ଼ାବସ୍ଥା । ଏଣୁ ତ୍ରିକାଳ ବାସୁଦେବଙ୍କୁ ସାରଳା ଦାସ ଏଠାରେ ପ୍ରୌଢ଼ ବାସୁଦେବ ବା ପ୍ରୌଢ଼ ଦେବରାୟ ଅର୍ଥରେ ହିଁ ବ୍ୟବହାର କରିଥିବା ଅତ୍ୟନ୍ତ

---

୧ । (କ) P. Mukharji-Gajapati Kings of Orissa, p, 26 and foot note,

(ଖ) The Proceedings of the Indian History Congress, 1950, p. 163,

(ଗ) Further Sources of Vijayanagara History Vol. I, pp, 62-63.

ସମ୍ଭବକନକ ମନେ ହେଉଛ । ଐତିହାସିକ ନାମଗୁଡ଼ିକୁ ପ୍ରଚ୍ଛନ୍ନଭାବରେ ଲେଖିବା-ବେଳେ ବ୍ୟାକରଣକୁ ସବୁବେଳେ ଅନୁସରଣ କରିବା କବିଙ୍କ ପକ୍ଷରେ ସମ୍ଭବପର ହୋଇ ପାରିନାହିଁ । ବସ୍ତୁତଃ ଆମ ଦେଶର କୌଣସି ପ୍ରାଚୀନ କବି ବ୍ୟାକରଣକୁ ନିର୍ଦ୍ଦିଷ୍ଟଭାବରେ ଅନୁସରଣ କରିନାହାନ୍ତି । ପ୍ରୌଢ଼ ଦେବରାୟଙ୍କୁ ଯେ ସାରଳା ଦାସ ଭଲଭାବରେ ଜାଣିଥିଲେ, ଏହା ତାଙ୍କ ବର୍ଣ୍ଣିତ, "ପ୍ରୌଢ଼ାସୁରର ବରଲାଭ" (ମଧ୍ୟପର୍ବ, ପୃ. ୩୫୬), ପ୍ରୌଢ଼ାସୁରର ଦିଗ୍‌ବିଜୟ" (ମଧ୍ୟପର୍ବ ପୃ. ୩୬୭) ଇତ୍ୟାଦି ଆଖ୍ୟାୟିକାମାନଙ୍କଠାରୁ ପ୍ରମାଣିତ ହୁଏ । ଏହି ଆଖ୍ୟାୟିକାମାନଙ୍କରେ କବି ପ୍ରୌଢ଼ ଦେବରାୟଙ୍କ ରାଜ୍ୟ-ବିସ୍ତୃତି, ତାଙ୍କର ଓଡ଼ିଶା ସହିତ ଓ ଅନ୍ୟାନ୍ୟ ରାଜ୍ୟ ସହିତ ସଂଘର୍ଷ ଇତ୍ୟାଦି ବିଷୟକୁ ବିଶଦ୍‌ଭାବରେ, କିନ୍ତୁ ପୌରାଣିକ ରୀତିରେ ଲେଖିଯାଇଛନ୍ତି । ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ପ୍ରୌଢ଼ାସୁର ବୋଲି କୌଣସି ଅସୁରର ନାମ ମୂଳ-ସଂସ୍କୃତ ମହାଭାରତରୁ ମିଳେ-ନାହିଁ । ସାରଳାଦାସଙ୍କ ପ୍ରୌଢ଼ାସୁର ବିଜୟନଗରର ରାଜା ପ୍ରୌଢ଼ ଦେବରାୟ ଛଡ଼ା ଅନ୍ୟ କେହି ନୁହନ୍ତି ।

ପୌରାଣିକ ପୌଣ୍ଡ୍ରକ ବାସୁଦେବ ପୁଣ୍ଡ୍ର ବା ପୁଣ୍ଡ୍ରବର୍ଦ୍ଧନର (ଉତ୍ତର ବଙ୍ଗର ରାଜା ଥିଲେ । ପାଣ୍ଡବ ଭୀମ ମୋଦାଗିରିର (ବା ମୁଦ୍‌ଗଗିରିର) ରାଜାଙ୍କୁ ଜୟ କଲା ପରେ ଏହି ପୌଣ୍ଡ୍ରକ ବାସୁଦେବଙ୍କୁ କର ଦେବାପାଇଁ ବାଧ୍ୟ କରିଥିଲେ ଓ ତା' ପରେ ବଙ୍ଗଦେଶ ଆକ୍ରମଣ କରିଥିଲେ (୨) ଆଧୁନିକ ମୁଙ୍ଗେର ଓ ପୂର୍ବବଙ୍ଗହିଁ

---

୨ । କୃଷ୍ଣାଚାର୍ଯ୍ୟ ବ୍ୟାସାଚାର୍ଯ୍ୟ ସମ୍ପାଦିତ ଶ୍ରୀମନ୍ମହାଭାରତମ୍, ସଭାପର୍ବ; ଅଧ୍ୟାୟ ୩୧ ପୃ. ୪୯ ।

ଅଥ ମୋଦାଗିରୌ ଚୈବ ରାଜାନଂ ବଲବତ୍ତରଂ
ପାଣ୍ଡବୋ ବାହୁବୀର୍ଯ୍ୟେଣ ନିଜଘାନ ମହାମୃଧେ ।
ତତଃ ପୁଣ୍ଡ୍ରାଧିପଂ ବୀରଂ ବାସୁଦେବଂ ସମାଯଯୌ ।
ଇଦାନୀଂ ବୃଷ୍ଣିବୀରେଣ ନ ଯୋତ୍ସ୍ୟାମୀତି ପୌଣ୍ଡ୍ରକଃ ।
କୃଷ୍ଣସ୍ୟ ଭୁଜସଂଜ୍ଞାସାଦ୍ଧରମାଣ୍ଡ ଦଦୌ ନୃପଃ ।
କୌଶିକୀ କଚ୍ଛନିଲୟଂ ରାଜାନଂ ଚ ମହୌଜସମ ।
ଉଭୌ ବଲଭୃତୌ ବୀରାବୁଭୌ ତୀବ୍ରପରାକ୍ରମୌ ।
ନିର୍ଜିତ୍ୟାଜୌ ମହାରାଜ ବଙ୍ଗରାଜ ମୁପାଦ୍ରବତ୍ ।

ଏହାପରେ ପାଣ୍ଡବ (ଭୀମ) ନିଜ ବାହୁବଳଦ୍ୱାରା ମୋଦା ଗିରିରେ ବଳଶାଳୀ ରାଜାଙ୍କୁ ମାରି ପକାଇଥିଲେ, ଆଉ ତା ପରେ ପୁଣ୍ଡ୍ର ଦେଶର ରାଜା ବୀର

ପ୍ରାଚୀନ କାଳରେ ଯଥାକ୍ରମେ ମୋଦାଗିରି (ମୁଦ୍‌ଗଗିରି) ଓ ବଙ୍ଗ ନାମରେ ଅଭିହିତ ହେଉଥିଲା । ସଂସ୍କୃତ ମହାଭାରତର ବର୍ଣ୍ଣନାରୁ ସ୍ପଷ୍ଟ ସୂଚିତ ହେଉଛି ଯେ ଆଧୁନିକ ଉତ୍ତର ବିହାର ଓ ପୂର୍ବବଙ୍ଗ-ମଧ୍ୟବର୍ତ୍ତୀ ଅଞ୍ଚଳରେ ହିଁ ପୌଣ୍ଡ୍ରକ—ବାସୁଦେବଙ୍କ ରାଜ୍ୟ ଅବସ୍ଥିତ ଥିଲା । ସଂସ୍କୃତ ମହାଭାରତରେ ପାଣ୍ଡବ ଭୀମଙ୍କ ପୂର୍ବଦିଗର ବିଜୟ ବୃତ୍ତାନ୍ତ ମଧ୍ୟରେ ପୌଣ୍ଡ୍ରକ ବାସୁଦେବଙ୍କ ପରାଜୟ କଥା ବର୍ଣ୍ଣିତ ଅଛି; କିନ୍ତୁ ସାରଳା ମହାଭାରତରେ ଭୀମଙ୍କର ପଶ୍ଚିମ ଦିଗର ବିଜୟ-ବିବରଣୀରେ ପୁଣ୍ଡରୀକ ବାସୁଦେବଙ୍କ ପରାଜୟର କଥା ଲିଖିତ ଅଛି । ସଂସ୍କୃତ ମହାଭାରତ ଅନୁସାରେ ଭୀମ ମୋଦାଗିରି (ମୁଦ୍‌ଗଗିରି) ବା ମୁଁଙ୍ଗେରରୁ ଆସି ପୌଣ୍ଡ୍ରକ ବାସୁଦେବଙ୍କ ରାଜ୍ୟରେ ପହଞ୍ଚି ଥିଲେ, ମାତ୍ର ସାରଳା ମହାଭାରତ ଅନୁସାରେ ଭୀମ ମହାରାଷ୍ଟ୍ରରେ ଅବସ୍ଥାନ କଲାବେଳେ ପୁଣ୍ଡରୀକ ବାସୁଦେବଙ୍କ ରାଜ୍ୟ କରବୀରପୁର ମହାରାଷ୍ଟ୍ରର ଦକ୍ଷିଣ-ପଶ୍ଚିମ କୋଣରେ ଥିବା କଥା ଚରମୁଖରୁ ଶୁଣିଥିଲେ—

ବିହରନ୍ତି ସଇନ୍ୟଏ ମନର ହରଷେ
ବିଜେ କଲେ ବୃକୋଦର ମହାରାଷ୍ଟ୍ର ଦେଶେ ।

× × ×

ଭୀମ ବିଜେ କରିଛନ୍ତି ବିରୋଳ ପର୍ବତେ
କରବୀର ରାଜ୍ୟ-ବାର୍ତ୍ତା ଜଣାଇଲେ ଦୂତେ ।
ଶୁଣ ସାବଧାନେ ଦେବ ବୀରଚୂଡ଼ାମଣି
ନଇଋତ କୋଣେ ପୁଣ୍ଡରୀକ ଚକ୍ରପାଣି ।
କରବୀର ଦେଶର ଯେ ସେହୁ ଅଧିପତି
ବଡ଼ଇ ପ୍ରତାପୀ ସେ ତ ଅଟେ ଚକ୍ରବର୍ତ୍ତୀ ।
ସୁବର୍ଣ୍ଣର ଶଗଡ଼ିଏ କରିଛି ନିର୍ମିତ
କାଠର ଗରୁଡ଼ ଏକ ଥାଏ ଅନୁବ୍ରତ ।
ସେ ଗରୁଡ଼େ ଏକା ଥାଏ ଦିଗ ବିଜେ କରି
କାଠ ବେନି ଭୁଜେ ଥାଏ ଶଙ୍ଖଚକ୍ର ଧରି ।

---

ବାସୁଦେବଙ୍କ ପାଖରେ ପହଞ୍ଚି ଥିଲେ । "ବର୍ତ୍ତମାନ ମୁଁ ବୃଷ୍ଣିବୀର ସହିତ ଯୁଦ୍ଧ କରିବି ନାହିଁ ।" ଏହା କହି ପୁଣ୍ଡ୍ର ଦେଶ ରାଜା କୃଷ୍ଣଙ୍କ ଭୁଜବଳ ଭୟରେ ସଙ୍ଗେ ସଙ୍ଗେ କର ଦେଇଥିଲେ । ହେ ମହାରାଜ ! (ତା'ପରେ) କୌଶିକୀ ଓ କଚ୍ଛରେ ବାସ କରୁଥିବା ଅମିତ ଶକ୍ତିଶାଳୀ ଓ ସୈନ୍ୟବଳସମ୍ପନ୍ନ ଉଭୟ ବୀରାଗ୍ରଣୀ ରାଜାଙ୍କୁ ଜୟ କରି (ପାଣ୍ଡବ ଭୀମ) ବଙ୍ଗ ରାଜାଙ୍କ ଉପରେ ଉପଦ୍ରବ କରିଥିଲେ ।

ଗାଣ୍ଡିବ ସମାନ ଧନୁ ଧରି ବାମହାତେ
ବାସୁଦେବଙ୍କୁ ନନ୍ଦେ ସେ ଦୁଷ୍ଟ କୋପଚିତ୍ତେ ।
ଦ୍ୱିତୀ କୃଷ୍ଣ ରୂପ ଧରି ଧରା ବିଜେ କରେ
ବଡ଼ ପ୍ରତାପୀ ସେ ରାଜା ପଶ୍ଚିମ ଦିଗରେ ।
ଦୁଭାର ରାକ୍ଷସଗଣ ଅଟନ୍ତି ତା' ବଳ
ରାଜାଙ୍କ ମଧ୍ୟରେ ସେହୁ ଅଟେ ମହାବଳ ।
ଜରା ପୁତ୍ର ସହଦେବେ ଦେଇଛୁ ଦୁହିତା
ତେଣୁ ମନେ ତାହାକୁ ସେ ନ କରେ ଗଣିତା ।

ସଭାପର୍ବ, ପୃ. ୧୦୦—୧୦୧

ଏଥିରୁ ସ୍ପଷ୍ଟ ସୂଚିତ ହେଉଛି ଯେ କରଷାର ଦେଶ ମହାରାଷ୍ଟ୍ରର ଦକ୍ଷିଣ-ପଶ୍ଚିମ ଦିଗରେ ଥିଲା । ଏଣୁ ଏହା କର୍ଣ୍ଣାଟ ଦେଶ (ବିଜୟନଗର ରାଜ୍ୟ) ବ୍ୟତୀତ ଅନ୍ୟ କୌଣସି ଦେଶ ନୁହେ । ବିଜୟନଗରର ରାଜା ଯେ ଜଗନ୍ନାଥ-ନିନ୍ଦୁକ ଥିଲେ, ଏ କଥା ଆମ ଦେଶର କାଞ୍ଚି କାବେରୀ କିମ୍ବଦନ୍ତୀରେ ଅଦ୍ୟାପି ପ୍ରଚଳିତ ଅଛି । ତା' ଛଡ଼ା ଦକ୍ଷିଣାଞ୍ଚଳରେ ବୈଷ୍ଣବ ଓ ଶୈବ ମଧ୍ୟରେ ଯେଉଁ ଉତ୍କଟ ବିବାଦ ଓ ବିଭେଦ ଥିଲା ବା ଅଛି, ସେପରି ବିବାଦ ବା ବିଭେଦ ଭାରତର ଅନ୍ୟ କୌଣସି ଅଞ୍ଚଳରେ ନ ଥିଲା ବା ବର୍ତ୍ତମାନ ମଧ୍ୟ ନାହିଁ । କାଞ୍ଚିନଗର ଏହି ବିଭେଦ ଅନୁସାରେ ଦୁଇ ଭାଗରେ ବିଭକ୍ତ ହୋଇ ଗୋଟିଏ ଅଞ୍ଚଳ ଶିବ-କାଞ୍ଚି ଓ ଅନ୍ୟ ଅଞ୍ଚଳ ବିଷ୍ଣୁ-କାଞ୍ଚି ନାମରେ ଅଭିହିତ ହେଉଥିଲା । କୃଷ୍ଣଦେବରାୟଙ୍କ ରାଜତ୍ୱ ପର୍ଯ୍ୟନ୍ତ ବିଜୟନଗରରେ ଆଉ ଯେତେ ରାଜା ରାଜତ୍ୱ କରିଥିଲେ, ସେମାନେ ସମସ୍ତେ ଶୈବ ଥିଲେ । କୃଷ୍ଣଦେବରାୟ ଓ ତାଙ୍କ ପରବର୍ତ୍ତୀ ରାଜାମାନେ ଚିତ୍ତୁର ଜିଲ୍ଲାର ଭେଙ୍କଟାଚଳରେ (ବୈକୁଣ୍ଠାଚଳରେ) ଅବସ୍ଥିତ ତିରୁପତିଙ୍କ (ଶ୍ରୀପତି ବା ଲକ୍ଷ୍ମୀପତିଙ୍କ) ଭକ୍ତ ହୋଇପଡ଼ିଥିଲେ, ମାତ୍ର ତା' ପୂର୍ବରୁ ସମସ୍ତ ରାଜା ବିଜୟନଗରର ରାଜଧାନୀରେ ଅବସ୍ଥିତ ବିରୂପାକ୍ଷଙ୍କ (ଶିବଙ୍କ) ପରମ ଭକ୍ତ ଥିଲେ । ଏଥିପାଇଁ ଆଜିସୁଦ୍ଧା ବିଜୟନଗରରେ ପ୍ରବାଦ ଅଛି ଯେ ବିରୂପାକ୍ଷଙ୍କ କୋପ ହେତୁରୁ ହିଁ ଟେଲିକୋଟା (ରାକ୍ଷସ ତାଙ୍ଗଡ଼ି) ଯୁଦ୍ଧରେ ବିଜୟନଗରର ସୈନ୍ୟମାନେ ମୁସଲ୍‌ମାନ୍‌ମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ପରାଜିତ ହୋଇ ବିଧ୍ୱସ୍ତ ହୋଇଯାଇଥିଲେ । ଏହା ଅବଶ୍ୟ ବିଶ୍ୱାସର କଥା, କାରଣ କୃଷ୍ଣଦେବରାୟ ବୈଷ୍ଣବ ଥିଲେ ହେଁ ବିଜୟନଗରର ସର୍ବଶ୍ରେଷ୍ଠ ରାଜା ଥିଲେ । ବିଜୟନଗରର ରାଜଧାନୀରେ ବର୍ତ୍ତମାନ ସୁଦ୍ଧା ଶୈବ ଓ ବୈଷ୍ଣବ ମଧ୍ୟରେ ଥିବା ବିବାଦ ଦେଖିଲେ ବିସ୍ମିତ ହେବାକୁ ପଡ଼େ । ବିରୂପାକ୍ଷ ମନ୍ଦିର ଓ କୋଦଣ୍ଡରାମ ମନ୍ଦିର ଉଭୟ ତୁଙ୍ଗଭଦ୍ରା କୂଳରେ

ଅବସ୍ଥିତ । ଉଭୟ ମନ୍ଦିର ମଧ୍ୟରେ ଥିବା ବ୍ୟବଧାନ ଏକ ମାଇଲ୍ ମଧ୍ୟ ନୁହେଁ, ମାତ୍ର ଅନ୍ୟ ଶୈବ କଥା ଦୂରେ ଥାଉ, କୋଦଣ୍ଡ-ରାମ ମନ୍ଦିରରେ ପ୍ରବେଶ ପାଇଁ ବିରୂପାକ୍ଷ ମନ୍ଦିରର ସେବକମାନଙ୍କର ସୁଦ୍ଧା ଅଧିକାର ନାହିଁ । ସେହିପରି ଅନ୍ୟ ବୈଷ୍ଣବ କଥା ଦୂରେ ଥାଉ, ବିରୂପାକ୍ଷ ମନ୍ଦିରରେ ପ୍ରବେଶ ପାଇଁ କୋଦଣ୍ଡ-ରାମ ମନ୍ଦିରର ସେବକମାନଙ୍କର ମଧ୍ୟ ଅଧିକାର ନାହିଁ । ଏଇଥିରୁ ହିଁ ବୈଷ୍ଣବ ଓ ଶୈବ ମଧ୍ୟରେ ଥିବା ଉତ୍କଟ ବିବାଦ ସହଜରେ ଅନୁମିତ ହେବ । ଆଉ ଆମ ଦେଶର କିମ୍ବଦନ୍ତୀରେ ଓ ସାରଳା ସାହିତ୍ୟରେ ଯେ ବିଜୟନଗରର ରାଜାଙ୍କୁ ଜଗନ୍ନାଥ ନିନ୍ଦୁକ ରୂପେ ଉପସ୍ଥାପିତ କରାଯାଇଛି, ତାହା ଅମୂଳକ ମନେ ହେବ ନାହିଁ । ଏହି ସମୟରେ ବିଜୟନଗରର ଶୈବ ରାଜାମାନେ ପ୍ରକୃତରେ ଜଗନ୍ନାଥ ନିନ୍ଦୁକ ଥିଲେ, ଏଣୁ ତାଙ୍କ ପ୍ରଧାନ ସେବକ ଗଜପତି ରାଜାଙ୍କୁ ମଧ୍ୟ ସେମାନେ ହେୟ ଦୃଷ୍ଟିରେ ଦେଖୁଥିଲେ ।

ବିରୂପାକ୍ଷ ଓ ମଲ୍ଲିକାର୍ଜ୍ଜୁନ ଏହି ଦୁଇ ଶିବଲିଙ୍ଗ ହିଁ ପ୍ରଥମେ ବିଜୟନଗର ରାଜ୍ୟର ପ୍ରଧାନ ଆରାଧ୍ୟ ଦେବତା ଥିଲେ, ଆଉ ଏମାନଙ୍କ ନାମାନୁସାରେ ହିଁ ଜଣେ ରାଜାଙ୍କ ନାମ ମଲ୍ଲିକାର୍ଜ୍ଜୁନ ଓ ତାଙ୍କ ପରବର୍ତ୍ତୀ ରାଜାଙ୍କ ନାମ ବିରୂପାକ୍ଷ ହୋଇଥିଲା । ମଲ୍ଲିକାର୍ଜ୍ଜୁନଙ୍କ ସହିତ କପିଳେଶ୍ୱରଦେବଙ୍କ ଓ ବିରୂପାକ୍ଷଙ୍କ ସହିତ ପୁରୁଷୋତ୍ତମଦେବଙ୍କ ସଂଘର୍ଷ ଘଟିଥିଲା । ବିରୂପାକ୍ଷ ମନ୍ଦିର ବର୍ତ୍ତମାନ ସୁଦ୍ଧା ବିଜୟନଗର ରାଜଧାନୀରେ ଅବସ୍ଥିତ ଅଛି ଓ ମଲ୍ଲିକାର୍ଜ୍ଜୁନଙ୍କ ମନ୍ଦିର ବର୍ତ୍ତମାନ ସୁଦ୍ଧା ଶ୍ରୀ ଶୈଳମ୍ ବା ସାରଳା ଦାସଙ୍କ ବର୍ଣ୍ଣିତ ଶ୍ରୀଗିରି ପର୍ବତର ଶିଖର ଦେଶରେ ଅବସ୍ଥିତ ଅଛି । ଶେଷୋକ୍ତ ମନ୍ଦିର ପାଖରେ ପହଞ୍ଚିବା କଷ୍ଟସାଧ୍ୟ, ମାତ୍ର ଏହି ମନ୍ଦିର ନାଗାର୍ଜ୍ଜୁନ କୋଣ୍ଡା ଉପତ୍ୟକାରୁ ସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହୁଏ । (୩)

---

(୩) ଆନ୍ଧ୍ର ଦେଶରେ ଗୁଣ୍ଟୁର ଜିଲାରେ ଅବସ୍ଥିତ ନାଗାର୍ଜ୍ଜୁନକୋଣ୍ଡା ଉପତ୍ୟକା ଭାରତର ଗୋଟିଏ ପ୍ରଧାନ ବୌଦ୍ଧସ୍ଥଳୀ । ଏହି ସ୍ଥଳରୁ ପ୍ରାପ୍ତ ବୌଦ୍ଧ ମୂର୍ତ୍ତି ଓ କାରୁକଳା ଇତ୍ୟାଦିପାଇଁ ଏଠାରେ ମିଉଜିୟମ୍ ନିର୍ମିତ ହୋଇଛି । ଏହି ଉପତ୍ୟକାର ଅନତିଦୂରରେ ବର୍ତ୍ତମାନ କୃଷ୍ଣା ନଦୀରେ ଯେଉଁ ବନ୍ଧ ନିର୍ମିତ ହୋଇଛି, ତାହାର ଫଳରେ ଉପତ୍ୟକାଟି ଗୋଟିଏ ପ୍ରକାଣ୍ଡ ହ୍ରଦରେ ପରିଣତ ହୋଇଛି । ଏଥିପାଇଁ ଦ୍ରୁତ ଗତିରେ ଖୋଦନ କାର୍ଯ୍ୟ ଚଳାଇ ଓ ସେଥିରେ ଥିବା ସମସ୍ତ ପ୍ରାଚୀନ ବସ୍ତୁକୁ ଉଦ୍ଧାର କରି, ପର୍ବତ ଉପରେ ନିର୍ମିତ ମିଉଜିଅମ ଇତ୍ୟାଦିରେ ସେମାନଙ୍କ ରକ୍ଷଣାବେକ୍ଷଣର ବ୍ୟବସ୍ଥା କରାଯାଇଛି । ଏହିଠାରେ କୃଷ୍ଣା ନଦୀ ଗୁଣ୍ଟୁର ଓ ନାଲଗୋଣ୍ଡା ଜିଲ୍ଲାର ସୀମାରୂପେ ବହି ଚାଲିଛି ।

ଓଡ଼ିଶାର ରାଜା ଓ ବିଜୟନଗରର ରାଜାଙ୍କ ମଧ୍ୟରେ ଯେଉଁ ସଂଘର୍ଷ ଚାଲିଥିଲା; ତାହାର ପ୍ରଧାନ କାରଣ ଥିଲା ରାଜ୍ୟ-ବିସ୍ତୃତି, ମାତ୍ର ଧର୍ମ-ବିବାଦ ମଧ୍ୟ ଅନ୍ୟତମ କାରଣ ହୋଇ ଉଠିଥିଲା । କୌଣସି ରାଜ୍ୟର ସୈନ୍ୟସାମନ୍ତ ଯନ୍ତ୍ରବତ୍ ଚାଳିତ ହୋଇ ଅନ୍ୟ ରାଜ୍ୟ ଜୟ କରିପାରନ୍ତି ନାହିଁ । ଯୁଦ୍ଧରେ ଜୟ କରିବା ପାଇଁ ପ୍ରେରଣାର ଆବଶ୍ୟକ ହୁଏ । ଓଡ଼ିଶା ରାଜାଙ୍କ ଓ ଓଡ଼ିଆ ସୈନ୍ୟସାମନ୍ତଙ୍କ ପ୍ରେରଣାର ମୂଳଉତ୍ସ ଥିଲେ ଜଗନ୍ନାଥ । ଓଡ଼ିଶା ରାଜ୍ୟ ଥିଲା ଜଗନ୍ନାଥଙ୍କ ରାଜ୍ୟ, ଆଉ ଓଡ଼ିଶା ରାଜା ଥିଲେ ଜଗନ୍ନାଥଙ୍କ ପ୍ରତିଭୂ ଓ ଚଳନ୍ତି ପ୍ରତିମା । ଜଗନ୍ନାଥଙ୍କ ରାଜ୍ୟ ବିସ୍ତାର କରିବେ, ଆଉ ତାଙ୍କ ନିନ୍ଦୁକମାନଙ୍କୁ ଧ୍ୱଂସ କରି ତାଙ୍କର ମହିମାକୁ ହିଁ ପ୍ରତିଷ୍ଠା କରିବେ, ଏହି ଏକାନ୍ତ ବିଶ୍ୱାସ ଓ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଗଙ୍ଗା ଠାରୁ କାବେରୀ ନଦୀ ଓ କର୍ଣ୍ଣାଟ ଦେଶ (ମୈଶୂର) ପର୍ଯ୍ୟନ୍ତ ସୁବିସ୍ତୀର୍ଣ୍ଣ ଭୂଖଣ୍ଡ ମଧ୍ୟରେ ଓଡ଼ିଶା ରାଜା ଓ ଓଡ଼ିଆ ସୈନ୍ୟସାମନ୍ତ ରକ୍ତମୁଖା ହୋଇ ଦୁର୍ଗରୁ ଦୁର୍ଗାନ୍ତରକୁ ଝଟିକା ବେଗରେ ଗତିକରି ଚାଲିଥିଲେ ।

ଐଶୀ ଶକ୍ତି ଉପରେ ଏକାନ୍ତ ବିଶ୍ୱାସ କିମ୍ବା ଆତ୍ମଶକ୍ତି ଉପରେ ଏକାନ୍ତ ବିଶ୍ୱାସ ହିଁ ଜାତି ବା ଦେଶ ବିଦେଶକୁ ଉଦ୍‌ବୁଦ୍ଧ କରି ତାକୁ ଉନ୍ନତ କରିଥାଏ । ପ୍ରଥମୋକ୍ତ ବିଶ୍ୱାସଟି ପ୍ରାଚୀନ ଭାରତର ପରମ୍ପରା ସହିତ ଜଡ଼ିତ, ଆଉ ଶେଷୋକ୍ତ ବିଶ୍ୱାସଟି ଆଧୁନିକ ଓ ପାଶ୍ଚାତ୍ୟ ଜଗତରୁ ନବାଗତ । ଏହି ଉଭୟ ବିଶ୍ୱାସରୁ କୌଣସିଟି ସୁଦ୍ଧା ଯେଉଁ ଜାତି ବା ଦେଶକୁ ଉଦ୍‌ବୁଦ୍ଧ କରେ ନାହିଁ, ସେପରି ଦେଶ ବା ଜାତିକୁ ଭଗବାନ ସୁଦ୍ଧା ଉଠାଇପାରନ୍ତି ନାହିଁ । ସାରଳା ଦାସଙ୍କ ସମୟରେ ଓଡ଼ିଶା ଦେଶ ଯେଉଁ ଅସୀମ ପ୍ରେରଣାରେ ଜାଗ୍ରତ ହୋଇ ଉଠିଥିଲା, ଆଧୁନିକ ଓଡ଼ିଶାର ଘନୀଭୂତ ଅନ୍ଧକାର ମଧ୍ୟରେ ତାହା ଭଲଭାବରେ ହୃଦୟଙ୍ଗମ କରିବା ସମ୍ଭବ ନୁହେଁ, ଏଣୁ ସାରଳା ଦାସଙ୍କ ବିଶ୍ୱାସ, କଳ୍ପନା, ଗୂଢ଼ୁରୀ, ଇଙ୍ଗିତ ଇତ୍ୟାଦିକୁ ମଧ୍ୟ ଭଲଭାବରେ ହୃଦୟଙ୍ଗମ କରିବା ସମ୍ଭବ ନୁହେଁ । ଦ୍ୱାପର ଯୁଗର ଯୁଗାବତାର—ଶ୍ରୀକୃଷ୍ଣଙ୍କ ନିନ୍ଦୁକ ଦନ୍ତବକ୍ର, ପୌଣ୍ଡ୍ରକ ବାସୁଦେବ, ଶିଶୁପାଳ, ଜରାସନ୍ଧ ପ୍ରଭୃତିଙ୍କୁ କଳିଯୁଗର ଯୁଗାବତାର ଜଗନ୍ନାଥଙ୍କ ନିନ୍ଦୁକମାନଙ୍କ ସଙ୍ଗେ ସମାନ କରି ସାରଳା ଦାସ ପୁରାଣ ଓ ଇତିହାସର ଅଭିନବ ସମନ୍ୱୟରେ ଯେଉଁ ଅମର ଗାଥା ଲେଖିଯାଇଛନ୍ତି, ଭାରତୀୟ ଭାଷା-ସାହିତ୍ୟରେ ବା ସଂସ୍କୃତ ସାହିତ୍ୟରେ ତା'ର ପଟାନ୍ତର ନାହିଁ ।

ବିଜୟନଗରର ରାଜା ମଲ୍ଲିକାର୍ଜୁନ (ପୁଣ୍ଡରୀକ-ବାସୁଦେବ) କାଠର ଶଙ୍ଖଚକ୍ର ଧରି ଓ କାଠର ଗରୁଡ଼ ଉପରେ ଚଢ଼ି ଯିବା ଆସିବା କରୁଥିଲେ କି ନା,

ତାହାର ପ୍ରମାଣ କୌଣସିଥିରୁ ମିଳୁନାହିଁ; କିନ୍ତୁ ବିଜୟନଗରର ରାଜାମାନଙ୍କ ଯେଉଁ ଅଙ୍ଗରକ୍ଷୀମାନେ (Life guards) ଥିଲେ, ସେମାନଙ୍କୁ ଯେ ଗରୁଡ଼ ବୋଲି କୁହାଯାଉଥିଲା, ଏହାର ପ୍ରମାଣ ଇତିହାସରୁ ମିଳୁଛି । (୪) ଏହି ଗରୁଡ଼ ବା ଅଙ୍ଗରକ୍ଷୀମାନଙ୍କୁ ହିଁ ଲକ୍ଷ୍ୟ କରି ସାରଳା ଦାସ ବିଜୟନଗରର ରାଜା କାଠର ଗରୁଡ଼ ଉପରେ ବସି ଦିଗ୍‌ବିଜୟ କରୁଥିଲେ ବୋଲି ଲେଖିଛନ୍ତି ।

ଉଲ୍ଲିଖିତ ଉଦ୍ଧୃତାଂଶରେ କବି ଲେଖିଛନ୍ତି—
"ଜରାପୁତ୍ର ସହଦେବେ ଦେଇଛୁ ଦୁହିତା
ତେଣୁ ମନେ ତାହାକୁ ସେ ନ କରେ ଗଣିତା ।"

ଯାହାକୁ କନ୍ୟା ଦିଅନ୍ତି, ତାକୁ ମଣିଷ ତଳରେ ଗଣନ୍ତି ନାହିଁ, ଏପରି ନିୟମ କୌଣସି କାଳରେ ନଥିଲା । ଏଣୁ ଏଠାରେ ଲେଖନକାର ବା ପ୍ରକାଶକଙ୍କ ଭ୍ରମ ହେତୁରୁ 'କାହାକୁ' ସ୍ଥାନରେ 'ତାହାକୁ' ହୋଇଯାଇଛି । କବିଙ୍କ କହିବା ଉଦ୍ଦେଶ୍ୟ ଏହି ଯେ, ବିଜୟନଗରର ରାଜା ଜରାପୁତ୍ର ସହଦେବଙ୍କୁ କନ୍ୟା ଦେଇଥିବାରୁ ଜଗତରେ ଆଉ କାହାରିକୁ ମଣିଷ ତଳରେ ଗଣନ୍ତି ନାହିଁ । ଯାହାଙ୍କୁ କନ୍ୟା ଦେଇଥିବାରୁ ବିଜୟନଗରର ରାଜା ଗର୍ବରେ ଏତେବେଶୀ ସ୍ଫୀତ ହୋଇପଡ଼ିଥିଲେ, ସେହି ଜରାପୁତ୍ର ସହଦେବ କିଏ ? ମହାଭାରତରୁ ଜଣାଯାଏ ଯେ କୃଷ୍ଣଦ୍ୱେଷୀ ଜରାସନ୍ଧଙ୍କ ପୁଅର ନାମ ଥିଲା ସହଦେବ । ଏଣୁ ଏଠାରେ ଜରା ଯେ ଜରାସନ୍ଧ ଏଥିରେ ସନ୍ଦେହର କାରଣ ନାହିଁ, ମାତ୍ର ପୌଣ୍ଡ୍ରକ-ବାସୁଦେବ ଜରାସନ୍ଧର ପୁଅ ସହଦେବକୁ କନ୍ୟା ଦେଇଥିବା କଥା ସଂସ୍କୃତ ମହାଭାରତ ବା ହରିବଂଶରେ ନାହିଁ । କୃଷ୍ଣଦ୍ୱେଷୀ ପୌଣ୍ଡ୍ରକ ବାସୁଦେବଙ୍କ ରାଜ୍ୟର ନିକଟବର୍ତ୍ତୀ ପ୍ରତାପଶାଳୀ ମଗଧଦେଶ ଥିଲା କୃଷ୍ଣଦ୍ୱେଷୀ ଜରାସନ୍ଧଙ୍କ ରାଜ୍ୟ । ସେହିପରି ଜଗନ୍ନାଥଦ୍ୱେଷୀ ପୁଣ୍ଡରୀକ ବାସୁଦେବଙ୍କ ରାଜ୍ୟର ନିକଟବର୍ତ୍ତୀ ପ୍ରତାପଶାଳୀ ରାଜ୍ୟ ଥିଲା ଜଗନ୍ନାଥଦ୍ୱେଷୀ ବାହାମନି ସୁଲତାନଙ୍କ ରାଜ୍ୟ । ବିଜୟନଗର ରାଜା ଓ ବାହାମନି ସୁଲତାନଙ୍କ ମଧ୍ୟରେ ଯେଉଁ

(୪) The life-guards as we might term them, were called Garudas under the Hayasalas. This name also continued under the Vijayanagara Kings.
Social and Political Life in the Vijayanagara Empire by Dr. B. A. Salatore, Vol. I, P. 8.

ବୈବାହିକ ସମ୍ବନ୍ଧ ସ୍ଥାପିତ ହୋଇଥିଲା, ସେହି ସମ୍ବନ୍ଧକୁ ହିଁ ଲକ୍ଷ୍ୟ କରି କବି ଏଠାରେ ବିଜୟନଗର ରାଜାଙ୍କ ପ୍ରତି ବ୍ୟଙ୍ଗ କରିଅଛନ୍ତି । ୧୪୦୬ ଖ୍ରୀଷ୍ଟାବ୍ଦରେ ମାହାମୁଦ୍‌ଶାହ ବାହାମନିଙ୍କ ପୁତ୍ର, ଫିରୋଜ ଶାହ ବାହାମନି ବିଜୟନଗର ଆକ୍ରମଣ କରି ତାକୁ ଧ୍ୱସ୍ତ ବିଧ୍ୱସ୍ତ କଲା ପରେ ପ୍ରଥମ ଦେବରାୟ ଫିରୋଜ ଶାହାଙ୍କୁ କନ୍ୟା ଦେବାପାଇଁ ବାଧ୍ୟ ହୋଇଥିଲେ । ଏହି ବିବାହରେ ଯେଉଁ ମହାସମାରୋହ ହୋଇ-ଥିଲା, ଫେରିସ୍ତା ତାଙ୍କ ତାରିଖ-ଇ-ଫେରିସ୍ତାରେ ତା'ର ବିସ୍ତୃତ ବିବରଣୀ ଲେଖି-ଯାଇଛନ୍ତି(୫) । ଏହି ବିବାହ ଘଟିଥିଲା ୧୪୦୬ଖ୍ରୀଷ୍ଟାବ୍ଦରେ ଓ କପିଳେଶ୍ୱରଙ୍କ ରାଜତ୍ୱ ଆରମ୍ଭ ହୋଇଥିଲା ୧୪୩୫ ଖ୍ରୀଷ୍ଟାବ୍ଦରେ, କିନ୍ତୁ ଏହି ହିନ୍ଦୁ ମୁସଲମାନ୍ ବିବାହ ହିନ୍ଦୁ-ଜଗତରେ ଏତେ ବେଶୀ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଯେ, ସମସ୍ତ ହିନ୍ଦୁ ରାଜ୍ୟ ବହୁବର୍ଷ ଧରି ଏହି ଘଟଣାକୁ ମନେ ରଖିଥିବା ଅତ୍ୟନ୍ତ ସ୍ୱାଭାବିକ କଥା । ବିଜୟ-ନଗର-ରାଜା ଏହି ବିବାହ ପାଇଁ ଗର୍ବିତ ହୋଇଥିବା କଥା ସାରଳା ଦାସ ଯାହା ଲେଖିଛନ୍ତି ତାହା ଠିକ୍ ନୁହେଁ । ଏହି ବିବାହ ପରେ ପରେ ବାହାମନି ସୁଲତାନ୍

---

(୫) "Though the rays (Rayas) of the Carnatic had never before given their daughters in marriage to any persons but those of their own caste and deemed it degrading to intermarry with strangers, yet Dew Ray, out of necessity complied;···From the gate of the city to the palace, being a distance of nearly six miles, the road was spread with cloths of gold velvet satin and other rich stuff."

Tarikh-i-Ferista translated by John Briggs, London, 1829, Vol. II pp. 385-87

କର୍ଣ୍ଣାଟର ରାୟମାନେ ଯଦିବା ନିଜ ଜାତି ଛଡ଼ା ପୂର୍ବେ ଆଉ କାହାରିକୁ କନ୍ୟା ଦେଉ ନ ଥିଲେ ଓ ବିଦେଶୀମାନଙ୍କ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରିବାକୁ ହେୟ ମନେ କରୁଥିଲେ, ଆବଶ୍ୟକତାବୋଧରୁ ଦେବ-ରାୟ (କନ୍ୟା ଦେବାକୁ) ମାନି ଯାଇଥିଲେ ।···ନଗରୀର ବହିର୍ଦ୍ୱାରଠାରୁ ରାଜପ୍ରାସାଦ ପର୍ଯ୍ୟନ୍ତ ପ୍ରାୟ ୬ ମାଇଲ୍ ରାସ୍ତା ଉପରେ (ବରର ଯିବାପାଇଁ) ସୁନା-ଲୁଗା, ମଖମଲ୍, ସାଟିନ୍ ଓ ଅନ୍ୟାନ୍ୟ ମୂଲ୍ୟବାନ୍ ପଦାର୍ଥ ବିଛା ଯାଇଥିଲା ।

ପୁଣି ବିଜୟନଗରର ରାଜାଙ୍କର ଘୋର ଶତ୍ରୁ ହୋଇପଡ଼ିଥିଲେ, ଆଉ ବଂଶାନୁକ୍ରମେ ଉଭୟ ରାଜ୍ୟ ମଧ୍ୟରେ ଉନ୍ମୂଳ ଯୁଦ୍ଧ ଲାଗି ରହିଥିଲା, ମାତ୍ର ଓଡ଼ିଶାର ଦେଶଭକ୍ତ କବି ଶତ୍ରୁରାଜ୍ୟ ପ୍ରତି ଏଠାରେ ବ୍ୟଙ୍ଗ କରି କହିଛନ୍ତି ଯେ, ଯେ ହେତୁରୁ ବିଜୟ-ନଗର-ରାଜା ପ୍ରତାପଶାଳୀ ବାହାମନି ସୁଲତାନ୍‌ଙ୍କୁ କନ୍ୟା ଦେଇଛନ୍ତି, ସେହି ହେତୁରୁ ସେ ଆଉ କାହାରିକୁ, ଏପରିକି ଜଗନ୍ନାଥ-ରାଜ୍ୟର ରାଜାଙ୍କୁ ମଧ୍ୟ ମଣିଷ ତଳରେ ଗଣନ୍ତି ନାହିଁ ।

ତୃତୀୟ ଅଧ୍ୟାୟର (ଚ) ରେ ଯେଉଁ ଉଦ୍ଧୃତାଂଶ ଦିଆଯାଇଛି, ସେଥିରେ ଥିବା ଆଉ କେତୋଟି କଥା କପିଳେଶ୍ୱର ଓ ମଲ୍ଲିକାର୍ଜୁନଙ୍କ ମଧ୍ୟରେ ଘଟିଥିବା ଯୁଦ୍ଧକୁ ଆହୁରି ଟିକିଏ ସ୍ପଷ୍ଟ କରି ଦେଉଛି । କବିଙ୍କ ବର୍ଣ୍ଣନାନୁସାରେ କୌଶିକୀ ନଦୀ ନୈର୍‌ଋତ ମେଖଳାରୁ ବାହାରି କରିଞ୍ଚିପୁର ନିକଟରେ ବହି ଯାଇଥିଲା, ଆଉ ଏହି ନଦୀର ପଶ୍ଚିମ ତଟରେ ରାମଙ୍କର ସୈନ୍ୟ ଓ ପୂର୍ବ ତଟରେ ପୁଣ୍ଡରୀକ ବାସୁ-ଦେବଙ୍କ ସୈନ୍ୟ ଅବସ୍ଥାପିତ ହୋଇଥିଲେ । ଏହି କୌଶିକୀ ନଦୀ ତୁଙ୍ଗଭଦ୍ରା ଛଡ଼ା ଅନ୍ୟ କିଛି ନୁହେଁ । ତୁଙ୍ଗଭଦ୍ରା ପଶ୍ଚିମଘାଟ ପର୍ବତମାଳାରୁ ବାହାରି ଓ ବିଜୟନଗର ନିକଟରେ ପ୍ରବାହିତ ହୋଇ କାର୍ନୁଲ ନିକଟରେ କୃଷ୍ଣା ନଦୀରେ ପଡ଼ିଛି । ଏହି ପଶ୍ଚିମଘାଟ ପର୍ବତମାଳାକୁ ହିଁ କବି ନୈର୍‌ଋତ-ମେଖଳା ବା ଦକ୍ଷିଣ-ପଶ୍ଚିମ ପର୍ବତ-ମାଳା ବୋଲି କହିଛନ୍ତି । ତୁଙ୍ଗଭଦ୍ରାର ଦକ୍ଷିଣ ପଟରେ ବିଜୟନଗର ରାଜଧାନୀ ଅବସ୍ଥିତ, ମାତ୍ର ରାଜଧାନୀଟି ଅନୁଚ୍ଚ ପର୍ବତମାଳା ଦ୍ୱାରା ଏପରି ଭାବରେ ସୁରକ୍ଷିତ ଯେ ଏହାର ନିକଟରେ ଯଦି କୌଣସି ଶତ୍ରୁସୈନ୍ୟ ନଦୀକୁ ଅତିକ୍ରମ କରେ, ତେବେ ତାହା ହଠାତ୍ ପର୍ବତଶ୍ରେଣୀର ସମ୍ମୁଖୀନ ହୋଇ ପଡ଼େ । ଏହି ହେତୁରୁ ବିଜୟ-ନଗରର ଆକ୍ରମଣ ପାଇଁ ବାହାମନି ସୈନ୍ୟ ସବୁବେଳେ ତୁଙ୍ଗଭଦ୍ରାକୁ ହସ୍‌ପେଟ ନିକଟରେ ଅତିକ୍ରମ କରୁଥିଲେ । ଏହିଠାରେ ତୁଙ୍ଗଭଦ୍ରା ପଶ୍ଚିମ-ପୂର୍ବ ଗତି ପରିତ୍ୟାଗ କରି କେତେକ ମାଇଲ୍‌ଯାଏଁ ଉତ୍ତର-ଦକ୍ଷିଣ ଗତି ଧାରଣ କରିଛି, ଆଉ ଏହିଠାରେ ବିଜୟନଗରର ରକ୍ଷା ପାଇଁ ନିର୍ମିତ ହୋଇଥିବା ପ୍ରଥମ ପ୍ରାଚୀରର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ରହିଛି । ପୂର୍ବକାଳରେ ରାଜା ବା ସେନାପତିମାନେ ସୈନ୍ୟଶ୍ରେଣୀର ସର୍ବାଗ୍ରେ ଗତି କରି ଯାଉଥିଲେ । ଏଣୁ ରାମ ବା ଓଡ଼ିଶାର ରାଜା ପ୍ରଥମେ ନଦୀ ଭିତରକୁ ଡେଇଁପଡ଼ି ନଦୀ ପାର ହୋଇ ଯାଇଥିବା କଥା ସାରଳା ଦାସ ଯାହା ଲେଖିଛନ୍ତି, ସେଥିରେ କୌଣସି ଅସଙ୍ଗତି ନାହିଁ । କବି ଲେଖିଛନ୍ତି—

"ଲକ୍ଷେ ରାଜାଙ୍କ ଭଣ୍ଡାରେ ଥିବ ଯେତେ ଧନ,
ପୁଣ୍ଡରୀକ ମୁକୁଟକୁ ନୋହିବ ସମାନ ।"

ଦିଲ୍ଲୀ ସାମ୍ରାଜ୍ୟ ଯେତେବେଳେ ଧ୍ୱଂସାବଶେଷରେ ପରିଣତ ହୋଇଥିଲା, ଠିକ୍ ସେତିକବେଳେ ଦକ୍ଷିଣରେ ଅସୀମ ଧନଶାଳୀ ଓ ଶକ୍ତିଶାଳୀ ହିନ୍ଦୁ ସାମ୍ରାଜ୍ୟ ବିଜୟନଗରର ଅଭ୍ୟୁଦୟ ଘଟିଥିଲା । ଏଣୁ ସାରଳା ଦାସଙ୍କ ଏହି ଉକ୍ତିରେ କବିତ୍ୱର ଛଟା ଥିଲେ ହେଁ ଅତିରଞ୍ଜନର ମାତ୍ରା ଅଧିକ ନାହିଁ । ବିଜୟନଗର ସମ୍ରାଟ ପ୍ରକୃତିରେ ପ୍ରଭୂତ ଧନଶାଳୀ ଥିଲେ ।

ମୋଟ ଉପରେ କବି "ଭୀମଙ୍କ ପୁଣ୍ଡ୍ରଗିରିକ ବାସୁଦେବ ରାଜା ସହିତ ଯୁଦ୍ଧ ଓ ତାହାର ବନ୍ଧନ" ଶୀର୍ଷକ ଯେଉଁ ଆଖ୍ୟାୟିକା ଲେଖିଛନ୍ତି, ତାକୁ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କଲେ, ତାହା ଓଡ଼ିଶା ରାଜା ଓ ବିଜୟନଗର ରାଜା ମଧ୍ୟରେ ଘଟିଥିବା ଯୁଦ୍ଧର ହିଁ ଯେ ବର୍ଣ୍ଣନା, ଏଥିରେ ସନ୍ଦେହର ଅବକାଶ ରହେ ନାହିଁ । ମୂଳ ମହାଭାରତର ନାୟକମାନଙ୍କ ଜରିଆରେ ସମଗ୍ର ଐତିହାସିକ ଘଟନାଟିକୁ ବର୍ଣ୍ଣନା କରିବାବେଳେ ଯେଉଁ ବାଧା ଓ ଅସୁବିଧା ଘଟିବାର କଥା, ତାହା ଅନିବାର୍ଯ୍ୟ ରୂପେ ଘଟିଛି; ତଥାପି ଏହି ଐତିହାସିକ ଘଟନାର ପୂର୍ଣ୍ଣ ଚିତ୍ରଟିଏ ଆମ୍ଭମାନଙ୍କୁ ସାରଳା ମହାଭାରତରୁ ମିଳିଯାଉଛି । କବି ଗଙ୍ଗାଧର ଲେଖିଛନ୍ତି ଯେ, ବିଜୟନଗର-ରାଜା ମଲ୍ଲିକାର୍ଜ୍ଜୁନ ଗୁହାରୁ ସିଂହ-ଶିଶୁ ବାହାରିବା ପରି ତାଙ୍କ ରାଜଧାନୀରୁ ବାହାରି ଆସିବା ପରେ ଓଡ଼ିଶା ଓ ବାହାମନି ରାଜ୍ୟର ସମ୍ମିଳିତ ସୈନ୍ୟ ପୃଷ୍ଠଭଙ୍ଗ ଦେଇଥିଲେ । ଏହି ଯୁଦ୍ଧରେ ଓଡ଼ିଶା ରାଜା ବାହାମନି ରାଜ୍ୟର ସହାୟତା ନେଇ-ଥିଲେ କି ନା, ଏ ବିଷୟ ତୃତୀୟ ଅଧ୍ୟାୟରେ ସମ୍ୟକ୍ ଭାବରେ ଆଲୋଚିତ ହୋଇଛି । ଏଠାରେ ତା'ର ପୁନରାବୃତ୍ତି ଅନାବଶ୍ୟକ । ବରଞ୍ଚ ଏଠାରେ ସାରଳା ଦାସ ବିଦ୍ରୂପ କରି କହିଛନ୍ତି ଯେ, ବିଜୟନଗର-ରାଜା ବାହାମନି ସୁଲ୍‌ତାନଙ୍କୁ କନ୍ୟା ଦେଇଛନ୍ତି ବୋଲି ସେ ଆଉ କାହାକୁ ମଣିଷ ତଳରେ ଗଣନ୍ତି ନାହିଁ । ଏହି ଉକ୍ତି ଦ୍ୱାରା ସେ ଉଭୟ ରାଜ୍ୟ ମଧ୍ୟରେ ବନ୍ଧୁତା ଓ ସହଯୋଗିତାର ସୂଚନା ଦେଇଛନ୍ତି । ସାରଳା ଦାସ ଏଠାରେ ଓଡ଼ିଶା-ରାଜା ଓ ବିଜୟନଗର ରାଜାଙ୍କ ମଧ୍ୟରେ ଘଟିଥିବା ଯୁଦ୍ଧର ଗୋଟିଏ ପୂର୍ଣ୍ଣ ବିବରଣ ଦେଇ ଶେଷରେ ବିଜୟନଗର ରାଜା ପୁଣ୍ଡ୍ରଗିରିକ ବାସୁଦେବ ବା ମଲ୍ଲିକାର୍ଜ୍ଜୁନ ସମ୍ପୂର୍ଣ୍ଣ ରୂପେ ପରାଜିତ ହୋଇଥିବା କଥା ଲେଖିଛନ୍ତି । ଏଣୁ କବି ଗଙ୍ଗାଧରଙ୍କ ବର୍ଣ୍ଣନାକୁ ଗୁରୁତ୍ୱ ଦେବା ସମ୍ଭବପର ହେଉ ନାହିଁ ।

ବିଜୟନଗରର ରାଜା ମଲ୍ଲିକାର୍ଜ୍ଜୁନଙ୍କୁ କବି କେତେବେଳେ ଶିବଲିଙ୍ଗ-ରୂପେ (ସଭାପର୍ବ, ପୃ. ୧୮୯-୯୧ ଓ ବନପର୍ବ, ପୃ. ୧୬୦-୬୧) ଓ କେତେବେଳେ କୃଷ୍ଣନନ୍ଦିକୁ ପୁଣ୍ଡ୍ରଗିରିକ ବାସୁଦେବ ରୂପେ (ସଭାପର୍ବ, ପୃ. ୧୦୧-୭) ବର୍ଣ୍ଣନା କରିଛନ୍ତି । ସମସ୍ତ ଐତିହାସିକ ଘଟଣାକୁ ମହାଭାରତ ଜରିଆରେ ଓ ପୌରାଣିକ ଭାବରେ ପ୍ରକାଶ କଲାବେଳେ କବି ଏହା କରିବାକୁ ବାଧ୍ୟ ହୋଇଛନ୍ତି, ମାତ୍ର ସେ ଅନ୍ତତଃ

ଥରେ ମଲ୍ଲିକାର୍ଜୁନଙ୍କୁ କଲ୍ୟାଣର ରାଜା ରୂପେ ମଧ୍ୟ ବର୍ଣ୍ଣନା କରିଛନ୍ତି । ପାଣ୍ଡବ-ମାନେ ଗୁପ୍ତ ବନବାସରେ ଥିବାବେଳେ ସେମାନଙ୍କ ସନ୍ଧାନ ପାଇଁ ଦୁର୍ଯ୍ୟୋଧନ ଚାରିଦିଗକୁ ଚାର ପଠାଇଥିଲେ, ମାତ୍ର ଚାରମାନେ ପାଣ୍ଡବମାନଙ୍କ ସନ୍ଧାନ ନ ପାଇ ଦୁର୍ଯ୍ୟୋଧନଙ୍କଠାରେ ସେମାନଙ୍କ ଭ୍ରମଣର ପୂର୍ଣ୍ଣ ବିବରଣ ଦେଇଥିଲେ । ଏହି ପ୍ରସଙ୍ଗରେ ସାରଳା ଦାସ ନିମ୍ନୋକ୍ତ ଉଦ୍ଧୃତାଂଶରେ ଦକ୍ଷିଣ ଦିଗର ଚାରମୁଖରେ ମଲ୍ଲିକାର୍ଜୁନଙ୍କ ନାମ ପ୍ରକାଶ କରିଛନ୍ତି—

କନାଉଜ ଉଦେଗିରି ପୁଣି ଚନ୍ଦ୍ରଗିରି<br>
କାଞ୍ଚି ଚନ୍ଦ୍ରପୁର ଆଉ ଉତ୍ତମ କାବେରୀ ।<br>
ଚୋଳ ମଣ୍ଡଳ କୋଶମଣ୍ଡଳ ମଲ୍ଲିକା<br>
ପାଣ୍ଡବ ନଗର କୃଷ୍ଣା ବେଣୀ ଷଢ଼ଙ୍ଗିକା ।

ଏହି ଉଦ୍ଧୃତାଂଶରେ ଥିବା ନାମଗୁଡ଼ିକୁ ଯଥାଯଥ ଭାବରେ ଚିହ୍ନିତ କରି-ପାରିଲେ ବିଷୟଟି ଆପେ ଆପେ ସ୍ପଷ୍ଟ ହୋଇପଡ଼ିବ ।

କନାଉଜ—ଲେଖନକାର ବା ପ୍ରକାଶକଙ୍କ ଭ୍ରମ ହେତୁରୁ ଏଠାରେ "କର୍ଣ୍ଣାଟକ" ସ୍ଥାନରେ "କନାଉଜ" ହୋଇଯାଇଥିବା ଅତ୍ୟନ୍ତ ସମ୍ଭବ । କନାଉଜ ଉତ୍ତର-ଭାରତରେ ଅବସ୍ଥିତ । ଏ କଥା ସାରଳା ଦାସଙ୍କୁ ଜଣା ନ ଥିଲା ବୋଲି କହିଲେ ଅବାନ୍ତର ହେବ । ସମଗ୍ର ଭାରତର ଭୌଗୋଳିକ ଜ୍ଞାନ ଯେ ସାରଳା ଦାସଙ୍କ ନଖ ଦର୍ପଣରେ ଥିଲା, ତାଙ୍କ ସାହିତ୍ୟର ଏହି ଆଲୋଚନା ଶେଷ ହେବା ବେଳକୁ ସୁଧୀ ପାଠକେ ଆପେ ଆପେ ଜାଣି ପାରିବେ । ଏପରି ସ୍ଥଳେ ସାରଳା ଦାସ ଯେ, କନାଉଜକୁ ନେଇ ଦକ୍ଷିଣରେ ଥୋଇଛନ୍ତି, ଏ କଥା ଲେଖକ ବିଶ୍ୱାସ କରିପାରୁନାହିଁ ।

ଉଦେଗିରି—ଉଦୟଗିରିର ଭୌଗୋଳିକ ବିବରଣ ୨ୟ ଅଧ୍ୟାୟରେ ଦିଆଯାଇଛି । ଏଠାରେ ପୁନରାବୃତ୍ତି ଅନାବଶ୍ୟକ ।

ଚନ୍ଦ୍ରଗିରି—ଉଦୟଗିରି ଓ ଚନ୍ଦ୍ରଗିରି ଏହି ଦୁର୍ଗ ଦୁଇଟି ବିଜୟନଗର ସମ୍ରାଟଙ୍କ ସାମନ୍ତରାଜା ସାଳୁବ ନରସିଂହଙ୍କ ରାଜ୍ୟର ପ୍ରଧାନ ଦୁର୍ଗ ଥିଲା । ଦୁର୍ଗ ଦୁଇଟିର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ପୂର୍ବନାମରେ ଅଭିହିତ ହେଉଛି । ଉଦୟ-ଗିରି ନେଲୋର ଜିଲ୍ଲାରେ ଓ ଚନ୍ଦ୍ରଗିରି ଚିତ୍ତୁର ଜିଲ୍ଲାରେ ଅବସ୍ଥିତ ।

କାଞ୍ଚି—ଏହାର ଆଧୁନିକ ନାମ କାଞ୍ଜିଭେରମ୍ ହୋଇଛି । ଏହା ପ୍ରଥମେ ଦକ୍ଷିଣର ପଲ୍ଲବ ରାଜାମାନଙ୍କର ଓ ପରେ ସାଳୁବ ବଂଶର ରାଜଧାନୀ ଥିଲା । ମାନ୍ଦ୍ରାଜ

ନଗରର ଦକ୍ଷିଣ ପଶ୍ଚିମ ଦିଗରେ ଭୁବନେଶ୍ୱର ପରି ବହୁ ମନ୍ଦିରରେ ଶୋଭିତ ହୋଇ ଓ ଗୋଟିଏ ମଧ୍ୟମ ଶ୍ରେଣୀର ସହରରେ ପରିଣତ ହୋଇ ଏହା ବର୍ତ୍ତମାନ ଚିଙ୍ଗଲ୍‌ପୁଟ୍ ଜିଲ୍ଲାରେ ଅବସ୍ଥିତ ରହିଛି ।

ଚନ୍ଦ୍ରପୁର—ଚିଙ୍ଗଲ୍‌ପୁଟ୍‌ର ଗୋଟିଏ ତାମିଲ ନାମ । ଏହି ଚିଙ୍ଗଲ୍‌ପୁଟ୍‌କୁ ହିଁ କବି ଚନ୍ଦ୍ରପୁର ବୋଲି ଲେଖିଛନ୍ତି । କାଞ୍ଚି ପରେ ଏହି ନାମର ଉଲ୍ଲେଖ ଥିବାରୁ ଏପରି ଅନୁମାନ ଅତ୍ୟନ୍ତ ସଙ୍ଗତ । ଚିଙ୍ଗଲପୁଟ୍ ବର୍ତ୍ତମାନ ଜିଲ୍ଲା ସହର ଓ ମାନ୍ଦ୍ରାଜ ସହରର ପ୍ରାୟ ୬୦ ମାଇଲ୍ ଦୂରରେ ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ ।

ଉତ୍ତମ କାବେରୀ—ଉତ୍ତମ ଅର୍ଥ ଭଲ । ଯଦି ଭଲ କାବେରୀ ବୋଲି କୁହାଯାଏ, ତେବେ ଆଉ ଗୋଟିଏ ମନ୍ଦ କାବେରୀ ଥିଲା ବୋଲି ଅନୁମାନସିଦ୍ଧ ହୋଇପଡ଼ୁଛି; କିନ୍ତୁ ଦକ୍ଷିଣରେ କେବଳ ଗୋଟିଏ ମାତ୍ର କାବେରୀ ନଦୀ ଅଛି । ଏଣୁ ଏପରି ଭ୍ରମ କବିଙ୍କର ନୁହେଁ, ଏହା ଲେଖନକାର ବା ପ୍ରକାଶକଙ୍କର ଭ୍ରମ । ମହୀଶୂର ସହରର ଦକ୍ଷିଣ-ପୂର୍ବ ଦିଗରେ କାବେରୀ ନଦୀରେ ଯେଉଁ ସୁଦୃଶ୍ୟ ଜଳପ୍ରପାତ ଅଛି, ତାହା ବର୍ତ୍ତମାନ ସୁଦ୍ଧା କାବେରୀପତନ ନାମରେ ଅଭିହିତ ହେଉଛି । "ପତନକାବେରୀ" ଭ୍ରମ ହେତୁରୁ ଉତ୍ତମକାବେରୀରେ ପରିଣତ ହୋଇଥିବା ଖୁବ ସମ୍ଭବ ।

ଚୌରମଣ୍ଡଳ—ଦକ୍ଷିଣର ଚୋଳ ରାଜାମାନଙ୍କ ଅଧିକୃତ ଅଞ୍ଚଳ ହିଁ ଚୋଳମଣ୍ଡଳ ବା ଚୌରମଣ୍ଡଳ ନାମରେ ଅଭିହିତ ହେଉଥିଲା । ବର୍ତ୍ତମାନ ସମଗ୍ର ଦକ୍ଷିଣ-ପୂର୍ବ ଉପକୂଳ ଅଞ୍ଚଳ କରମଣ୍ଡଳ ନାମରେ ଅଭିହିତ ହେଉଛି ।

କୋଶଳମଣ୍ଡଳ—ଗିରିବନପୂର୍ଣ୍ଣ ମାଳ ଅଞ୍ଚଳକୁ ହିଁ କବି କୋଶଳ ନାମରେ ବାରମ୍ବାର ଅଭିହିତ କରିଛନ୍ତି । ଅନ୍ୟାନ୍ୟ ଭାରତୀୟ ସାହିତ୍ୟରେ କେବଳ ଉତ୍ତର କୋଶଳ (ଅଯୋଧ୍ୟା) ଓ ଦକ୍ଷିଣ କୋଶଳର (ଛତିଶଗଡ଼ ସମ୍ବଲପୁର ଅଞ୍ଚଳର) ଉଲ୍ଲେଖ ଦେଖାଯାଏ, ମାତ୍ର ସାରଳାଦାସ ଭାନୁମତୀର ସ୍ୱୟମ୍ବର ପ୍ରସଙ୍ଗରେ ଷୋଳଟି କୋଶଳର ନାମ ଉଲ୍ଲେଖ କରିଛନ୍ତି (ଆଦିପର୍ବ, ପୃ-୧୯୬) ଏହି ବର୍ଣ୍ଣନାରୁ ଜଣାଯାଏ ଯେ କବି ମାଳଅଞ୍ଚଳକୁ ହିଁ କୋଶଳ ନାମରେ ଅଭିହିତ କରିଛନ୍ତି । ଓଡ଼ିଶାରେ କୋଶଳ ଶବ୍ଦ ଏହି ଅର୍ଥରେ ହିଁ ବ୍ୟବହୃତ ହେଉଥିଲା । ଏଣୁ ଆଜି ତାମ୍ରଶାସନରେ କୋଶଳ ଶବ୍ଦ ପାଇବାମାତ୍ରେ ତାକୁ ଛତିଶଗଡ଼—ସମ୍ବଲପୁର ଅଞ୍ଚଳ ବୋଲି ଧରି ନେଇ ତାହାର ସାହାଯ୍ୟରେ ପ୍ରକାଣ୍ଡ ଐତିହାସିକ-ସୌଧ ତୋଳିଲେ, ସେପରି ସୌଧର ମୂଳଭିତ୍ତି ଅତ୍ୟନ୍ତ ଦୁର୍ବଳ ବୋଲି ବୁଝିବାକୁ ହେବ । ଏଠାରେ ଚୌରମଣ୍ଡଳ ବା ଚୋଳମଣ୍ଡଳ ପରେ କୋଶଳ ମଣ୍ଡଳର ନାମ ଉଲ୍ଲେଖ

ଥିବାରୁ ଏହାକୁ ଗିରିବନପୂର୍ଣ୍ଣ ଆଧୁନିକ ହାଇଦ୍ରାବାଦ ଅଞ୍ଚଳ ବୋଲି ହିଁ ଧରିବା ବାଞ୍ଛନୀୟ ।

ମଲ୍ଲିକା (ମଣ୍ଡଳ)—ଏହି ନାମଟିର ଆଲୋଚନା ସବା ଶେଷରେ କରାଯିବ ।

ପାଣ୍ଡବନଗର—ଆଧୁନିକ ମଦୁରା । କଥିତ ଅଛି ଯେ, ଦକ୍ଷିଣର ପାଣ୍ଡ୍ୟ ରାଜବଂଶ ଉତ୍ତରଭାରତରୁ ଆସିଥିଲେ ଓ ନିଜକୁ ମହାଭାରତର ପାଣ୍ଡବବଂଶୀ ବୋଲି ପରିଚୟ ଦେଉଥିଲେ । ଉତ୍ତରଭାରତର ମଥୁରା ନଗରୀର ନାମାନୁସାରେ ସେମାନେ ସେମାନଙ୍କ ରାଜଧାନୀର ନାମ ମଧ୍ୟ ମଥୁରା ଦେଇଥିଲେ, ମାତ୍ର ଦକ୍ଷିଣର ଉଚ୍ଚାରଣ-କ୍ରମରେ ଏହି ମଥୁରା ଶବ୍ଦ ମଦୁରାରେ ପରିଣତ ହେଲା (ଭଣ୍ଡାରକରଙ୍କ Carmichael Lectures ଦ୍ରଷ୍ଟବ୍ୟ) । ଏଣୁ ଏଠାରେ ପାଣ୍ଡବନଗର ପାଣ୍ଡ୍ୟମାନଙ୍କ ରାଜଧାନୀ ମଦୁରା ବ୍ୟତୀତ ଅନ୍ୟ କୌଣସି ସ୍ଥାନ ହୋଇ ନ ପାରେ ।

କୃଷ୍ଣାବେଣୀ—ଦକ୍ଷିଣର ସୁବିଖ୍ୟାତ କୃଷ୍ଣାନଦୀ ।

ଷଡ଼ସ୍ଥଳୀ—କବି ଏହି ଭୌଗୋଳିକ ନାମଟି କେଉଁ ସ୍ଥାନକୁ ଲକ୍ଷ୍ୟ କରି ଲେଖିଛନ୍ତି, ତାହା ଲେଖକ ସ୍ଥିର କରିପାରୁନାହିଁ । ଏହା କବିବର୍ଣ୍ଣିତ ମୌଳିକ ନାମ କିମ୍ବା ପରବର୍ତ୍ତୀ ଭ୍ରମପ୍ରମାଦ ହେତୁ ଏହି ରୂପ ଧାରଣ କରିଛି, ଏକଥା ମଧ୍ୟ କହିବା ସମ୍ଭବପର ହେବ ନାହିଁ ।

ଉଲ୍ଲିଖିତ ଭୌଗୋଳିକ ବିବରଣୀରେ କବି ଦାକ୍ଷିଣାତ୍ୟର ପ୍ରଧାନ ପ୍ରଧାନ ସ୍ଥାନର ନାମ ଉଲ୍ଲେଖ କରିଛନ୍ତି; ତା'ଛଡ଼ା ସମଗ୍ର ଦାକ୍ଷିଣାତ୍ୟକୁ ତିନୋଟି ମଣ୍ଡଳରେ ବିଭକ୍ତ କରିଦେଇଛନ୍ତି । ଏଥିମଧ୍ୟରୁ ପ୍ରଥମଟି ହେଉଛି ଚୌରିମଣ୍ଡଳ ବା ଚୈଳମଣ୍ଡଳ । ଏହା ଉପକୂଳ ଅଞ୍ଚଳ ଓ ଏହା ବିଜୟନଗର ସାମ୍ରାଜ୍ୟର ସାମନ୍ତରାଜା ସାଲୁବ ନରସିଂହଙ୍କ ଅଧୀନରେ ଥିଲା । ଦ୍ୱିତୀୟଟି ହେଉଛି କୋଶଳ-ମଣ୍ଡଳ ବା ଆଧୁନିକ ହାଇଦ୍ରାବାଦ ଅଞ୍ଚଳ । ଏହା ମାଳଅଞ୍ଚଳ ଓ ଏହା ବାହାମନି ସୁଲତାନ୍‌ମାନଙ୍କ ଅଧୀନରେ ଥିଲା । ଆଉ ତୃତୀୟଟି ହେଉଛି ମଲ୍ଲିକା (ମଣ୍ଡଳ) । ଏହା ନିଶ୍ଚୟ କର୍ଣ୍ଣାଟ ଅଞ୍ଚଳ (ମୈଶୂର ଅଞ୍ଚଳ) ବା ଖାସ୍ ବିଜୟନଗର ରାଜ୍ୟ । କହିବା ବାହୁଲ୍ୟ ଯେ, ପ୍ରଥମ ଓ ଦ୍ୱିତୀୟ ନାମ ସହିତ ମଣ୍ଡଳ ଶବ୍ଦ ଯୋଗକରିଥିବାରୁ କବି ତୃତୀୟ ନାମ ସହିତ ମଣ୍ଡଳ ଶବ୍ଦ ଯୋଗ କରିବାର ଆବଶ୍ୟକତା ବୋଧ କରି ନାହାନ୍ତି । ତା'ଛଡ଼ା ପଦ ପକାଇବାକୁ ମଲ୍ଲିକାମଣ୍ଡଳ ସ୍ଥାନରେ ଖାଲି ମଲ୍ଲିକା କରିବାକୁ ସେ ବାଧ୍ୟ ହୋଇଛନ୍ତି । ଏଣୁ ଏଠାରେ ମଲ୍ଲିକା ମଣ୍ଡଳର ଅର୍ଥ ହେଉଛି ମଲ୍ଲିକା ବା ମଲ୍ଲିକାର୍ଜ୍ଜୁନଙ୍କ ରାଜ୍ୟ ବା ବିଜୟନଗର ରାଜ୍ୟ । କପିଳେଶ୍ୱର ଗଜପତି ଓ କବି ସାରଳାଦାସଙ୍କ ସମୟରେ ଦାକ୍ଷିଣାତ୍ୟ ପ୍ରକୃତରେ ଏହି ତିନୋଟି ମୁଖ୍ୟ ରାଜନୀତିକ ବିଭାଗରେ ବିଭକ୍ତ ହୋଇଥିଲା ଓ ଏମାନଙ୍କ ସମସାମୟିକ ବିଜୟନଗର

ରାଜାଙ୍କ ନାମ ଥିଲା ମଲ୍ଲିକାର୍ଜୁନ । ସୁତରାଂ ଏଠାରେ କବି ବର୍ଣ୍ଣିତ ମଲକା ଯେ ମଲ୍ଲିକାର୍ଜୁନ ଏଥିରେ ସନ୍ଦେହର ଅବକାଶ ନାହିଁ । (୬)

ଆମ ଦେଶର କମ୍ବଦନ୍ତୀରେ ସୁଦ୍ଧା ମଲ୍ଲିକାର୍ଜୁନଙ୍କୁ ଯେ ଖାଲି ମଲ୍ଲିକା ବୋଲି କୁହାଯାଉଥିଲା, ତାହା ମାଦଳାପାଞ୍ଜିରୁ ପ୍ରମାଣିତ ହୁଏ । 'କପିଳେଶ୍ୱରଙ୍କ' ରାଜ୍ୟ ଜୟ-କଥା ବର୍ଣ୍ଣନା କରି ପାଞ୍ଜିକାର ଲେଖିଛନ୍ତି—"ଅ୧୯ ଙ୍କ କୁଣ୍ଡମେରୁ ଗଲେ । ଅ ୨୧ ଙ୍କେ ମଲକାକୁ ମାଇଲେ (ମାଦଳାପାଞ୍ଜି, ପ୍ରାଚୀ ସମିତି, ପୃ. ୪୪) ।" ଏଠାରେ କୁଣ୍ଡବଡ଼ୁକୁ ହିଁ କୁଣ୍ଡମେରୁ କୁହାଯାଇଛି । କୁଣ୍ଡବଡ଼ୁ ଜୟ ପରେ କପିଳେଶ୍ୱର ବିଜୟନଗର ରାଜ୍ୟ ଆକ୍ରମଣ କରିଥିଲେ ଓ ବିଜୟନଗରର ରାଜା ମଲ୍ଲିକାର୍ଜୁନଙ୍କ ସହିତ ତାଙ୍କର ଯୁଦ୍ଧ ହୋଇଥିଲା । ଏଣୁ ମାଦଳାପାଞ୍ଜିର ମଲକା ଯେ ମଲ୍ଲିକା ବା ମଲ୍ଲିକାର୍ଜୁନର ବିକୃତ ରୂପ, ଏଥିରେ ସନ୍ଦେହର କାରଣ ନାହିଁ (୭) ।

---

(୬) ସାରଳା ଦାସ ଅନେକ ସମୟରେ ରାଜାମାନଙ୍କ ନାମ ସେମାନଙ୍କ ଦ୍ୱାରା ଶାସିତ ଦେଶମାନଙ୍କୁ ମଧ୍ୟ ଦେଇଛନ୍ତି, ଯଥାଃ—

ତହୁଁ ସହଦେବ ବୀର ଥାଟକୁ ଚଳାଇ
କର୍ଣ୍ଣମଣ୍ଡଳ ରାଜ୍ୟରେ ପ୍ରବେଶିଲା ଯାଇ । ସଭାପର୍ବ, ପୃ. ୨୦୬ ।

ଏହି ପଦଟି ଯେଉଁ ଆଖ୍ୟାୟିକାରେ ଅଛି, ତାକୁ ପଢ଼ିଲେ ଜଣାଯାଏ ଯେ କବି ସହଦେବଙ୍କୁ ଭୋଜପୁରରୁ ଆଣି କର୍ଣ୍ଣମଣ୍ଡଳରେ ପହଞ୍ଚାଇଛନ୍ତି, ଆଉ କର୍ଣ୍ଣମଣ୍ଡଳରୁ ତାଙ୍କୁ ମିଥିଳା ଦେଶକୁ ନେଇଛନ୍ତି । ଭୋଜପୁର ବର୍ତ୍ତମାନ ସୁଦ୍ଧା ଉତ୍ତର-ପଶ୍ଚିମ ବିହାରର ଡାମରାଓନ୍ ନିକଟରେ ଅଛି । ଏହାର ନିକଟବର୍ତ୍ତୀ ଅଞ୍ଚଳ ହିଁ ଭୋଜପୁର ରାଜ୍ୟ ଥିଲା । ଦ୍ୱାର ଭଙ୍ଗା ଅଞ୍ଚଳକୁ ମିଥିଳା କୁହାଯାଉଥିଲା । ଏହି ଅଞ୍ଚଳରେ ବର୍ତ୍ତମାନ ସୁଦ୍ଧା ମୈଥିଳୀ ଭାଷା ପ୍ରଚଳିତ ଅଛି । ମୁଙ୍ଗେର ଓ ଭାଗଲପୁର ଅଞ୍ଚଳ ଅଙ୍ଗଦେଶ ନାମରେ ଅଭିହିତ ହେଉଥିଲା । ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ଅଙ୍ଗ ଦେଶରେ ରାଜା କରିଥିଲେ । ଏଣୁ ସାରଳା ଦାସ କର୍ଣ୍ଣ ଯେଉଁ ଦେଶରେ ରାଜା ଥିଲେ, ତାକୁ କର୍ଣ୍ଣମଣ୍ଡଳ ବୋଲି ଲେଖିଛନ୍ତି । ସେହିପରି ସେ ମଲ୍ଲିକା ବା ମଲ୍ଲିକାର୍ଜୁନ ଯେଉଁ ଦେଶରେ ରାଜା ଥିଲେ, ତାକୁ ମଲ୍ଲିକାମଣ୍ଡଳ ବୋଲି କହିଛନ୍ତି ।

(୭) ଅନ୍ୟତ୍ର (ସାରଳା-ସ୍ମରଣିକା ପୃ. ୨୮) ଲେଖକ ମଲ୍ଲିକା ଓ ମଲକାକୁ ମାଳବ ସହିତ ଚହ୍ନିତ କରି ଭ୍ରମରେ ପଡ଼ିଛି । ସାରଳା ସାହିତ୍ୟକୁ ସମ୍ପୂର୍ଣ୍ଣ ଭାବରେ ଅଧ୍ୟୟନ କରି ନ ଥିବାବେଳେ ଏହା ଲେଖା ହୋଇ-ଥିବାରୁ ଏପରି ଭ୍ରମ ଉପୁଜିଛି । ଏହି ଭ୍ରମ ଏଠାରେ ସ୍ୱୀକୃତ ହେଉଛି ।

# ପଞ୍ଚମ ପରିଚ୍ଛେଦ

## ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ ସମାଲୋଚନାର ଉତ୍ତର

ଝଙ୍କାରର ନବମ ବର୍ଷ ଚତୁର୍ଥ ସଂଖ୍ୟାରେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ "ସାରଳା ଦାସଙ୍କ ସମୟ ଓ ସଭାପର୍ବ" ଶୀର୍ଷକ ଲେଖା ପଢ଼ି ବିସ୍ମିତ ହେଲି । ବିସ୍ମିତ ହେବାର କାରଣ ଏହି ଯେ ସେ ମୋର ଅସମାପ୍ତ ଲେଖା ଉପରେ ଆଲୋଚନା ଆରମ୍ଭ କରି ଦେଇଛନ୍ତି । ତାହା ଛଡ଼ା ତାଙ୍କ ଭାଷା ଅନେକ ସ୍ଥଳରେ ଶ୍ଳୀଳତାର ସୀମା ଲଙ୍ଘନ କରିଛି । ମୁଁ ତାଙ୍କ ମତକୁ ମଧ୍ୟ ଆଲୋଚନା କରିଛି; କିନ୍ତୁ ମୋ ଲେଖାରେ କୁତ୍ରାପି ଭାଷା ଶ୍ଳୀଳତାର ସୀମା ଲଙ୍ଘନ କରୁଥିବା କଥା କେହି ଦେଖାଇ ପାରିବେ ନାହିଁ । ତାଙ୍କ ଲେଖାରେ ମୋ ପ୍ରତି ତିନି ପ୍ରକାରେ ଅଭିଯୋଗ ଅଛି—

୧—କୌଣସି ତାଳପତ୍ର ପୋଥି ନ ପଢ଼ି କେବଳ ଛପା ବହି ସାହାଯ୍ୟରେ ସାରଳା ସାହିତ୍ୟକୁ ଆଲୋଚନା କରିଥିବାରୁ ମୁଁ କୃତ୍ରିମ ଉପାଦାନ ବ୍ୟବହାର କରୁଛି ।

୨—ସାରଳା ମହାଭାରତର ସଭାପର୍ବରେ ଯେଉଁ ଐତିହାସିକ ଓ ଭୌଗୋଳିକ ନାମମାନ ରହିଛି, ସେଗୁଡ଼ିକ କୂଟଯୁକ୍ତି ସାହାଯ୍ୟରେ ବିଶ୍ଳେଷଣ କରି ସେଥିରୁ ମୁଁ ଭ୍ରାନ୍ତ ଐତିହାସିକ ମତ ବାହାର କରୁଛି । ଏଣୁ କୂଟଯୁକ୍ତି ଓ କୃତ୍ରିମ ଉପାଦାନ ସାହାଯ୍ୟରେ ଇତିହାସ ସୃଷ୍ଟି କଲେ ତାହାର ସ୍ଥାୟିତ୍ୱ ରହେ ନାହିଁ ଓ ତଦ୍ଦ୍ୱାରା ଦେଶ ଓ ଜାତିର ନୈତିକତା ବହୁ ପରିମାଣରେ କ୍ଷୁଣ୍ଣ ହୁଏ ବୋଲି ମୁଁ ଯେଉଁ ନୀତିବାକ୍ୟ ଲେଖିଛି, ତାହା ମୁଁ ନିଜେ ହିଁ ଭଙ୍ଗ କରୁଛି ।

୩—ସାରଳା ମହାଭାରତର ଆଦ୍ୟ ପର୍ବରେ ଯେଉଁ ମହାରାଜ କପିଳେଶ୍ୱରଙ୍କ ନାମ ଉଲ୍ଲେଖ ରହିଛି, ଗୋପୀନାଥବାବୁଙ୍କ ମତରେ ସେ ଖ୍ରୀ: ୧୪୩୫ରୁ ଖ୍ରୀ: ୧୪୬୭ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଗଜପତି କପିଳେଶ୍ୱର ନୁହନ୍ତି । ମୁଁ ଆଦ୍ୟପର୍ବରେ ମହାରାଜ କପିଳେଶ୍ୱରଙ୍କୁ ଗଜପତି କପିଳେଶ୍ୱର ବୋଲି ଧରି ନେଇ ସାରଳା ସାହିତ୍ୟରୁ ଭ୍ରାନ୍ତ-ଐତିହାସିକ ତଥ୍ୟ ବାହାର କରୁଛି । ତାଙ୍କ ମତରେ ଆଦ୍ୟପର୍ବରେ କପିଳେଶ୍ୱର

ନବମ ଶତାବ୍ଦୀର କୌଣସି କପିଳେଶ୍ୱର ହିଁ ହୋଇପାରନ୍ତି କିମ୍ବା ନବାବିଷ୍କୃତ ଅପ୍ରକାଶିତ, ନବମ ଶତାବ୍ଦୀର ଐତିହାସିକ ତଥ୍ୟ ସମ୍ବଳିତ "ମାଧବ-ମାହାତ୍ମ୍ୟ" ପୋଥିରେ ଥିବା କପିଳ ସିଂହ ହୋଇପାରନ୍ତି । ଏହି ଗ୍ରନ୍ଥଟି ପୁରୀରୁ ମିଳିଛି ଓ ଗବେଷକ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ନିକଟରେ ତାହା ଅଛି ବୋଲି ଅଧ୍ୟାପକ ବଂଶୀଧର ମହାନ୍ତି ଝଙ୍କାରରେ ପ୍ରକାଶିତ ତାଙ୍କର ଗୋଟିଏ ପ୍ରବନ୍ଧରେ ଲେଖିଛନ୍ତି ।

ସାରଳା ସାହିତ୍ୟର ରଚନାକାଳ ଓ ଐତିହାସିକ ଚିନ୍ତ ସମ୍ବନ୍ଧରେ ମୁଁ ମାତ୍ର ଗୁଟିଏ ପ୍ରବନ୍ଧ ପ୍ରକାଶ କରିଛି । ଏହା ଏହି ଆଲୋଚନାର ଆରମ୍ଭ ମାତ୍ର । ଏ ସମ୍ବନ୍ଧରେ ଅନ୍ତତଃ ତିରିଶଟି ପ୍ରବନ୍ଧ ଲେଖିଲେ ସାରଳା ସାହିତ୍ୟର ମହତ୍ତ୍ୱ କେତେକ ପରିମାଣରେ ପରିସ୍ଫୁଟ ହେବ ବୋଲି ମୁଁ ଆଶା ପୋଷଣ କରିଛି । ଜ୍ଞାନର ସୀମାବଦ୍ଧତା ହେତୁରୁ ହେଉ ବା ଭ୍ରମ ହେତୁରୁ ହେଉ, ପ୍ରଥମ ପ୍ରବନ୍ଧ-ଗୁଡ଼ିକରେ ଯେଉଁ ତ୍ରୁଟିବିଚ୍ୟୁତି ରହିଛି, ତାହା ମୋ ଦ୍ୱାରା ହିଁ ଆପେ ଆପେ ସ୍ୱୀକୃତ ଓ ପରିବର୍ତ୍ତିତ ହୋଇଥାନ୍ତା, ମାତ୍ର ମୋର ତିନୋଟି ମାତ୍ର ପ୍ରବନ୍ଧ ପଢ଼ି ଗୋପୀବାବୁ ମୋର ଅସମାପ୍ତ ଆଲୋଚନା ଉପରେ ଯେପରି ତୀବ୍ର ଆକ୍ରମଣ କରିଛନ୍ତି, ସେଥିରେ ମୁଁ ମଧ୍ୟ ତାଙ୍କ ଆଲୋଚନାର ପ୍ରତିବାଦ ନ ଜଣାଇ ରହିପାରୁନାହିଁ ।

୧—ସାରଳା ମହାଭାରତ ଛପା ବହିରେ ଯେ ବହୁ ଭାବରେ ଖଣ୍ଡିତ ବିକୃତ ହୋଇଛି, ଏ କଥା ମୁଁ ନିଜେ ପ୍ରଥମ ପ୍ରବନ୍ଧରେ ଆଲୋଚନା କରିଛି । ଏଣୁ ପରବର୍ତ୍ତୀ ପ୍ରବନ୍ଧଗୁଡ଼ିକ ଲେଖିବାବେଳେ ଏ କଥା ଯେ ମୁଁ ଭୁଲିଯାଇଛି, ଗୋପୀନାଥ ବାବୁଙ୍କର ଏପରି ଭାବିବା ଉଚିତ ନୁହେଁ; କିନ୍ତୁ ଛପା ବହିକୁ ବିକୃତ ବୋଲି ମୁଁ ଭାବୁଥିଲେ ହେଁ, ତାଳପତ୍ର ପୋଥିକୁ ଅଭ୍ରାନ୍ତ ବୋଲି ମୁଁ ଗୋପୀବାବୁଙ୍କ ପରି ଭାବେ ନାହିଁ । ସାରଳା ଦାସଙ୍କ ମୌଳିକ ଲେଖାକୁ ଅବିକଳ ଭାବରେ ପାଇବା ବର୍ତ୍ତମାନ ଏକପ୍ରକାର ଅସମ୍ଭବ । ସାରଳା ଦାସଙ୍କ ଲେଖାର ଯେକୌଣସି ପାଞ୍ଚଟି ପଦ ନମୁନା ସ୍ୱରୂପ ଧରି ତାକୁ ଦଶଟି ତାଳପତ୍ର ପୋଥିରେ ଯଦି ତୁଳନା କରାଯାଏ, ତେବେ ଦେଖାଯିବ, ସେହି ପାଞ୍ଚଟି ପଦ ଦଶଟି ପୋଥିରେ ଦଶପ୍ରକାର ଆକାର ଧାରଣ କରିଛି । ସେଥିରୁ ଏହା ହିଁ ପ୍ରମାଣିତ ହୁଏ ଯେ ସାରଳା ଦାସଙ୍କ ମୌଳିକ ଲେଖାକୁ ଅବିକଳ ଭାବରେ ଉଦ୍ଧାର କରାଯାଇନାହିଁ । ତାଙ୍କ ଲେଖା-ମାନଙ୍କର ଶୁଦ୍ଧ ସଂସ୍କରଣ କରିବାକୁ ହେଲେ, ଓଡ଼ିଶାର ପୂର୍ବ-ପଶ୍ଚିମ, ଉତ୍ତର-ଦକ୍ଷିଣ ସବୁ ଅଞ୍ଚଳରୁ ପୋଥି ସଂଗ୍ରହ କରିବାକୁ ହେବ ଓ ସେଗୁଡ଼ିକ ଉପରେ ବହୁ ଚିନ୍ତା, ବିଚାରଶକ୍ତି ଓ ପାଣ୍ଡିତ୍ୟ ପ୍ରୟୋଗ କଲେ ହୁଏତ ତାଙ୍କର ମୌଳିକ ଲେଖାର ଦଶଅଣା ଅଂଶ ମିଳିପାରିବ । ଆମ ଦେଶର ସମସ୍ତ କାର୍ଯ୍ୟ ଯେଭଳି ମନ୍ଥର ଗତିରେ ଚାଲିଛି ସେଥିରେ ଶୁଦ୍ଧ ସଂସ୍କରଣ ଦଶବର୍ଷ ଆଗରୁ ହୋଇପାରିବ ବୋଲି ମୋର ବିଶ୍ୱାସ ହେଉନାହିଁ ।

ଛପା ବହି ସଙ୍ଗକୁ ଗୋଟିଏ ବା ଯୋଡ଼ିଏ ପୋଥି ରହିଲେ ତାହା ଯେ, ଔଷଧ ସହିତ ଅନୁପାନ ପରି କାମ କରିବ, ଏପରି ବିଶ୍ୱାସ ମୋର ଥିଲେ ମଧ୍ୟ ଖାଲି ଗୋଟିଏ ବା ଯୋଡ଼ିଏ ପୋଥି ଯେ ସମସ୍ତ ସମସ୍ୟାର ସମାଧାନ କରିଦେବ, ଏପରି ବିଶ୍ୱାସ ମୋର ନାହିଁ । ଏଣୁ ଠକ ବୈଦ୍ୟର ଉପାୟ ନ ଧରି ଛପାବହି ସାହାଯ୍ୟରେ ହିଁ ଲେଖା ଆରମ୍ଭ କରିଦେଇଥିଲି । ଜଣେ ଠକ ବୈଦ୍ୟ ଥିଲା ଯେ କୌଣସି ରୋଗକୁ ଭଲ କରିବା ତା'ର ସାଧ୍ୟାତୀତ ଓ ବିଦ୍ୟାତୀତ ବୋଲି ଜାଣିପାରିଲେ ସେ ତତ୍କ୍ଷଣାତ୍ ରୋଗୀକୁ କହୁଥିଲା—"ବାବୁ, ମୋ' ପାଖରେ ଯେଉଁ ଔଷଧ ଅଛି, ସେଥିରୁ ପାନଟିଏ ଚଢ଼େଇ ଦେଲେ ତୁମର ରୋଗ ଉଡ଼ିଯାନ୍ତା; କିନ୍ତୁ ଗଣ୍ଡାମୂତ ଟିକିଏ ତ ମୋ' ପାଖରେ ନାହିଁ । ଗଣ୍ଡାମୂତ ଛଡ଼ା ଅନ୍ୟ କୌଣସି ଅନୁପାନରେ ମୋ' ଔଷଧ ଢାଳିଲେ ସୁଦ୍ଧା କାମ କରିବ ନାହିଁ ।" ମୁଁ ଯେତେବେଳେ ଦିଲ୍ଲୀରେ ସାରଳା ସାହିତ୍ୟ ଉପରେ ଲେଖା ଆରମ୍ଭ କଲି, ସେତେବେଳେ ହାତଲେଖା ପୋଥି ମୋତେ ଗଣ୍ଡାମୂତ ପରି ଦୁର୍ଲ୍ଲଭ ଥିଲା । ମୁଁ ଦେଖିଲି ଯେ, ତାହାର ଅଭାବ ବାହାନାରେ ଯଦି ଲେଖା ଆରମ୍ଭ ନ କରେ ତେବେ ଅଦୂର ଭବିଷ୍ୟତରେ ଏ ସମ୍ବନ୍ଧରେ ଲେଖନୀ ଚାଳିବା ସମ୍ଭବ ହେବ ନାହିଁ । ତା' ଛଡ଼ା ଛାପାବହି ପଢ଼ି ଦେଖିଲି ଯେ ମୌଳିକ ଲେଖା ଖଣ୍ଡିତ ଓ ବିକୃତ ହେବାପରେ ମଧ୍ୟ ଏଥିରେ ଯାହା ଅଛି, ତାହା ଇତିହାସ ସଂକଳନ ପାଇଁ ବହୁ ଉପାଦାନ ଯୋଗାଇବ । ସାରଳା ସାହିତ୍ୟର ଶୁଦ୍ଧ ସଂସ୍କରଣ ହେବାପରେ ଶୁଦ୍ଧ ପାଠ ସାହାଯ୍ୟରେ ଏଥିମଧ୍ୟରୁ ଯଦି କେତେକ ଅଂଶ କାଟିଦିଆଯାଏ, ତଥାପି ଛାପାବହିର ଉପାଦାନ ଉପରେ ପ୍ରତିଷ୍ଠିତ ମୂଳ ସିଦ୍ଧାନ୍ତଗୁଡ଼ିକର ବିଶେଷ କିଛି କ୍ଷତି ହେବ ନାହିଁ । ଅଭାବ ଅଭିଯୋଗ ବାହାନାରେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ କାର୍ଯ୍ୟ ଆରମ୍ଭ ନ କରିବା ସାଧୁ ଉଦ୍ୟମର ପରିଚାୟକ ନୁହେଁ । ଖାଲି ଛାପାବହି ସାହାଯ୍ୟରେ କାର୍ଯ୍ୟ ଆରମ୍ଭ କରିଥିବାରୁ ଗୋପୀନାଥ ବାବୁ ମୋ' ଉପରେ କ୍ଷୁବ୍ଧ ହେଉଥିଲେ ହେଁ ସମସ୍ତ ଦେଶବାସୀ ତାଙ୍କ ସହିତ ଏକମତ ହେବେ ନାହିଁ ବୋଲି ମୋର ଆଶା ।

ଏଠାରେ ମୁଁ ସ୍ପଷ୍ଟ ଭାବରେ କହିଦେବାକୁ ଚାହେଁ ଯେ, ସାରଳା ସାହିତ୍ୟର ଛାପା ବହି କୃତ୍ରିମ ବା ଜାଲ ଉପାଦାନ ନୁହେଁ; ଏହା କେତେକାଂଶରେ ବିକୃତ ଉପାଦାନ ମାତ୍ର । ଅବସ୍ଥାଚକ୍ରରେ ଖାଲି ଛାପାବହି ବ୍ୟବହାର କରୁଥିବାରୁ ମୁଁ କୃତ୍ରିମ ବା ଜାଲ ଉପାଦାନ ଦ୍ୱାରା ଇତିହାସ ସୃଷ୍ଟି କରୁଛି ବୋଲି ଯଦି କେହି ଅଭିଯୋଗ କରନ୍ତି, ତେବେ ସେପରି ଅଭିଯୋଗ ନିତାନ୍ତ ମିଥ୍ୟା, ଭ୍ରମାତ୍ମକ, ଭିତ୍ତିହୀନ ଓ ଈର୍ଷା ପ୍ରଣୋଦିତ ।

ପ୍ରଜାତନ୍ତ୍ର ପ୍ରଚ୍ଛରସମିତି ମୋତେ ସାରଳା ସାହିତ୍ୟର ସମସ୍ତ ଛାପା ବହି ଯୋଗାଇ ଦେଇଥିବାରୁ ଓ ମୁଁ ସେଥିପାଇଁ କୃତଜ୍ଞତା ଜଣାଇଥିବାରୁ ଗୋପୀନାଥ ବାବୁ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇପଡ଼ିଛନ୍ତି, ଆଉ ଏହି କଥାଟାକୁ ଆଲୋଚନା କଲବେଳେ ତାଙ୍କ ଭାଷା ଶ୍ଳୀଳତାର ସୀମା ଲଙ୍ଘନ କରିଯାଇଛି; କିନ୍ତୁ ଏପରି କ୍ରୋଧ କାହିଁକି ଓ କାହା ଉପରେ ? ମୋ ଉପରେ, ସମିତି ଉପରେ ବା ଉଭୟ ଉପରେ ? ଦୁନିଆର କୌଣସି ସାହିତ୍ୟ-ସମିତି କ'ଣ କୌଣସି ଲେଖକକୁ ସାହାଯ୍ୟ ଦିଅନ୍ତି ନାହିଁ ? ଏହି ସମିତି କଅଣ ବହୁଭାବରେ ସାହାଯ୍ୟ ଓ ଉତ୍ସାହ ଦେଇ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରି ନାହିଁ ? କୌଣସି ଲେଖକ ସାହାଯ୍ୟ ପାଇ କୃତଜ୍ଞତା ଜଣାଇଲେ ସେ କଅଣ ଦୁର୍ନୀତି କରନ୍ତି ? କେଉଁଥିପାଇଁ ଗୋପୀନାଥ ବାବୁ ଏ ବିଷୟରେ ଏତେ ବେଶୀ ଉତ୍‌କ୍ଷିପ୍ତ ହୋଇପଡ଼ିଛନ୍ତି, ତାହା ଜଣାଇବେ କି ? ମୋ ପକ୍ଷରୁ ତାଙ୍କୁ ମୁଁ ଏହି ପ୍ରତିଶ୍ରୁତି ଦେଉଛି ଯେ ମୁଁ କୂଟଯୁକ୍ତି ଓ କୃତ୍ରିମ ଉପାଦାନ ବ୍ୟବହାର କରି ନାହିଁ କିମ୍ବା କରିବି ନାହିଁ । ଜ୍ଞାନର ଦୁର୍ବଳତା ହେତୁରୁ କିମ୍ବା ଭ୍ରମ ହେତୁରୁ ଇତିହାସ-ସଙ୍କଳନରେ ଯେଉଁ ତ୍ରୁଟିବିଚ୍ୟୁତି ଘଟେ, ତାହା କ୍ଷମଣୀୟ; କିନ୍ତୁ ଜାଲ-ଜୁଆଚ୍ଚୋରି ସାହାଯ୍ୟରେ ଯେଉଁ ଇତିହାସ ଗଢ଼ାଯାଏ, ତାହା ଗ୍ରହଣୀୟ ବା କ୍ଷମଣୀୟ ନୁହେଁ । ମୁଁ ଏ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଅଛି; କିନ୍ତୁ ସ୍ୱଧର୍ମଚ୍ୟୁତ ଓ ଇତିହାସ କ୍ଷେତ୍ରକୁ ନବାଗତ ଗୋପୀନାଥ ବାବୁ କେଉଁ ପନ୍ଥା ଅବଲମ୍ବନ କରି ଇତିହାସ ସଙ୍କଳନ ପରି ପବିତ୍ର କାର୍ଯ୍ୟରେ ପ୍ରବୃତ୍ତ ହେଉଛନ୍ତି, ତାହା ସେ ନିଜେ ଭାବି ଦେଖନ୍ତୁ ।

(୨) ଗୋପୀନାଥ ବାବୁ ପୋଥି ସାହାଯ୍ୟରେ ଯେଉଁ ଯେଉଁ ନୂତନ ଐତିହାସିକ ତଥ୍ୟ ଓ ଯେଉଁ ଶୁଦ୍ଧପାଠ ବାହାର କରିଛନ୍ତି, ତାହା ହିଁ ବର୍ତ୍ତମାନ ଆଲୋଚନା କରାଯାଉ । ମୁଁ ଯେଉଁ ଯେଉଁ ଶବ୍ଦ ବା ନାମକୁ ମୂଳଭିତ୍ତି କରି ତିନୋଟି ପ୍ରବନ୍ଧରେ ଐତିହାସିକ ଆଲୋଚନା କରିଛି, ସେଗୁଡ଼ିକୁ ନିମ୍ନଲିଖିତ ଭାବେ ବିଭକ୍ତ କରାଯାଇପାରେ—

(କ) ବ୍ୟକ୍ତିମାନଙ୍କ ନାମ—କପିଳେଶ୍ୱର ମହାରାଜ ବା ରାଜା ଯମାଗୋଷ୍ଠି, ଦରଦସେନ, ସୁରସାହି, ମୁନେହି, ସାଲ୍ୱ, ମଲ୍ଲିକାର୍ଜ୍ଜୁନ, ପୃଣ୍ଡରୀକ, ବାସୁଦେବ ।

(ଖ) ସ୍ଥାନମାନଙ୍କର ନାମ—କରଣପର୍ବତ, ଗୁଣଭଦ୍ରାନଦୀ, କୃଷ୍ଣୀନଗର, ଅମରଚୂଡ଼ ପର୍ବତ (ଦେବରକୋଣ୍ଡା), ବ୍ରହ୍ମସାହି (ବାହାମନି ରାଜ୍ୟ), ଅରୁଣ ଗିରି (ଉଦୟଗିରି), ସାକଲ୍ଲ ଦେଶ ବା ସାଲୁରଦେଶ, ଭୈରବ କଟକ (ନନ୍ଦିକନିମଘାଟି) ଉଦନ୍ତ ମଣ୍ଡଳ, ଉଦନ୍ତପର୍ବତ (ଉଦୟଗିରି), ବିଜନ୍ତମଣ୍ଡଳ (ବିଜୟନଗର ରାଜ୍ୟ),

ପଦ୍ମନାଭ ପର୍ବତ (ଶ୍ରୀରଙ୍ଗମ୍), ରୁଦ୍ର ପର୍ବତ (ତାଞ୍ଜୋର), କାବେରୀ ନଦୀ, ବିଜୟ ନଗର, କାଞ୍ଚନଗର, ତୁଙ୍ଗଭଦ୍ରାନଦୀ, ଶ୍ରୀ ଗିରିପର୍ବତ ( ଶ୍ରୀଶୈଳମ୍ ) କରୱୀରପୁର (ବିଜୟନଗର), ନୈର୍ଋତମେଖଳ, (ଦକ୍ଷିଣ ପଶ୍ଚିମ ପର୍ବତମାଳା ବା ଆଧୁନିକ ପଶ୍ଚିମ ଘାଟ ପର୍ବତମାଳ), କୌଶିକୀ ନଦୀ ।

(ଗ) ଶବ୍ଦମାନଙ୍କର ନାମ—ଗ୍ରେଖାର, ଖଖା, ଦରଦ, ଆଲେଖ ।

ଏହି ନାମ ଓ ଶବ୍ଦମାନଙ୍କ ମଧ୍ୟରୁ ସମସ୍ତ ଗୋପୀନାଥ ବାବୁଙ୍କ ପୋଥିରୁ ମିଳିଛି, କିନ୍ତୁ ପୋଥିରେ କରଣ ପର୍ବତ ସ୍ଥାନରେ କରପର ପର୍ବତ, ଗୁଣଭଦ୍ରା ନଦୀ ସ୍ଥାନରେ ଶରଣଭଦ୍ରା ନଦୀ ଓ ଯମାଗୋଷ୍ଠ ସ୍ଥାନରେ ଯମାପୃଷ୍ଠ ରହିଛି । ଏହି ତିନୋଟି ଶବ୍ଦର ପରିବର୍ତ୍ତିତ ରୂପ ଦ୍ୱାରା କ'ଣ ମୂଳ ପ୍ରତିପାଦ୍ୟ ବିଷୟମାନ ଏକା-ବେଳେକେ ପଣ୍ଡ ହୋଇଗଲା ? ଗୋପୀନାଥବାବୁଙ୍କ ପୋଥିରେ ଏହି ଶବ୍ଦମାନଙ୍କର ଯେଉଁ ପରିବର୍ତ୍ତିତ ରୂପ ରହିଛି, ତାହା କ'ଣ ଅଭ୍ରାନ୍ତ ? ମୋର ଦୃଢ଼ ବିଶ୍ୱାସ ଯେ ଖାଲି ଏହି ଯମାଗୋଷ୍ଠ ଶବ୍ଦଟିକୁ ଯଦି ଦଶଟି ପୋଥିରେ ତୁଳନା କରାଯାଏ, ତେବେ ତାହା ଯମାଗୋଷ୍ଠ, ଯମାଗୁଷ୍ଠ, ଯମାଦୃଷ୍ଟ, ଯମାଦୃଷ୍ଠ, ଯମାପୃଷ୍ଠ ଇତ୍ୟାଦି ବହୁ ରୂପରେ ଦେଖାଯିବ । ତାଙ୍କ ପୋଥିରେ ଯେଉଁ ରୂପଟି ଅଛି, ସେ ସେଇଟିକୁ ହିଁ ଅଭ୍ରାନ୍ତ ବୋଲି ଯଦି ଧରନ୍ତି, ଆଉ ତା' ଛଡ଼ା ସାରଳା ସାହିତ୍ୟର ଆଲୋଚନା ସମ୍ଭବପର ନୁହେଁ ବୋଲି ଯଦି କହନ୍ତି, ତେବେ ସେ ଗୋଟାଏ ଅସମ୍ଭବ ପରିସ୍ଥିତି ସୃଷ୍ଟି କରୁଛନ୍ତି ବୋଲି ବୁଝିବାକୁ ହେବ । କାରଣ ତାଙ୍କ ପୋଥି ତ ତାଙ୍କ ପାଖରେ ଅଛି, ତାହା ଆଉ କାହାରିକୁ ମିଳିବ ନା ସେ ଆଉ ସାରଳା ସାହିତ୍ୟର ଆଲୋଚନା କରି ପାରିବ । ସାମାନ୍ୟ ବିଷୟ ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରି ତାକୁ ଖୁବ୍ ବଡ଼ ଆକାରରେ ଦେଖାଇବା ଗୋପୀନାଥ ବାବୁଙ୍କ ଆଲୋଚନାର ଗୋଟିଏ ବୈଶିଷ୍ଟ୍ୟ (?) ହୋଇ ଉଠିଛି ! ପୋଥିରୁ ସାରୋଳା ଶବ୍ଦଟି ପାଇ ସେ ଦିନାକେତେ ସାରୋଳାଦାସ ଓ ସାରୋଳାଚଣ୍ଡୀ ବୋଲି ଲେଖିବାକୁ ଲାଗିଲେ, କିନ୍ତୁ ସେ ଭୁଲିଗଲେ ଯେ ସାରଳା ଶବ୍ଦଟି ପୋଥିମାନଙ୍କରେ ଖାଲି ସାରୋଳା ଆକାରରେ ନୁହେଁ, ସାରଳା, ଷାରଳା, ଶାରଳା, ସାରୋଳା, ଷାରୋଳା, ଶାରୋଳା, ସାରୋଳ ଆଉ ଭ୍ରମ ହେତୁରୁ ସାରେଳା, ସେରଳା ଇତ୍ୟାଦି ରୂପରେ ମଧ୍ୟ ଦେଖିବାକୁ ମିଳିବ ।

ଆଧୁନିକ ମଧ୍ୟଭାରତରେ କୁଣ୍ଡୀନପୁର ବା କୌଣ୍ଡିନ୍ୟ ନଗର ଯେ ବିଦ୍ୟମାନ ଥିଲା, ଏକଥା ମୋତେ ଜଣା ଅଛି । ଏହି ନଗରୀ ନର୍ମଦାକୂଳସ୍ଥ ମାହିଷ୍ମତୀ (ଆଧୁନିକ ମାହେଶ୍ୱର ବା ମାନ୍ଧାତା)ର ନିକଟବର୍ତ୍ତୀ ଥିଲା; କିନ୍ତୁ କୌଣସି ପ୍ରାଚୀନ ସ୍ଥାନର ଅବସ୍ଥିତି ନିରୂପଣ କରିବାବେଳେ ତତ୍‌ସହିତ ବର୍ଣ୍ଣିତ ଅନ୍ୟାନ୍ୟ

ଭୌଗୋଳିକ ସ୍ଥାନମାନଙ୍କ ଅବସ୍ଥିତିକୁ ମଧ୍ଯ ଲକ୍ଷ୍ୟ କରିବାକୁ ହୁଏ । ଯଦି ଶରଣ ପର୍ବତକୁ କୂର୍ମ ପର୍ବତ ସହିତ ଓ ଗୁଣଭଦ୍ରାକୁ କୃଷ୍ଣଭଦ୍ରା ସହିତ ଚିହ୍ନିତ କରାଯାଏ, ତେବେ କବି ବର୍ଣ୍ଣିତ କୁଣ୍ଡୀ ନଗରକୁ କୃଷ୍ଣା ନଦୀ କୂଳରେ ଖୋଜିବାକୁ ହେବ, ନର୍ମଦା କୂଳରେ ନୁହେଁ । ଏହି ହେତୁରୁ କବି ବର୍ଣ୍ଣିତ କୁଣ୍ଡୀ ନଗରକୁ କୃଷ୍ଣା ନଦୀ କୂଳର କୁଣ୍ଡବିଡ଼ୁ ସହିତ ଚିହ୍ନିତ କରାଯାଇଛି ।

ଅମରଚୂଡ଼ ପର୍ବତର ଅବସ୍ଥିତି ସମ୍ବନ୍ଧରେ ମଧ୍ଯ ଗୋପୀନାଥବାବୁ ଠିକ୍ ଏହିପରି ଭ୍ରମରେ ପଡ଼ିଛନ୍ତି । ଭାରତରେ ଏକାଧିକ ଦେବପର୍ବତ ଯେ ଅଛି ବା ଥିଲି, ଏ କଥା ମୁଁ ଅସ୍ୱୀକାର କରୁ ନାହିଁ; କିନ୍ତୁ ଯେଉଁ ଆଖ୍ୟାୟିକାରେ ଅମରଚୂଡ଼ ବା ଦେବପର୍ବତ ବର୍ଣ୍ଣିତ ଅଛି, ସେହି ଆଖ୍ୟାୟିକାରେ ବ୍ରହ୍ମସାହି ଓ ଅରୁଣଗିରି କଥା ମଧ୍ଯ ଉଲ୍ଲେଖ ରହିଛି । ବ୍ରହ୍ମସାହି ଯଦି ବାହାମନି ରାଜ୍ୟ ହୁଏ, ଆଉ ଅରୁଣଗିରି ଯଦି ନେଲ୍ଲୋର ଜିଲ୍ଲାର ଉଦୟଗିରି ଦୁର୍ଗ ହୁଏ, ତେବେ ଆଖ୍ୟାୟିକା-ବର୍ଣ୍ଣିତ ଅମରଚୂଡ଼ ପର୍ବତକୁ ହିମାଳୟରେ ନ ଖୋଜି ଏହି ଅଞ୍ଚଳରେ (ଆନ୍ଧ୍ର ଅଞ୍ଚଳରେ)ହିଁ ଖୋଜିବାକୁ ହେବ । ଏହି ଅଞ୍ଚଳରେ ଦେବରକୋଣ୍ଡା ବା ଦେବପର୍ବତ ନାମକ ସୁବିଖ୍ୟାତ ଦୁର୍ଗ ଅବସ୍ଥିତ ଥିଲା; ଆଉ ଏହି ଦୁର୍ଗରେ ଗଜପତି କପିଳେଶ୍ୱର ଓ ବାହାମନି ସୁଲତାନ୍‌ଙ୍କ ମଧ୍ଯରେ ଯେଉଁ ଯୁଦ୍ଧ ଘଟିଥିଲା, ତାହା ଏକ ସୁବିଦିତ-ଐତିହାସିକ ଘଟଣା । ଏହି ଯୁଦ୍ଧରେ ଐତିହାସିକ ଘଟଣାବଳୀ ସହିତ ଆଖ୍ୟାୟିକାର ଘଟଣାବଳୀ ସର୍ବାଂଶରେ ମେଳ ଖାଇ ନ ଥିଲେ ମଧ୍ଯ ଅନେକାଂଶରେ ମେଳ ଖାଇଯାଏ । ଏପରି ଘଟଣାଚକ୍ରରେ କବି ବର୍ଣ୍ଣିତ ଅମରଚୂଡ଼ ପର୍ବତକୁ ଦେବରକୋଣ୍ଡା ସହିତ ଚିହ୍ନିତ କଲେ ସମୀଚିନ ହେବ କିମ୍ବା ଗୋପୀନାଥବାବୁଙ୍କ ମତ ଅନୁସାରେ ଅକାରଣିକ ଭାବରେ ଦେବପର୍ବତ ଖୋଜି ଖୋଜି ହିମାଳୟ ପର୍ଯ୍ୟନ୍ତ ପହଞ୍ଚିଲେ ସମୀଚୀନ ହେବ, ଏ କଥାର ବିଚାର ମୁଁ ସୁଧୀ ପାଠକମାନଙ୍କ ଉପରେ ନ୍ୟସ୍ତ କରୁଛି । ଗୋପୀନାଥବାବୁଙ୍କ "ବ୍ରହ୍ମସାହି"ର ବ୍ୟାଖ୍ୟା ଯେ ଭ୍ରମାତ୍ମକ ଓ ଅତ୍ୟନ୍ତ ହାସ୍ୟୋଦ୍ଦୀପକ, ଏହା ପରେ ଏହି ପ୍ରବନ୍ଧରେ ଦେଖାଇ ଦିଆଯିବ ।

ବୈଷ୍ଣବୀ ମଧ୍ଯରୁ କାଢ଼ି ନେଇ ଗୋପୀନାଥବାବୁ କବି ବର୍ଣ୍ଣିତ—ଭୌଗୋଳିକ ଓ ଐତିହାସିକ ନାମମାନଙ୍କୁ ଚିହ୍ନିତ କରିବା ପାଇଁ କିପରି ବ୍ୟର୍ଥ ପ୍ରୟାସ କରିଛନ୍ତି, ତା'ର ଆଉ କେତୋଟି ଉଦାହରଣ ମଧ୍ଯ ତାଙ୍କ ଲେଖାରେ ରହିଛି, ମୁଁ କବିବର୍ଣ୍ଣିତ ପଦ୍ମନାଭ ପର୍ବତକୁ ଶ୍ରୀରଙ୍ଗମ୍ ସହିତ ଚିହ୍ନିତ କରିଛି, କାରଣ ଏହି ପଦ୍ମନାଭ ପର୍ବତ ପରେ ପରେ କବି ରୁଦ୍ର ପର୍ବତ [ତାଞ୍ଜୋର], କାବେରୀ ନଦୀ, ବିଜୟନଗର, କାଞ୍ଚିନଗର, ତୁଙ୍ଗଭଦ୍ରା ନଦୀ ଇତ୍ୟାଦିର ନାମ ଉଲ୍ଲେଖ କରିଛନ୍ତି । ଏଣୁ ପଦ୍ମନାଭ ପର୍ବତକୁ ଶ୍ରୀରଙ୍ଗମ୍ ସହିତ ଚିହ୍ନିତ କରିବାକୁ ହେବ ନା ଗୋପୀନାଥବାବୁଙ୍କ

ମତ ଅନୁସାରେ ତାଙ୍କୁ ବିଜୟନଗରର ସହିତ ଚହ୍ନିତ କରିବାକୁ ହେବ । ବିଜୟନଗର ନିକଟରେ ଏ ସମସ୍ତ ସ୍ଥାନ ବା ନଦୀମାନଙ୍କ ମଧ୍ୟରୁ କୌଣସିଟି ସୁଦ୍ଧା ନାହିଁ । ଖାଲି ସେଠାରେ ପଦ୍ମନାଭ ମନ୍ଦିରଟିଏ ଅଛି ବୋଲି ଯଦି କବିବର୍ଣ୍ଣିତ ପଦ୍ମନାଭ ପର୍ବତ ସହିତ ତାକୁ ଚହ୍ନିତ କରାଯାଏ, ତେବେ ଭାରତର ଅନ୍ୟ କୌଣସି ପଦ୍ମନାଭ ମନ୍ଦିର ସହିତ ବା ତାକୁ କାହିଁକି ଚହ୍ନିତ କରା ନ ଯିବ ? ପ୍ରତ୍ୟେକ ସ୍ଥାନର ଅବସ୍ଥିତି ନିର୍ଦ୍ଧାରଣ ଯେ ଆପେକ୍ଷିକ ଓ ବେଷ୍ଟନୀ ଉପରେ ନିର୍ଭରଶୀଳ, ଗୋପୀନାଥବାବୁ ଏ କଥାଟାକୁ ଏକାବେଳେକେ ଭୁଲିଯାଇଛନ୍ତି ।

ଏହିପରି ଯୁକ୍ତି ବଳରେ ସେ ସାରଳା ଦାସଙ୍କ ବର୍ଣ୍ଣିତ ସାଲୁ ରାଜାଙ୍କୁ ସଂସ୍କୃତ ମହାଭାରତ ବର୍ଣ୍ଣିତ ସାଲ୍ୱ ସହିତ ଚହ୍ନିତ କରିଛନ୍ତି । ମଦ୍ର ସହିତ ସଂଶ୍ଳିଷ୍ଟ ସାଲ୍ୱ ନାମଟି ଯେ ସଂସ୍କୃତ ମହାଭାରତରେ ଅଛି, ଏକଥା କେହି ଅସ୍ୱୀକାର କରୁ ନାହିଁ, କିନ୍ତୁ ସାରଳା ଦାସ ଯେଉଁ ବେଷ୍ଟନୀ ମଧ୍ୟରେ ସାଲ୍ୱ ରାଜାଙ୍କ ନାମ ଓ ତାଙ୍କ ରାଜ୍ୟର ନାମ ଉଲ୍ଲେଖ କରିଛନ୍ତି, ତାକୁ ହିଁ ପ୍ରଥମେ ବିଚାର କରିବାକୁ ହେବ । କବି ଅର୍ଜ୍ଜୁନଙ୍କୁ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ଦୁର୍ଗରୁ ଘେନିଆସି ସଙ୍କଳିତ ନାମକ ବନରେ ପହଞ୍ଚାଇଛନ୍ତି । କେଉଁ ଅଞ୍ଚଳକୁ ସେ ସଙ୍କଳିତ ବନ ବୋଲି କହିଛନ୍ତି, ତାହା ମୁଁ ସ୍ଥିର କରିପାରିନାହିଁ, କିନ୍ତୁ ଏହା ରାଇଚୁର ଅଞ୍ଚଳ ହୋଇପାରେ ବୋଲି ଅନୁମାନ କରୁଛି । କବି ସଙ୍କଳିତ ବନରୁ ଅର୍ଜ୍ଜୁନଙ୍କୁ ଯେଉଁ ରାଜ୍ୟକୁ ଘେନିଯାଇଛନ୍ତି, ତାକୁ ଗୋଟିଏ ସ୍ଥାନରେ ସାକଳ୍ପ ଦେଶ ଓ ଅନ୍ୟ ସ୍ଥାନରେ ସାଲୁର ଦେଶ ବୋଲି କହିଛନ୍ତି । ଏଣୁ ଉଭୟେ ନାମ ଗୋଟିଏ ରାଜ୍ୟକୁ ହିଁ ବୁଝାଉଛି । ସାକଳ୍ପ ଦେଶରୁ କବି ତାଙ୍କୁ ଭୈରବ-କଟକକୁ ଘେନିଯାଇଛନ୍ତି । ଏହାକୁ ମୁଁ ନନ୍ଦିକନମ୍ ଘାଟି ସହିତ ଚହ୍ନିତ କରିଛି । ଭୈରବ-କଟକରୁ ଅର୍ଜ୍ଜୁନ ଉଦୟ ମଣ୍ଡଳକୁ ଯାଇ ଉଦୟ ପର୍ବତ ବା ଉଦୟଗିରିରେ ଅବସ୍ଥାନ କରିଛନ୍ତି ଓ ତା' ପରେ ଉଦୟମଣ୍ଡଳକୁ ଅତିକ୍ରମ କରି ବିଜୟମଣ୍ଡଳ ବା ବିଜୟନଗର ରାଜ୍ୟରେ ପହଞ୍ଚିଛନ୍ତି । କବିବର୍ଣ୍ଣିତ ସାଲୁ ରାଜାଙ୍କୁ ଯଦି ମଦ୍ରପତି ସାଲ୍ୱ ସହିତ ଚହ୍ନିତ କରାଯାଏ, ତେବେ ମଦ୍ର (ମଧ୍ୟ-ପଞ୍ଜାବ) ନିକଟରେ ଏହି ଭୌଗୋଳିକ ସ୍ଥାନମାନଙ୍କ ମଧ୍ୟରୁ କୌଣସିଟି ସୁଦ୍ଧା ମିଳେ ନାହିଁ । ପକ୍ଷାନ୍ତରେ କବିବର୍ଣ୍ଣିତ ସାଲୁ ସହିତ ଯଦି ସାଲୁବ ନରସିଂହଙ୍କୁ ଚହ୍ନିତ କରାଯାଏ, ତେବେ ତାଙ୍କ ରାଜ୍ୟ ନିକଟରେ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ଦୁର୍ଗ ତାଙ୍କ ରାଜ୍ୟ ମଧ୍ୟରେ ଉଦୟମଣ୍ଡଳ ଓ ଉଦୟଗିରି ଦୁର୍ଗ ଏବଂ ତାଙ୍କ ଦେଶକୁ ଲାଗି ଉତ୍ତର-ପଶ୍ଚିମ ଦିଗରେ ବିଜୟମଣ୍ଡଳ ବା ବିଜୟନଗର ରାଜ୍ୟ ମିଳିଯାଏ । ଆଉ ଏହି ହେତୁରୁ ଭୌଗୋଳିକ ଓ ଐତିହାସିକ ସତ୍ୟ ପରିସ୍ଫୁଟ ହୋଇ ଉଠେ । ପାଣ୍ଡବ-ମାନେ ସାଲ୍ୱ ଦେଶକୁ ଦିଗ୍‌ବିଜୟ କରି ଯାଇଥିବା କଥା ସଂସ୍କୃତ ସଭାପର୍ବରେ

କୁତ୍ରାପି ନାହିଁ । ଏଣୁ ସାରଳାଦାସ ଏଠାରେ ଦେବରକୋଣ୍ଡା ଦୁର୍ଗ ଓ ବିଜୟନଗର ରାଜ୍ୟର ଭୌଗୋଳିକ ପରିବେଷ୍ଟନୀ ମଧ୍ୟରେ ଗୋଟିଏ ଐତିହାସିକ ଘଟଣାକୁ ଅବଲମ୍ବନ କରି ଯେ, ତାଙ୍କ ଆଖ୍ୟାୟିକା ଲେଖିଛନ୍ତି, ଏକଥା ମଧ୍ୟ ସ୍ପଷ୍ଟ ହୋଇ ଉଠେ ।

କରବୀରପୁର ନାମରେ ଯେ ଏକାଧିକ ସ୍ଥାନ ଥିଲା, ଏ ତଥ୍ୟରେ ମଧ୍ୟ ମୁଁ ସମ୍ପୂର୍ଣ୍ଣ ଅବହିତ । ନାଗବଂଶର ରାଜଧାନୀ ପଦ୍ମାବତୀ ନଗରୀକୁ ମଧ୍ୟ କରବୀରପୁର କୁହାଯାଉଥିଲା । ଏହାର ଧ୍ୱଂସାବଶେଷ ବର୍ତ୍ତମାନ ଗୋଆଲିଅର ଠାରୁ ପ୍ରାୟ ୪୦ ମାଇଲ୍ ଦୂରରେ ଅବସ୍ଥିତ ଅଛି ଓ ଏଠାରୁ ଆନୀତ ବହୁ ମୂର୍ତ୍ତି ଗୋଆଲିଅର ମିଉଜିଅମକୁ ମଣ୍ଡନ କରୁଛି । ଆଧୁନିକ କୋହ୍ଲାପୁରକୁ ମଧ୍ୟ କେହି କେହି ପ୍ରାଚୀନ କରବୀରପୁର ବୋଲି କହନ୍ତି; କିନ୍ତୁ ସାରଳାଦାସଙ୍କ କରବୀରପୁରକୁ ତାଙ୍କ ବର୍ଣ୍ଣନା ଉପରେ ହିଁ ନିର୍ଭର କରି ସ୍ଥିର କରିବାକୁ ହେବ । ତାଙ୍କ ବର୍ଣ୍ଣନାରେ ସେ ଯେ ବିଜୟନଗରକୁ ହିଁ କରବୀରପୁର ବୋଲି କହିଛନ୍ତି, ତାହା ନିମ୍ନଲିଖିତ ଉଦ୍ଧୃତାଂଶ-ମାନଙ୍କରୁ ନିଃସନ୍ଦେହରେ ପ୍ରମାଣିତ ହୁଏ—

ବଦନ୍ତି ଅଗସ୍ତି ଆହୋ ମନୁ ନୃପମଣି
ଶ୍ରୀ ମହାଭାରତ ଆଦ୍ୟ ପର୍ବର ଏ ବାଣୀ ।
ବିଦ୍ୟାନଗରୀ ବୋଲିଣ ଦକ୍ଷିଣ କୋଶଳେ
ଭୂମନୁ ବୋଲିଣ ତହିଁ ଅଛି ନରପାଳେ ।

ଆଦ୍ୟପର୍ବ, ପୃ. ୧୧୭

ବାମଦେବ ନରପତି ରାଜ୍ୟରେ ପଳାଇ
କରବୀରପୁର ରାଜ୍ୟେ ପ୍ରବେଶିଲା ଯାଇ ।
ଆସ୍ଥାନରେ ବସିଛନ୍ତି ନୃପତି ଭୂମନୁ
ଭଗ୍ନବଳ ସହ ମିଳେ ଦେବରାଜ ସୁନୁ ।

ସଭାପର୍ବ, ପୃ. ୧୯୪

ଉଲ୍ଲିଖିତ ଉଦ୍ଧୃତାଂଶମାନଙ୍କରୁ ଦେଖାଯିବ ଯେ କବି ଗୋଟିଏ ଜାଗାରେ ଭୂମନୁ ରାଜାଙ୍କ ରାଜ୍ୟକୁ ବିଦ୍ୟାନଗର ବୋଲି କହିଛନ୍ତି ଓ ଅନ୍ୟ ଗୋଟିଏ ଜାଗାରେ ସେହି ଭୂମନୁ ରାଜାଙ୍କ ରାଜ୍ୟକୁ କରବୀରପୁର ବୋଲି କହିଛନ୍ତି । ଏଣୁ ତାଙ୍କ ବର୍ଣ୍ଣନାନୁସାରେ ବିଦ୍ୟାନଗର ଓ କରବୀରପୁର ଏକ ଓ ଅଭିନ୍ନ ରାଜ୍ୟ ବା ନଗର, ମାତ୍ର ବିଦ୍ୟାନଗର ଯେ ବିଜୟନଗରର ଅନ୍ୟତମ ନାମ ଥିଲା, ଏହାର ଭୂରି ଭୂରି ପ୍ରମାଣ ସମସାମୟିକ ତେଲୁଗୁ ଓ ସଂସ୍କୃତ ସାହିତ୍ୟରେ ଏବଂ ତାମ୍ର ଶିଳାଲେଖାରେ

ରହିଛି । ମୌର୍ଯ୍ୟବଂଶର ସ୍ଥାପୟିତା ଚନ୍ଦ୍ରଗୁପ୍ତ ଯେପରି ଚାଣକ୍ୟନାମକ ବିଚକ୍ଷଣ ପଣ୍ଡିତଙ୍କ ସାହାଯ୍ୟ ନେଇଥିବା କଥା କମ୍ବଦନ୍ତୀ ପ୍ରସିଦ୍ଧ ହୋଇଛି, ବିଜୟନଗର ସାମ୍ରାଜ୍ୟର ସ୍ଥାପୟିତା ହରିହର ମଧ୍ୟ ସେହିପରି ମାଧବାଚାର୍ଯ୍ୟ ବିଦ୍ୟାରଣ୍ୟନାମକ ଜଣେ ବିଚକ୍ଷଣ ପଣ୍ଡିତଙ୍କ ସାହାଯ୍ୟ ନେଇଥିବା କଥା ଏକାଧିକ ଗ୍ରନ୍ଥରେ ଲିଖିତ ଅଛି । ବିଦ୍ୟାରଣ୍ୟଙ୍କ ସ୍ମୃତିରକ୍ଷା ପାଇଁ ନବସ୍ଥାପିତ ବିଜୟନଗରର ରାଜ୍ୟ ଓ ରାଜଧାନୀକୁ ବିଦ୍ୟାନଗର ବା ବିଦ୍ୟାପୁରୀ ବୋଲି ମଧ୍ୟ କୁହାଯାଉଥିଲା । (୧) ଏଣୁ ସାରଳା ମହାଭାରତର କରବୀର ପୁର ବିଦ୍ୟାନଗର ଓ ବିଜୟନଗର ଏକ ଅଭିନ୍ନ ରାଜ୍ୟ ବା ନଗରର ବିଭିନ୍ନ ନାମମାତ୍ର । ପ୍ରାଚୀନ ଭାରତରେ ଏକାଧିକ କରବୀରପୁର ଥିଲେ ମଧ୍ୟ ଏହି ସମସ୍ତ କଥା ବିଚାର କରି ମୁଁ କରବୀରପୁରକୁ ବିଜୟନଗର ସହିତ ଚିହ୍ନିତ କରିଛି ।

ଗୋପୀନାଥ ବାବୁଙ୍କ ପୋଥିର ବିନା ସାହାଯ୍ୟରେ ସୁଦ୍ଧା ଅନ୍ୟ ଏକ ଦିଗରୁ ପ୍ରମାଣ କରାଯାଇପାରେ ଯେ ସାରଳା ଦାସ ଭୂମନୁ ଶବ୍ଦଟିକୁ କେବଳ ବିଜୟନଗର ରାଜାଙ୍କ ପ୍ରତି ହିଁ ପ୍ରୟୋଗ କରିଛନ୍ତି । ତାଙ୍କ ସମୟରେ ଭାରତର ଦକ୍ଷିଣ ଓ ଦକ୍ଷିଣ-ପୂର୍ବ ଅଞ୍ଚଳରେ ପରସ୍ପର ସଂଲଗ୍ନ ତିନୋଟି ସାମ୍ରାଜ୍ୟ ଥିଲା :—ଯଥା ଓଡ଼ିଶା ସାମ୍ରାଜ୍ୟ, ବାହ୍ମାମନି ସାମ୍ରାଜ୍ୟ ଓ ବିଜୟନଗର ସାମ୍ରାଜ୍ୟ, ଆଉ ଏହି ସାମ୍ରାଜ୍ୟ-ମାନଙ୍କ ରାଜାମାନେ ଯଥାକ୍ରମେ ଗଜପତି, ଅଶ୍ୱପତି ଓ ନରପତି ନାମରେ ଅଭିହିତ ହେଉଥିଲେ । ବିଜୟନଗରର ରାଜାଙ୍କୁ 'ନରପତି' ବୋଲି ତ କୁହାଯାଉଥିଲା, ତାହାଛଡ଼ା ତାଙ୍କୁ ମନୁ ବୋଲି ମଧ୍ୟ କୁହାଯାଉଥିଲା । ବିଜୟନଗରରୁ ରାଜବଂଶ ଯେ ମନୁବଂଶ ଏହିକଥା ପ୍ରାୟ ସମସ୍ତ ବିଜୟନଗରର ରାଜାଙ୍କ ତାମ୍ରଶାସନରେ ଦେଖାଯାଏ । ବିଜୟନଗରର ପ୍ରଜାମାନେ ସେମାନଙ୍କ ରାଜାଙ୍କୁ ସ୍ୱୟଂ ମନୁ ବୋଲି ଭାବୁଥିଲେ ଓ କହୁଥିଲେ, ପେଦନଙ୍କ ତେଲଗୁଭାଷାରେ ଲିଖିତ 'ମନୁଚରିତ' ନାମକ ଯେଉଁ ପ୍ରାଚୀନ ଗ୍ରନ୍ଥ ଅଛି, ସେଥିରେ ସେ ବିଜୟ ନଗରର ରାଜା କୃଷ୍ଣଦେବ ରାୟଙ୍କୁ ସ୍ୱୟଂ ମନୁ

---

(1) His (Harihara's) four brothers were known by the names of Kampana, Bukka, Marapa and Muddapa and acting on the advice of the sage Vidyaranya, he laid the foundation of a city called Vidyanagara on the southern bank of the Tunga-bhadra. Further Sources of Vijayanagara. History, Vol. I, P. 23. For Vidyapuri, see P. 161.

ବୋଲି ବର୍ଣ୍ଣନା କରି ତାଙ୍କର ପରରାଜ୍ୟ ଜୟ ବିଶେଷତଃ ତାଙ୍କର ଗଜପତି ପ୍ରତାପରୁଦ୍ରଙ୍କ ସହିତ ଯୁଦ୍ଧ କଥା ବେଶୀ ଭାବରେ ବର୍ଣ୍ଣନା କରିଛନ୍ତି । (୨) ସାରଳା ଦାସ କିନ୍ତୁ ବିଜୟନଗରର ପ୍ରଜାମାନଙ୍କ ପରି ବିଜୟନଗରର ରାଜାଙ୍କୁ ସତ୍ୟ ଯୁଗର ସ୍ୱୟଂ ମନୁ ରୂପେ ଗ୍ରହଣ କରିବାକୁ ରାଜି ନ ଥିଲେ । ଏଣୁ ସେ ତାଙ୍କୁ ଭୂମନୁ ବା ଏହି ମର୍ତ୍ତ୍ୟର ମନୁ ରୂପେ ହିଁ ବର୍ଣ୍ଣନା କରି ଯାଇଛନ୍ତି ।

ଭୂମନୁ ନାମଟି ଯଦି ବିଜୟନଗର ରାଜାଙ୍କ ଅନ୍ୟତମ ଉପାଧିକ ନାମ ବୋଲି ପ୍ରମାଣିତ ହୁଏ, ତେବେ ସାରଳା ଦାସଙ୍କ ବର୍ଣ୍ଣିତ ଭୂମନୁ ରାଜାଙ୍କ ରାଜ୍ୟ କରବୀରପୁର ଓ ବିଦ୍ୟାନଗର ମଧ୍ୟ ବିଜୟନଗରର ଅନ୍ୟତମ ନାମ ବୋଲି ପ୍ରମାଣିତ ହୁଏ । ତା' ଛଡ଼ା ସାରଳା ଦାସ ଶ୍ରୀମଙ୍କ ପୁତ୍ରଶିକ ବାସୁଦେବ ସହିତ ଯୁଦ୍ଧ' ଶୀର୍ଷକ ଯେଉଁ ଆଖ୍ୟାୟିକା ସମ୍ବନ୍ଧରେ ଲେଖିଛନ୍ତି, ସେଥିରେ ସେ କରବୀରପୁର ମହାରାଷ୍ଟ୍ରର ଦକ୍ଷିଣ ପଶ୍ଚିମ ଦିଗରେ ଥିବା କଥା ଓ ଏହା ନିକଟରେ ନୈର୍‌ଋତମେଖଳ ବା ଦକ୍ଷିଣ-ପଶ୍ଚିମ ପର୍ବତମାଳାରୁ (ଆଧୁନିକ ପଶ୍ଚିମଘାଟ ପର୍ବତମାଳାରୁ) ବାହାରିଥିବା କୌଶିକୀ ନଦୀ ବହି ଯାଇଥିବା କଥା ଉଲ୍ଲେଖ କରି କରବୀରପୁରର ଅବସ୍ଥିତିକୁ ଆହୁରି ବେଶି ନିର୍ଦ୍ଦିଷ୍ଟ କରି ଦେଇଛନ୍ତି । ମୁଁ ଏ ସମସ୍ତ ବିଷୟ ୪ର୍ଥ ପ୍ରବନ୍ଧରେ ଆଲୋଚନା କରିଛି, ଏଠାରେ ପୁନରାବୃତ୍ତି ସମ୍ଭବପର ନୁହେଁ ।

ଉପରେ କରବୀରପୁର ସମ୍ବନ୍ଧରେ ଯେଉଁ ଆଲୋଚନା କରାଗଲା, ତା'ର ଯୁକ୍ତିଧାରା ବୀଜଗଣିତର ମୂଳନୀତି ଉପରେ ପ୍ରତିଷ୍ଠିତ, ବୀଜଗଣିତର ମୂଳନୀତିକୁ ଅସ୍ୱୀକାର କରା ନ ଗଲେ ସାରଳା ମହାଭାରତର ବିଜୟନଗର, ବିଦ୍ୟାନଗର ଓ କରବୀରପୁର ଯେ ଏକ ଦେଶ ବା ନଗରର ବିଭିନ୍ନ ନାମ, ଏ କଥା ମଧ୍ୟ ଅସ୍ୱୀକାର କରି ହେବ ନାହିଁ ।

ଗଜପତି ପରି ମନୁ ବା ଭୂମନୁ ନାମଟି କରବୀରପୁର ବା ବିଜୟନଗର ରାଜାଙ୍କ ଉପାଧିକ ନାମ ମାତ୍ର; କିନ୍ତୁ ଅନ୍ୟ ଏକ ଆଖ୍ୟାୟିକାରେ କବି ଯଦି ଏହି କରବୀରପୁରର କୌଣସି ରାଜାଙ୍କ ପ୍ରକୃତ ନାମକୁ ପ୍ରଚ୍ଛନ୍ନ ଭାବରେ ପୁତ୍ରଶିକ ବାସୁଦେବ ବୋଲି କହନ୍ତି, ତେବେ ଏହି ପ୍ରଚ୍ଛନ୍ନ ନାମଟି ଯେ କେଉଁ ବିଜୟନଗର ରାଜାଙ୍କ ପ୍ରକୃତ ନାମ ହୋଇଥିବ, ତାହା ଜାଣିବା ପାଇଁ ଐତିହାସିକକୁ ବିଗ୍ରହ-ଶକ୍ତି ପ୍ରୟୋଗ କରିବାକୁ ପଡ଼ିବ । ସାରଳାଦାସ ଓ କପିଳେଶ୍ୱର ଗଜପତିଙ୍କ ସମସାମୟିକ ବିଜୟନଗର-ରାଜାଙ୍କ ନାମ ଥିଲା ମଲ୍ଲିକାର୍ଜ୍ଜୁନ, ଏଣୁ ମୁଁ

---

(2) Further sources of vijayanagara History, Vol I, P. 215

ପୁଣ୍ଡରୀକ ଶବ୍ଦର ଅର୍ଥ ମଲ୍ଲିକା ଓ ବାସୁଦେବ ଶବ୍ଦର ଅର୍ଥ ଅର୍ଜ୍ଜୁନ ବୋଲି ଧରି ପୁଣ୍ଡରୀକ ବାସୁଦେବ ନାମଟି ମଲ୍ଲିକାର୍ଜ୍ଜୁନଙ୍କ ପ୍ରଚ୍ଛନ୍ନ ନାମ ବୋଲି କହୁଛନ୍ତି । ଏହି ଉଭୟ ଶବ୍ଦର ଯେ ଏକାଧିକ ଅର୍ଥ ବା ପ୍ରତିଶବ୍ଦ ନାହିଁ, ଏ କଥା ମୁଁ କହି ନାହିଁ କିମ୍ବା କେହି କହିବେ ନାହିଁ । କିନ୍ତୁ ସ୍ଥଳ ବିଶେଷରେ ବିଗ୍ରହପୂର୍ବକ ହିଁ ଶବ୍ଦବିଶେଷର ବିଭିନ୍ନ ଅର୍ଥ ବା ପ୍ରତିଶବ୍ଦ ପ୍ରୟୋଗ କରାଯାଏ । ଭୋଜନବେଳେ ସୈନ୍ଧବ ଆଣ ବୋଲି କହିବା ମାତ୍ରେ କେହି ଯଦି ଘୋଡ଼ାଟିଏ ଆଣି ବାନ୍ଧିଦିଏ, ତେବେ ସେ ବିଗ୍ରହପୂର୍ବକ ଶବ୍ଦାର୍ଥର ଯଥାର୍ଥ ବ୍ୟବହାର କରେ ନାହିଁ । ଗୋପୀନାଥବାବୁ ପୁଣ୍ଡରୀକ ଅର୍ଥ ଶ୍ୱେତପଦ୍ମ ଓ ବାସୁଦେବ ଅର୍ଥ ଭୀମ ବୋଲି ଧରି ପାରନ୍ତି, କିନ୍ତୁ ସେଥିରୁ କୌଣସି କରବୀରପୁର ରାଜାଙ୍କ ନାମ ବାହାରିବ ନାହିଁ ।

ମଲ୍ଲିକାର୍ଜ୍ଜୁନଙ୍କ ସମ୍ବନ୍ଧରେ ଗୋପୀନାଥବାବୁ ଯେଉଁ ପ୍ରାତଃସ୍ମରଣୀୟ ଶ୍ଳୋକ ଉଦ୍ଧାର କରିଛନ୍ତି, ସେଥିରେ ଶ୍ରୀ ଶୈଳର ମଲ୍ଲିକାର୍ଜ୍ଜୁନ ମହାଦେବ କଥା କୁହାଯାଇଛି; କିନ୍ତୁ ଏହି ଶ୍ଳୋକ ଯେ କେବେ ରଚିତ ହୋଇଛି, କିମ୍ବା ଏହି ଶ୍ରୀ ଶୈଳର ମଲ୍ଲିକାର୍ଜ୍ଜୁନ ମନ୍ଦିର ଯେ କେବେ ନିର୍ମିତ ହୋଇଛି, ଏ ବିଷୟରେ ସେ କିଛି ମାତ୍ର କହି ନାହାନ୍ତି । କୌଣସି ବିଷୟକୁ ଦେଶ ଓ କାଳ ମଧ୍ୟରେ ସୀମାବଦ୍ଧ ନ କଲେ ଐତିହାସିକ ପ୍ରମାଣ ହିସାବରେ ତା'ର କଉଡ଼ାକର ମୂଲ୍ୟ ମଧ୍ୟ ରହେ ନାହିଁ । ବିଜାପୁର ଜିଲ୍ଲାର ବାଦାମୀ ନିକଟସ୍ଥ ପଟ୍ଟଡ଼କଲରେ ଯେଉଁ ମଲ୍ଲିକାର୍ଜ୍ଜୁନ ମନ୍ଦିର ଅଛି (୩) ତାହା ୧୦ମ ଶତାବ୍ଦୀରେ ଓ ବେଲଗାଁ ଜିଲ୍ଲାର କୁରୁବଟ୍ଟିରେ ଯେଉଁ ମଲ୍ଲିକାର୍ଜ୍ଜୁନ ମନ୍ଦିର ଅଛି (୪) ତାହା ୧୩ଶ ଶତାବ୍ଦୀରେ ନିର୍ମିତ ହୋଇଥିଲା, ଅନନ୍ତପୁର ଜିଲ୍ଲାର ଶ୍ରୀଶୈଳମ୍‌ରେ ଯେଉଁ ମଲ୍ଲିକାର୍ଜ୍ଜୁନ ମନ୍ଦିର ଅଛି, ସାରଳା ଦାସ କେବଳ ସେହି ମଲ୍ଲିକାର୍ଜ୍ଜୁନ କଥାହିଁ ଲେଖିଛନ୍ତି । ଏହି ମଲ୍ଲିକାର୍ଜ୍ଜୁନ ମନ୍ଦିର କେବେ ନିର୍ମିତ ହୋଇଥିଲା, ଗୋପୀନାଥବାବୁ ତାହା ଜାଣିବାକୁ ଚେଷ୍ଟା କରିବେ କି ? ତା' ଛଡ଼ା ଏହି ପ୍ରାତଃସ୍ମରଣୀୟ ଶ୍ଳୋକଟି କେବେ ରଚିତ ହୋଇଥିଲା ତାହା ସେ ପ୍ରକାଶ କରିବେ କି ? ଆଜିକାଲି ମଧ୍ୟ ପ୍ରାତଃସ୍ମରଣୀୟ ଶ୍ଳୋକ ରଚନା କରାଯାଇପାରେ, କିନ୍ତୁ ତାହାର ସାହାଯ୍ୟରେ କଅଣ ସାରଳା ସାହିତ୍ୟର ଇତିହାସରେ ଆଲୋକପାତ କରାଯାଇ ପାରିବ ?

ମୋର ବ୍ୟାଖ୍ୟାକୁ କାଟିଦେଇ ଗୋପୀନାଥବାବୁ କେତେକ ଶବ୍ଦର ଯେଉଁ ନୂତନ ବ୍ୟାଖ୍ୟା ଦେଇଛନ୍ତି, ତାହା କୌଣସି ଐତିହାସିକ ବା ସାହିତ୍ୟିକ ଗ୍ରହଣ କରି ପାରିବେ ନାହିଁ । (ବ୍ରହ୍ମସାହି)ରେ ଥିବା 'ସାହି' ଶବ୍ଦକୁ ସେ ଫାର୍ସୀ ଶବ୍ଦ ବୋଲି ମାନି ନେବାକୁ ନାରାଜ, କିନ୍ତୁ ମୁସଲମାନ ରାଜତ୍ୱ ପୂର୍ବର କୌଣସି ପ୍ରାଚୀନ

3. Cousens—Chalukya Architecture, Pl. XXX VII
4. Ibid, pls. CVIII and C I X.

ଗ୍ରନ୍ଥ ବା ତାମ୍ର ଶିଳାଲେଖରେ ସେ ଏହି ସାହି ଶବ୍ଦଟି ଦେଖାଇ ପାରିବେ କି ? ରାଜା ଶବ୍ଦରୁ ରାଜ୍ୟ ଶବ୍ଦ ଉତ୍ପତ୍ତି ହେବାପରି ପାରସୀୟ ସାହ (ରାଜା) ଶବ୍ଦରୁ ସାହି ଶବ୍ଦଟି ଉତ୍ପନ୍ନ ହୋଇଥିଲା ! ପରେ ଏହା କ୍ଷୁଦ୍ର ଗ୍ରାମକୁ ସୁଦ୍ଧା ବୁଝାଇଲା । ଗୋପୀନାଥ ବାବୁଙ୍କ ବ୍ୟାଖ୍ୟା ଅନୁସାରେ "ବ୍ରାହ୍ମସାହି"କୁ ବ୍ରାହ୍ମଣ ଗାଁ ବୋଲି ଧରାଗଲେ ଦରଦସେନକୁ ମଧ୍ୟ ଶ୍ରେଷ୍ଠୀ ବିରାଡ଼ି ପରି ବୀରଟିଏ ବୋଲି ଧରିବାକୁ ହେବ, କାରଣ ଯେ ବ୍ରାହ୍ମଣ ଗାଁଟିଏ ଧ୍ୱଂସ କରି ଦେଇଥିଲା, ସେ ଆଉ କେତେ ବଡ଼ ବୀର ହୋଇପାରେ ? କିନ୍ତୁ ଯେଉଁ ଦରଦସେନ ଅର୍ଜୁନଙ୍କ ସଙ୍ଗେ ଯୁଦ୍ଧ କରିଥିଲା, ତାକୁ ଯେ, ଗୋଟାଏ ନଗଣ୍ୟ ଯୋଦ୍ଧା ରୂପେ ବର୍ଣ୍ଣନା କରିବେ, ସାରଳା ଦାସଙ୍କର ଏପରି ଉଦ୍ଦେଶ୍ୟ କଦାପି ନଥିଲା । ଏଣୁ ସେ ଦରଦସେନକୁ 'ପ୍ରଚଣ୍ଡ ବ୍ରାହ୍ମସାହି' ବା ପ୍ରବଳ ବାହ୍ମନି ରାଜ୍ୟ ଓ 'ଅରୁଣଗିରି' ବା ଦୁର୍ଜୟ ଉଦୟଗିରି ଦୁର୍ଗର ଧ୍ୱଂସକର୍ତ୍ତା ରୂପେ ହିଁ ବର୍ଣ୍ଣନା କରିଛନ୍ତି ।

ଗୋପୀନାଥ ବାବୁଙ୍କ ପୋଥିରେ କିପରି ଅଭ୍ରାନ୍ତ ଶୁଦ୍ଧପାଠ ରହିଛି, ତାହା ତାଙ୍କ ଦ୍ୱାରା ଉଦ୍ଧୃତ ଗୋଟିଏ ଉଦାହରଣରୁ ଜଣାପଡିଯାଉଛି । ସେ ଉଦ୍ଧୃତାଂଶ ସାହାଯ୍ୟରେ ଦେଖାଇବାକୁ ଚାହିଁଛନ୍ତି ଯେ, ଦରଦସେନ ଅଲେଖ ଶବ୍ଦଟି ସମାଲୋଚକଙ୍କ ପ୍ରତି ପ୍ରୟୋଗ ନ କରି ଅର୍ଜୁନଙ୍କ ପ୍ରତି ହିଁ ପ୍ରୟୋଗ କରିଛନ୍ତି । ତାଙ୍କ ମତରେ ଜଣେ ମୁସଲମାନ୍ ଅନ୍ୟ ଜଣେ ମୁସଲମାନକୁ ମୁସଲମାନ ବୋଲି କହିବା ଗୋଟାଏ ଅସଙ୍ଗତ କଥା, ଜଣେ ବ୍ରାହ୍ମଣ ଅନ୍ୟ ଜଣେ ବ୍ରାହ୍ମଣକୁ ଯଦି ବ୍ରାହ୍ମଣ ବୋଲି କହେ, ତେବେ ସେଥିରେ ଯେ କଅଣ ଅସଙ୍ଗତି ରହେ, ତାହା ମୋ' ମସ୍ତିଷ୍କରେ ପଶିପାରୁ ନାହିଁ; କିନ୍ତୁ ଅଲେଖ ଶବ୍ଦର ଅର୍ଥ ଯଦି ଶୂନ୍ୟବାଦୀ ଓ ପିତୁଳାପୂଜା ବିରୋଧୀ ହୁଏ, ତେବେ ସେହି ଶବ୍ଦ ପରମବୈଷ୍ଣବ ଓ ସର୍ବ ଦେବଦେବୀପୂଜକ ଅର୍ଜୁନଙ୍କ ପ୍ରତି ଯେ କିଭଳି ପ୍ରଯୁଜ୍ୟ ହେବ; ତାହା ଗୋପୀନାଥ ବାବୁ କହିବେ କି ? ତାଙ୍କ ପୋଥିରେ ଯାହା ଅଛି, ତାହା ହିଁ ଅଭ୍ରାନ୍ତ—ସେ ଯଦି ଏପରି ଯୁକ୍ତି କରନ୍ତି, ତେବେ ତା' ବିରୁଦ୍ଧରେ ମୋର କିଛି କହିବାର ନାହିଁ ।

ଗୋପୀନାଥ ବାବୁଙ୍କ ଅଭିଯୋଗ ଯେ ମୁଁ କୁଆଡ଼େ ସଭାପର୍ବରେ ଥିବା ପାଣ୍ଡବମାନଙ୍କ ସମସ୍ତ ଦିଗ୍‌ବିଜୟକୁ ଓଡ଼ିଶା ରାଜାଙ୍କ ଦିଗ୍‌ବିଜୟ ବୋଲି ଧରି ନେଉଛି । ଏକଥା ମୁଁ କୁତ୍ରାପି କହି ନାହିଁ, ଏଣୁ ଏପରି ମନ୍ତବ୍ୟ ନିତାନ୍ତ ନିର୍ଦ୍ଦୟ ଭିତ୍ତିହୀନ । ମୋର ପ୍ରଥମ ପ୍ରବନ୍ଧରେ ମୁଁ ପରିଷ୍କାର ଭାବରେ କହିଛି ଯେ, ସାରଳା ମହାଭାରତ ଐତିହାସିକ ଗ୍ରନ୍ଥ ନୁହେଁ । ଏଥିରେ ଯଦି କିଛି ଇତିହାସ ଥାଏ, ତେବେ ତାହା ଗୁପ୍ତ ଓ ପ୍ରଚ୍ଛନ୍ନ ଭାବରେ ଥିବ । ମୁଁ ସାରଳା ମହାଭାରତକୁ ଇତିହାସ ବୋଲି

ଧରୁ ନାହିଁ; କିନ୍ତୁ ଏହି ଗ୍ରନ୍ଥରେ ଯେଉଁ ଯେଉଁ ଅଂଶ ଇତିହାସ ସହିତ ମିଳିଯାଉଛି, ସେହି ସେହି ଅଂଶରେ ହିଁ ଐତିହାସିକ ସତ୍ୟ ପ୍ରତିଫଳିତ ହୋଇଛି ବୋଲି ମୁଁ କହୁଛି । ସେହି ସେହି ଅଂଶ ପାଣ୍ଡବମାନଙ୍କ ଦିଗ୍‌ବିଜୟ ମଧ୍ୟରେ ଥାଇପାରେ କିମ୍ବା ଅନ୍ୟ ଆଖ୍ୟାୟିକାମାନଙ୍କରେ ଥାଇପାରେ, ସେଥିରେ ମୋର କିଛି ଯାଏ ଆସେ ନାହିଁ କିମ୍ବା ସେହି ଅଂଶରେ ଭୀମ, ଅର୍ଜୁନ ବା ନକୁଳ ଯେ କେହି ନାୟକ ହୋଇପାରନ୍ତି, ସେଥିରେ ମଧ୍ୟ ମୋର କିଛି ଯାଏ ଆସେ ନାହିଁ । ଅନୈତିହାସିକ ଗ୍ରନ୍ଥରୁ ଐତିହାସିକ ସତ୍ୟ ବାହାର କରିବାର ଏହି ମୌଳିକ ନୀତି ହିଁ ସର୍ବତ୍ର ଅବଲମ୍ବନ କରାଯାଏ । ମୁଁ ଏହା ଭଙ୍ଗ କରୁନାହିଁ, କିନ୍ତୁ ଏହି ଅଭିଯୋଗ ଆସୁଥିବାରୁ ମୁଁ କେବଳ ଦୁଃଖିତ ହେଉଛି ।

ଗୋପୀନାଥ ବାବୁ ଯେଉଁଭଳି 'କିରୁ ବାଲି' ବାଛିବାକୁ ଚାହୁଁଛନ୍ତି, ସେଭଳି ନୀତି ଅବଲମ୍ବନ କଲେ ଇତିହାସର କୌଣସି ବିଷୟରେ ସିଦ୍ଧାନ୍ତ କରି ହେବ ନାହିଁ, କିମ୍ବା ଆଇନ ଅଦାଲତରେ କୌଣସି ଦୋଷୀକୁ ଦଣ୍ଡ ଦେଇ ହେବ ନାହିଁ; କିମ୍ବା ନିର୍ଦ୍ଦୋଷକୁ ମୁକ୍ତ କରାଯାଇ ପାରିବ ନାହିଁ । ଏକପକ୍ଷୀୟ କେବଳ ଦୁଇଟି ସାକ୍ଷୀର ଜମାନବନ୍ଦୀ ମଧ୍ୟ ସର୍ବତୋଭାବରେ ମେଳ ହୁଏ ନାହିଁ, କିନ୍ତୁ ବହୁ ସାକ୍ଷୀର ପରସ୍ପର ବିରୋଧ ଜମାନବନ୍ଦୀରୁ ମଧ୍ୟ ମୌଳିକ ସତ୍ୟ ଧରାପଡ଼ିଯାଏ ଓ ସେହି ଅନୁସାରେ ସିଦ୍ଧାନ୍ତ ହୁଏ । ଓଡ଼ିଶା ଗଜପତିମାନଙ୍କର ଯେଉଁ ଇତିହାସ ମିଳୁଛି ତାହାର ଗୋଟିଏ ମୁଖ୍ୟ ମୂଳଗ୍ରନ୍ଥ ହେଉଛି ଫେରିସ୍ତାଙ୍କ ତାରିଖ-ଇ-ଫେରିସ୍ତା; କିନ୍ତୁ ଘଟଣା ଘଟିବାର ପ୍ରାୟ ଦୁଇଶହ ବର୍ଷ ପରେ ସେ ଏହି ଗ୍ରନ୍ଥକୁ ବିଭିନ୍ନ ଉପାଦାନରୁ ସଂକଳନ କରିଥିଲେ । ତା' ଛଡ଼ା ମୁସଲମାନଙ୍କ ପକ୍ଷ ନେଇ ସତ୍ୟକୁ ବିକୃତ ବା ଲୁପ୍ତ କରିବା ଦୋଷରୁ ମଧ୍ୟ ତାଙ୍କ ଗ୍ରନ୍ଥ ମୁକ୍ତ ନୁହେଁ । ପକ୍ଷାନ୍ତରେ ସାରଳାଦାସ ଜଣେ କବି ଥିଲେ ଓ ତାଙ୍କ କଳ୍ପନାକୁ ବାଧା ଦେବାଭଳି କୌଣସି ପ୍ରତିବନ୍ଧକ ନଥିଲା । ଏପରିସ୍ଥଳେ ଉଭୟ ଉପାଦାନରୁ ପ୍ରାପ୍ତ ଘଟଣାବଳୀ ଯେ ସର୍ବତୋଭାବରେ ମେଳ ଖାଇଯିବ, ଏପରି ଆଶା କରିବା ବୃଥା । ଗୋପୀନାଥ ବାବୁଙ୍କ ପ୍ରତ୍ୟେକ କଥାର ଯୁକ୍ତିକୁ କାଟି ଦେବାର ଯୁକ୍ତି ରହିଛି; କିନ୍ତୁ ତାହା କରିବାକୁ ଗଲେ ଆଉ ଗୋଟିଏ ପ୍ରବନ୍ଧ ଲେଖିବାକୁ ପଡ଼ିବ । ତଥାପି ଏଠାରେ ଗୋଟିଏ ଉଦାହରଣ ଦେଉଛି । ଫେରିସ୍ତା ଲେଖିଛନ୍ତି ଯେ, ଦେବର କୋଣ୍ଡା ଯୁଦ୍ଧରେ ଏକ ତରଫରୁ ଗଜପତିଙ୍କ ସୈନ୍ୟ ଓ ଅନ୍ୟ ତରଫରୁ ଅବରୁଦ୍ଧ ଦୁର୍ଗରୁ ବହିର୍ଗତ ସୈନ୍ୟ ବାହାମନି ସୈନ୍ୟ ଉପରେ ଏକାବେଳକେ ଆକ୍ରମଣ ଚଳାଇବାରୁ ବାହାମନି ସୈନ୍ୟ ସମ୍ପୂର୍ଣ୍ଣ ପରାଜିତ ହୋଇ ଛତ୍ରଭଙ୍ଗ ଦେଇଥିଲେ; କିନ୍ତୁ ସାରଳାଦାସଙ୍କ ବର୍ଣ୍ଣନାରେ ଅଛି ଯେ ଅର୍ଜୁନ ଅବରୁଦ୍ଧ ସୈନ୍ୟର ବିନା ସାହାଯ୍ୟରେ ମଧ୍ୟ ଦରଦ-

ସେନାର ସୈନ୍ୟମାନଙ୍କୁ ପରାସ୍ତ କରିଥିଲେ । ଏହି ଉଭୟ ବର୍ଣ୍ଣନା ମଧ୍ୟରୁ କେଉଁଟି ସତ୍ୟ, ତାହା ତୃତୀୟ ଉପାଦାନ ନ ମିଳିବା ଯାଏ ସ୍ଥିର କରିବା ସମ୍ଭବ ନୁହେଁ । ଫେରିସ୍ତା ବାହାମନି ସୈନ୍ୟର ଗୌରବ ବଢ଼ାଇବାପାଇଁ ଓ ସାରଳା ଦାସ ଗଜପତି ସୈନ୍ୟର ଗୌରବ ବଢ଼ାଇବାପାଇଁ ଯୁଦ୍ଧର ବିଭିନ୍ନ ପ୍ରକାରର ବର୍ଣ୍ଣନା ଦେଇ ପାରିଥାନ୍ତି; କିନ୍ତୁ ସେଥିପାଇଁ ଉଭୟ ଉପାଦାନର ମୌଳିକ ସତ୍ୟ ସମ୍ପୂର୍ଣ୍ଣ ବ୍ୟର୍ଥ ବା ପଣ୍ଡ ହୋଇଯାଉ ନାହିଁ । ଉଭୟ ଉପାଦାନର ମୌଳିକ ସତ୍ୟ ଏହି ଯେ ଦେବରକୋଣ୍ଡାରେ ଯେଉଁ ଯୁଦ୍ଧ ହୋଇଥିଲା, ସେଥିରେ ଗଜପତିଙ୍କ ଦ୍ୱାରା ବାହାମନି-ସୈନ୍ୟ ସମ୍ପୂର୍ଣ୍ଣ ପରାଜିତ ହୋଇଥିଲେ ।

ଗୋପୀନାଥ ବାବୁ ନିଜ ମତକୁ ସମ୍ପୂର୍ଣ୍ଣ ବଜାୟ ରଖିବାପାଇଁ କିପରି କୂଟଯୁକ୍ତିର ଆଶ୍ରୟ ନେଇଛନ୍ତି ସେ ସମ୍ବନ୍ଧରେ ପଦେ ଅଧେ କହିବା ଆବଶ୍ୟକ ମନେ କରୁଛି । ସାରଳା ଦାସ ତାଙ୍କ ଗ୍ରନ୍ଥରେ ବାରମ୍ବାର ବିଜୟନଗର ଓ ଉଦୟଗିରିର ନାମ ଉଲ୍ଲେଖ କରିଛନ୍ତି । ମୁଁ ମଧ୍ୟ ମୋ' ପ୍ରବନ୍ଧମାନଙ୍କରେ ଏହି ସ୍ଥାନମାନଙ୍କର ଭୌଗୋଳିକ ଓ ଐତିହାସିକ ବିବରଣ ଏକାଧିକ ଥର ଦେଇଛି; କିନ୍ତୁ ଗୋପୀନାଥ ବାବୁ ମୋ'ର ସମସ୍ତ ଯୁକ୍ତି ଓ ଉପାଦାନ ଉଡ଼ାଇ ଦେବାଲାଗି ବହୁ ପରିଶ୍ରମ କରିଥିଲେହେଁ ତାଙ୍କ ପ୍ରବନ୍ଧରେ ଏହି ଦୁଇଟି ସ୍ଥାନର ଐତିହାସିକ ବା ଭୌଗୋଳିକ ବିବରଣୀ ସମ୍ବନ୍ଧରେ ପଦେ ସୁଦ୍ଧା କହିନାହାନ୍ତି । ଏହାର କାରଣ ଏହି ଯେ କେବଳ ଏହି ସ୍ଥାନ ଦୁଇଟିର ଇତିହାସଦ୍ୱାରା ହିଁ ତାଙ୍କ ମତ ଏକାବେଳକେ ଧ୍ୱଂସ ପାଇଯାଉଛି । ତାଙ୍କ ମତରେ ସାରଳା ସାହିତ୍ୟ ନବମ ଶତାବ୍ଦୀରେ ରଚିତ ହୋଇଥିଲା; କିନ୍ତୁ ଖ୍ରୀଃ ୧୩୩୭ ପୂର୍ବରୁ ବିଜୟ ନଗରର ଅସ୍ତିତ୍ୱ ନ ଥିଲା ଓ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ଆଗରୁ ଉଦୟଗିରି ଦୁର୍ଗର ମଧ୍ୟ ଅସ୍ତିତ୍ୱ ନ ଥିଲା । ଯେଉଁ ସାହିତ୍ୟ ନବମ ଶତାବ୍ଦୀରେ ରଚିତ ହୋଇଥିଲା, ସେଥିରେ ଏହି ସ୍ଥାନମାନଙ୍କର ଉଲ୍ଲେଖ ରହିଲା କିପରି ? ଏହି ଅସଙ୍ଗତିରୁ ରକ୍ଷା ପାଇବାପାଇଁ ଗୋପୀନାଥ ବାବୁ ବିଜୟନଗର ଓ ଉଦୟଗିରିର ଇତିହାସ ସମ୍ବନ୍ଧରେ ଏକାବେଳକେ ନୀରବ ରହିଛନ୍ତି । ତାଙ୍କର ସ୍ମରଣ ରଖିବା ଉଚିତ ଯେ ଐତିହାସିକର କାମ ଓକିଲର କାମ ନୁହେଁ, ତାହା ବିଚାରପତିର କାମ ।

(୩) ବହୁ ପରିଶ୍ରମ କରି ମୋର ସମସ୍ତ ଯୁକ୍ତି ଖଣ୍ଡନ କରିବା ପରେ ଗୋପୀନାଥ ବାବୁ ସାରଳା ସାହିତ୍ୟର ଜନ୍ମକାଳ ସମ୍ବନ୍ଧରେ ଯଦି କୌଣସି ନିର୍ଦ୍ଦିଷ୍ଟ ଉପସଂହାରରେ ପହଞ୍ଚି ଥାଆନ୍ତେ ତେବେ ମୁଁ ଆନନ୍ଦିତ ହୋଇଥାନ୍ତି; କିନ୍ତୁ ସେ ତାଙ୍କ ପ୍ରବନ୍ଧର ଶେଷ ଭାଗରେ ଖାଲି ଧୂମ୍ରଜାଲ ସୃଷ୍ଟି କରିଛନ୍ତି । ସାରଳା ମହାଭାରତର

ଆଦ୍ୟପର୍ବରେ ଥିବା ମହାରାଜା କପିଳେଶ୍ୱର ଯେ କଏ, ଏ ବିଷୟରେ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ମତ ନାହିଁ । ତାଙ୍କ ମତରେ ଏହି ମହାରାଜ କପିଳେଶ୍ୱର ୯ମ ଶତାବ୍ଦୀର କୌଣସି ରାଜା ହୋଇ ପାରନ୍ତି, କିମ୍ବା କପିଳେଶ୍ୱର ମହାଦେବ ହୋଇ ପାରନ୍ତି; କିମ୍ବା କପିଳା ଗାଈ ବା କପିଳ ମୁନିଙ୍କ ନାମାନୁସାରେ ଏହି କପିଳେଶ୍ୱର ଉତ୍ପନ୍ନ ହୋଇପାରିଥାନ୍ତି । ଚଣ୍ଡୀ ପୁରାଣର କପିଳସିଂହ ହୋଇ ପାରନ୍ତି କିମ୍ବା ଅପ୍ରକାଶିତ ମାଧବ ମାହାତ୍ମ୍ୟର କପିଳସିଂହ ହୋଇପାରନ୍ତି । ଗୋପୀନାଥ ବାବୁ ଭୁଲି ଯାଇଛନ୍ତି ଯେ ସାରଳା ଦାସ ତାଙ୍କ ମହାଭାରତର ଆଦି ପର୍ବରେ କପିଳେଶ୍ୱରଙ୍କୁ ମହାରାଜ ଆଖ୍ୟା ଦେଇଛନ୍ତି । ତାଙ୍କ ଯୁକ୍ତିକୁ ଯଦି ଅନୁସରଣ କରାଯାଏ ତେବେ ମାନିବାକୁ ହେବ ଯେ ସାରଳା ଦାସ କପିଳ ଶବ୍ଦ ପାଇବା ମାତ୍ରେ ତାକୁ କପିଳେଶ୍ୱର କରି ମହାରାଜ ଉପାଧି ଦେଉଥିଲେ । ଏପରି ଯୁକ୍ତି ବାଢ଼ିବାବେଳେ ଆଉ ଗୋଟିଏ ବୈଦ୍ୟର କଥା ଆପେ ଆପେ ମନେ ପଡ଼ିଯାଏ । ଜଣେ ଖ୍ୟାତନାମା ବୈଦ୍ୟ ପାଖକୁ ଜଣେ ରୋଗୀ ଆସିବାରୁ ବୈଦ୍ୟ ତାକୁ ନିମ୍ନଲିଖିତ ବ୍ୟବସ୍ଥା ପତ୍ରଟି ଧରାଇ ଦେଲେ ।

ଯସ୍ୟ ତସ୍ୟ ତରୋର୍ମୂଳଂ ଯେନ କେନାପି ପେଷୟେତ୍
ଯସ୍ମୈ ତସ୍ମୈ ପ୍ରଦାତବ୍ୟଂ ଯଦ୍ୱା ତଦ୍ୱା ଭବିଷ୍ୟତି ।

ଅସ୍ୟାର୍ଥଃ—ଯେ କୌଣସି ଗଛର ମୂଳକୁ ଯେ କୌଣସି ଲୋକଦ୍ୱାରା ବଟାଇ ନିଅ, ଅର୍ଥାତ୍ ଯେ କୌଣସି ଲୋକକୁ ତାହା ଦେଇଦିଅ, ଯେ କୌଣସି ଗୋଟାଏ ଫଳ ଫଳିଯିବ ।

ଏହି ବ୍ୟବସ୍ଥାପତ୍ର ଅନୁସାରେ ମାସେ ପର୍ଯ୍ୟନ୍ତ ଔଷଧ ଖାଇଲା ପରେ ରୋଗୀ ମୁହଁ ଶୁଖାଇ ଆଉ ଥରେ ବୈଦ୍ୟ ପାଖରେ ପହଞ୍ଚି କହିଲେ—ଆଜ୍ଞା କିଛି ହେଲା ନାହିଁ । ବୈଦ୍ୟ କହିଲେ—ତେବେ ତୁମେ ଠିକ୍ ଗଛର ମୂଳ ଆଣି ପାରିଲ ନାହିଁ । ରୋଗୀ କହିଲା—ଆଜ୍ଞା, ମୁଁ ଠିକ୍ ଗଛର ମୂଳ ଆଣିଥିଲି । ବୈଦ୍ୟ କହିଲେ—ତେବେ ତୁମେ ତାକୁ ଠିକ୍ ଲୋକହାତରେ ବଟେଇ ପାରିଲ ନାହିଁ । ରୋଗୀ କହିଲା—ଆଜ୍ଞା, ମୁଁ ତାକୁ ପହିଲମାନ୍ ହାତରେ ବଟେଇ ଥିଲି । ବୈଦ୍ୟ କହିଲେ ତେବେ ତୁମେ ତାକୁ ଠିକ୍ ଲୋକକୁ ଦେଇ ପାରିଲ ନାହିଁ । ଏଥର ରୋଗୀ ବିରକ୍ତ ହୋଇ କହିଲା—ମୁଁ ତ ନିଜେ ରୋଗୀ, ଆଉ ଠିକ୍ ଲୋକଟାଏ କାହୁଁ ଆଣନ୍ତି ? ବୈଦ୍ୟ ମଧ୍ୟ ବିରକ୍ତ ହୋଇ କହିଲେ ତେବେ ତୁମେ କଅଣ କହୁଛ ଯେ କିଛି ଫଳ ହେଲାନାହିଁ ? ରୋଗୀ ବ୍ୟଙ୍ଗ ସ୍ୱରରେ କହିଲା—ହଁ, ହେଲାନାହିଁ କାହିଁକି ?

ଔଷଧ ଖାଇବା ଦିନଠାରୁ ରୋଗ ଖରାପ ଆଡ଼କୁ ଗତି କଲା । ଏଥର ବୈଦ୍ୟ ବିଜସ୍ବଗର୍ବରେ କହି ଉଠିଲେ—ହଁ; ସେଇକଥା ଠିକ୍ । ମୋର ବ୍ୟବସ୍ଥାପତ୍ରରେ ଥିଲା ଯେ କୌଣସି ଗୋଟାଏ ଫଳ ଫଳିବ । ଗୋଟାଏ ଫଳ ତ ଫଳିଛି, କିଛି ହେଲା ନାହିଁ ବୋଲି କହୁଛ କିପରି ?

ଉଲ୍ଲିଖିତ ବ୍ୟବସ୍ଥାପତ୍ରର ସମସ୍ତ ଅନିଶ୍ଚିତତା ମଧ୍ୟରୁ ଗୋଟାଏ ନିଶ୍ଚିତ ଫଳ ବାହାର ପଡ଼ିବା ଭଳି ଗୋପୀନାଥବାବୁଙ୍କ ଆଲୋଚନାର ସମସ୍ତ ଅନିଶ୍ଚିତତା ମଧ୍ୟରୁ ଗୋଟାଏ ନିଶ୍ଚିତ ଫଳ ବାହାରି ପଡ଼ିଛି । ସେଟା ହେଉଛି ଅପ୍ରକାଶିତ— ମାଧବମାହାତ୍ମ୍ୟ ପୋଥି । ଏହି ଅମୂଲ୍ୟ ଗ୍ରନ୍ଥଟି ଏତେଦିନ ଲୁଚି ରହି ବର୍ତ୍ତମାନ ବେଳକାଳ ଜାଣି ଉଙ୍କି ମାରୁଛି । ଗୋପିନାଥବାବୁ ଧରି ବସିଛନ୍ତି ଯେ ସାରଳା ସାହିତ୍ୟ ନବମ ଶତାବ୍ଦୀରେ ରଚିତ ହୋଇଥିଲା ଓ ସାରଳାଦାସଙ୍କ ଘର ଥିଲା ପ୍ରାଚୀ ନଦୀ କୂଳର କଣିଆରେ । ମାଧବ-ମାହାତ୍ମ୍ୟର କପିଳସିଂହ ନବମ ଶତାବ୍ଦୀର ରାଜା ହୋଇଥିବେ, ଆଉ ଏହା କପିଳ ସିଂହଙ୍କୁ ହିଁ ସାରଳାଦାସ ଆଦ୍ୟପର୍ବରେ କପିଳେଶ୍ବର ବୋଲି ଲେଖିଥିବେ । ଯେଉଁ ମାଧବଙ୍କର ମାହାତ୍ମ୍ୟ ଏଥିରେ କୀର୍ତ୍ତିତ ହୋଇଛି, ସେ ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣିତ ପ୍ରାଚୀନଦୀ କୂଳର ମାଧବ ହୋଇଥିବେ । ଏହି ମାଧବଙ୍କଠାରୁ କଣିଆ ବେଶୀ ଦୂର ନୁହେଁ । ଏଣୁ ଏହି କଣିଆରେ ହିଁ କବିଙ୍କ ବାସସ୍ଥାନ ହୋଇଥିବ ଇତ୍ୟାଦି ଇତ୍ୟାଦି; କିନ୍ତୁ ଏହି ଗ୍ରନ୍ଥର ସର୍ବବିଧ ପରୀକ୍ଷା ପାଇଁ କେହି ଏହାକୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦାଖଲ କରିବେ କି ?

କୃତ୍ରିମ ଓ କୃତ୍ରିମ ଉପାଦାନ ଦ୍ୱାରା ଇତିହାସ ସୃଷ୍ଟି କଲେ ଦେଶ ଓ ଜାତିର ନୈତିକତା ବହୁ ପରିମାଣରେ କ୍ଷୁଣ୍ଣ ହୁଏ ବୋଲି ମୁଁ ଯେଉଁ ନୀତିବାକ୍ୟ ଲେଖିଛି, ତାକୁ ମୋର ହୃଦୟର କଥା ନୁହେଁ ବୋଲି ଭାବି ଗୋପୀନାଥବାବୁ ତାଙ୍କ ଲେଖାରେ ମୋତେ ଭଣ୍ଡ ତପସ୍ୱୀରୂପେ ଉପସ୍ଥାପିତ କରିବାକୁ ଚେଷ୍ଟା କରିଛନ୍ତି; କିନ୍ତୁ ମୋ ସମ୍ବନ୍ଧରେ ସତ୍ୟକଥା ଏହି ଯେ, ମୁଁ ଭଣ୍ଡ ନୁହେଁ କିମ୍ବା ତପସ୍ୱୀ ମଧ୍ୟ ନୁହେଁ । ଗାଁ-ଲୋକଙ୍କ ପରି ମୁଁ ମାଛକୁ ମାଛ, ବେଙ୍ଗକୁ ବେଙ୍ଗ କହେ, ଆଉ ଯେଉଁମାନେ ପାଠପଢ଼ି କୃତ୍ରିମ ଓ କୃତ୍ରିମ ଉପାଦାନ ସାହାଯ୍ୟରେ ମାଛକୁ ବେଙ୍ଗ କରିବାକୁ ଯାଆନ୍ତି, ମୁଁ ସେମାନଙ୍କୁ ଚିହ୍ନାଇ ଦିଏ । ଏହା ମୋର ପୁରାତନ ବୃତ୍ତି, ନୂତନ ନୁହେଁ । ମୋର 'ସାରଳା ସାହିତ୍ୟର ରଚନାକାଳ ଓ ଐତିହାସିକ ଚିନ୍ତା'ର ପ୍ରଥମ ପ୍ରବନ୍ଧରେ ମୁଁ—କପିଳ ନରସିଂହକୁ ଭଦ୍ରଭାଷାରେ "ସମ୍ପୂର୍ଣ୍ଣ କପୋଳକଳ୍ପିତ" ବୋଲି କହିଛି; ସେହି ବ୍ୟକ୍ତି "ନର"ଟାକୁ କାଟି ଦେଇ ଯଦି ମାଧବ ମାହାତ୍ମ୍ୟରେ ଆସି ଆବିର୍ଭୂତ ହୁଏ, ତେବେ ଏଠାରେ ମଧ୍ୟ ତାକୁ ଭଦ୍ରଭାଷା

ପ୍ରୟୋଗ କରିବାର ମୋର ଅଧିକାର ରହିଛି । ଗୋପୀନାଥବାବୁ କଅଣ ଭାବନ୍ତି ଯେ କୌଣସି ବ୍ୟକ୍ତି ଥରେ ଦାଢ଼ି ରଖି ଓ ଥରେ ଦାଢ଼ି କାଟି ପକାଇଗଲେ ତାକୁ ଚିହ୍ନିବାର କୌଣସି ଉପାୟ ନ ଥାଏ ।

ମୁଁ ପ୍ରଜାତନ୍ତ୍ର ପ୍ରଚାର ସମିତିଠାରେ କୃତଜ୍ଞତା ଜଣାଇଥିବାରୁ ଗୋପୀନାଥ ବାବୁ ମୋତେ କୃତାନ୍ତ ବା କୃତଘ୍ନରୂପେ ଉପସ୍ଥାପିତ କରିବାର ମଧ୍ୟ ଚେଷ୍ଟା କରି ଅଛନ୍ତି; କିନ୍ତୁ ମୁଁ ମାଛକୁ ମାଛ କହିବା ପରି—କୌଣସି ବ୍ୟକ୍ତି ବା ଅନୁଷ୍ଠାନଠାରୁ କୌଣସି ସାହାଯ୍ୟ ପାଇଲେ ଜାତି-ଧର୍ମ-ଦେଶ-ଦଳନିର୍ବିଶେଷରେ ତାଙ୍କଠାରେ କୃତଜ୍ଞତା ଜଣାଏ । ଗୋପୀନାଥବାବୁ ମୋର ଏହି ଉକ୍ତିର ସତ୍ୟତା ପରୀକ୍ଷା କରିବାକୁ ଯଦି ଚାହାନ୍ତି, ତେବେ ସାରଳା ମହାଭାରତର ତାଙ୍କ ତାଳପତ୍ର-ପୋଥିଟି କେତେକ ମାସ ପାଇଁ ଧାରସୂତ୍ରରେ ମୋ ନିକଟକୁ ପଠାଇ ଦିଅନ୍ତୁ । ମୁଁ ହୁଙ୍କାର-ଜରିଆରେ ତାଙ୍କଠାରେ ଗଭୀର କୃତଜ୍ଞତା ଜଣାଇବି ।

———

# ଷଷ୍ଠ ପରିଚ୍ଛେଦ

## ଶଙ୍ଖମଣ୍ଡଳ; ଶଙ୍ଖପୁର ଓ ଯମୁନାପୁରର ଅବସ୍ଥିତି ନିର୍ଣ୍ଣୟ

ପଞ୍ଚମ ଅଧ୍ୟାୟରେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ ଆଲୋଚନାର ଯଥାର୍ଥ ଉତ୍ତର ଦେବାପାଇଁ ଯଥାସାଧ୍ୟ ଚେଷ୍ଟା କରାଯାଇଛି । କୌଣସି ବିଷୟ ଯଦି ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଥାଏ, ତେବେ ସମାଲୋଚନାଦ୍ୱାରା ତାହା ଧ୍ୱସ୍ତ ବା ମ୍ଳାନ ହୁଏ ନାହିଁ; ବରଞ୍ଚ ତାହା ଅଗ୍ନିଦଗ୍ଧ ସ୍ୱର୍ଣ୍ଣପରି ସମୁଜ୍ଜ୍ୱଳ ହୋଇ ଉଠେ । କୌଣସି ସତ୍ୟଆଲୋଚନା ଘୋଡ଼ାଦୌଡ଼ ବା କୁକୁଡ଼ା ଲଢ଼େଇ ପରି ଗୋଟିଏ ବିୟୋଗାନ୍ତ ବ୍ୟସନ ନୁହେଁ । ଏଣୁ କୌଣସି ବିଜ୍ଞ ବ୍ୟକ୍ତି ସତ୍ ଆଲୋଚନାର ଏକ ବା ଅନ୍ୟ ପକ୍ଷକୁ ନିର୍ବିଚାରରେ ସମର୍ଥନ କରନ୍ତି ନାହିଁ କିମ୍ବା ଜୟ ପରାଜୟ ସହିତ ଜଡ଼ିତ ହୋଇ ପଡ଼ନ୍ତି ନାହିଁ । ଖାଲି ପାଣ୍ଡିତ୍ୟ ଦର୍ଶନପାଇଁ ବିତଣ୍ଡା ସୃଷ୍ଟି କରିବାର ଯୁଗ ବହୁ ଦିନରୁ ଚାଲିଗଲାଣି । ବର୍ତ୍ତମାନ ଯୁଗରେ ପ୍ରତ୍ୟେକ ଅନୁସନ୍ଧାନର ଲକ୍ଷ୍ୟ ହେଉଛି ସତ୍ୟର ସ୍ୱରୂପ ଉଦ୍‌ଘାଟନ କରିବା । ପ୍ରବୁଦ୍ଧ ମାନବଜାତିର ସତ୍ୟ ପ୍ରତି ଏହି ଅଭିନବ ଦୃଷ୍ଟିଭଙ୍ଗୀରୁ ହିଁ ବିଦ୍ୟମାନ ବୈଜ୍ଞାନିକ ସଭ୍ୟତା ଆପେ ଆପେ ବାହାରି ପଡ଼ିଛି । ଅତୀତର ଅତିଭକ୍ତ ହୋଇ ଆମ୍ଭେମାନେ ଯଦି ଏହି ଦୃଷ୍ଟିଭଙ୍ଗୀକୁ ଛାଡ଼ିଦେବା, ତେବେ ଖାଲି ସାହିତ୍ୟ ଇତିହାସରେ ନୁହେଁ, ଅନ୍ୟକୌଣସି ଜ୍ଞାନ-ମାର୍ଗରେ ମଧ୍ୟ ଆମର ଅଗ୍ରଗତି ଅସମ୍ଭବ ହୋଇପଡ଼ିବ ।

ଗୋପୀନାଥ ବାବୁ ନିକଟ-ଅତୀତରେ ସର୍ବପ୍ରଥମେ ସାରଳା ସାହିତ୍ୟର ଶୁଦ୍ଧ ସଂସ୍କରଣ ଓ ସମାଲୋଚନା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ଓଡ଼ିଆ ସାହିତ୍ୟ ତଥା ଓଡ଼ିଶା ଇତିହାସର ପ୍ରଭୂତ ଉପକାର କରିଛନ୍ତି । ସାରଳା ଦାସଙ୍କ ଛନ୍ଦୋମୟୀ ଭାଷା ଓଡ଼ିଆ ସାହିତ୍ୟର ଆଦିଜନନୀ ଓ ଓଡ଼ିଶା ଇତିହାସର ମଧ୍ୟ ଆଦିଜନନୀ । ଆଧୁନିକ ଓଡ଼ିଆ ସାହିତ୍ୟ ବା ଓଡ଼ିଶା ଇତିହାସ ତା'ର ଜନନୀର ସ୍ୱରୂପକୁ ଯୁଗ

ଟନ୍ତେ ନାହିଁ । ଏହା କମ୍ କ୍ଷୋଭର କଥା ନୁହେଁ । ଏପରି ଅବସ୍ଥାରେ ଆମ୍ଭମାନଙ୍କ ଅତୀତ ଗୌରବର ଆସ୍ଫାଳନ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟର ଶବ୍ଦସମ୍ଭାର ଉପରେ ଆମ୍ଭମାନଙ୍କ ପାଣ୍ଡିତ୍ୟର ପଦ୍ଧତିମାନ ବଙ୍କ ବୈଦେଶିକମାନଙ୍କ ନିକଟରେ ଖାଲି ଉପଭୋଗ୍ୟ ଓ ଉପହାସନୀୟ ହେବା ସ୍ୱାଭାବିକ କଥା । ଗୋପୀନାଥ ବାବୁ ଓ ପ୍ରଜାତନ୍ତ୍ର ପ୍ରଚାରସମିତି ଉଭୟେ ସାରଳା ସାହିତ୍ୟ ଆଲୋଚନାର ପଥ ସୁଗମ କରିଥିବାରୁ ମୁଁ ଉଭୟଙ୍କଠାରେ କୃତଜ୍ଞ । କୂଟଯୁକ୍ତି ଓ କୃତ୍ରିମ ଉପାଦାନକୁ ବାଦ୍ ଦେଇ ଅନ୍ୟ କେହି ଯଦି ଏହି ଆଲୋଚନାରେ ଯୋଗଦିଅନ୍ତି, ତେବେ ତାଙ୍କଠାରେ ମଧ୍ୟ ମୁଁ କୃତଜ୍ଞ ହେବି ।

ଗୋପୀନାଥ ବାବୁଙ୍କ ଆଲୋଚନାରେ ଥିବା ପ୍ରାୟ ସମସ୍ତ ବିଷୟର ଉତ୍ତର ମୁଁ ଦେଇଛି; କିନ୍ତୁ ଶଙ୍ଖପୁରର ଅବସ୍ଥିତି ସମ୍ବନ୍ଧରେ ମୁଁ କିଛି କହିପାରି ନାହିଁ । ଏହାର କାରଣ, ଶଙ୍ଖପୁର ଓ ଶଙ୍ଖମଣ୍ଡଳର ଅବସ୍ଥିତି ସମ୍ବନ୍ଧରେ ମୋ'ର ମଧ୍ୟ କୌଣସି ସ୍ପଷ୍ଟ ଧାରଣା ବା ନିର୍ଦ୍ଦିଷ୍ଟ ମତ ନ ଥିଲା । କବି ଯେଉଁ ସ୍ଥାନକୁ ଅମରଚୁଡ଼ି ପାଟଣ ବା ଦେବରକୋଣ୍ଡା ବୋଲି କହିଛନ୍ତି, ସେହିସ୍ଥାନକୁ ଶଙ୍ଖପୁର ବୋଲି ମଧ୍ୟ କହିଛନ୍ତି । ଆଉ ଏହି ଶଙ୍ଖପୁର ଯେଉଁ ରାଜ୍ୟରେ ଥିଲା, ତାକୁ ଶଙ୍ଖମଣ୍ଡଳ ବୋଲି କହିଛନ୍ତି । ସଭାପର୍ବରେ ଥିବା ଅର୍ଜୁନଙ୍କର ଦରଦମେନ ରାଜା ଓ କମାଗୋଷ୍ଟି ରାଜାଙ୍କ ସହିତ ଯୁଦ୍ଧ ଓ ଜୟଶୀର୍ଷକ ଆଖ୍ୟାୟିକାରେ କବି ଏହି ନାମ ଦୁଇଟିକୁ ବାରମ୍ବାର ଉଲ୍ଲେଖ କରିଛନ୍ତି ।

(ସଭାପର୍ବ, ପୃ ୧୪୦-୧୫୩ଷ୍ଠା)

"ଶଙ୍ଖପୁର ବୋଲି କରି ନଗର ଗୋଟିଏ
ତହିଁର ନୃପତି ଅଟେ କମାଗୋଷ୍ଟି ରାୟେ ।
× × ×
ଶଙ୍ଖମଣ୍ଡଳରେ ସେହୁ ଅଟେ ଅଧିପତି
ଯମ ଦେବକୁ ଭକତି କରେ ଦିବାରାତି ।
× × ×
ଯମଦଣ୍ଡ ଘେନି ଭୁଖା ମଣ୍ଡଳାଧିକାରି
ଶଙ୍ଖମଣ୍ଡଳକୁ ଆଗି କରିଦେଲେ ଜୁରି ।
× × ×
କମାଗୋଷ୍ଟିକୁ ଦରଦ ବେଢ଼ିଥିବା ବେଳେ
ଶାଖା (ଶଙ୍ଖ ?) ନଗ୍ରେ ଧନଞ୍ଜୟ ଯାଇଁ ବଳେ କଲେ ।
× × ×

ଅମରଚୂଡ଼ ପର୍ବତେ ବଜେ ଫାଲଗୁନ
ପାଶେ ଜଣାଇଲେ ଜୟ ବଳୟ ଯେ ବେନ ।
× × ×
ତାହାଙ୍କୁ ଡକାଇ ତାଙ୍କ କରେ ପତ୍ର ଦେଲେ
ଦରଦସେନକୁ ଏହା ଦେବ ଯେ ବୋଇଲେ ।
ଶଙ୍ଖମଣ୍ଡଳକୁ ସେହୁ ରହିଅଛୁ ଘେର
ସେ ରାଜାକୁ ପତ୍ର ଦେଇ ଆସ ବୃଝି କରି ।
× × ×
ପାର୍ଥ ଆଜ୍ଞା ଦେଲେ ଦୂତପତିଙ୍କୁ ହକାରି
ଶ୍ରୀମୁଖ ଘେନାଣ ଯାଅ ଶଙ୍ଖ ନଗ୍ରପୁରୀ ।
× × ×
ଶଙ୍ଖଭଗପୁର ଜାଣି ଗଲେ ସବ୍ୟସାଚୀ
ହିରଣ୍ୟ ପର୍ବତେ ବଜେ ଯହିଁ ହିରଣ୍ୟାକ୍ଷୀ ।”
× × ×

ଉଲ୍ଲିଖିତ ଉଦ୍ଧୃତାଂଶମାନଙ୍କରୁ ଦେଖାଯିବ ଯେ ଯେଉଁ ଅଞ୍ଚଳ ବା ଦେଶରେ ଅମରଚୂଡ଼ ପର୍ବତ ବା ଦେବରକୋଣ୍ଡା ଦୁର୍ଗ ଅବସ୍ଥିତ ଥିଲା ସେହି ଅଞ୍ଚଳ ବା ଦେଶକୁ କବି ଶଙ୍ଖମଣ୍ଡଳ ବୋଲି କହିଛନ୍ତି । ତା’ ଛଡ଼ା ଦେବରକୋଣ୍ଡା ଦୁର୍ଗକୁ ସବୁ ସମୟରେ ଶଙ୍ଖପୁର ବା ଶଙ୍ଖନଗ୍ର ବୋଲି ଲେଖିଛନ୍ତି । ଦେବରକୋଣ୍ଡା ଦୁର୍ଗ ତେଲେଙ୍ଗାନାରେ ଅବସ୍ଥିତ ଥିଲା ଓ ବର୍ତ୍ତମାନ ସୁଦ୍ଧା ଏହାର ଧ୍ୱଂସାବଶେଷ ନାଲଗୋଣ୍ଡା ଜିଲ୍ଲାରେ ରହିଛି । ତେଲେଙ୍ଗାନାର ରାଜଧାନୀ ଥିଲା ଉଆରଙ୍ଗଲ, ଆଉ ଏହି ରାଜ୍ୟ କାକତୀୟ ରାଜବଂଶ ଅମଳରେ ପ୍ରତାପଶାଳୀ ହୋଇ ଉଠିଥିଲା । କାକତୀୟ ରାଜା ଗଣପତିଙ୍କ (ଖ୍ରୀଃ ୧୧୯୮-୧୨୬୨) ଅମଳରେ ଏହି ରାଜ୍ୟ ଗୋଦାବରୀ ଓ କୃଷ୍ଣା-ମଧ୍ୟସ୍ଥ ସମୁଦ୍ର ଉପକୂଳ ଅଞ୍ଚଳରେ ବ୍ୟାପ୍ତ ହୋଇ ତାମିଲ ଭାଷା ଅଞ୍ଚଳ ପର୍ଯ୍ୟନ୍ତ ମଧ୍ୟ ବ୍ୟାପି ଯାଇଥିଲା । ଗଣପତିଙ୍କ ପରେ ମଧ୍ୟ କାକତୀୟ ରାଜବଂଶର ରାଜତ୍ୱ ଏହି ରାଜ୍ୟରେ ବଜାୟ ରହିଥିଲା, ମାତ୍ର ୧୩୨୩ ଖ୍ରୀଷ୍ଟାବ୍ଦରେ କାକତୀୟ ରାଜା ପ୍ରତାପରୁଦ୍ରଙ୍କ ଅମଳରେ ଗିୟାସଉଦ୍ଦିନ୍ ଟୋଗଲକ୍‌ଙ୍କ ପୁତ୍ର ଉଲୁଗ୍ ଖାଁଙ୍କ ଦ୍ୱାରା ଶେଷଥର ପାଇଁ ଆକ୍ରାନ୍ତ ହୋଇ ଏହି ରାଜବଂଶ ଲୁପ୍ତ ହୋଇଥିଲା ଓ ତେଲେଙ୍ଗାନା ତଥା ଉଆରଙ୍ଗଲ ଦିଲ୍ଲୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଯାଇଥିଲା ।

ବର୍ତ୍ତମାନର ପ୍ରଶ୍ନ ହେଉଛି—ତେଲେଙ୍ଗାନା ଓ ଦେବରକୋଣ୍ଡା ଯଥାକ୍ରମେ ଶଙ୍ଖମଣ୍ଡଳ ଓ ଶଙ୍ଖପୁର ନାମରେ ପ୍ରକୃତରେ ଅଭିହିତ ହେଉଥିଲେ ନା ଏହି ନାମ

ଦୁଇଟି ସମ୍ପୂର୍ଣ୍ଣ ରୂପେ ସାରଳା ଦାସଙ୍କ କଳ୍ପନାପ୍ରସୂତ ? ସାରଳା ଦାସଙ୍କ ବର୍ଣ୍ଣିତ ଅନେକ ଭୌଗୋଳିକ ନାମର ପରିଚୟ ଦେବା ବା ସେମାନଙ୍କ ଅବସ୍ଥିତି ନିର୍ଣ୍ଣୟ କରିବା ମୋର ବିଦ୍ୟା ଓ ବୁଦ୍ଧିର ଅତୀତ ହୋଇପଡ଼େ, କିନ୍ତୁ ସେଗୁଡ଼ିକୁ ମୁଁ କୌଣସିଠାରେ କଳ୍ପନାପ୍ରସୂତ ବୋଲି କହିବାକୁ ସାହସ କରି ନାହିଁ । ଶଙ୍ଖପୁର ଓ ଶଙ୍ଖମଣ୍ଡଳର ପରିଚୟ ବା ଅବସ୍ଥିତି ସମ୍ବନ୍ଧରେ ମୋତେ କିଛି ଜଣା ନ ଥିବାରୁ ପ୍ରଥମ ପ୍ରବନ୍ଧରେ ଓ ପରବର୍ତ୍ତୀ ପ୍ରବନ୍ଧମାନଙ୍କରେ ଏମାନଙ୍କ ସମ୍ବନ୍ଧରେ ମୁଁ କିଛି ନ କହି ନୀରବ ରହିବାକୁ ବାଧ୍ୟ ହୋଇଛି । କିନ୍ତୁ ବର୍ତ୍ତମାନ ଅଧିକ ଅନୁସନ୍ଧାନ ଫଳରେ ଜଣାପଡ଼ୁଛି ଯେ ତେଲେଙ୍ଗାନା ଅଞ୍ଚଳ ପ୍ରକୃତରେ ଶଙ୍ଖମଣ୍ଡଳ ଓ ଦେବରକୋଣ୍ଡା ପ୍ରକୃତରେ ଜମ୍ବୁଗିରି ବା ଶଙ୍ଖଗିରି ନାମରେ ଅଭିହିତ ହେଉଥିଲା । କବି ପ୍ରଚଳିତ ନାମ ଗୁଡ଼ିକ ହିଁ ତାଙ୍କ ଆଖ୍ୟାୟିକାରେ ଲେଖି ଯାଇଛନ୍ତି, ଏହି ଉକ୍ତିର ସତ୍ୟତା ନିମ୍ନୋକ୍ତ ପ୍ରମାଣମାନଙ୍କରୁ ଆପେ ଆପେ ପ୍ରତିପାଦିତ ହେବ ।

(କ) ଆଳୁମଲନାମକ ସ୍ଥାନରେ ୧୨୬୨ ଶକାବ୍ଦରେ (୧୩୪୦ ଖ୍ରୀଷ୍ଟାବ୍ଦରେ) ଲିଖିତ ଗୋଟିଏ ଶିଳାଲେଖ ଅଛି । ଏହି ଲେଖରେ ପ୍ରଶସ୍ତିକାର ବିଜୟନଗର ସାମ୍ରାଜ୍ୟର ସ୍ଥାପୟିତା ହରିହରଙ୍କ ବହୁ ଗୁଣ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାଙ୍କୁ "ଶଙ୍ଖପତି-ଗଜପତି ନରପତି-ତ୍ରିରାୟ-ମୁଖ-କଡ଼ପାଳଃ" ବୋଲି ମଧ୍ୟ ବର୍ଣ୍ଣନା କରିଛନ୍ତି (୧) । ଯେଉଁ ପଣ୍ଡିତମାନେ ଏହି ଲେଖର ପାଠୋଦ୍ଧାର କରିଛନ୍ତି, ସେମାନେ ଲେଖଟିର ସମ୍ପୂର୍ଣ୍ଣ ଅର୍ଥ ନ କରି ଖାଲି ସାରାଂଶଟି ଲେଖି ଦେଇଛନ୍ତି । ଶଙ୍ଖପତି ଯେ କିଏ ଏ ସମ୍ବନ୍ଧରେ ମଧ୍ୟ ସେମାନେ କିଛିମାତ୍ର କହି ନାହାନ୍ତି । ତା'ଛଡ଼ା ସେମାନେ 'କଡ଼ୟାଳ' ସ୍ଥାନରେ ଭ୍ରମବଶତଃ 'କଡ଼ପାଳ' ବୋଲି ଯେ ପଢ଼ିଛନ୍ତି, ଏହା ଖାଲି ଅନୁମାନର କଥା ନୁହେଁ; ଏହା ନିଶ୍ଚିତ କଥା । କାରଣ, କଡ଼ପାଳକୁ ଶୁଦ୍ଧ ପାଠ ବୋଲି ଧରି ଗଲେ, ହରିହରଙ୍କ ଏହି ବିଶେଷଣଟି ସମ୍ପୂର୍ଣ୍ଣ ନିରର୍ଥକ ହୋଇପଡ଼େ, ଆଉ ସ୍ୱତଃ ପ୍ରଶ୍ନ ଉଠେ—ହରିହର ତିନି ରାଜାଙ୍କ ମୁହଁର କଡ଼କୁ

(୧) ସଖାବ୍ଦ ସମସ୍ତକୁମଣ୍ଡଳା-ଖଣ୍ଡଳବର୍ତ୍ତିମାନରାୟପରମେଶ୍ୱର ଉତ୍ତରାମ୍ବୁଧିପର୍ଯ୍ୟନ୍ତ ଦକ୍ଷିଣରାୟ-ହୃଦୟଶୂଳପ୍ରଜ୍ୟରାୟବ (ବେ)ଶ୍ୟାଃ ଶଙ୍ଖପତି ଗଜପତି ନରପତି ତ୍ରିରାୟମୁଖକଡ଼ପାଳଃ···ମହତା ଗୁପ୍ତେନ ଧର୍ମେଣ ସକାଳଃ ପ୍ରଜାଃ ପରିପାଳୟନ୍ନସାଧାରଣମହିମା ବର୍ତ୍ତତେ । ତସ୍ୟ ଚ ସକଳ ଭୁବନବିଖ୍ୟାତକୀର୍ତ୍ତି-ପ୍ରତାପସ୍ୟ ମହାରାଜହରିହରସ୍ୟ··· ।

A. K. Nilkanthasastri—Further sources of Vijayanagara History. Vol, II, pp. 24-25. and Vol. III, p. 21.

କଅଣ ପାଳନ କରୁଥିଲେ ? କିନ୍ତୁ କଡ଼ପାଳ ସ୍ଥାନରେ କଡ଼ିୟାଳ ବୋଲି ପଢ଼ାଗଲେ ବିଶେଷଣଟିର ଅର୍ଥ ସମ୍ପୂର୍ଣ୍ଣ ସ୍ପଷ୍ଟ ହୋଇଉଠେ । ପ୍ରାଚୀନ ନାଗରୀ ଅକ୍ଷରର 'ପ' ଓ 'ୟ' ମଧ୍ୟରେ ତଫାତ୍ ଏତେ କମ୍ ଥିଲା ଯେ 'ୟ'କୁ 'ପ' ବୋଲି ପଢ଼ିଥିବାରେ କୌଣସି ବିଚିତ୍ରତା ନାହିଁ । କଡ଼ିୟାଳ ଶବ୍ଦ ସଂସ୍କୃତ ଶବ୍ଦ ନୁହେଁ; ଏହା ଦେଶଜ ଶବ୍ଦ । ସଂସ୍କୃତ ଲେଖା ମଧ୍ୟରେ ବହୁ ଦେଶଜ ଶବ୍ଦ ପ୍ରବେଶ କରିଥିବାର ଉଦାହରଣ କମ୍ ନୁହେଁ । କଡ଼ିୟାଳ ଶବ୍ଦର ଅର୍ଥ ହେଉଛି ଘୋଡ଼ାର ଲଗାମ । ଲଗାମ ଦେହରେ ଖଣ୍ଡେ କଡ଼ି ବା ଜଞ୍ଜିର (ଚେନ୍) ଲାଗୁଥିବାରୁ ତାକୁ ଯେ କଡ଼ିୟାଳ ବୋଲି କୁହାଯାଉଥିଲା, ଚତୁର୍ଦ୍ଦଶ ଶତାବ୍ଦୀରେ ଲିଖିତ ଖାଲି ଏହି ଶିଳାଲେଖରୁ ନୁହେଁ, ପଞ୍ଚଦଶ ଶତାବ୍ଦୀରେ ଲିଖିତ ସାରଳା ମହାଭାରତରୁ ମଧ୍ୟ ତାହା ପ୍ରମାଣିତ ହୁଏ ।

ବିରାଟ ରାଜା ଛଦ୍ମବେଶୀ ଗ୍ରନ୍ଥିକାର ନକୁଳଙ୍କ ଅଶ୍ୱବିଦ୍ୟା ପରୀକ୍ଷା କରିବା ପାଇଁ ତାଙ୍କୁ ଦୁଷ୍ଟ ଘୋଡ଼ାର ଗୁଣ ବର୍ଣ୍ଣନା କରୁଛନ୍ତି—

ତୁ ଯେବେ ବୋଇଲୁ ସବୁ ସାଧି ମୁଁ ପାରଇଁ
ତେବେ ଦୁଷ୍ଟ ଅଶ୍ୱ ଏକ ମୋହର ଅଛଇ ।
ମୁହିଁ ତାକୁ ଆଣିଦେବି ତୋହର ସ୍ତମ୍ଭରେ
ଉତ୍ତମ ରାଉତେ ଯାଇ ନ ପାରନ୍ତି ଡରେ ।
ମୁଖେ ସ୍କୁରପାଦେ ପାଞ୍ଚ ରଜ୍ଜୁ ବନ୍ଧା ହୋଇ
ଏକଠାବେ ପାଣି ଦେଇ ନ ଫିଟାନ୍ତି କେହି ।
ବରୁହା ଗଉଡ଼େ ଯେବେ ତା' କଟକ ଯାଇଁ
ହାବୁଡ଼େ ପଡ଼ିଲେ ତାକୁ କାମୁଡ଼ି ପକାଇ ।
ପରଶୁ କୁଠାର ଅଟେ ତା'ର ଖୁରା ଯିନା
ଚୂନା ହୁଅଇ ସାବେଳା ଆଉ କୁନ୍ତମୂନା !
କଟାକ୍ଷରେ ଗ୍ରହିଁଲେ ସେ ଲୋକେ ପାନ୍ତି ଭ୍ରାନ୍ତି
ମହା ମହା ଯୋଦ୍ଧାମାନେ ନ ଯାଆନ୍ତି ତା' କଟି ।
ଧନଲୋଭେ ଯେଉଁମାନେ ତା' କଟକ ଗଲେ
ପଦ-ପ୍ରହାରେ ବତିଶ ଜଣ ନାଶ ହେଲେ ।
ବୋଇଲେ ସେ ଚଳିଯାଏ, ଫିଟିଲେ ସେ ଉଡ଼େ
ଖାଲି ଠିକର ନ ଜାଣି ପଙ୍କେ ଯାଇ ବୁଡ଼େ ।
ସେ ଅଶ୍ୱକୁ ଦେଇପାରୁ ମୋତେ ଯଦି ସାଧି
ପରୀକ୍ଷେ ଜାଣିବା ତୋର ସର୍ବ କାମସିଦ୍ଧି ।

ଶୁଣି ଗ୍ରନ୍ଥିକାର ବୋଲେ ଆଣ ତୁମ୍ଭ ହସ୍ତ
କେଉଁ ଅବଗୁଣ ତା'ର ଦେଖିବା ହୋ ରାଯ୍ୟ ।
ବିରାଟ ବୋଇଲେ ଯେହ୍ନ ତାକୁ ପାରେ ଆଣି
ମୋହର ବୋଲରେ ସାଧ ହୋଇବ ଏକ୍ଷଣି ।
ନକୁଳ ବୋଇଲେ ବାଜି ଦେଖିଯିବା ଆସ
ଚୂହାଣ ଭେଟାଏ ନେଇ ସେ ବାଜିର ପାଶ !
ନକୁଳ ମୂର୍ତ୍ତିକୁ ଦେଖି ହସିଲା ସେ ହସ୍ତ
ସନ୍ନିଧେ ନକୁଳ ଯାଇ ଆଉଁଶିଲେ ଦେହ ।
ବନ୍ଧନ ଦଉଡ଼ି ତା'ର ସବୁଦେଲେ ଫେଡ଼ି
ସୁଖେ କଡ଼ିଆଳ ଖିର ଦେଲେକ ଉଛୁଡ଼ି ।
ହାମ୍ଫୋଳ ଦେଇଣ ଖିର ଚଳିଗଲେ ବେଗେ
ପଛେ ପଛେ ବାଜୁ ଚଲେ ଅଢ଼ ହିଁ ସରାଗେ ।
ନକୁଳ ପ୍ରବେଶ ହେଲେ ଯାଇଁ ସଭାତଳେ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସଭାରେ ସକଳେ ।

ବିରାଟ ପର୍ବ, ୨୦ ପୃଷ୍ଠା ।

ପୂର୍ବାପର ସମ୍ବନ୍ଧ ବିଗ୍ଚର କଲେ ଜଣାଯାଏ ଯେ ଉଲ୍ଲିଖିତ ଉଦ୍ଧୃତାଂଶରେ ଏକାଧିକ ଭ୍ରମ ପ୍ରମାଦ ରହିଛି; କିନ୍ତୁ ଏଠାରେ କେବଳ ଗୋଟାଏ ଭ୍ରମ ଦେଖାଇ ଦେବା ହିଁ ପ୍ରସଙ୍ଗୋଚିତ ମନେ ହେଉଛି । "ସୁଖେ କଡ଼ିଆଳ ଖିର ଦେଲେକ ଉଛୁଡ଼ି" ସ୍ଥାନରେ "ମୁଖେ କଡ଼ିଆଳ ଦେଲେକ ଉଛୁଡ଼ି" ବୋଲି ପଢ଼ିବା ଉଚିତ । କାରଣ, ଏହି ଘୋଡ଼ା ସମ୍ବନ୍ଧରେ କବି ଉପର ପଦରେ କହିଛନ୍ତି— "ମୁଖେ ଗ୍ଚରିପାଦେ ପାଞ୍ଚ ରଜ୍ଜୁ ବନ୍ଧା ହୋଇ, ଏକଠାବେ ପାଣି ଦେଇ ନ ଫିଟାନ୍ତି କେହି ।" ଅର୍ଥାତ୍ ଘୋଡ଼ାଟିର ଗ୍ଚରି ଗୋଡ଼ରେ ଗ୍ଚରିଟି ଦଉଡ଼ି ବନ୍ଧା ହୋଇଥିଲା, ଆଉ ମୁହଁରେ ମଧ୍ୟ ଗୋଟାଏ ଦଉଡ଼ି ବନ୍ଧା ହୋଇଥିଲା । ମୁହଁରେ ଯେଉଁ ଦଉଡ଼ିଟି ବନ୍ଧା ହୋଇଥିଲା, ତାହା ଲଗାମ ଛଡ଼ା ଆଉ କଅଣ ହୋଇ-ପାରେ ? ଏଣୁ ନକୁଳ ଘୋଡ଼ାର ବନ୍ଧନ ଦଉଡ଼ି ସବୁକୁ 'ଫେଡ଼ି' ଦେଲେ ବା ଫିଟାଇ ଦେଲେ କିନ୍ତୁ ମୁଖରେ ଥିବା 'କଡ଼ିଆଳ'କୁ 'ଉଛୁଡ଼ି' ଦେଲେ, ଅର୍ଥାତ୍ ଟାଣି ବାହାର କରି ଦେଲେ । ପୁଣି ହାମ୍ଫୋଳ ଦେଇ ଅର୍ଥାତ୍ ଡିଆଁ ମାରି ଆଗେ ଆଗେ ଗ୍ଚଲିଲେ । ଏହାପରେ ବାଜୁ (ଘୋଡ଼ା) ଅଢ଼ ସରାଗରେ ତାଙ୍କ ପଛେ ପଛେ ଗ୍ଚଲିଲା ।

କଡ଼ିଆଳ ଶବ୍ଦର ଅର୍ଥ ଯେ ଲଗାମ ଏ କଥା କୌଣସି ଓଡ଼ିଆ ଭାଷା-କୋଷରେ ଥାଇପାରେ କିମ୍ବା ଥାଇ ନ ପାରେ । ମୋର ମନେହୁଏ ଯେ ସାରଳା-ସାହିତ୍ୟର ଶବ୍ଦ ସମ୍ଭାରର ଶତାଂଶରୁ ଏକାଂଶର ମଧ୍ୟ ପ୍ରକୃତ ବ୍ୟାଖ୍ୟା କୌଣସି ଓଡ଼ିଆ ଭାଷାକୋଷରେ ସ୍ଥାନ ପାଇନାହିଁ । ଓଡ଼ିଆ ଭାଷାକୋଷମାନଙ୍କରେ କଡ଼ିଆଳ ବା କଡ଼ିୟାଳ ଶବ୍ଦର ଅର୍ଥ ଲଗାମ ଥାଉ ବା ନ ଥାଉ ସାରଳାଦାସ ଯେ ଏହି ଶବ୍ଦକୁ ଲଗାମ ଅର୍ଥରେ ହିଁ ବ୍ୟବହାର କରିଛନ୍ତି, ଏଥିରେ ସନ୍ଦେହ କରିବାର ତିଳେମାତ୍ର କାରଣ ନାହିଁ । ଉଲ୍ଲିଖିତ ଶିଳାଲେଖର 'କଡ଼ିପାଳ' ସ୍ଥାନରେ ଯଦି 'କଡ଼ିୟାଳ' ପଢ଼ାଯାଏ, ତେବେ "ଶଙ୍ଖପତି ଗଜପତି ନରପତି ନିଗ୍ରହ ମୁଖ କଡ଼ିୟାଳଃ"ର ଅର୍ଥ ସୁସ୍ପଷ୍ଟ ହୋଇପଡ଼େ । ଏହାର ଅର୍ଥ ଏହି ହୁଏ ଯେ ବିଜୟ-ନଗରର ସ୍ଥାପୟିତା ହରିହର ଶଙ୍ଖପତି, ଗଜପତି ଓ ନରପତି ଏହି ତିନି ରାଜାଙ୍କର ମୁହଁର ଲଗାମସ୍ୱରୂପ ଥିଲେ । ଅର୍ଥାତ୍ ଏହି ତିନି ରାଜାଙ୍କ ରାଜନୀତିକୁ ସେ ହିଁ ନିୟନ୍ତ୍ରଣ କରୁଥିଲେ । ଏହି ତିନି ରାଜାଙ୍କ ମଧ୍ୟରୁ ଗଜପତି ହେଉଛନ୍ତି ଓଡ଼ିଶାର ରାଜା, ଆଉ ବିଜୟନଗର ରାଜାଙ୍କୁ ଯେ ନରପତି କୁହାଯାଉଥିଲା, ତା'ର ଶତ ଶତ ପ୍ରମାଣ ରହିଛି, କିନ୍ତୁ ଶଙ୍ଖପତି କିଏ ?

୧୩୪୦ ଖ୍ରୀଷ୍ଟାବ୍ଦରେ ଏହି ଶିଳାଲେଖାଟି ଲିଖିତ ହୋଇଥିଲା । ସେତେ-ବେଳକୁ ସମଗ୍ର ଦକ୍ଷିଣାଞ୍ଚଳରେ ସମସ୍ତ ହିନ୍ଦୁ ରାଜବଂଶ ଏକାବେଳକେ ଲୋପ ପାଇଯାଇଥିଲା । ଦେବଗିରିର ଯାଦବ ବଂଶ, ଦ୍ୱାରସମୁଦ୍ରର ହୟଶାଳା ରାଜବଂଶ, ମଦୁରାର ପାଣ୍ଡ୍ୟ ରାଜବଂଶ ଓ ଉଆରଙ୍ଗଲର କାକତୀୟ ରାଜବଂଶ ଏକାବେଳକେ ଧ୍ୱସ୍ତ ହୋଇଯାଇଥିଲେ । ଏହି ରାଜବଂଶମାନଙ୍କର ଯେଉଁ ବଂଶଧରମାନେ ବର୍ତ୍ତି ରହିଥିଲେ ସେମାନେ କ୍ଷୁଦ୍ର ଜମିଦାରରୂପେ ବା ମୁସଲମାନଙ୍କ କର୍ମଚାରୀରୂପେ ଜୀବନଯାପନ କରୁଥିଲେ; କିନ୍ତୁ ୧୩୩୬ ଖ୍ରୀଷ୍ଟାବ୍ଦ ବେଳକୁ ଦାକ୍ଷିଣାତ୍ୟରେ ହିନ୍ଦୁ ଧର୍ମ ଓ ହିନ୍ଦୁ ରାଜ୍ୟର ପୁନରୁତ୍ଥାନ ଅଦ୍ଭୁତଭାବରେ ଆରମ୍ଭ ହୋଇଯାଇ-ଥିଲା । ୧୩୨୩ ଖ୍ରୀଷ୍ଟାବ୍ଦରେ ଉଆରଙ୍ଗଲ୍‌ର କାକତୀୟ ରାଜ୍ୟ ଧ୍ୱଂସ ହେବାପରେ କାକତୀୟ ରାଜା ପ୍ରତାପରୁଦ୍ରଙ୍କ ଅଧୀନରେ କୋଷାଧ୍ୟକ୍ଷରୂପେ ଚାକିରି କରୁଥିବା ହରିହର ଓ ବୁକ୍କାନାମକ ଭ୍ରାତୃଦ୍ୱୟ ମହୀଶୂରର କର୍ମ୍ପିଲିନାମକ କ୍ଷୁଦ୍ର ରାଜ୍ୟକୁ ପଳାଇ ଯାଇ ସେଠାରେ ରାମନାଥନାମକ ରାଜାଙ୍କ ଅଧୀନରେ ଚାକିରି କରିଥିଲେ, କିନ୍ତୁ ଏହି କ୍ଷୁଦ୍ର ହିନ୍ଦୁ ରାଜ୍ୟ ମଧ୍ୟ ଦିଲ୍ଲୀ ସାମ୍ରାଜ୍ୟ ବିରୁଦ୍ଧରେ ବିଦ୍ରୋହ କରିବାରୁ ମହମ୍ମଦ ତୋଗଲକ ବିଦ୍ରୋହକୁ ସମ୍ପୂର୍ଣ୍ଣରୂପେ ଦମନ କରି ବିଦ୍ରୋହର ନେତା-ମାନଙ୍କୁ ବନ୍ଦୀ କରି ଦିଲ୍ଲୀକୁ ନେଇ ଯାଇଥିଲେ ଓ ସେଠାରେ ସେମାନଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଇଥିଲେ । ଦିଲ୍ଲୀକୁ ବନ୍ଦୀ ଭାବରେ ଯାଇ

ଯେଉଁମାନେ ଏହିପରିଭାବରେ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ବିଜୟନଗରର ସ୍ଥାପୟିତା ହରିହର ଓ ତାଙ୍କ ସାନ ଭାଇ ବୁକ୍କା । ସେମାନେ ମୁସଲମାନ ହେବା ପରେ ଦିଲ୍ଲୀ ସୁଲତାନ ଭାବିଲେ ଯେ ସେମାନେ ଆଉ ମୁସଲମାନ ସାମ୍ରାଜ୍ୟ ପ୍ରତି ବିଦ୍ରୋହ କରିବେ ନାହିଁ । ଏହି ଆଶା ରେ ସେ ହରିହରଙ୍କୁ କମ୍ପିଲି ଓ କର୍ଣ୍ଣାଟର ଶାସନକର୍ତ୍ତାରୂପେ ନିଯୁକ୍ତ କଲେ; କିନ୍ତୁ ହିନ୍ଦୁ ଜଗତରେ ଏପର୍ଯ୍ୟନ୍ତ ଯାହା ଘଟି ନ ଥିଲା, ତାହା ଘଟିଲା । ହରିହର ଓ ତାଙ୍କ ଭାଇ ବୁକ୍କା ଉଭୟେ ମୁସଲମାନ ଧର୍ମ ଗ୍ରହଣ ପୁଣି ହିନ୍ଦୁ ହୋଇଗଲେ, ଆଉ ଦକ୍ଷିଣରେ ହିନ୍ଦୁ ଧର୍ମ ତଥା ହିନ୍ଦୁ ରାଜ୍ୟର ପୁନରୁତ୍ଥାନ ପାଇଁ ପ୍ରବଳ ଉଦ୍ୟମ ଚଳାଇଲେ (୨) । ମାଧବାଚାର୍ଯ୍ୟ ବିଦ୍ୟାରଣ୍ୟନାମକ ଜଣେ ଦୂରଦର୍ଶୀ ବ୍ରାହ୍ମଣ ପଣ୍ଡିତ ହରିହର ଓ ବୁକ୍କାଙ୍କୁ ହିନ୍ଦୁ ଧର୍ମକୁ ଫେରାଇ ଆଣି ସେମାନଙ୍କୁ ହିନ୍ଦୁ ସାମ୍ରାଜ୍ୟ ସ୍ଥାପନ ପାଇଁ ଅସୀମ ପ୍ରେରଣା ଦେଇଥିଲେ । ଏଣୁ କୃତଜ୍ଞ ରାଜବଂଶ ନବସ୍ଥାପିତ ବିଜୟନଗରର ଅନ୍ୟତମ ନାମ ରଖିଥିଲେ ବିଦ୍ୟାନଗର ।

ଠିକ୍ ଏହି ସମୟରେ ତେଲଙ୍ଗାନାରେ ଆଉ ଜଣେ ବୀରପୁରୁଷ ହିନ୍ଦୁ ଧର୍ମ ଓ ହିନ୍ଦୁ ରାଜ୍ୟର ପୁନରୁତ୍ଥାନ ପାଇଁ ପ୍ରୟାସୀ ହୋଇ ପ୍ରବଳ ପରାକ୍ରମୀ ହୋଇ ଉଠିଥିଲେ । ମୁସଲମାନ ଐତିହାସିକମାନେ ଏହାଙ୍କୁ କନ୍ୟାନାୟକ ବୋଲି ଲେଖି ଯାଇଛନ୍ତି, କିନ୍ତୁ ବର୍ତ୍ତମାନ ଜଣାପଡ଼ୁଛି ଯେ ତାଙ୍କ ପ୍ରକୃତନାମ ଥିଲା କାପୟନାୟକ । କାପୟନାୟକ ତେଲଙ୍ଗାନାର ହିନ୍ଦୁ ଜମିଦାରମାନଙ୍କୁ ଏକଯୁଟ କରି ଉଆରଙ୍ଗଲ୍ ଆକ୍ରମଣ କରିଥିଲେ ଓ ସେଠାରୁ ଦିଲ୍ଲୀ ସୁଲତାନଙ୍କ ନାଏବ ଓଜିର୍ ମାଲିକ ମାକ୍-ବୁଲ୍‌ଙ୍କୁ ତଡ଼ିଦେଇ ତେଲଙ୍ଗାନ ରେ ଏକପ୍ରକାର ଏକାଧିପତ୍ୟ ସ୍ଥାପନ କରିଥିଲେ । ସେ ଖାଲି ଏତିକରେ ସନ୍ତୁଷ୍ଟ ନ ହୋଇ ପାର୍ଶ୍ୱବର୍ତ୍ତୀ ହିନ୍ଦୁ ରାଜାମାନଙ୍କ ସହ-ଯୋଗିତାରେ ସମଗ୍ର ଦକ୍ଷିଣାଞ୍ଚଳରୁ ମୁସଲମାନ ରାଜତ୍ୱ ଲୋପ କରିବା ପାଇଁ ପ୍ରଯତ୍ନ କରିଥିଲେ । ବିଜୟନଗରର ସ୍ଥାପୟିତା ହରିହର ତାଙ୍କର ସ୍ୱ-ବଂଶୀୟ ଥିଲେ । ଏଣୁ ଏହି କାମରେ ସହଯୋଗିତା ପାଇବା ପାଇଁ ସେ ହରିହରଙ୍କ ନିକଟକୁ ଦୂତ ପଠାଇ ଥିଲେ (୩) । ତେଲଙ୍ଗାନାର ନବୋତ୍ଥିତ ହିନ୍ଦୁ ରାଜ୍ୟ ଏହିପରି ଭାବରେ କିଛିକାଳ ବଳଶାଳୀ ହୋଇଥିଲେ ମଧ୍ୟ ବେଶୀ କାଳ ସ୍ଥାୟୀ ହୋଇପାରି ନ ଥିଲା ! ବିଜୟନଗର ସାମ୍ରାଜ୍ୟ ସ୍ଥାପିତ ହେବାର ଦଶବର୍ଷପରେ ଅର୍ଥାତ୍ ୧୩୪୭ଖ୍ରୀଷ୍ଟାବ୍ଦରେ ତେଲଙ୍ଗାନା ଓ ଉଆରଙ୍ଗଲ୍‌ର ଅନତିଦୂରରେ ବାହାମନୀନାମକ ଅନ୍ୟ ଏକ ପ୍ରବଳ ମୁସଲମାନ

(୨) Further Sources of Vijayanagara History Vol. I, pp, 22-34

(୩) Ibid—pp. 45-48

ରାଜ୍ୟ ସ୍ଥାପିତ ହୋଇଥିଲା, ଆଉ ଏହି ବାହାମନୀ ରାଜ୍ୟ ହିଁ ତେଲଙ୍ଗାନାର ନବୋ-ତ୍ଥିତ ହିନ୍ଦୁ ରାଜ୍ୟକୁ ଧ୍ୱଂସ କରିଦେଇଥିଲା; କିନ୍ତୁ ଦକ୍ଷିଣରେ ବିଜୟନଗର ସାମ୍ରାଜ୍ୟ ଓ ଦକ୍ଷିଣ-ପୂର୍ବରେ ଓଡ଼ିଶା ସାମ୍ରାଜ୍ୟ କ୍ରମଶଃ ବଳଶାଳୀ ହୋଇ ଖାଲି ସ୍ୱ ସ୍ୱ ଅଞ୍ଚଳରେ ନୁହେଁ, ସମଗ୍ର ଭାରତବର୍ଷରେ ହିନ୍ଦୁ ଧର୍ମ ଓ ହିନ୍ଦୁ ସଭ୍ୟତାକୁ ବଞ୍ଚାଇ ରଖିଥିଲେ ।

ବର୍ତ୍ତମାନ ଦେଖାଯାଉଛି ଯେ ୧୩୪୦ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ ଓ ପୂର୍ବାଞ୍ଚଳରେ ତିନୋଟି ହିନ୍ଦୁ ରାଜ୍ୟ ଥିଲା । ଏମାନଙ୍କ ମଧ୍ୟରୁ ବିଜୟନଗର ଥିଲା ନରପତିଙ୍କ ରାଜ୍ୟ, ଉଆରଙ୍ଗଲ୍ ଥିଲା ଶଙ୍ଖପତିଙ୍କ ରାଜ୍ୟ ଓ ଓଡ଼ିଶା ଥିଲା ଗଜପତିଙ୍କ ରାଜ୍ୟ । ଆଉ ଏହି ତିନି ରାଜ୍ୟରେ ଯଥାକ୍ରମେ ହରିହର, କାପୟ ନାୟକ ଓ ତୃତୀୟ ଭାନୁଦେବ ରାଜତ୍ୱ କରୁଥିଲେ । ହରିହର ଏହି ତିନୋଟି ଯାକ ରାଜ୍ୟର ନୀତି ନିୟନ୍ତ୍ରଣ କରୁଥିଲେ ବୋଲି ପ୍ରଶସ୍ତି କାରେ ଲେଖିଛନ୍ତି । ଏହା ଅତିରଞ୍ଜିତ ହୋଇପାରେ; କିନ୍ତୁ ଏହି ଘଡ଼ିସନ୍ଧି ବେଳରେ କେତେକ ମୌଳିକ ନୀତି ଅନୁସରଣ କରିବା ପାଇଁ ଏହି ତିନି ହିନ୍ଦୁ ରାଜ୍ୟ ମଧ୍ୟରେ ପରସ୍ପର ସନ୍ଧି ବା ଚୁକ୍ତି ହୋଇଥିବା ଅତ୍ୟନ୍ତ ସ୍ୱାଭାବିକ ଓ ସମ୍ଭବପର କଥା । ସେ ଯାହାହେଉ, ତେଲଙ୍ଗାନା ବା ଉଆରଙ୍ଗଲ୍‌ର ରାଜା ଯେ, ଶଙ୍ଖପତି ନାମରେ ଅଭିହିତ ହେଉଥିଲେ, ତାହା ଏହି ଆଲୋଚନାରୁ ଆପେ ଆପେ ପ୍ରତିପାଦିତ ହେଉଛି । ସାରଳାଦାସ ଶଙ୍ଖପତିଙ୍କର ରାଜ୍ୟକୁ ହିଁ ଶଙ୍ଖମଣ୍ଡଳ ବୋଲି ଲେଖିଯାଇଛନ୍ତି ।

(ଖ) ତେଲଙ୍ଗାନା ବା ଉଆରଙ୍ଗଲ୍‌ର ରାଜାଙ୍କୁ ଯେ ଶଙ୍ଖପତି ବା ଶଙ୍ଖ-ପର୍ବତପତି (କମ୍ପୁଗିରି ସ୍ୱାମୀ) ବୋଲି କୁହାଯାଉଥିଲା, ଏହାର ପ୍ରମାଣ 'ହିଣ୍ଡେ ଅନନ୍ତପୁରର ଗାଥାବଳୀ' ନାମକ ତେଲୁଗୁ ଭାଷାରେ ଲିଖିତ ଗ୍ରନ୍ଥରୁ ମଧ୍ୟ ମିଳେ । ସ୍ୱର୍ଗୀୟ ଏସ୍ କୃଷ୍ଣସ୍ୱାମୀ ଆୟାଙ୍ଗାର ଏହି ଗ୍ରନ୍ଥର ଯେଉଁ ଅଂଶରେ ଶଙ୍ଖପର୍ବତପତି ବା କମ୍ପୁଗିରିସ୍ୱାମୀଙ୍କ କଥା ରହିଛି, ତା'ର ସାରାଂଶ ଇଂରାଜୀ ଭାଷାରେ ପ୍ରକାଶ କରିଛନ୍ତି । ଏହି ସାରାଂଶର ଓଡ଼ିଆ ଅନୁବାଦ ନିମ୍ନରେ ଦିଆଗଲା ।

"କ୍ରୋଧି ସମ୍ବତ୍ସରରେ ଓ ୧୨୮୬ ଶକାବ୍ଦରେ (୧୩୬୪ ଖ୍ରୀଷ୍ଟାବ୍ଦରେ) ବିଜୟନଗରରେ ବୁକ୍କା ରାଜତ୍ୱ କରୁଥିବାବେଳେ ତାଙ୍କର ପ୍ରଧାନ ବା ମନ୍ତ୍ରୀ ଚିକ୍କପ ଉଡ଼େୟାର କମ୍ପୁଗିରିସ୍ୱାମୀ ପର୍ବତମାଳାରୁ ବହି ଆସୁଥିବା ପାଣ୍ଡୁ ନଦୀ ଉପରେ ବନ୍ଧ ପକାଇ ଗୋଟିଏ ବୃହତ୍ ଜଳପୂର୍ଣ୍ଣ ଭଣ୍ଡାର ସୃଷ୍ଟି କରିଥିଲେ । ଏହା (ଏହିବନ୍ଧ) ବିଦ୍ୟାନଗରର ଦକ୍ଷିଣରେ ଥିବା ନନ୍ଦେଲ ବା ନନ୍ଦ୍ୟାଲ ପ୍ରଦେଶରେ ଅବସ୍ଥିତ ଦେବରକୋଣ୍ଡା ନିକଟବର୍ତ୍ତୀ ଥିଲା । ଏହି ବନ୍ଧର ପ୍ରତ୍ୟେକ ପାର୍ଶ୍ୱରେ ସେ ଗୋଟିଏ

ଲେଖାଏ ଗ୍ରାମ ବସାଇଥିଲେ । ପୂର୍ବପାର୍ଶ୍ୱର ଗ୍ରାମ ରାଜାଙ୍କ ନାମାନୁସାରେ ବୁକ୍କା ସମୁଦ୍ର ନାମରେ ଅଭିହିତ ହୋଇଥିଲା ଓ ପଶ୍ଚିମ ପାର୍ଶ୍ୱର ଗ୍ରାମ ରାଣୀଙ୍କ ନାମାନୁସାରେ ଅନନ୍ତା ସମୁଦ୍ର ନାମରେ ଅଭିହିତ ହୋଇଥିଲା (୪) ।

ଏଥିରୁ ପ୍ରମାଣିତ ହେଉଛି ଯେ କମ୍ବୁଗିରି ସ୍ୱାମୀ-ପର୍ବତମାଳା ଦେବର-କୋଣ୍ଡାର ଅଦୂରବର୍ତ୍ତୀ ଥିଲା । କହିବା ବାହୁଲ୍ୟ ଯେ କମ୍ବୁଗିରି ବା ଶଙ୍ଖ ପର୍ବତର ଅର୍ଥ ଏଠାରେ ଶଙ୍ଖମଲମଲ ପ୍ରସ୍ତରର ପର୍ବତ ବୋଲି ହିଁ ବୁଝିବାକୁ ହେବ । ତେଲଙ୍ଗାନା ଓ ଏହାର ନିକଟବର୍ତ୍ତୀ ଅଞ୍ଚଳର ନାଗାର୍ଜ୍ଜୁନକୋଣ୍ଡା, ଅମରାବତୀ ପ୍ରଭୃତିରୁ ଯେତେ ପ୍ରାଚୀନ ମୂର୍ତ୍ତି, ବୌଦ୍ଧସ୍ତୂପ, ବିହାର, ଇକ୍ଷ୍ୱାକୁ ରାଜବଂଶର ରାଜପ୍ରାସାଦ ଇତ୍ୟାଦି ମିଳିଛି, ସେଥିମଧ୍ୟରୁ ସମସ୍ତ ଶଙ୍ଖମଲମଲ ପଥରରେ ନିର୍ମିତ ହୋଇଥିଲା । ଅବଶ୍ୟ ଏହି ପ୍ରସ୍ତର ଜୟପୁରର ଶଙ୍ଖମଲମଲ ପ୍ରସ୍ତର ପରି ସେତେ ଉତ୍କୃଷ୍ଟ ଧରଣର ନୁହେଁ; କିନ୍ତୁ ଏହା ଏହି ଜାତୀୟ ଚୂନପଥର (Lime stone) । ଚୂନପଥରରୁ ସିମେଣ୍ଟ ତିଆରି ହେଉଥିବାରୁ ବେଜ୍‌ୱାଡ଼ାର ଅତି ନିକଟରେ ବର୍ତ୍ତମାନ ଗୋଟିଏ ସିମେଣ୍ଟ କାରଖାନା ବସିଛି । ବହୁ ଗଜର ଅଧିପତି ଥିବାରୁ ଓଡ଼ିଶା ରାଜାଙ୍କୁ ଯେପରି ଗଜପତି ବୋଲି କୁହାଯାଉଥିଲା, ବହୁ ଶଙ୍ଖ ପ୍ରସ୍ତରର ଅଧିପତି ଥିବାରୁ ତେଲେଙ୍ଗାନାର ରାଜାଙ୍କୁ ସେହିପରି ଶଙ୍ଖପତି ବୋଲି କୁହାଯାଉଥିଲା । ଦେବର-

---

(୪) "While Bukka was ruling from the city of Vijayanagar, his pradhani or minister Chikkappa Odeyar constructed an embankment accross the river Pandu which rises in the Kambugiri-svami hills and formed a big tank filled with waters in the year Krodhi corresponding to S. 1286. This was near Devarkonda in the province of Nandela (Nandyal) South of Vijyanagara. On each side of the embankment he constructed a village; that on the eastern side was called Bukka Samudra after the king, while the one on the western side was called Anantasagaram after his queen."

S. Krishnaswami Ayyangar—Sources of Vijayanagara History (1919), p.45.

କୋଣ୍ଡାରେ ଶଙ୍ଖପତିଙ୍କ ଗୋଟିଏ ଦୁର୍ଗ ବା ପୁର ଥିଲା । ଏଣୁ ସାରଳା ଦାସ ଏହି ଶଙ୍ଖପତିପୁରକୁ ସଂକ୍ଷେପରେ ଶଙ୍ଖପୁର ବୋଲି ଲେଖିଯାଇଛନ୍ତି ।

ସାରଳା ସାହିତ୍ୟର ସମସ୍ତ ରହସ୍ୟ ଉଦ୍‌ଘାଟନ କରିବା ହୁଏତ ମୋର ବିଦ୍ୟାତୀତ ଓ ସାଧ୍ୟାତୀତ ହୋଇପଡ଼ିବ, କିନ୍ତୁ ଏହାର ଯେଉଁ ଆଲୋଚନା ଆରମ୍ଭ କରାଯାଇଛି, ତାହା ଶେଷ ହେବା ବେଳକୁ ଏହି ସାହିତ୍ୟର ସ୍ୱରୂପ ଓ ମହତ୍ତ୍ୱ କେତେକ ପରିମାଣରେ ନିଶ୍ଚୟ ପରିସ୍ଫୁଟ ହେବ । ଏଣୁ ସାରଳା ସାହିତ୍ୟର ଆଲୋଚନାକୁ ମୁଁ ଖାଲି ଗୋଟାଏ ପ୍ରଶ୍ନର ଛଳରେ ଆରମ୍ଭ କରିଛି ବୋଲି ଯେଉଁମାନେ ଭାବୁଛନ୍ତି ସେମାନେ ନିଜେ ହିଁ ଲଜ୍ଜିତ ହେବେ ବୋଲି ମୋର ଆଶା ।

ବର୍ତ୍ତମାନ ଦେଖାଯିବ ଯେ ସାରଳା ମହାଭାରତର ସଭାପର୍ବରେ ଥିବା ଅର୍ଜ୍ଜୁନଙ୍କ ଦିଗବିଜୟ ଓ ଜମାଗୋଷ୍ଠଙ୍କ ସହିତ ଯୁଦ୍ଧଶୀର୍ଷକ (ପୃ. ୧୪୦—୧୫୩) ଯେଉଁ ଆଖ୍ୟାୟିକା ଅଛି, ସେଥିରେ ଥିବା ଖାଲି ଅତିଭୌତିକତାକୁ ବାଦଦେଲେ ଆଖ୍ୟାୟିକାର ଅନ୍ୟ କୌଣସି ମୌଳିକ ଓ ମୁଖ୍ୟ ବିଷୟ ସହିତ ଇତିହାସର ପ୍ରାୟ ଅମେଳ ନାହିଁ କହିଲେ ଚଳେ । ଇତିହାସ ଅନୁସାରେ ଯୁଦ୍ଧକ୍ଷେତ୍ର ହେଉଛି ତେଲେଙ୍ଗାନାର ଦେବରକୋଣ୍ଡା, ଆଉ ସାରଳା ମହାଭାରତ ଅନୁସାରେ ତାହା ହେଉଛି ଶଙ୍ଖମଣ୍ଡଳର ଶଙ୍ଖପୁର ବା ଅମରଚୂଡ଼ ପର୍ବତ । ଫେରିସ୍ତା ଲେଖିଛନ୍ତି ଯେ ଜଲାଲ ଖାଁ ବାହାମନୀ ସୁଲତାନଙ୍କର ଜଣେ ମୁଖ୍ୟ ଅମାତ୍ୟ ଥିଲେ; କିନ୍ତୁ ସାରଳା ଦାସ ଜମାଗୋଷ୍ଠଙ୍କୁ ଜଣେ ସ୍ୱାଧୀନ ରାଜା ରୂପେ ବର୍ଣ୍ଣନା କରିଛନ୍ତି । ଏପରି ବର୍ଣ୍ଣନାରେ କିନ୍ତୁ ତିଳେମାତ୍ର ଅସଙ୍ଗତି ନାହିଁ, କାରଣ ଜଲାଲ ଖାଁ ନିଜକୁ ସ୍ୱାଧୀନ ବୋଲି ଘୋଷଣା କରିଥିବାରୁ ତ ତାଙ୍କ ସହିତ ବାହାମନୀ ସୁଲତାନଙ୍କ ଯୁଦ୍ଧ ହୋଇଥିଲା । ଜଲାଲ ଖାଁ ଯେତେବେଳେ ସ୍ୱାଧୀନ ଥିଲେ, ସେତିକବେଳର କଥା ହିଁ ସାରଳା ଦାସ ଲେଖିଛନ୍ତି । ଏଣୁ ତାଙ୍କୁ ରାଜା ବୋଲି କହିବାରେ କିଛି ମାତ୍ର ଅସଙ୍ଗତି ନାହିଁ । ଇତିହାସରୁ ଜଣାଯାଏ ଯେ ଦେବରକୋଣ୍ଡା ଦୁର୍ଗ ବାହାମନୀ ସୈନ୍ୟ ଦ୍ୱାରା ଅବରୁଦ୍ଧ ଅବସ୍ଥାରେ ଥିବାବେଳେ ଗଜପତି ସେଠାରେ ଯାଇ ହଠାତ୍ ଉପସ୍ଥିତ ହୋଇଥିଲେ । ସାରଳା ମହାଭାରତରେ ମଧ୍ୟ ଠିକ୍ ଏଇ କଥା ରହିଛି । ଶଙ୍ଖପୁର ଅବରୁଦ୍ଧ ଅବସ୍ଥାରେ ଥିବାବେଳେ ଅର୍ଜ୍ଜୁନ ସେଠାରେ ସସୈନ୍ୟରେ ପହଞ୍ଚିଥିଲେ । ଫେରିସ୍ତା କହନ୍ତି ଯେ ଅବରୁଦ୍ଧ ସୈନ୍ୟ ସାହାଯ୍ୟ ପାଇଁ ଗଜପତି କପିଳେଶ୍ୱରଙ୍କ ପାଖକୁ ଗୁପ୍ତଚର ପଠାଇଥିଲେ । ସାରଳା ମହାଭାରତରେ ଗୁପ୍ତଚର ପଠାଇଥିବା କଥାଟା ନାହିଁ; କିନ୍ତୁ ଫେରିସ୍ତାଙ୍କ କଥା ବେଦର ଗାର ନୁହେଁ । ମୁସଲମାନମାନଙ୍କ ମର୍ଯ୍ୟାଦା ଯେଉଁଥିରେ ଅକ୍ଷୁଣ୍ଣ ରହିବ, ସେହି କଥା-ଗୁଡ଼ାକ ଯେ ଫେରିସ୍ତା ଏକତରଫିଆ ଭାବରେ ଲେଖି ଯାଇଛନ୍ତି, ଐତିହାସିକମାନେ ଏ ବିଷୟ ଏକସ୍ୱରରେ ସ୍ୱୀକାର କରିଛନ୍ତି । ଦେବରକୋଣ୍ଡା ଅବରୁଦ୍ଧ ହେବା-

ବେଳକୁ ଏହି ଅଞ୍ଚଳର ସାମାନ୍ୟ ଦୂରରେ କପିଳେଶ୍ୱର କୋଣ୍ଡାବିଡ଼ୁ ଦୁର୍ଗ ଅଧିକାର କରି ବସି ଯାଇଥିଲେ । ଏଣୁ କୋଣ୍ଡାବିଡ଼ୁରେ ଥାଇ ଦେବରକୋଣ୍ଡାର ଖବର ଜାଣିବା ପାଇଁ ତାଙ୍କର ନଜର କଅଣ କୌଣସି ଉପାୟ ନ ଥିଲା ? ଗଜପତିଙ୍କ ସୈନ୍ୟ ଓ ଦେବରକୋଣ୍ଡାର ଅବରୁଦ୍ଧ ସୈନ୍ୟ ସମ୍ମିଳିତ ଭାବରେ ବାହାମନି ସୈନ୍ୟ ଉପରେ ଏକାବେଳେକେ ଆକ୍ରମଣ କରିଥିବାରୁ ବାହାମନି ସୈନ୍ୟ ପରାଜିତ ହୋଇଥିଲେ ବୋଲି ଫେରିସ୍ତା ଯାହା ଲେଖିଛନ୍ତି, ତାହା ମଧ୍ୟ ସମ୍ପୂର୍ଣ୍ଣ ବିଶ୍ୱାସଯୋଗ୍ୟ ନୁହେଁ । ଜଲଲ ଖାଁ ବିଶ୍ୱାସଘାତକତା କରି ଶେଷବେଳକୁ ମୁସଲମାନମାନଙ୍କ ସହିତ ମିଳିଯାଇ ଗଜପତି-ସୈନ୍ୟଙ୍କୁ କିପରି ବିପନ୍ନ କରି ପକାଇ ଥିଲେ, ଏହି କଥାକୁ ପୌରାଣିକ ଢଙ୍ଗରେ ଅଥଚ ବିଶଦଭାବରେ ବର୍ଣ୍ଣନା କରି ସାରଳା ଦାସ ଦେବରକୋଣ୍ଡା ଯୁଦ୍ଧର ପ୍ରକୃତ ରହସ୍ୟ ଉଦ୍‌ଘାଟନ କରିଛନ୍ତି । ଦରଦସେନ ଗୋଟିଏ ଅର୍ଥପୂର୍ଣ୍ଣ ଛଦ୍ମନାମ । ଏହାର ବିଶଦ ବ୍ୟାଖ୍ୟା ମୁଁ ତୃତୀୟ ପରିଚ୍ଛେଦରେ କରିଛି । ଦେବରକୋଣ୍ଡା ଯୁଦ୍ଧରେ ସ୍ୱୟଂ ହୁମାୟୁନଶାହ ବାହାମନୀ ଉପସ୍ଥିତ ଥାଇ ଯୁଦ୍ଧ କରିଥାନ୍ତୁ କିମ୍ବା ତାଙ୍କର ଅନ୍ୟ କେହି ପ୍ରତିନିଧି ତାଙ୍କ ତରଫରୁ ଯୁଦ୍ଧ ଚଳାଇଥାନ୍ତୁ, ଏହି ଯୁଦ୍ଧର ସେନାପତି ଯେ, ମଧ୍ୟଏସିଆ ଓ ଆଫଗାନିସ୍ଥାନର ବିଦେଶୀ ସୈନ୍ୟ ଉପରେ ନିର୍ଭର କରୁଥିଲେ, ସାରଳା ଦାସଙ୍କ ଅନନ୍ୟ ସାଧାରଣ ପ୍ରତିଭାରୁ ପ୍ରସୂତ "ଦରଦସେନ" (ଦରଦମାନେ ଅର୍ଥାତ୍ ମଧ୍ୟଏସିଆବାସୀମାନେ ସେନା ଯାହାର) ନାମଟି ତାହା ହିଁ ସୂଚାଇ ଦେଉଛି । ଅତଏବ ଏଥିରେ କେଉଁ କଥାଟା ଅସିଦ୍ଧ ବା ଅମେଳ ରହୁଛି ?

ଘଟଣାମାନ ଘଟିବାର ପ୍ରାୟ ଦୁଇଶବର୍ଷ ପରେ ଫେରିସ୍ତା ବିଭିନ୍ନ ଉପାଦାନରୁ ତାଙ୍କ ଇତିହାସ ସଂକଳନ କରିଥିଲେ; କିନ୍ତୁ ସାରଳା ଦାସ ହିଁ ଏତ ସମସ୍ତ ଘଟଣାର ଓ ସମସ୍ତ ଭୌଗୋଳିକ ସ୍ଥାନର ପ୍ରତ୍ୟକ୍ଷଦର୍ଶୀ ଥିଲେ । ଏପରିସ୍ଥଳେ ସାରଳା ଦାସଙ୍କ କଥା ବେଶୀ ବିଶ୍ୱାସଯୋଗ୍ୟ ନ ହେବାରେ କୌଣସି କାରଣ ନାହିଁ । ସେ ମହାଭାରତ ଲେଖିଥିବାର ସମସ୍ତ ନାମକୁ ସ୍ପଷ୍ଟ ଭାବରେ ଲେଖି ନ ପାରି ବର୍ଣ୍ଣିତ ବ୍ୟକ୍ତିମାନଙ୍କ ଗୁଣ, କର୍ମ ଓ ପ୍ରଚ୍ଛନ୍ନ ନାମକୁ ଏପରି ଭାବରେ ପ୍ରକାଶ କରିଛନ୍ତି ଯେ, ସେଇଥିରୁ ହିଁ ତାଙ୍କ ବର୍ଣ୍ଣିତ ବ୍ୟକ୍ତିମାନେ ଐତିହାସିକ ବ୍ୟକ୍ତି ବୋଲି ଧରାପଡ଼ି-ଯାଉଛନ୍ତି । ହୁମାୟୁନଙ୍କୁ ସେ ଅର୍ଥପୂର୍ଣ୍ଣ ଦରଦସେନ ନାମ ଦେଇଛନ୍ତି, ଆଉ ତାଙ୍କୁ ବ୍ରହ୍ମସାହି (ବାହାମନିରାଜ୍ୟ) ଓ ଅରୁଣଗିରିର (ଉଦୟଗିରି ଦୁର୍ଗର) ଧ୍ୱଂସକର୍ତ୍ତା ରୂପେ ମଧ୍ୟ ବର୍ଣ୍ଣନା କରିଛନ୍ତି । ତାଙ୍କର ସମ୍ବନ୍ଧରେ ଭାଖା ଓ ଅଲେଖ ଶବ୍ଦ ବ୍ୟବହାର କରି କବି ହୁମାୟୁନଙ୍କ ଧର୍ମର ସୂଚନା ଦେଇଛନ୍ତି । ହୁମାୟୁନଙ୍କ ମାଲବର ସୁଲତାନ୍ ମାହମୁଦଙ୍କ ସଙ୍ଗେ ଯେଉଁ ବିବାଦ ଓ ଯୁଦ୍ଧ ହୋଇଥିଲା, କବି ଦରଦସେନଙ୍କ ମୁଖରେ ଏ ଘଟଣାର ସୂଚନା ମଧ୍ୟ ଦେଇଛନ୍ତି—

ହେଲେ ନାଶିଲି ଅସୁର ନାମ ମହୀଦାସ (ପୃ. ୧୪୫) ।

ଏହି ଆଖ୍ୟାୟିକାରେ ଆହୁରି ଋଷ୍ୟଶୃଙ୍ଗ ପର୍ବତ, ଋତୁକା କାନନ, ହିରଣ୍ୟ ପର୍ବତ, ଶୁମ୍ଭନିଶୁମ୍ଭ ପର୍ବତ ଓ ହିରଣ୍ୟାକ୍ଷୀ ଦେବୀ କଥା ରହିଛି; କିନ୍ତୁ ଏମାନଙ୍କୁ ମୁଁ ଯଥାଯଥଭାବରେ ଚିହ୍ନିତ କରି ପାରୁ ନାହିଁ କିମ୍ବା କାଳ୍ପନିକ ବୋଲି ମଧ୍ୟ କହି ପାରୁ ନାହିଁ ।

ଭାରତୀୟ ଭାଷା ବା ସଂସ୍କୃତ ସାହିତ୍ୟର ଯେଉଁ ଗ୍ରନ୍ଥରେ କଣିକାଏ ମାତ୍ର ଐତିହାସିକ ତଥ୍ୟ ରହିଛି, ଐତିହାସିକମାନେ ତାକୁ କାଢ଼ି ଆଣି ଇତିହାସରେ ଲଗାଇ ଦେଇଛନ୍ତି । ଯେଉଁ ସାରଳା ମହାଭାରତରେ ଖାଲି ଗୋଟିଏ ଆଖ୍ୟାୟିକାରେ ଏତେ ଭୌଗୋଳିକ ନାମ, ଏତେ ଐତିହାସିକ ନାମ, ଏତେ ଐତିହାସିକ ଘଟଣାବଳୀ, ଏତେ ସୂଚନା ଓ ଏତେ ବ୍ୟଞ୍ଜନା ରହିଛି, ସେହି ଗ୍ରନ୍ଥରେ ସମସାମୟିକ ଐତିହାସିକ ଚିତ୍ର ନାହିଁ ବୋଲି ଯଦି କେହି ଭାବନ୍ତି, ତେବେ ମୁଁ ମୋର ପୂର୍ବମତକୁ ଉଦ୍ଧାର କରି ନୀରବ ରହିବି—"ସାରଳା ଦାସଙ୍କ ଦୁର୍ଭାଗ୍ୟ ଯେ ସେ ଓଡ଼ିଆଭାଷାରେ ତାଙ୍କ ଗ୍ରନ୍ଥ ଲେଖିଯାଇଛନ୍ତି ।"

( ୨ )

ଗୋଟିଏ ନାମରେ ଏକାଧିକ ସ୍ଥାନ ପରିଚିତ ହେଉଥିବାର ଉଦାହରଣ ବର୍ତ୍ତମାନ ଯୁଗରେ କମ୍ ନୁହେଁ, କିମ୍ବା ଅତୀତ ଯୁଗରେ ମଧ୍ୟ କମ୍ ନ ଥିଲା । ଖାଲି ତେଲଙ୍ଗାନାରେ ଶଙ୍ଖପୁର ଓ ଶଙ୍ଖମଣ୍ଡଳ ଥିଲା, ତାହା ନୁହେଁ; ଉତ୍ତର ଭାରତରେ ମଧ୍ୟ ଅନ୍ୟ ଏକ ଶଙ୍ଖପୁର ଥିବା କଥା ସେହି ସାରଳା ମହାଭାରତରେ ହିଁ ରହିଛି । ପାଣ୍ଡବମାନେ ଗୁପ୍ତ ବନବାସରେ ଥିବାବେଳେ ଦୁର୍ଯ୍ୟୋଧନ ସେମାନଙ୍କ ଅନୁସନ୍ଧାନ-ପାଇଁ ଚାରିଦିଗକୁ ଗୁପ୍ତଚର ପଠାଇଥିଲେ, ମାତ୍ର ସେମାନେ ପାଣ୍ଡବମାନଙ୍କ କୌଣସି ଅନୁସନ୍ଧାନ ନ ପାଇ ଯେଉଁ ଯେଉଁ ସ୍ଥାନରେ ସେମାନଙ୍କୁ ଖୋଜିଥିଲେ, ତା'ର ଦୀର୍ଘ ବିବରଣୀ ଦୁର୍ଯ୍ୟୋଧନକୁ ଦେଇଥିଲେ । ବିରାଟ ପର୍ବରେ ଥିବା ଏହି ଦୀର୍ଘ ଭୌଗୋଳିକ ବିବରଣୀ ସାରଳାଦାସ ଭାରତର ପ୍ରାୟ ସମସ୍ତ ପ୍ରଧାନ ସ୍ଥାନର ଉଲ୍ଲେଖ କରିଛନ୍ତି । ସେଥି ମଧ୍ୟରେ ପଶ୍ଚିମ ଦିଗରେ ଥିବା ଶଙ୍ଖପୁରର ନାମ ମଧ୍ୟ ରହିଛି :—

ଶୁକ୍ଳାମ୍ବରପୁର ଶଙ୍ଖପୁର ଯୋମଦଗ୍ନି
ହରପାପଗଙ୍ଗା ବସ୍ତ୍ରହରଣ ବାରୁଣୀ ।

ବିରାଟପର୍ବ, ପୃ. ୮୭ ଖ୍ରୀ ।

ଏଥିରେ ଥିବା ପ୍ରତ୍ୟେକ ଭୌଗୋଳିକ ନାମର ସଂକ୍ଷିପ୍ତ ପରିଚୟ ଦେଲେ ଶଙ୍ଖପୁରର ଅବସ୍ଥିତି ମଧ୍ୟ ଆପେ ଆପେ ସ୍ପଷ୍ଟ ହୋଇପଡ଼ିବ ।

(କ) ଶୁକ୍ଳାମ୍ବରପୁର—କବି ଅନ୍ୟତ୍ର ଏହାକୁ ଖାଲି ଶୁକ୍ଳପୁର ବୋଲି ମଧ୍ୟ ବର୍ଣ୍ଣନା କରିଛନ୍ତି ।

ତହୁଁ ପାର୍ଥ ବୀରତୁର ବାଦ୍ୟ ନାଦ କରି
ପଶ୍ଚିମ ମୂରତ ହେଲେ ସୈନ୍ୟଙ୍କୁ ସେ ଧରି
ରୁଦ୍ରପଦ ଗଙ୍ଗା ତୀରେ ଶୁକଲ ନଗରୀ
ବିରଞ୍ଚି ରୁଦ୍ର ବୋଲଣ ତହିଁ ଦଣ୍ଡଧାରୀ ।
ବାଇଶ ଅର୍ବୁଦ ହସ୍ତୀ ଛପନ କୋଟି ରଥୀ
ଏଗାର ମେଦଛ ଅଶ୍ୱ ଛତ୍ରିଣୀ ପଦାତି ।
ଅର୍ଜୁନ ପ୍ରବେଶ କୁଶମଣ୍ଡଳାର ରାଜ୍ୟେ
ସ୍ନାନ ପାଇଁ ରୁଦ୍ରଗଙ୍ଗା ପାଶେ ହେଲେ ବଳେ ।

ସଭାପର୍ବ, ପୃ ୧୭୦ ସ୍ମା

ଗଙ୍ଗା ତା'ର ଉତ୍ପତ୍ତି ସ୍ଥଳ ନିକଟରେ ବିଷ୍ଣୁଗଙ୍ଗା, ମଧ୍ୟବର୍ତ୍ତୀ ଅଞ୍ଚଳରେ ଅର୍ଥାତ୍ ଆଧୁନିକ ମୋରାଦାବାଦ, ବାଦାଉଁ ଇତ୍ୟାଦି ନିକଟରେ ରାମଗଙ୍ଗା ଓ ବାରାଣସୀ ନିକଟରେ ରୁଦ୍ରଗଙ୍ଗା ବା ଶିବଗଙ୍ଗା ନାମରେ ଅଭିହିତ ହେଉଥିଲା । ଉଲ୍ଲିଖିତ ବର୍ଣ୍ଣନାରୁ ଜଣାଯାଏ ଯେ ଶୁକ୍ଳପୁର ବା ଶୁକ୍ଳନଗରୀ ରୁଦ୍ରଗଙ୍ଗା କୂଳରେ ଅବସ୍ଥିତ ଥିଲା । ଉକ୍ତ ଅଂଶର ଗୋଟିଏ ପଦରେ ଏହି ନଦୀକୁ ରୁଦ୍ରପଦ ଗଙ୍ଗା ଓ ଅନ୍ୟପଦରେ ରୁଦ୍ରଗଙ୍ଗା ବୋଲି କୁହାଯାଇଛି । ରୁଦ୍ରପଦଗଙ୍ଗା ସ୍ଥାନରେ ପଶୁପତି ଗଙ୍ଗା ହିଁ ଶୁଦ୍ଧପାଠ ହେବ ବୋଲି ମନେହୁଏ । ସେ ଯାହାହେଉ, ବାରାଣସୀ ନିକଟରେ ଯେ ଶୁକ୍ଳପୁର ଅବସ୍ଥିତ ଥିଲା, ଏହାର ପ୍ରମାଣ ମିଳୁଛି । ବାରାଣସୀର ୨୦ ମାଇଲ୍ ପୂର୍ବକୁ ଛନ୍ଦୌଲି ତହସିଲର ବରହୌଲ ପ୍ରଗନାରେ ଶକଲଡିହ ନାମକ ଯେଉଁ କ୍ଷୁଦ୍ର ସହର ଅଛି, ତାହା ହିଁ ପୂର୍ବେ ଶୁକ୍ଳପୁର ନାମରେ ଅଭିହିତ ହେଉଥିଲା । ଆଧୁନିକ ଶକଲଡିହରେ ଅଷ୍ଟାଦଶ ଶତାବ୍ଦୀରେ ନିର୍ମିତ ଗୋଟିଏ ଦୁର୍ଗର ଧ୍ୱଂସାବଶେଷ ରହିଛି; କିନ୍ତୁ ଏହି ସହରର ଅନତିଦୂରରେ ପ୍ରାଚୀନ ଶୁକ୍ଳ-ନଗରୀ ବା ଶୁକ୍ଳପୁରର ବିସ୍ତୀର୍ଣ୍ଣ ଧ୍ୱଂସାବଶେଷ ବିଦ୍ୟମାନ ରହିଛି ଓ ତାହା ବର୍ତ୍ତମାନ ସୁଦ୍ଧା ଶୁକ୍ଳପୁରର ଧ୍ୱଂସାବଶେଷ ବୋଲି ପରିଚିତ ହେଉଛି (୫) । ସାରଳାଦାସଙ୍କ

(୫) A. Fuhrer--The Monuments Antiquities and Inscriptions in the North-Western Provinces and Oudh (1891). p. .4.

"Sakaldiha, a town in pargana Barahaul of Tahasil Chandauli 20 miles East of Banaras, possesses ruins of a brick fort, built in the middle of the last century by Achchhail Simh, two Masjids and four Hindu temples. Near the present site of Sakaldiha is a khera which represents the ancient Suklapur."

ସମୟରେ ଏହି ଶୁକ୍ଳପୁର ଖୁବ୍ ପ୍ରସିଦ୍ଧି ଲଭ କରିଥିବ । ନଚେତ୍ ପାଣ୍ଡବମାନଙ୍କ ଦିଗ୍‌ବିଜୟ ତଥା ଗୁପ୍ତ ବନବାସ ସମୟରେ ସେମାନଙ୍କ ଅନୁସନ୍ଧାନ ଉଭୟ ଉପଲକ୍ଷରେ ଏହି ସ୍ଥାନର ଉଲ୍ଲେଖ ସେ କରି ନ ଥାନ୍ତେ ।

(ଖ) ଶଙ୍ଖପୁର--ଶୁକ୍ଳପୁରର ଠିକ୍ ପରେ ଶଙ୍ଖପୁରର ଉଲ୍ଲେଖ ଥିବାରୁ ଏହା ବାରାଣସୀର ନିକଟବର୍ତ୍ତୀ କୌଣସି ପ୍ରସିଦ୍ଧ ସ୍ଥାନ ହୋଇଥିବ ବୋଲି ମନେ-ହୁଏ; କିନ୍ତୁ ଏହାର ପ୍ରକୃତ ଅବସ୍ଥିତିକୁ ମୁଁ ସ୍ଥିର କରିପାରୁନାହିଁ । ଶଙ୍ଖମଲମଲ ପଥର ଯେଉଁଠାରେ ମିଳୁଥିଲା, ହୁଏତ ସେହି ସ୍ଥାନକୁ ଶଙ୍ଖପୁର ବୋଲି କୁହାଯାଉ-ଥିଲା । ବାରାଣସୀରେ ଶଙ୍ଖପ୍ରସ୍ତର ମିଳୁଥିବା କଥା ପ୍ରାଚୀନ କାଳରେ କିମ୍ବଦନ୍ତୀ ପ୍ରସିଦ୍ଧ ହୋଇଥିଲା—

ପିଙ୍ଗଲଶ୍ଚ କଳିଙ୍ଗେଷୁ ମିଥିଲାୟାଞ୍ଚ ପାଣ୍ଡୁକଃ ।
ଏଲାପତ୍ରଞ୍ଚ ଗାନ୍ଧାରେ ଶଙ୍ଖୋ ବାରାଣସୀପୁରେ ॥

ଦିବ୍ୟାବଦାନ (କେଂବ୍ରିଜ୍ ବିଃ ବିଃ, ୧୮୮୭)
୬୦-୬୧ ପୃଷ୍ଠା

କେଉଁ କେଉଁ ସ୍ଥାନରେ ମୂଲ୍ୟବାନ ପ୍ରସ୍ତର ମିଳୁଥିଲା, ସେହି କଥା ବର୍ଣ୍ଣନା କରିବାକୁ ଯାଇ ଗ୍ରନ୍ଥକାର ଲେଖିଛନ୍ତି ଯେ, କଳିଙ୍ଗ ବା ଓଡ଼ିଶାରେ ପିଙ୍ଗଳ ବର୍ଣ୍ଣର, ମିଥିଳାରେ ଗୌରବର୍ଣ୍ଣର, ଗାନ୍ଧାର ବା ଆଧୁନିକ ଆଫଗାନ ସ୍ଥାନରେ ସବୁଜ ରଙ୍ଗର ଓ ବାରାଣସୀରେ ଶଙ୍ଖ ବା ଶ୍ୱେତବର୍ଣ୍ଣର ପ୍ରସ୍ତର ମିଳୁଥିଲା । ଏଥିରୁ ମନେହୁଏ ଯେ, ଶଙ୍ଖପୁର ବାରାଣସୀର ନିକଟବର୍ତ୍ତୀ ଥିଲା; କିନ୍ତୁ ଏହାର ଅବସ୍ଥିତିକୁ ନିର୍ଦ୍ଦିଷ୍ଟ ଭାବରେ ସ୍ଥିର କରିବା ସମ୍ଭବପର ହେଉନାହିଁ ।

(ଗ) ଯୋମଦଗ୍ନି—ସମ୍ପୂର୍ଣ୍ଣ ଓ ପ୍ରକୃତ ନାମଟି ହେଉଛି ଯମଦଗ୍ନିପୁର । ସ୍ୱଳ୍ପଶିକ୍ଷିତ ବ୍ୟକ୍ତିମାନଙ୍କଠାରେ ପୁଣି କଟକରେ ଓ' କାରଟା ଯେତିକ ପରିମାଣରେ ଶୁଦ୍ଧା, ବାଲେଶ୍ୱର ମୟୂରଭଞ୍ଜରେ ତାହା ସେତିକ ପରିମାଣରେ ମହଙ୍ଗା । ଭୈରବକୁ ଭୈରୋବା ଲେଖିବା ଭଳି କୌଣସି ବ୍ୟକ୍ତିଙ୍କ ଲେଖନକାର ପୋଥିରେ ଯମଦଗ୍ନିକୁ ଯୋମଦଗ୍ନି ବୋଲି ଲେଖିଥିଲେ । ପ୍ରକାଶକ ତାକୁ ନିର୍ବିଘ୍ନରେ ଯୋମଦଗ୍ନି ବୋଲି ଛପାଇ ଦେଇଛନ୍ତି । ଆଧୁନିକ ଜୋନପୁରର ପ୍ରାଚୀନ ନାମ ଯେ ଯମଦଗ୍ନିପୁର ଥିଲା, ତାହାର ପ୍ରମାଣ ମିଳୁଛି । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାର୍ମାନ୍ ଫୁହେ୍ରର ସାହେବ ଯେତେବେଳେ ଜୋନପୁରର ପ୍ରାଚୀନ ନାମ ଜାଣିବାକୁ ଇଚ୍ଛା କଲେ, ସେତେବେଳେ ବ୍ରାହ୍ମଣମାନେ କହିଲେ ଯେ ତା'ର ପ୍ରାଚୀନ ନାମ ଥିଲା ଯମଦଗ୍ନିପୁର । ମୁସଲମାନମାନେ କହିଲେ ଯେ ଜୋନପୁର ନାମଟି

ମହମ୍ମଦ ତୋଗଲକଙ୍କ ଅପରନାମ ଯୁନାନ ଶବ୍ଦରୁ ଉତ୍ପତ୍ତି ହୋଇଛୁ । ଫୁହ୍ରେର ସାହେବ ଏହି ମତ ମଧ୍ୟରୁ କେଉଁଟି ଯେ ସତ୍ୟ, ତାହା ସ୍ଥିର କରି ପାରି ନ ଥିଲେ । (୭) କିନ୍ତୁ ବର୍ତ୍ତମାନ ସାରଳା ମହାଭାରତରୁ ପ୍ରମାଣିତ ହେଉଛୁ ଯେ ପଞ୍ଚଦଶ ଶତାବ୍ଦୀରେ ସୁଦ୍ଧା ଏହି ସ୍ଥାନର ପ୍ରାଚୀନ ନାମ ଯମଦଗ୍ନିପୁର ବୋଲି ସମସ୍ତଙ୍କୁ ଜଣାଥିଲା । ଉଲ୍ଲିଖିତ ଉଦ୍ଧୃତାଂଶରେ ସାରଳା ଦାସ ଯେତୋଟି ଗୌଗୋଳିକ ନାମର ଉଲ୍ଲେଖ କରିଛନ୍ତି, ସେଥିମଧ୍ୟରେ ସମସ୍ତ ବାରାଣସୀର ନିକଟବର୍ତ୍ତୀ ଥିଲା । ଏପରିସ୍ଥଳେ ଏହି ଭୌଗୋଳିକ ନାମମାନଙ୍କ ସହିତ ସେ ଯେଉଁ ଯମଦଗ୍ନି ବା ଯମଦଗ୍ନିପୁରର ଉଲ୍ଲେଖ କରିଛନ୍ତି, ତାହା ବାରାଣସୀର ପାର୍ଶ୍ୱବର୍ତ୍ତୀ ଜୋନପୁର ଛଡ଼ା ଅନ୍ୟ କୌଣସି ସ୍ଥାନ ହୋଇ ନ ପାରେ ।

ଫୁହ୍ରେର ସାହେବ ଲେଖିଛନ୍ତି ଯେ ସମସ୍ତ ହିନ୍ଦୁ ଜୋନପୁରକୁ ଯମନ୍‌ପୁର ବୋଲି କହନ୍ତି, ଆଉ ଏହି ଯମନ୍‌ପୁର ମୌଳିକ ଯବନପୁରର ଅପଭ୍ରଷ୍ଟରୂପ ହୋଇ-ଥିବା ସମ୍ଭବ; କିନ୍ତୁ ଯବନପୁରରୁ ଅପଭ୍ରଷ୍ଟ ହୋଇ ଯମନପୁରର ଉତ୍ପତ୍ତି ହେବାର ସମ୍ଭାବନା ଖୁବ୍ କମ୍ । ବରଞ୍ଚ ଯମନ୍‌ପୁରରୁ ଅପଭ୍ରଷ୍ଟ ହୋଇ ଯମୁନାପୁର ନାମଟି ଉତ୍ପତ୍ତି ହେବାରେ ଯଥେଷ୍ଟ ସମ୍ଭାବନା ରହିଛି । ଉତ୍ତର ପ୍ରଦେଶର ଅଧ ଉଚ୍ଚଶିକ୍ଷିତ ବ୍ୟକ୍ତି ମଧ୍ୟ ଯମୁନା ନଦୀ ବୋଲି କହନ୍ତି; ସେମାନେ ଓଡ଼ିଆମାନଙ୍କ ପରି କଦାପି ଯମୁନା ନଦୀ ବୋଲି କହନ୍ତି ନାହିଁ । ତା'ଛଡ଼ା ଅଧ ଉଚ୍ଚଶିକ୍ଷିତ ବ୍ୟକ୍ତି ମଧ୍ୟ ନିଜ ନାମକୁ ଯମ୍‌ନାପ୍ରସାଦ ବୋଲି ଲେଖନ୍ତି । ଜୋନପୁରର ପ୍ରାଚୀନ ନାମ ଯେ ଯମଦଗ୍ନିପୁର, ଏ କଥାଟି ସାରଳା ଦାସଙ୍କୁ ଜଣାଥିଲା । ତା'ଛଡ଼ା ତାଙ୍କ ସମୟରେ ଏହି ସ୍ଥାନକୁ ହିନ୍ଦୁମାନେ ଯେ ଯମୁନାପୁର ବୋଲି କହୁଥିଲେ, ଏହା ମଧ୍ୟ ତାଙ୍କୁ

(୭) "Even the old name of the place is lost, and we are left to conjecture whether the Musalman story that Firuzshah named the city after his cousin Junan (Muhammad Tughlaq) is more probable than the rival statement of the Brahmans about Jamadagnipura and Javanapur. One thing is quite clear, that no Hindu ever calls the place Jaunpur, but always Jamanpur which seems to point to Yavanapura as the original name."

A. Fuhrer—The monuments etc., p. 179.

ଜଣାଥିଲା । ଏଣୁ କବି କେତେବେଳେ ଏହାକୁ ଯମଦଗ୍ନି ପୁର ଓ କେତେବେଳେ ଓଡ଼ିଆ ଉଚ୍ଚାରଣ ଅନୁସାରେ ଏହାର ଅପର ନାମ (ଯମ୍‌ନାପୁର)କୁ ଯମୁନାପୁର ବୋଲି ଲେଖିଯାଇଛନ୍ତି । ସାରଳା ଦାସଙ୍କ ସମୟରେ ଶାର୍କି ସୁଲତାନମାନଙ୍କ ଦ୍ୱାରା ଶାସିତ ପ୍ରକାଣ୍ଡ ଜୋନପୁର ରାଜ୍ୟ ବିଦ୍ୟମାନ ଥିଲା, ଆଉ ଏହି ମୁସଲମାନ ରାଜ୍ୟର ଓଡ଼ିଶା ସହିତ ସଂଘର୍ଷ ଲାଗିଥିବା କଥା ମଧ୍ୟ ମୁସଲମାନ ଇତିହାସରୁ ମିଳୁଛି । ସାରଳା ଦାସ ସଭାପର୍ବରେ ପାଣ୍ଡବ ଅର୍ଜୁନଙ୍କୁ କାଶୀରୁ (ବାରାଣସୀରୁ) ଯମୁନା-ପୁରକୁ ଘେନିଯାଇ ଏହି ସଂଘର୍ଷର କଥା କିପରି ବିଚିତ୍ର ଭାବରେ ବର୍ଣ୍ଣନା କରିଛନ୍ତି, ତାହା ପରେ ଆଲୋଚିତ ହେବ ।

(ଘ) ହରପାପଗଙ୍ଗା—ହରପାପଗଙ୍ଗା, ହରଗଙ୍ଗା, ରୁଦ୍ରଗଙ୍ଗା, ପଶୁପତି-ଗଙ୍ଗା—ଏ ସମସ୍ତ ଏକ ନଦୀର ନାମ । ବାରାଣସୀ ନିକଟରେ ଗଙ୍ଗାନଦୀ ରୁଦ୍ରଗଙ୍ଗା ନାମରେ ଅଭିହିତ ହେଉଥିବା କଥା ଆଗରୁ କୁହାଯାଇଛି ।

(ଙ) ବସ୍ତ୍ରହରଣ—ଏହା ମଧ୍ୟ ଏକ ନଦୀର ନାମ । ଏଣୁ ଏହାର ଶୁଦ୍ଧପାଠ ବସ୍ତ୍ରହରଣ ନ ହୋଇ ବସ୍ତ୍ରହରଣା ହେବ । ଗଙ୍ଗାଛଡ଼ା ବାରାଣସୀ ଅଞ୍ଚଳରେ ଆଉ ଏକ ବିଖ୍ୟାତ ନଦୀ ହେଉଛି ଗୋଗ୍ରା । ଏହା ଖରସ୍ରୋତା ନଦୀ, ଆଉ ଏହି ହେତୁରୁ ସଂସ୍କୃତ ମହାଭାରତରେ (ସଭାପର୍ବ, ୯ମ ଅଧ୍ୟାୟ) ଏହାକୁ ବେଗବାହିନୀ ବୋଲି କୁହାଯାଇଛି । ସାରଳା ଦାସ ଏହି ବେଗବାହିନୀ ଗୋଗ୍ରାକୁ ବସ୍ତ୍ରହରଣା ବୋଲି ଲେଖିଥିବା ଖୁବ୍ ସମ୍ଭବ, କିନ୍ତୁ ଗୋଗ୍ରାର ଅନ୍ୟ ନାମ ଯେ, ବସ୍ତ୍ରହରଣା ଥିଲା, ଏ କଥା ନିଶ୍ଚିତ ରୂପେ କହିବା ସମ୍ଭବପର ହେଉନାହିଁ ।

(ଚ) ବାରୁଣୀ—ବାରୁଣୀ ନଦୀ । ପଦଶିର ଉପର ଧାଡ଼ିର ଶେଷରେ ଯମଦଗ୍ନି ଥିବାରୁ ପଦ ପକାଇବା ପାଇଁ ତଳଧାଡ଼ିର ଶେଷରେ ବାରୁଣା ସ୍ଥାନରେ ବାରୁଣୀ କରି ଦିଆଯାଇଛି । ବାରୁଣୀ ନଦୀ ବର୍ତ୍ତମାନ ସୁଦ୍ଧା ବାରାଣସୀର ଅତି ନିକଟରେ ବହି ଚାଲିଛି । ଯମୁନାକୁ ଯମନା ବୋଲି ଉଚ୍ଚାରଣ କଲାପରି ସ୍ଥାନୀୟ ଲୋକେ ବାରୁଣାକୁ ବାର୍ଣା ବୋଲି କହନ୍ତି ।

ଉଲ୍ଲିଖିତ ଆଲୋଚନାରୁ ଦେଖାଯିବ ଯେ ଅନ୍ୟ ଏକ ଶଙ୍ଖପୁର ବାରାଣସୀର କୌଣସି ନିକଟବର୍ତ୍ତୀ ଅଞ୍ଚଳରେ ଅବସ୍ଥିତ ଥିଲା । ଏଣୁ ଏହି ଶଙ୍ଖପୁର ସହିତ ଦରଦସେନ ଯମାଗୋଷ୍ଠ ଆଖ୍ୟାୟିକାରେ ଥିବା ଶଙ୍ଖପୁରର କୌଣସି ସମ୍ବନ୍ଧ ନାହିଁ ।

ଉପରେ କୁହାଯାଇଛି ଯେ ସାରଳା ଦାସ ଜୋନପୁରକୁ ହିଁ ଯମଦଗ୍ନିପୁର ବା ଯମୁନାପୁର ବୋଲି ବର୍ଣ୍ଣନା କରିଛନ୍ତି । କବି ତାଙ୍କ ସମୟର ଏହି ପ୍ରତାପଶାଳୀ ମୁସଲମାନ ରାଜ୍ୟକୁ ନିଜ ଆଖ୍ୟାୟିକାରେ କିପରି ଭାବରେ ଚିତ୍ର କରିଛନ୍ତି, ତାହା ହିଁ ବର୍ତ୍ତମାନ ଆଲୋଚନା କରାଯାଉ ।

ଆଖ୍ୟାୟିକା—ଅର୍ଜ୍ଜୁନର କ୍ଷେତ୍ରପାଳ ନୃପତିଙ୍କୁ ନିମନ୍ତ୍ରଣ ଓ ମାହେଶ୍ୱର ରାଜା ସହିତ ଯୁଦ୍ଧ । ସଭାପର୍ବ, ପୃ. ୧୬୪ଷ୍ଠା ।

ସାରାଂଶ—ଅର୍ଜ୍ଜୁନ ରାଜସୂୟ ଯଜ୍ଞ ଉପଲକ୍ଷରେ ବାରଣସୀର କ୍ଷେତ୍ରପାଳ ରାଜାଙ୍କୁ ନିମନ୍ତ୍ରଣ କରିସାରିବା ପରେ ଯମୁନାପୁର ରାଜ୍ୟରେ ପ୍ରବେଶ କଲେ । ଏହି ରାଜ୍ୟର ରାଜାର ନାମ ମାହେଶ୍ୱର । ତାଙ୍କ ଆଦେଶରେ ଚରମାନେ ଚରିଆଡ଼େ ବୁଲୁଥାନ୍ତି ଓ ଶତ୍ରୁ ଆସିବାର ଜାଣିଲେ ତାଙ୍କୁ ଖବର ଦିଅନ୍ତି । ଅର୍ଜ୍ଜୁନଙ୍କ ସୈନ୍ୟ ଯମୁନାପୁର ରାଜ୍ୟରେ ପହୁଞ୍ଚିବା କଥା ଜାଣିବାମାତ୍ରେ କଣ୍ଟିଆଳୀର ଚରିଶ ସୈନ୍ୟ ତାଙ୍କୁ ବାଟ ଓଗାଳିଥିଲେ । ଯୁଦ୍ଧ ହେଲା, ସେଥିରେ ଅର୍ଜ୍ଜୁନଙ୍କ ଜୟ-ବିଜୟ ନାମକ ସେନାପତିଦ୍ୱୟଙ୍କ ଦ୍ୱାରା କଣ୍ଟିଆଳୀର ସୈନ୍ୟ ହାରିଯିବାରୁ ରାଜ୍ୟର ମୁଖ୍ୟ ସୈନ୍ୟ ସଜହୋଇ ଯୁଦ୍ଧକୁ ବାହାରି ପଡ଼ିଥିଲେ । ତୁମୁଳ ଯୁଦ୍ଧ ହେଲା । ଯମୁନାପୁରର ସୈନ୍ୟ ଭୀତତ୍ରସ୍ତ ହୋଇ ପଳାୟନ କରିଥିଲେ ହେଁ ଜୟପରାଜୟ ଅମୀମାଂସିତ ହୋଇ ରହିଲା । ଅର୍ଜ୍ଜୁନଙ୍କ ସଙ୍ଗରେ ଥିବା ସୁରେଶ୍ୱର ପୁରୋହିତ ପ୍ରସ୍ତାବ କଲେ ଯେ ସେ ନିଜେ ରାଜା ପାଖକୁ ଯାଇ ସମାଧାନ କରି ଆସିବେ । ଅର୍ଜ୍ଜୁନ ଏଥିରେ ସ୍ୱୀକୃତ ହେଲେ । ତା'ପରେ ସୁରେଶ୍ୱର ପୁରୋହିତ ରାଜା ନିକଟକୁ ଯାଇ ସମାଧାନ କରିବାରୁ ରାଜା ଉପଢୌକନ ଘେନି ଅର୍ଜ୍ଜୁନଙ୍କୁ ସାକ୍ଷାତ କଲେ ଓ ରାଜସୂୟ ଯଜ୍ଞକୁ ଯିବା ପାଇଁ ସ୍ୱୀକୃତ ହେଲେ ।

ଉଦ୍ଧୃତାଂଶ—

ବାରାଣସୀପୁରେ କ୍ଷେତ୍ରପାଳ ନରପତି
ତାହାଁ ସମ୍ଭବେ ଅଇଲା ସେହି ଲିଙ୍ଗ କତି ।
× × × ×
ପାର୍ଥଙ୍କ ବଚନେ କ୍ଷେତ୍ରପାଳ ଅଧିପତି
ସମଦଣ୍ଡ ଘେନି ରାଜ୍ୟ ବାହାର ତଡ଼ିତି ।
କାଶୀପୁର ପ୍ରଦକ୍ଷିଣେ କରି ଅରଜୁନ
ଯମୁନାପୁରେ ପ୍ରବେଶ ହୋଇଲେ ବହନ ।
ସେ ଯମୁନାପୁରେ ମାହେଶ୍ୱର ନରପତି
ସେ ରାଜ୍ୟେ ବିଜେ ବିଚିତ୍ରବୀର୍ଯ୍ୟଙ୍କରନାତି ।
× × × ×

ଏହିପରି ରାଜା ଗୃହରେ ସର୍ବଦା ଭ୍ରମନ୍ତି
ଶତ୍ରୁ ଆଗମ ବାରତା ରାଜାଙ୍କୁ ଦିଅନ୍ତି
ପାର୍ଥ ପଶନ୍ତେ ରାଜ୍ୟରେ ଆସି କହୁଥାଇ
ଉଗାଲ ଗୃଣଶ ଘୋଡା ଏକୁ ଏକ ବଳୀ ।
ବୋଲେ ନ ଜାଣୁ ଯମୁନାନଗ୍ର ଏହି ବୋଲି
ନ ପଗୃର ସୈନ୍ୟ ସହ କମ୍ପ୍ୟ ପଶୁ ପେଲି ।

× × × ×

ବିଶେଷରେ ଅନ୍ଧକାର ରଜନୀ ପାହାନ୍ତି
ଗୋଡ଼ାଇ ସେ ଦୁଇ ବୀରେ ମାଇଲେ ବିକୋଧ ।
ପଳାଇ ବୋଇଲେ ଜମ୍ବୁଦାସ ମନ୍ତ୍ରି ଦ୍ୱାରେ
ଆସି ଅଛୁଁତେ ଘୋଡାଏ ପଶିଲେ ରାଜ୍ୟରେ ।

× × × ×

ଧର୍ମ ବିଗୃର ବୁହାଇ ଆପଣାର ଥାଟ
ମାହେଶ୍ୱର ରାଜା ସୈନ୍ୟ ହେଲେ ଯାଇ ଭେଟ ।
ବହୁ ପ୍ରତିଜ୍ଞା କରନ୍ତି ବୀରମାନେ ତାଙ୍କ
ବିଦ୍ଧଲେ ନାଗ୍ରାଚ ସର୍ବେ ପରଥାଟ ଦେଖି ।

× × × ×

ସୁରେଶ୍ୱର ନାମେ ଥିଲେ ପାର୍ଥ ପୁରୋହିତ
ଧୌମ୍ୟ ପୁରୋହିତଙ୍କର ସେହି ନିଜସୁତ ।
ସେ ପ୍ରୋହିତ ରହିଥିଲେ ଅର୍ଜୁନଙ୍କ ତୁଲେ
ସମ୍ମୁଖରେ ଉଭା ହୋଇଣ ଏପରି କହିଲେ ।
ଆହେ ପାର୍ଥ ଯିବି ମୁଁ କି ରାଜାର ତହିଁକି
ସମାଧାନ କରି ତାଙ୍କୁ ଆଣିବି ଏଥିକି ।
ଅର୍ଜୁନ ତୁନି ହୋଇଲେ କାର୍ଯ୍ୟର ନିମନ୍ତେ
ଯମୁନା ନଗ୍ରେ ପଶିଲେ ବେଗେ ପୁରୋହିତେ ।

× × × ×

ତୋର ସମଦଣ୍ଡ ଘେନ ଆହେ। ମହାରାଜା
ବାରୁଣାବନ୍ତଙ୍କୁ ତୁହି ବହନ ଚଳିଯା

ମୁସଲମାନ ଇତିହାସରେ ବର୍ଣ୍ଣିତ ଅଛି ଯେ ଜୋନପୁରର ମହମ୍ମଦଶାହା ଓଡ଼ିଶା ଆକ୍ରମଣ କରି କପିଳେଶ୍ୱରଙ୍କୁ କର ଦେବାପାଇଁ ତଥା ବହୁ ହସ୍ତୀ, ଅଶ୍ୱ ଓ ମୂଲ୍ୟବାନ୍ ପଦାର୍ଥ ଦେବାପାଇଁ ବାଧ୍ୟ କରିଥିଲେ । ମୁସଲମାନ ଐତିହାସିକମାନଙ୍କ ବିବରଣୀରୁ ଅତି ସହଜ ବିଶ୍ୱାସୀ ୟୁରୋପ ଐତିହାସିକମାନେ ମଧ୍ୟ ଏହି ଘଟଣାକୁ ସନ୍ଦେହ ଚକ୍ଷୁରେ ଦେଖି ଏହାକୁ ଏକତରଫିଆ ବିବରଣୀ ବୋଲି ମନେ କରିଛନ୍ତି (Cambridge History of India Vol. III, p. 255) . ଯମୁନାପୁର ବା ଜୋନପୁର ସହିତ ସଂଘର୍ଷର କଥା ସାରଳାଦାସଙ୍କ ମହାଭାରତରୁ ଯାହା ମିଳୁଛି ତାହା ମଧ୍ୟ ଏକତରଫିଆ ହୋଇପାରେ । ଐତିହାସିକର କାମ ହେଉଛି ସମସ୍ତ ଉପାଦାନକୁ ସମ୍ୟକ ରୂପେ ଆଲୋଚନା କରି ସେଥିରୁ ସତ୍ୟାସତ୍ୟ ନିର୍ଦ୍ଧାରଣପାଇଁ ଚେଷ୍ଟାକରିବା । ଏପରି ଚେଷ୍ଟା ଅନ୍ୟତ୍ର କରାଯିବ । ଶେଷରେ କେବଳ ଆଉ ଗୋଟିଏ କଥା କହି ଏହି ଆଲୋଚନା ଶେଷ କରାଯାଉଛି ।

ଅଭିଯୋଗ ହେଉଛି ଯେ ମୁଁ କୁଆଡ଼େ କେବଳ ଦକ୍ଷିଣାଞ୍ଚଳର କେତେକ ଭୌଗୋଳିକ ଓ ଐତିହାସିକ ନାମକୁ ଅବଲମ୍ବନ କରି ସାରଳାଦାସଙ୍କୁ କପିଳେଶ୍ୱର ଗଜପତିଙ୍କର ସମସାମୟିକ ବୋଲି ପ୍ରମାଣ କରିବାକୁ ଯାଉଛି । ମୋର ଆଲୋଚନା ଶେଷ ହେବା ପୂର୍ବରୁ ଏପରି ମତ ପ୍ରକାଶ କରିବା ନ୍ୟାୟସଙ୍ଗତ ହେଉ ନାହିଁ । ସାରଳାଦାସଙ୍କ ରହସ୍ୟମୟ ଗ୍ରନ୍ଥକୁ ହୃଦୟଙ୍ଗମ କରିବାରେ ବହୁ ସମୟ, ଚିନ୍ତା ଅନୁସନ୍ଧାନର ଆବଶ୍ୟକ ହେଉଛି । ଏହି ଗ୍ରନ୍ଥର ଭାଷା ସର୍ବଜନବୋଧ୍ୟ ହେଲେହେଁ ଏହାର ଭାବ ଯେ ବୈଦେହୀଶବିଳାସ, ବିଦଗ୍ଧଚିନ୍ତାମଣି ଇତ୍ୟାଦିଠାରୁ ବହୁଗୁଣରେ କଷ୍ଟବୋଧ, ଯେକୌଣସି ସୁଧୀବ୍ୟକ୍ତି ଏହି ଗ୍ରନ୍ଥକୁ ମନ ଓ ଜ୍ଞାନ ଦେଇ ପଢ଼ିଲେ, ଏହା ସ୍ୱୀକାର କରିବେ । ଏଣୁ ଯାହା ବୁଝିପାରୁଛି ତାହା ହିଁ ପ୍ରଥମେ ଲେଖୁଛି । ସାରଳାଦାସଙ୍କ ଗ୍ରନ୍ଥରେ ଦକ୍ଷିଣାଞ୍ଚଳ ଛଡ଼ା ଭାରତର ଅନ୍ୟ ଅଞ୍ଚଳମାନଙ୍କ ଶତ ଶତ ଭୌଗୋଳିକ ନାମ ଓ ଐତିହାସିକ ଘଟଣା ରହିଛି । ଏହି ପରିଚ୍ଛେଦରେ ଉତ୍ତର ଭାରତର ମାତ୍ର ସାତୋଟି ଭୌଗୋଳିକ ନାମରେ ଆଲୋଚନା କରାଯାଇଛି ଓ ଗୋଟିଏ ଐତିହାସିକ ଘଟଣାର ଆଲୋଚନା ଆରମ୍ଭ କରାଯାଇଛି । ଏଥିରୁ ସହଜରେ ଅନୁମିତ ହେବ ଯେ ଦକ୍ଷିଣାଞ୍ଚଳ ଛଡ଼ା ଭାରତର ଅନ୍ୟାନ୍ୟ ଅଞ୍ଚଳର ମଧ୍ୟ ବହୁ ସମସାମୟିକ ତଥା ଅତୀତର କଥା ସାରଳା ମହାଭାରତରେ ରହିଛି ।

---

## ସପ୍ତମ ପରିଚ୍ଛେଦ

### ମୁସଲମାନ ରାଜତ୍ୱ ପୂର୍ବର କେତେକ ଭୌଗୋଳିକ ସ୍ଥାନ, ଐତିହାସିକ ରାଜବଂଶ ଓ ରାଜାମାନଙ୍କ ଚିତ୍ର

୧୯୬୬-୬୭ ମସିହାରେ ସାରଳା ସାହିତ୍ୟର ଐତିହାସିକ ଆଲୋଚନା ସମ୍ବନ୍ଧୀୟ କେତୋଟି ପ୍ରବନ୍ଧ ଝଙ୍କାରରେ ପ୍ରକାଶିତ ହେବା ପରେ ଲେଖକ ଏହି ଆଲୋଚନା ବନ୍ଦ କରିଦେବାକୁ ବାଧ୍ୟ ହୋଇଥିଲି । ଏପରି ଆଲୋଚନାର ତୀବ୍ର ନିନ୍ଦା ଓ ପ୍ରତିବାଦ ହେଲା । କେହି କେହି କହିଲେ ଯେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ମୁଁ ଏକ ସେଟ୍ ସାରଳା ମହାଭାରତ ପୁସ୍ତକ ପାଇଥିବାରୁ ସାରଳା ସାହିତ୍ୟର ଐତିହାସିକ ଆଲୋଚନା ନାମରେ କେବଳ ଗୋଟାଏ ପ୍ରଚାର ଚଳାଇଛି । ଏମାନଙ୍କ ମତରେ ସାରଳା ସାହିତ୍ୟର ରଚନାକାଳ ନବମ ଶତାବ୍ଦୀ ବା ଏକାଦଶ ଶତାବ୍ଦୀ ହେବ । ମୁଁ ଏହି ସାହିତ୍ୟକୁ ଓଡ଼ିଶା-ସାମ୍ରାଜ୍ୟର ସ୍ଥାପୟିତା କପିଳେଶ୍ୱରଙ୍କ ସମୟକୁ ଟାଣିଆଣି ଓଡ଼ିଆ ସାହିତ୍ୟ ତଥା ଓଡ଼ିଆ ଜାତିର ଟେକ କମାଇ ଦେଉଛି (୧) । କେହି କେହି

(୧) କହିବା ବାହୁଲ୍ୟ ଯେ ମୁଁ କେବଳ ଏହି ସାହିତ୍ୟକୁ ପଞ୍ଚଦଶ ଶତାବ୍ଦୀରେ ସ୍ଥାନ ଦେଉନାହିଁ । ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ପଣ୍ଡିତ ବିନାୟକ ମିଶ୍ର, ସ୍ୱର୍ଗତ ମନମୋହନ ଚକ୍ରବର୍ତ୍ତୀ, ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର ମାୟାଧର ମାନସିଂହ, ଶ୍ରୀ ପ୍ରଭାତ କୁମାର ମୁଖାର୍ଜୀ, ଡକ୍ଟର ବଂଶୀଧର ମହାନ୍ତି, ଶ୍ରୀ ସୁରେନ୍ଦ୍ର ମହାନ୍ତି ପ୍ରଭୃତି ଅନେକ ପଣ୍ଡିତ ସାରଳା ଦାସଙ୍କୁ ପଞ୍ଚଦଶ ଶତାବ୍ଦୀର କବି ବୋଲି ସ୍ଥିର କରିଛନ୍ତି । ଏହି ସାହିତ୍ୟରେ ଯେଉଁ ଐତିହାସିକ ଓ ଭୌଗୋଳିକ ଉପାଦାନମାନ ଅଛି ମୁଁ ତା'ର ବିଶ୍ଳେଷଣ କରୁଛି ମାତ୍ର ।

କହିଲେ ଯେ ସାରଳା-ସାହିତ୍ୟର ଶୁଦ୍ଧ-ସଂସ୍କରଣ ଏ ପର୍ଯ୍ୟନ୍ତ ହୋଇନାହିଁ । ଏଣୁ ପ୍ରକାଶିତ ପୁସ୍ତକମାନଙ୍କ ସାହାଯ୍ୟରେ ଏ ସାହିତ୍ୟ ଉପରେ ବର୍ତ୍ତମାନ ଯେଉଁ ଆଲୋଚନା ହେଉଛି, ଶୁଦ୍ଧ ସଂସ୍କରଣ ପ୍ରକାଶିତ ହେବାପରେ ତାହା ଅସାର ବୋଲି ପ୍ରତିପାଦିତ ହେବ । ଆଉ କେହି କହିଲେ ଯେ ସାରଳା-ସାହିତ୍ୟକୁ କେବଳ ଐତିହାସିକ ଦୃଷ୍ଟିରୁ ଆଲୋଚନା କରୁଥିବାରୁ ତାହା ପଞ୍ଚଦଶ-ଶତାବ୍ଦୀର ସାହିତ୍ୟ ବୋଲି ପ୍ରତୀକ ହେଉଛି; କିନ୍ତୁ ଏ ସାହିତ୍ୟରେ ବୌଦ୍ଧଗାନ ଓ ଦୋହାରୁ କେତେକ ଶବ୍ଦ ମିଳୁଥିବାରୁ ଏହା ନବମ ଦଶମ ଶତାବ୍ଦୀର ସାହିତ୍ୟ ହେବାର କଥା । ଏଣୁ ସାରଳା-ସାହିତ୍ୟକୁ ଭାଷା ଦୃଷ୍ଟିରୁ ମଧ୍ୟ ଆଲୋଚନା କରିବା ଉଚିତ । କେତେକ ଭାବିଲେ ଯେ ସାରଳା-ସାହିତ୍ୟ ସମ୍ବନ୍ଧୀୟ ପୂର୍ବ ପଣ୍ଡିତମାନଙ୍କ ଲେଖା ନ ପଢ଼ି ମୁଁ ମନୋମୁଖୀ ଭାବରେ ସାରଳା-ସାହିତ୍ୟର ଆଲୋଚନାରେ ପ୍ରବୃତ୍ତ ହୋଇଛି ।

ଓଡ଼ିଶା ବାହାରେ ରହି ସୁଦ୍ଧା ମୁଁ ଏସବୁ ବିରୁଦ୍ଧ ସମାଲୋଚନା ପଢ଼ିଲି । ମୋର ମନେ ହେଲା ଯେ ମୋର ସାରଳା-ସାହିତ୍ୟ ଆଲୋଚନା ଗୋଟିଏ ରାଜ-ନୀତିକ ବ୍ୟାପାରରେ ପରିଣତ ହେଉଛି । ଏଣୁ ଏହି ଆଲୋଚନାକୁ ବନ୍ଦ କରି ଦେଇ ସାରଳା-ସାହିତ୍ୟର ଶୁଦ୍ଧ ସଂସ୍କରଣକୁ ଓ ଏ ସାହିତ୍ୟ ସମ୍ବନ୍ଧୀୟ ଅନ୍ୟ ପଣ୍ଡିତମାନଙ୍କ ଐତିହାସିକ ଆଲୋଚନାକୁ ଅପେକ୍ଷା କରି ରହିଲି । ଏଗାରଟି ବର୍ଷ ଅତୀତ ହେଲେ ମଧ୍ୟ ସାରଳା-ସାହିତ୍ୟର ଶୁଦ୍ଧ ସଂସ୍କରଣ ଜନସାଧାରଣଙ୍କ ହସ୍ତଗତ ହେଲାନାହିଁ, କିମ୍ବା ଏ ସାହିତ୍ୟ ସମ୍ବନ୍ଧରେ ଅନ୍ୟ କେହି ଧାରାବାହିକ ଭାବରେ ଐତିହାସିକ ଆଲୋଚନା କଲେନାହିଁ । ଏହି ଅବସ୍ଥାରେ ଥିବାବେଳେ ୧୯୬୮ ମସିହାର ସାରଳାଦାସଙ୍କ ଜୟନ୍ତୀ ଉପଲକ୍ଷରେ ଶ୍ରୀଯୁକ୍ତ ଗଣେଶ ପ୍ରସାଦ ପରିଜା ମୋତେ ଗୋଟିଏ ପ୍ରବନ୍ଧ ମାଗିବାରୁ, "ମନୁଷ୍ୟ ଜୀବନ ଅନିଶ୍ଚିତ" ଏହି ଦୃଷ୍ଟିରୁ ଦୀର୍ଘ ୧୧ବର୍ଷ ପରେ ଏହି ଆଲୋଚନାରେ ପ୍ରବୃତ୍ତ ହୋଇ ତାଙ୍କୁ ପ୍ରବନ୍ଧଟିଏ ଦେଲି । ତା'ଛଡ଼ା ସ୍ଥିର କଲି ଯେ ମୋର ବିଦ୍ୟାବୁଦ୍ଧି ଅନୁସାରେ ଏହି ଆଲୋଚନାକୁ ଚଳାଇ ମୁଁ ଏହାକୁ ନିଶ୍ଚୟ ଶେଷ କରିବି ।

ଏହି ଦୀର୍ଘ ଉପକ୍ରମଣିକା ଦେବା ପରେ ସୁଦ୍ଧା ବିଷୟବସ୍ତୁ ଆଲୋଚନା କରିବା ପୂର୍ବରୁ ଆଉ କେତୋଟି କଥା କହିବା ଆବଶ୍ୟକ ମନେ କରୁଛି । ସାରଳା-ଦାସ ନବମ ବା ଏକାଦଶ ଶତାବ୍ଦୀର କବି ହୋଇ ନ ପାରନ୍ତି । ସେ ଯେ କପିଳେଶ୍ୱର ଗଜପତି ( ଖ୍ରୀଃ ୧୪୩୫-୬୭ )ଙ୍କ ସମସାମୟିକ ଥିଲେ, ଏହା ତାଙ୍କ ସାହିତ୍ୟର ବହୁ ପ୍ରମାଣରୁ ପ୍ରତିପାଦିତ ହେଉଛି । ଏହି ଗଜପତିଙ୍କ ନାମ ସାରଳା-ମହାଭାରତର ଆଦ୍ୟପର୍ବରେ ଉଲ୍ଲେଖ ରହିଛି, ତା' ଛଡ଼ା ଏହାଙ୍କ ସମସାମୟିକ ବହୁ ରାଜାଙ୍କ ନାମ, ବହୁ ଭୌଗୋଳିକ ନାମ ଓ ବହୁ ଘଟନା ଏହି ମହାଭାରତରେ ସ୍ଥାନ

ପାଇଛୁ । ଭାଷା ଦୃଷ୍ଟିରୁ ବିଚାର କଲେ ମଧ୍ୟ ନିଃସନ୍ଦେହରେ ପ୍ରମାଣିତ ହୁଏ ଯେ ସାରଳାସାହିତ୍ୟ ମୁସଲମାନ ଆଧିପତ୍ୟ କାଳରେ ସୃଷ୍ଟ ହୋଇଥିଲା । ଏଥିରେ ବହୁ ମୁସଲମାନୀ ଶବ୍ଦ (ଆରବୀ ଓ ଫାର୍‌ସୀ ଶବ୍ଦ) ବ୍ୟବହୃତ ହୋଇଛୁ । ସାରଳାଦାସ କମାଣ, ହୁକୁମ, ମଇଦାନ, ସାହା, ତୋପ, ଆଲମାରି, ନଜର, ଦରକାର, (ଆରବୀ ଦରକାର), ଆତର ( ଆରବୀ ଇତ୍ର ), ବଜାର ( ଫାରସୀ ବାଜାର ) ଫଉକାର ( ଆରବୀ ଫଉକ୍ = ସୈନ୍ୟ ), ଜାଗିର ( ଫାରସୀ ଜାଗିର ) ହଜାର (ଫାରସୀ ହଜାର୍ ) ଘୋଷ (ଫାରସୀ ଗୁସା) ପ୍ରଭୃତି ଶବ୍ଦ ବାରମ୍ବାର ବ୍ୟବହାର କରିଚନ୍ତି । ସାରଳାଦାସ ତାଙ୍କ ସାହିତ୍ୟ ସୃଷ୍ଟି କଲାବେଳକୁ ମୁସଲମାନମାନେ ଅଢ଼େଇଶ ବର୍ଷ ପର୍ଯ୍ୟନ୍ତ ଭାରତରେ ରାଜତ୍ୱ କରି ସେମାନଙ୍କ ସାର୍ବଭୌମ କ୍ଷମତା ପ୍ରସାର କରି ସାରିଥିଲେ । ଏଣୁ ଓଡ଼ିଶା ସ୍ୱାଧୀନ ଥିଲେହେଁ ଏତେଗୁଡ଼ିଏ ମୁସଲମାନୀ ଶବ୍ଦ ଆମ ଭାଷା ଭିତରେ ପ୍ରବେଶ କରିଥିଲା । ମୁଁ ଭାଷାଦୃଷ୍ଟିରୁ ସାରଳା ସାହିତ୍ୟକୁ ଆଲୋଚନା କରୁନାହିଁ ! ଏଣୁ ଭାଷାବିତ୍‌ମାନେ ଏହାର ବିଚାର କରନ୍ତୁ ।

ଯଦି କୌଣସି ପୁସ୍ତକରେ ରୁଦ୍ର, ଅଗ୍ନି, ଯମ ପ୍ରଭୃତି ବେଦର ଶବ୍ଦ ସହିତ ଓ କୁଡ଼ିଆ, ଡୋମ୍ବୀ ପ୍ରଭୃତି ବୌଦ୍ଧଗାନ-ଦୋହାର ଶବ୍ଦ ସହିତ ଇସ୍କୁଲ, ମାଷ୍ଟର, ପୁଲିସ ସିଲଟ ପ୍ରଭୃତି ଶବ୍ଦମାନ ମିଳେ, ତେବେ ଆମେ ତାକୁ କେଉଁ ସମୟର ରଚନା ବୋଲି ଧରିବା । ଏହା ଗୋଟିଏ ସାଧାରଣ କଥା । ଏହା ଉପରେ ଯୁକ୍ତିତର୍କ ହୋଇ ନ ପାରେ । ବୌଦ୍ଧଗାନ-ଦୋହାର ଭାଷା ଓ ଭାବର ପଞ୍ଚନ୍ତରି ଭାଗ ବୁଝିହୁଏ ନାହିଁ, ମାତ୍ର ସାରଳା-ସାହିତ୍ୟର କୌଣସି ଅଂଶ ଅବୋଧ ନୁହେଁ । ଏଣୁ ସାରଳା-ସାହିତ୍ୟ ବୌଦ୍ଧଗାନ ଦୋହାର ସମସାମୟିକ ହୋଇ ନବମ ଶତାବ୍ଦୀରେ ସ୍ଥାନ ପାଇବ କିପରି ? ମୋଟକଥା ବର୍ଗାକାର ରନ୍ଧ୍ରରେ ବୃତ୍ତାକାର କୀଳକ ଖାପ ଖାଇବ ନାହିଁ । ଏଣୁ ଶ୍ରଦ୍ଧା ଭାବପ୍ରବଣତା ଛାଡ଼ି ଓ ସତ୍ୟାଶ୍ରୟୀ ହୋଇ ସାରଳା-ସାହିତ୍ୟକୁ ତା'ର ପ୍ରକୃତ ରଚନାକାଳର ପୃଷ୍ଠଭୂମିରେ ରଖି ଆମ୍ଭମାନଙ୍କୁ ତା'ର ଆଲୋଚନାରେ ପ୍ରବୃତ୍ତ ହେବାକୁ ପଡ଼ିବ । ନଚେତ୍ ତାହା ଦୁର୍ବୋଧ ହୋଇ ରହିବ ।

ସାରଳା-ସାହିତ୍ୟର ଶୁଦ୍ଧ-ସଂସ୍କରଣ ହସ୍ତଗତ ହୋଇଥିଲେ ଆଲୋଚନା ଆହୁରି ସୁଗମ ହୋଇଥାନ୍ତା; କିନ୍ତୁ ଏତେବର୍ଷ ଅପେକ୍ଷା କରିବାପରେ ସୁଦ୍ଧା ତାହା ଭାଗ୍ୟରେ ଜୁଟିଲା ନାହିଁ । ଛାପା ପୁସ୍ତକମାନଙ୍କ ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ ସେଗୁଡ଼ିକ ଶୂନ୍ୟରୁ ଆସିନାହାନ୍ତି । ମୂଳ ସାରଳା-ସାହିତ୍ୟର ଦାଣ୍ଡିବୃତ୍ତକୁ ଚଉଦ ଅକ୍ଷରୀରେ ପରିଣତ କଲାବେଳେ ବହିରେ ସେଥିରୁ କେତେକାଂଶ ବାଦ ଦିଆଯାଇଛି ଓ କେତେକାଂଶରେ ବିକୃତ ମଧ୍ୟ କରାଯାଇଛି, ମାତ୍ର ଛାପା ପୁସ୍ତକଗୁଡ଼ିକରେ

ମୌଳିକ ସାରଳା-ସାହିତ୍ୟର ଐତିହାସିକ ଭୌଗୋଳିକ ନାମମାନ ରହିଛି । ମୁଁ ଏହି ନାମମାନଙ୍କ ସାହାଯ୍ୟରେ ହିଁ ମୋର ଆଲୋଚନା କରୁଛି । ତଥାପି ଶୁଦ୍ଧ-ସଂସ୍କରଣ ସାହାଯ୍ୟ ନ ନେଇଥିବାରୁ ଏହି ଆଲୋଚନାରେ ଯଦି ଭ୍ରମ-ପ୍ରମାଦ ରହେ, ତେବେ ଏହା ଶୁଦ୍ଧ-ସଂସ୍କରଣ ହେବାମାତ୍ରେ ସଂଶୋଧନ କରାଯିବ ଓ ଭ୍ରମ-ସ୍ୱୀକାର କରାଯିବ । ଏହା କହିବାପରେ ଶୁଦ୍ଧସଂସ୍କରଣର ଆଳ ଦେଖାଇ ଏହି ଆଲୋଚନାର କେହି ଅନ୍ତରାୟ ସୃଷ୍ଟି କରିବେ ନାହିଁ ବୋଲି ମୋର ଆଶା ।

ସାରଳା-ସାହିତ୍ୟ ସମ୍ବନ୍ଧରେ ପୂର୍ବ ପଣ୍ଡିତମାନଙ୍କର ଲେଖା ମୁଁ ଯଥାସାଧ୍ୟ ପଢ଼ିଛି; କିନ୍ତୁ ଏ ସମସ୍ତଙ୍କ ଲେଖାରେ କେବଳ ଭାଷା ଦୃଷ୍ଟିରୁ ଏହି ସାହିତ୍ୟର ଆଲୋଚନା ହୋଇଥିବାରୁ ଓ ମୋର ଆଲୋଚନା କେବଳ ଐତିହାସିକ ଆଲୋଚନା ହୋଇଥିବାରୁ ସେମାନଙ୍କ ମତ ଉଦ୍ଧାର କରିବାପାଇଁ ମୁଁ କୌଣସି ଅବସର ପାଇନାହିଁ କିମ୍ବା ଭବିଷ୍ୟତରେ ପାଇବି ବୋଲି ଆଶା କରି ପାରୁ ନାହିଁ ।

ବର୍ତ୍ତମାନ ବିଷୟବସ୍ତୁ ଆଲୋଚନା କରାଯାଉ । ମୁସଲମାନ୍ ରାଜତ୍ୱପୂର୍ବରୁ ଯେଉଁ ଯେଉଁ ଐତିହାସିକ ରାଜାମାନଙ୍କ ନାମ ବା ରାଜବଂଶର ନାମ ସାରଳା ମହାଭାରତରେ ବର୍ଣ୍ଣିତ ହୋଇଛି, ତାହାହିଁ ଏଠାରେ ଆଲୋଚ୍ୟ ବିଷୟ । ଏକାଦଶ ଶତାବ୍ଦୀର ପ୍ରଥମ ପାଦରେ ଗଜନୀର ମାହମୁଦ ସତର ଥର ଭାରତ ଆକ୍ରମଣ କରି ଥିଲେହେଁ ଭାରତରେ ମୁସଲ୍‌ମାନ ସାମ୍ରାଜ୍ୟ ସ୍ଥାପିତ ହୋଇ ନ ଥିଲା । ମହମ୍ମଦ ଘୋରୀଙ୍କ ମୃତ୍ୟୁ ପରେ ତାଙ୍କର କ୍ରୀତଦାସ କୁତବୁଦ୍ଦିନ୍ ଆଇବାକ୍ ୧୨୦୬ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ସିଂହାସନ ଆରୋହଣ କରି ଦାସବଂଶ ସ୍ଥାପନ କଲା ପରଠାରୁ ହିଁ ଭାରତରେ ମୁସଲମାନ୍ ରାଜତ୍ୱର ଆରମ୍ଭ ହେଲା ବୋଲି ଧରାଯାଏ । ମୁସଲ୍‌ମାନ୍ ରାଜତ୍ୱର ଅବ୍ୟବହିତ ପୂର୍ବେ ଉତ୍ତର-ଭାରତର ଯେଉଁ ଭୌଗୋଳିକ ପରିସ୍ଥିତି ଥିଲା, ତା'ର ମୋଟାମୋଟି ଚିତ୍ର ସାରଳାଦାସ ସାମାନ୍ୟ କେତୋଟି କଥାରେ କହିଯାଇଛନ୍ତି । ଅବଶ୍ୟ ଉତ୍ତର-ଭାରତ ସହିତ ଦକ୍ଷିଣ-ଭାରତର ଏ ସମୟରେ କୌଣସି ରାଜନୀତିକ ସମ୍ବନ୍ଧ ନ ଥିଲା । ଆଲ୍ଲାଉଦ୍ଦିନ୍ ଖିଲିଜଙ୍କ ସମୟରେ ଉତ୍ତର ଓ ଦକ୍ଷିଣ-ଭାରତ ମଧ୍ୟରେ ରାଜନୀତିକ ଯୋଗସୂତ୍ର ସ୍ଥାପିତ ହେବାରୁ ଉତ୍ତର ଓ ଦକ୍ଷିଣ-ଭାରତ ଗୋଟିଏ ସାମ୍ରାଜ୍ୟରେ ପରିଣତ ହେଲା । ଯେଉଁ ଯେଉଁ ରାଜ୍ୟ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ ସେମାନଙ୍କ ନାମ ବର୍ଣ୍ଣନା କରିବାକୁ ଯାଇ ସାରଳା ଦାସ ଉଦ୍‌ଯୋଗ ପର୍ବରେ ଲେଖିଛନ୍ତି—

ଗୌଡ଼ ଗାର୍ଜ୍ଜନ ତହୁଡ଼ି ଭୋଟାନ ମହ୍ଲାର
କାମାକ୍ଷୀ ବଙ୍ଗଳା ଆଉ ବେଲ୍ଲବଲ୍ଲପୁର ।

କ୍ଷୀର ମାଳବ ଗୁର୍ଜ୍ଜର ପୁଣି ହିଁ ସୌରାଷ୍ଟ୍ର
କାଶୀ କଉଶିକ କୁବ୍‌ଜ ଆଉ ମହାରାଷ୍ଟ୍ର
ଛଜ ବଛଜ କୋଶଳପୁର ବାରସ୍ୱତ
ନେପାଳ ଅରବନ୍ଦ ଯେ ରଜା (ରାଜ୍ୟ) ଗୌଡ଼ ଇତ ।

ଉଦ୍‌ଯୋଗ, ପୃ. ୮୮

ଗୌଡ଼—ସଙ୍କୀର୍ଣ୍ଣ ଅର୍ଥରେ ଏହା ବଙ୍ଗଦେଶକୁ ବୁଝାଉଥିଲା; କିନ୍ତୁ ବ୍ୟାପକ ଅର୍ଥରେ ଏହା ପାଞ୍ଚଟି ରାଜ୍ୟକୁ ବୁଝାଉଥିଲା । ରାଜତରଙ୍ଗିଣୀରେ ପଞ୍ଚଗୌଡ଼ର ଉଲ୍ଲେଖ ରହିଛି ଓ କୌଣସି କୌଣସି ଗ୍ରନ୍ଥରେ ଏହି ପଞ୍ଚଗୌଡ଼ର ନାମ ବଙ୍ଗ, ସାରସ୍ୱତ, (ପୂର୍ବ ପଞ୍ଜାବ), କାନ୍ୟକୁବ୍‌ଜ (ଗଙ୍ଗା ଅବବାହିକା) ମିଥିଳା ( ଉତ୍ତର-ବିହାର ) ଓ ଉତ୍କଳ ( ଉତ୍ତର-ଓଡ଼ିଶା ) ବୋଲି ଉଲ୍ଲେଖ ରହିଛି (୧) । ସାରଳା ଦାସ ଏଠାରେ ବ୍ୟାପକ ଅର୍ଥରେ ହିଁ ଗୌଡ଼ ଶବ୍ଦଟି ବ୍ୟବହାର କରିଛନ୍ତି ।

ଗାର୍ଜ୍ଜନ—ଗଜ୍‌ନା ବା ଗଜନୀ । ଗଜନୀର ମାହମୁଦ୍‌ ସତର ଥର ଭାରତ ଆକ୍ରମଣ କରିଥିବାରୁ ଗଜନୀ ନାମଟି ଭାରତରେ ବହୁଳ ଭାବରେ ପ୍ରଚଳିତ ହୋଇଥିଲା ଓ ଗଜନୀ ଆଫଗାନିସ୍ଥାନର ଅଂଶବିଶେଷ ହୋଇଥିଲେ ମଧ୍ୟ ଗଜନୀ କହିଲେ ସମଗ୍ର ଆଫଗାନିସ୍ଥାନକୁ ବୁଝାଉଥିଲା । ସାରଳା ଦାସ କେବଳ ଗୌଡ଼ ନାମଟି ବ୍ୟବହାର କରି ଭାରତର ଭୌଗୋଳିକ ସୀମାରେଖାକୁ ଓଡ଼ିଶାରୁ ପୂର୍ବ-ପଞ୍ଜାବ (ସାରସ୍ୱତ) ପର୍ଯ୍ୟନ୍ତ ଟାଣିନେଲେ ଏବଂ ତା'ପରେ ଗାର୍ଜ୍ଜନ ନାମଟି ବ୍ୟବହାର କରି ତା' ମଧ୍ୟରେ ପଶ୍ଚିମ-ପଞ୍ଜାବ ଓ ଉତ୍ତର ପଶ୍ଚିମ-ସୀମାନ୍ତ-ପ୍ରଦେଶକୁ ମଧ୍ୟ ଅନ୍ତର୍ଭୁକ୍ତ କରିଦେଲେ; କାରଣ ଏହି ଅଞ୍ଚଳଗୁଡ଼ିକ ପ୍ରକୃତରେ ଗଜନୀ-ସାମ୍ରାଜ୍ୟର

(୧) The Rajatarangini uses the term in a very extended sense. We find in this work the expression Pancha-Gauda which in some texts is taken to embrace, besides Gauda proper, the countries known as Saraswata (Eastern Punjab), Kanyakubja (Gangeticdoab), Mithila (North Bihar) and Utkala (North Orissa). History of Bengal, Dacca University, Vol. IP, 14.

ଅନ୍ତର୍ଭୁକ୍ତ ଥିଲା । ମାହାମୁଦ୍ ଭାରତର ଅନ୍ୟ କୌଣସି ଅଞ୍ଚଳ ତାଙ୍କ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରି ନ ଥିଲେ ହେଁ, ସାହିବଂଶର ଜୟପାଳ, ଆନନ୍ଦପାଳ ଓ ତ୍ରିଲୋଚନ ପାଳଙ୍କୁ ପରାସ୍ତ କରି ଆଫଗାନିସ୍ତାନର ସଂଲଗ୍ନ ପଶ୍ଚିମ-ପଞ୍ଜାବ ଓ ଉତ୍ତର-ପଶ୍ଚିମ ସୀମାନ୍ତ-ପ୍ରଦେଶକୁ ତାଙ୍କ ସାମ୍ରାଜ୍ୟରେ ସାମିଲ କରିଥିଲେ ।

ତହୁଡ଼ି—ତହିଡ଼ି ଗଡ଼ୱାଲ । ତହ୍ରି ବା ତହିଡ଼ି ନାମରେ ଗୋଟିଏ ଦେଶୀୟ ରାଜ୍ୟ ଥିଲା । ବର୍ତ୍ତମାନ ତାହା ଉତ୍ତରପ୍ରଦେଶରେ ସାମିଲ୍ ହୋଇଛି । ତହିଡ଼ି, ଗଡ଼ୱାଲ୍ ଓ ଡେରାଡୁନ ଅଞ୍ଚଳରେ ହରଦ୍ୱାର, ଋଷିକେଶ ଓ ବଦ୍ରିନାଥ ପ୍ରଭୃତି ପବିତ୍ର ସ୍ଥାନ ଥିବାରୁ ଧର୍ମପ୍ରାଣ ହିନ୍ଦୁମାନଙ୍କର ଏହା ଅତ୍ୟନ୍ତ ପ୍ରିୟ ଅଞ୍ଚଳ ଥିଲା । ସାରଳା ଦାସ ତହୁଡ଼ି ନାମ ଦ୍ୱାରା ହିମାଳୟର ସମଗ୍ର ପାଦଗିରି ଅଞ୍ଚଳକୁ ସୂଚାଇ ଦେଇଛନ୍ତି ।

ଭୋଟାନ—ପ୍ରାଚୀନ କାଳରେ ତିବ୍ବତକୁ ଭୋଟଦେଶ କୁହାଯାଉଥିଲା ଓ ଏହି ଭୋଟର ଅନ୍ତ ବା ସୀମାନ୍ତରେ ଯେଉଁ ଦେଶ ଥିଲା, ତାକୁ ଭୋଟାନ୍ତ କୁହା-ଯାଉଥିଲା । ପରବର୍ତ୍ତୀ କାଳରେ ଭୋଟାନ୍ତ ଶବ୍ଦରୁ ଭୋଟାନ୍ ନାମଟିର ଉତ୍ପତ୍ତି ହେଲା । ଭୋଟାନ୍ ରାଜ୍ୟ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅଛି ।

ମହ୍ଲାର—ମହ୍ଲାର ଦେଶର ଅବସ୍ଥିତି ସମ୍ବନ୍ଧରେ ଲେଖକ ଠିକ୍ ଭାବରେ କିଛି କହିପାରୁ ନାହିଁ । ତେବେ ଏହା ହିମାଳୟ ଅଞ୍ଚଳରେ ଅବସ୍ଥିତ ଥିଲା ବୋଲି ମନେହୁଏ । ମହ୍ଲାର ରାଗଣୀ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ଅଛି । ମହ୍ଲାର ନାମଟି କାଳ୍ପନିକ ନୁହେଁ । ଯାଯାବର ଜାତିକୁ ମଧ୍ୟ ମହ୍ଲାର କୁହାଯାଏ । ମହ୍ଲାର ନାମ ଦ୍ୱାରା କବି ବୋଧହୁଏ ନାଗାମିକୋ ପ୍ରଭୃତି ଉପଜାତି ଅଞ୍ଚଳକୁ ସୂଚାଇଛନ୍ତି ।

କାମାକ୍ଷୀ—ଆସାମ । ଆସାମରେ କାମାକ୍ଷୀ ଦେବୀ ଥିବାରୁ ସାରଳା ଦାସ ଏ ଦେଶକୁ କାମାକ୍ଷୀ ବୋଲି ବର୍ଣ୍ଣନା କରିଛନ୍ତି । ଆସାମ ପ୍ରାଚୀନ କାଳରେ କାଉଁରି ଦେଶ, କାମରୂପ ଓ ପ୍ରାଗ ଜ୍ୟୋତିଷପୁର ନାମରେ ମଧ୍ୟ ଅଭିହିତ ହେଉଥିଲା । କବି ଏହି ନାମଗୁଡ଼ିକ ମଧ୍ୟ ତାଙ୍କ ମହାଭାରତର କୌଣସି କୌଣସି ଅଂଶରେ ଉଲ୍ଲେଖ କରିଛନ୍ତି । ବଙ୍ଗଦେଶ ସମତଳ-ଅଞ୍ଚଳ ହୋଇଥିବାରୁ ସମୁଦ୍ରଗୁପ୍ତଙ୍କ ଏଲାହାବାଦ ପ୍ରଶସ୍ତିରେ ଏହାକୁ ସମତଟ ବୋଲି ବର୍ଣ୍ଣନା କରାଯାଇଛି । ଏହି ସମତଟ ଦେଶର ସଂଲଗ୍ନ ଯେଉଁ ପାର୍ବତ୍ୟ ଅଞ୍ଚଳ ଅଛି, ତାହା ଅସମ (ଅସମତଳ) ନାମରେ ଅଭିହିତ ହେଉଥିଲା । ଏହି ଅସମ ଶବ୍ଦରୁ ଆଧୁନିକ ଆସାମ ନାମଟିର ଉତ୍ପତ୍ତି ହୋଇଛି ।

ବଙ୍ଗାଳା—ସମଗ୍ର ବଙ୍ଗଭାଷୀ ଅଞ୍ଚଳ ବଙ୍ଗଳା ନାମରେ ଅଭିହିତ ହେଉ-ଥିଲେ ହେଁ ପୂର୍ବବଙ୍ଗ ହିଁ ବେଶୀ ଭାବରେ ବଙ୍ଗଳା ଦେଶ ବୋଲି ପରିଚିତ ଥିଲା । ଏହି ଦେଶର ବିଭିନ୍ନ ଅଞ୍ଚଳ ରାଢ଼ (ଦକ୍ଷିଣ-ପଶ୍ଚିମ ଅଂଶ), ବରେନ୍ଦ୍ର (ଉତ୍ତର ଅଂଶ) ଗୌଡ଼ (ମାଲଦା ଓ ତତ୍ସନ୍ନିହିତ ଅଂଶ) ଓ ବ୍ୟାଘ୍ରତଟୀ (ସୁନ୍ଦର ବନ ଅଂଶ) ନାମରେ ମଧ୍ୟ ଅଭିହିତ ହେଉଥିଲା ।

ବେଲ୍‌ବଳୀପୁର—ମାଲ୍‌ଦାଠାରୁ ଆରମ୍ଭ କରି ଢାକା, ମୈମନସିଂହ, ନୂଆଖାଲି, ଚଟାଗଙ୍ଗ ଇତ୍ୟାଦି ଅଞ୍ଚଳକୁ ହିଁ ସାରଳା ଦାସ ବେଲାଳଦେଶ (ବଲ୍ଲାଳ-ସେନର ଦେଶ) ବା ବେଲାବଳୀପୁର ବୋଲି ଆଖ୍ୟାତ କରିଛନ୍ତି । ଏହା ତାଙ୍କର ନିଜସ୍ୱ ସୃଷ୍ଟି । ବେଲାଳଦେଶ ସମ୍ବନ୍ଧରେ ପରେ ଅଧିକ ଆଲୋଚନା କରାଯିବ ।

କ୍ଷୀର—ମତ୍ସ୍ୟଦେଶ (ରାଜପୁତନା ଅଞ୍ଚଳ)କୁ ସାରଳ ଦାସ କେତେବେଳେ କେତେବେଳେ କ୍ଷୀର ଦେଶ ବୋଲି ବର୍ଣ୍ଣନା କରିଛନ୍ତି । ମତ୍ସ୍ୟପତି ବିରାଟ ରାଜାଙ୍କର ଏତେ ଗାଈ ଥିଲେ ଯେ ସେମାନଙ୍କର ଗୋଟିଏ ଚରକୁ ଦୁହିଁ ଭୂଇଁରେ ପକାଇ-ଦେବାବେଳେ ଗୋଟିଏ କ୍ଷୀରନଦୀ ବହି ଯାଉଥିଲା । ଏ କଥା କବି ବିରାଟପର୍ବରେ ବର୍ଣ୍ଣନା କରିଛନ୍ତି । ଏହି ହେତୁରୁ ସେ ମତ୍ସ୍ୟଦେଶ ବା ରାଜପୁତନା ଅଞ୍ଚଳକୁ କ୍ଷୀରଦେଶ ବୋଲି ମଧ୍ୟ ବର୍ଣ୍ଣନା କରିଛନ୍ତି ।

ମାଳବ—ଆଧୁନିକ ମଧ୍ୟପ୍ରଦେଶର ମାଲ୍ୱା ଅଞ୍ଚଳ ହିଁ ପ୍ରାଚୀନ କାଳରେ ମାଳବଦେଶ ନାମରେ ଅଭିହିତ ହେଉଥିଲା । ପଶ୍ଚିମ ମାଳବର ରାଜଧାନୀ ଥିଲା ଉଜ୍ଜୟିନୀ ଓ ପୂର୍ବ ମାଳବର ରାଜଧାନୀ ଥିଲା ସାଞ୍ଚି ନିକଟବର୍ତ୍ତୀ ବିଦିଶା ।

ଗୁଞ୍ଜର(କୁଞ୍ଜର)—କାଲଞ୍ଜର । ମୁଦ୍ରା-ପ୍ରମାଦ ହେତୁରୁ ହେଉ ବା ନକଲକାରୀଙ୍କ ଅସାବଧାନତା ହେତୁରୁ ହେଉ କୁଞ୍ଜର ଶବ୍ଦଟି ଏଠାରେ ଗୁଞ୍ଜରରେ ପରିଣତ ହୋଇଛି । ଗୁଞ୍ଜର ଦୁର୍ଗ ବା ଦେଶର କଥା ସାରଳା ଦାସ କୁତ୍ରାପି କହି ନାହାନ୍ତି, ମାତ୍ର ମାଳବ ପରେ ପରେ ସେ କୁଞ୍ଜର ନାମଟିକୁ ବାରମ୍ବାର ଉଲ୍ଲେଖ କରିଛନ୍ତି । କାଲଞ୍ଜର ବା କୁଞ୍ଜର ବୁନ୍ଦେଲଖଣ୍ଡର ଚନ୍ଦ୍ରବଂଶୀୟ ଚନ୍ଦେଲ ରାଜାମାନଙ୍କ ପ୍ରଧାନ ଦୁର୍ଗ ଥିଲା ଓ ସେମାନଙ୍କ ରାଜଧାନୀ ଥିଲା ମହୋବା । ବୁନ୍ଦେଲଖଣ୍ଡ ଅଞ୍ଚଳ ପୂର୍ବେ ଚେଦୀ ରାଜ୍ୟ ନାମରେ ଅଭିହିତ ହେଉଥିଲା । ପରେ ଚନ୍ଦେଲ ବଂଶ ଅମଳରେ ଏହା ଯାଯାକାଭୁକ୍ତି ନାମରେ ପରିଚିତ ହେଲା । ବୁନ୍ଦେଲଖଣ୍ଡ ମାଳବର ସନ୍ନିହିତ ଅଞ୍ଚଳ । ଏଣୁ ସାରଳା ଦାସ ମାଳବ ପରେ ପରେ କୁଞ୍ଜର ବା କାଲଞ୍ଜର ଦୁର୍ଗ କଥା ଉଲ୍ଲେଖ କରିଛନ୍ତି । କାଲଞ୍ଜର ଦୁର୍ଗ ଇତିହାସରେ କି ଭୂମିକା ନେଇଥିଲା, ତାହା

ଇତିହାସର ପୃଷ୍ଠା ଓଲଟାଇଲେ ସହଜରେ ଜଣାପଡ଼େ । ଏହାକୁ ଗଜନୀର ମାହମୁଦ ଆକ୍ରମଣ କରିଥିଲେ ଓ ଏହାକୁ ଅବରୋଧ କରିବାକୁ ଯାଇ ଶେର୍‌ସାହ ପ୍ରାଣ ହରାଇ-ଥିଲେ । କୃଞ୍ଜର ବା କାଲିଞ୍ଜର ସମ୍ବନ୍ଧରେ ମଧ୍ୟ ପରେ ଆଲୋଚନା କରାଯିବ ।

ସୌରାଷ୍ଟ୍ର—କାଥିଆଓ୍ୱାଡ଼୍; କିନ୍ତୁ ବ୍ୟାପକ ଅର୍ଥରେ ଏହା ସମଗ୍ର ଗୁଜରାଟ ଅଞ୍ଚଳକୁ ମଧ୍ୟ ବୁଝାଉଥିଲା ।

କାଶୀ—ବାରାଣସୀ ଅଞ୍ଚଳ । କାଶୀନାମ ଦ୍ୱାରା ଆଧୁନିକ ଉତ୍ତର-ପ୍ରଦେଶର ସମଗ୍ର ପୂର୍ବାଞ୍ଚଳକୁ ସୂଚାଇ ଦିଆଯାଇଛି ।

କଉଶିକ-କୁବ୍‌ଜ— ବିଖ୍ୟାତ ନଗରୀ କାନ୍ୟକୁବ୍‌ଜ (କନୌଜ) କୌଶିକ ନାମରେ ମଧ୍ୟ ଆଖ୍ୟାତ ହେଉଥିଲା (୩) । ଉତ୍ତର-ପ୍ରଦେଶ ଫରୁକାବାଦ ଜିଲ୍ଲାସ୍ଥ ଫଠଗଡ଼ର ୩୩ ମାଇଲ୍ ଦୂରବର୍ତ୍ତୀ ଦକ୍ଷିଣ-ପୂର୍ବ ଦିଗରେ କନୌଜ ଅବସ୍ଥିତ । ଏହା ହର୍ଷବର୍ଦ୍ଧନଙ୍କ ଓ ପ୍ରତିହାର ରାଜବଂଶର ରାଜଧାନୀ ଥିଲା; ଶେଷରେ ଏହା ଗହଡ଼ବାଲ ରାଜବଂଶର ମଧ୍ୟ ରାଜଧାନୀ ଥିଲା ଓ ଏହି ବଂଶର ଶେଷ ସ୍ୱାଧୀନ ରାଜା ଜୟଚନ୍ଦ୍ର ପ୍ରଥମେ ମହମ୍ମଦ ଘୋରୀଙ୍କ ସଙ୍ଗେ ସଖ୍ୟ ସ୍ଥାପନ କରି ପରେ ତାଙ୍କ ଦ୍ୱାରା ପରାସ୍ତ ଓ ନିହତ ହୋଇଥିଲେ ।

ମହାରାଷ୍ଟ୍ର—ସୁବିଖ୍ୟାତ ମହାରାଷ୍ଟ୍ର ଦେଶ ବା ଆଧୁନିକ ବମ୍ବେ ରାଜ୍ୟ ।

ଛନ୍ଦ ବଛନ୍ଦ—ସାରଳା ଦାସ କେଉଁ ରାଜ୍ୟକୁ ଛନ୍ଦ ବା ଛନ୍ଦ-ବଛନ୍ଦ ବୋଲି ବର୍ଣ୍ଣନା କରିଛନ୍ତି, ତାହା ଲେଖକ ସ୍ଥିର କରିପାରିନାହିଁ । ସେ ବୋଧହୁଏ ବୁନ୍ଦେଲଖଣ୍ଡର ଛନ୍ଦପୁରକୁ ଛନ୍ଦ ବା ଛନ୍ଦ-ବଛନ୍ଦ ବୋଲି କହିଛନ୍ତି ।

କୋଶଳପୁର—ସଗର, ଦାମୋହ, ଜବଲପୁର, ମାଣ୍ଡାଲା, ବାଲାଘପୁର, ରାୟପୁର, ଛତିଶଗଡ଼, ସମ୍ବଲପୁର-ସୋନପୁର ପ୍ରଭୃତି ବିସ୍ତୀର୍ଣ୍ଣ ଅଞ୍ଚଳ ଦକ୍ଷିଣ-କୋଶଳ ବା ମହାକୋଶଳ ନାମରେ ଅଭିହିତ ହେଉଥିଲା । ବସ୍ତୁତଃ ଆଧୁନିକ ମଧ୍ୟ-

---

(୩) Kasi, of course, is Baranasi and Kusika Kanyakubja or modern Kanauj.

Roma Neogy, History of the Gahadaualas Calcutta-1959, p-46

ପ୍ରଦେଶ ମାଳବ ଚେଦୀ ଓ ମହାକୋଶଳ ଏହି ତିନୋଟି ପ୍ରାଚୀନ ରାଜ୍ୟର ସମ୍ମିଶ୍ରଣରେ ସଂଗଠିତ ହୋଇଛି । ସାରଳା ଦାସ ଏଠାରେ ମହାକୋଶଳକୁ କୋଶଳପୁର ବୋଲି ବର୍ଣ୍ଣନା କରିଛନ୍ତି ।

ବାରସ୍ୱତା—ଲେଖକ ଏହାର ଅବସ୍ଥିତି ସ୍ଥିର କରିପାରିନାହାଁନ୍ତି ।

ନେପାଳ—ସୁବିଖ୍ୟାତ ନେପାଳ ରାଜ୍ୟ ।

ଅରବନ୍ଦ—ଏହାର ଅବସ୍ଥିତି ମଧ୍ୟ ଲେଖକ ସ୍ଥିର କରିପାରିନାହାଁନ୍ତି, କିନ୍ତୁ ଅନୁମିତ ହୁଏ ଯେ ସିକିମକୁ ହିଁ କବି ଅରବନ୍ଦ ଦେଶ ବୋଲି ବର୍ଣ୍ଣନା କରିଛନ୍ତି ।

ରାଜ୍ୟ ଗୌଡ଼—ଗୌଡ଼ ନାମ ଦ୍ୱାରା କବି ପାଞ୍ଚୋଟି ରାଜ୍ୟର ସୂଚନା ଦେଇଥିବା କଥା ଆଗରୁ କୁହାଯାଇଛି । କିନ୍ତୁ ବଙ୍ଗ ଦେଶର ଅଂଶବିଶେଷ ଯେ ଗୌଡ଼ ନାମରେ ଅଭିହିତ ହେଉଥିଲା, ତାହା ଏଠାରେ ପୁନର୍ବାର ଉଲ୍ଲେଖ କରାଯାଇଛି ।

ମାତ୍ର ଛ'ଟି ଧାଡ଼ିରେ ସାରଳା ଦାସ ସମଗ୍ର ଉତ୍ତର ଭାରତର ଗୋଟିଏ ବ୍ୟାପକ ଭୌଗୋଳିକ ଚିତ୍ର ଦେଇଛନ୍ତି । ଏ ଚିତ୍ରରୁ କୌଣସି ବିଶିଷ୍ଟ ଅଞ୍ଚଳ ବାଦ୍ ପଡ଼ିନାହିଁ । ତାଙ୍କ ସମୟରେ ଭୂଗୋଳ ପୁସ୍ତକ ନ ଥିଲା କିମ୍ବା ମ୍ୟାପ୍ ମଧ୍ୟ ନ ଥିଲା । ଏଣୁ ମନେହୁଏ ଯେ, ସିଦ୍ଧ କବିଙ୍କ ନଖ-ଦର୍ପଣରେ ହିଁ ସମଗ୍ର ଭାରତବର୍ଷର ଭୌଗୋଳିକ ଚିତ୍ର ପ୍ରତିଫଳିତ ହୋଇଉଠୁଥିଲା । କୌଣସି ପ୍ରାଚୀନ ଗ୍ରନ୍ଥରେ ଏପରି ନିଖୁଣ ଭୌଗୋଳିକ ଚିତ୍ର ଥିବା କଥା ଲେଖକଙ୍କୁ ଜଣାନାହିଁ । ସାରଳା ଦାସ ଉଲ୍ଲିଖିତ ଛଅଟି ଧାଡ଼ିରେ ଉତ୍ତର ଭାରତର ଯେଉଁ ଭୌଗୋଳିକ ଚିତ୍ର ଦେଇଛନ୍ତି, ତାହା ମହାଭାରତ ଯୁଗର ଭୌଗୋଳିକ ଚିତ୍ର ନୁହେଁ, ତାହା ପ୍ରାଗ୍ ମୁସଲମାନ ଯୁଗର ହିନ୍ଦୁ ଉତ୍ତର ଭାରତର ଭୌଗୋଳିକ ଚିତ୍ର । ସେତେବେଳକୁ ମୁସଲମାନମାନେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ପଶ୍ଚିମ ପଞ୍ଜାବକୁ ଅଧିକାରଭୁକ୍ତ କରିସାରିଲେଣି । ଏଣୁ କବି ଗାର୍ଜନ ବା ଗଜନୀ ନାମଟି ଉଲ୍ଲେଖ କରି ମୁସଲମାନ ଅଧିକୃତ ଅଞ୍ଚଳମାନଙ୍କୁ ମଧ୍ୟ ସୂଚାଇ ଦେଇଛନ୍ତି ।

ଏହି ଭୌଗୋଳିକ ପୃଷ୍ଠଭୂମିରେ ସାରଳା ଦାସ କେତେକ ଐତିହାସିକ ରାଜବଂଶ ତଥା ରାଜାଙ୍କର ନାମ ଉଲ୍ଲେଖ କରିଯାଇଛନ୍ତି । କିନ୍ତୁ ଭୌଗୋଳିକ ନାମ-ଗୁଡ଼ିକୁ ପ୍ରକାଶ କରିବା ତାଙ୍କ ପକ୍ଷରେ ଯେତେ ସହଜ ହୋଇଛି, ପ୍ରାଚୀନ ରାଜବଂଶ ଓ ରାଜାମାନଙ୍କ ନାମମାନ ପ୍ରକାଶ କରିବା ସେତେ ସହଜ ହୋଇନାହିଁ । ସେ ମହାଭାରତ ଲେଖୁଥିଲେ । ଏଣୁ ତାହାରି ଜରିଆରେ ଐତିହାସିକ ନାମମାନ ପ୍ରକାଶ କରିବା ସହଜସାଧ୍ୟ ନୁହେଁ । ତା'ଛଡ଼ା ଐତିହାସିକ ନାମଗୁଡ଼ିକୁ ଯଥାଯଥ ଭାବରେ ପ୍ରକାଶ କଲେ ତାଙ୍କ ଗ୍ରନ୍ଥର ମହତ୍ତ୍ୱ ଓ ପବିତ୍ରତା କ୍ଷୁଣ୍ଣ ହେବାର ଆଶଙ୍କା ମଧ୍ୟ

ଥିଲା । ଏହି ହେତୁରୁ ସେ ପ୍ରକୃତ ଐତିହାସିକ ନାମଗୁଡ଼ିକୁ ଯଥାସମ୍ଭବ ପ୍ରଚ୍ଛନ୍ନ ବିକୃତ ଓ ରୂପାନ୍ତରିତ ଆକାରରେ ପ୍ରକାଶ କରି ଯାଇଛନ୍ତି । ସାରଳା ମହାଭାରତରେ ଥିବା ଏହିପରି ପ୍ରକୃତ ଓ ପରିବର୍ତ୍ତିତ ଐତିହାସିକ ନାମମାନଙ୍କ ଉଦାହରଣ ନିମ୍ନରେ ଦିଆଗଲା ।

(୧) କର୍ଣ୍ଣପର୍ବର ଶ୍ୟେନପକ୍ଷୀର ପୂର୍ବଜନ୍ମ ବିବରଣ ନାମକ ଉପାଖ୍ୟାନରେ କବି ଲେଖିଛନ୍ତି—

ରୁତ୍ପୃନ୍ନସେନ ନାମରେ କାଶ୍ମୀର ନରେଶ
ପାରଧି କରିବା ପାଇଁ କରି ଅଭିଲାଷ,
ସାତ କ୍ଷୌଣୀ ସୈନ୍ୟ ସାତ ସହସ୍ରେକ ଗଜ
ଘେନିଣ ବାହାର ହେଲେ ରାଜା ହୋଇ ସଜ .

ଏଠାରେ ଉତ୍ପଳ ସେନ ନାମଟି ମୁଦ୍ରା ପ୍ରମାଦ ହେତୁରୁ ହେଉ ବା ନକଲ-କାରଙ୍କ ଅସାବଧାନତା ହେତୁରୁ ହେଉ ରୁତ୍ପୃନ୍ନ ସେନରେ ପରିଣତ ହୋଇଛି । ରୁତ୍ପୃନ୍ନସେନ ବୋଲି କୌଣସି ରାଜାର ନାମ ହୋଇ ନ ପାରେ । ଉତ୍ପଳସେନ ବୋଲି କାଶ୍ମୀରର କୌଣସି ରାଜା ନ ଥିଲେ, ମାତ୍ର ଏହି ଦେଶରେ ଉତ୍ପଳ ବଂଶ ନାମରେ ଗୋଟିଏ ରାଜବଂଶ ଥିଲା । କର୍କୋଟ ରାଜବଂଶକୁ ଧ୍ୱଂସ କରି ଅବନ୍ତୀ ବର୍ମନ୍ (ଖ୍ରୀ.୮୫୫-୮୮୩) କାଶ୍ମୀରରେ ଉତ୍ପଳ ରାଜବଂଶ ସ୍ଥାପନ କରିଥିଲେ ।

(୨) ଅଶ୍ୱମେଧ ପର୍ବର ଅଶ୍ୱ ସହିତ ଅର୍ଜ୍ଜୁନର ଚତୁର୍ଦ୍ଦିଗ ଭ୍ରମଣ ବୃତ୍ତାନ୍ତରେ କବି ଲେଖିଛନ୍ତି—

କ୍ଷୀର ଦେଶେ ପ୍ରବେଶିଲେ ବୀର ଫାଲଗୁନ
ଅଶ୍ୱ ସଙ୍ଗରେ ଅନେକ ରତ୍ନ ଅଛି ଘେନ ।
ଧର୍ମସେନ ବୋଲି ଅଟେ ତହିଁର ନୃପତି
ସେ ରାଜା ଅଶ୍ୱକୁ ଯାଇ ଧଇଲା ତତ୍ପତି ।

ଧର୍ମପାଳ ବଙ୍ଗଦେଶର ରାଜା ଥିଲେ ଓ ଖ୍ରୀଷ୍ଟାବ୍ଦ ୭୭୦ରୁ ୮୧୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାହାଙ୍କୁ କବି ଧର୍ମସେନ ବୋଲି ବର୍ଣ୍ଣନା କରିଛନ୍ତି । ବଙ୍ଗ-ଦେଶକୁ ମଧ୍ୟ ଯେ କ୍ଷୀରଦେଶ ବୋଲି କୁହାଯାଉଥିଲା, ତାହା ପରେ ପ୍ରଦର୍ଶିତ ହେବ ।

(୩) ବଙ୍ଗଦେଶର ପାଳବଂଶୀୟ ରାଜାମାନଙ୍କ ସମସାମୟିକ ଓଡ଼ିଶାର ଭୌମରାଜବଂଶ ସମ୍ବନ୍ଧରେ ଆମ ଦେଶର କିମ୍ବଦନ୍ତୀ ଏକାବେଳକେ ନୀରବ । ତାମ୍ରଲେଖ ଓ ଶିଳାଲେଖରୁ ହିଁ ଭୌମବଂଶ ସମ୍ବନ୍ଧରେ ଯତ୍‌ସାମାନ୍ୟ ଇତିହାସ

ଜଣାଯାଇଛି । ଭୌମମାନେ ଭୂୟାଁବଂଶୀୟ ଥିଲେ । ଏହି ହେତୁରୁ ଆମର ନୈଷ୍ଠିକ ଶାସ୍ତ୍ର ପୁରାଣରେ ଏ ବଂଶର କୌଣସି କିମ୍ବଦନ୍ତୀ ସ୍ଥାନ ପାଇନାହିଁ, ମାତ୍ର ସାରଳା ଦାସ ଭୌମମାନଙ୍କ ସମ୍ବନ୍ଧରେ କେତେକ କିମ୍ବଦନ୍ତୀ ଲେଖିଯାଇଛନ୍ତି । ଏହି କିମ୍ବଦନ୍ତୀଗୁଡ଼ିକ ଆଦ୍ୟପର୍ବର କୁନ୍ତୀଙ୍କ ସହ ପାଣ୍ଡବମାନଙ୍କର ଭିକ୍ଷାଚରଣ, ଶିବପୁରେ ଚଣ୍ଡାଳ ବଧ ଓ ଭୀମଙ୍କର ରାଜ୍ୟାଭିଷେକ ଏବଂ ବଷ୍ଟୁକର ପଣ୍ଡାଙ୍କ ଶିବପୁର ରାଜ୍ୟଲାଭ ଆଖ୍ୟାୟିକାମାନଙ୍କରେ ସ୍ଥାନ ପାଇଛି ( ଆଦ୍ୟ, ପୃ. ୨୧୭-୨୨୮ । ସଂସ୍କୃତ ମହାଭାରତ ଅନୁସାରେ ଶିବପୁର ମାଳବ ଦେଶରେ ଅବସ୍ଥିତ ଥିଲା ଓ ବର୍ତ୍ତମାନ ମଧ୍ୟ ଏହା ଭୋପାଳର ସନ୍ନିହିତ ଏବଂ ଶିଓପୁର ନାମରେ ଅଭିହିତ ହେଉଛି । ଏହା ନିକଟରେ ବକାସୁରର ଲୀଳାସ୍ଥଳୀ ଏକଚକ୍ରା ଥିଲା । ଏହି ଏକଚକ୍ରା ନଗର ଇଦ୍ଧା ନିକଟସ୍ଥ ଚକ୍ରନଗର ନାମରେ ବର୍ତ୍ତମାନ ଅଭିହିତ ହେଉଛି ବୋଲି ପଣ୍ଡିତମାନେ ସ୍ଥିର କରିଛନ୍ତି; କିନ୍ତୁ ସାରଳା ଦାସ ଶିବପୁରକୁ ଓଡ଼ିଶାକୁ ଘେନି-ଆସିଛନ୍ତି ଓ ତାକୁ ଉଡ୍ରଦେଶୀ ଶିବପୁର ବୋଲି ବାରମ୍ବାର ବର୍ଣ୍ଣନା କରିଛନ୍ତି—

ଗମନ୍ତି ପାଣ୍ଡବେ ଉଡ୍ରଦେଶେ ଶିବପୁରେ
ଦେଖନ୍ତି ଉଆସ ଏକ ନଗର ବାହାରେ ।

ଆଦ୍ୟ, ପୃ. ୨୧୮

ଉଡ୍ରଦେଶୀ ଶିବପୁର ପଶ୍ଚିମ ଭାଗର
ଦୁଇଲକ୍ଷ ପାଞ୍ଚଶତ ସହସ୍ର ଯେ ଘର । ଆଦ୍ୟ, ପୃ. ୨୧୯

ଖାଲି ସେତିକି ନୁହେଁ, ଉଡ୍ରଦେଶୀ ଶିବପୁର ନିକଟରେ ଯେ ଗନ୍ଧନଦୀ ପ୍ରବାହିତ ହେଉଥିଲା, ତା' ମଧ୍ୟ କବି ପ୍ରକାଶ କରିଛନ୍ତି ।

ବାଳକଙ୍କୁ କରୁଡ଼ିଲେ ଧରି ଦ୍ୱିଜବରେ
ଜଣେ ନ ରହିଲେ ସେହି ଉଡ୍ରଦେଶ ପୁରେ ।
ଆସ୍ଥାନ କରି ବସିଲେ ଗନ୍ଧନଦୀ କୂଳେ
ମେଳା ହୋଇଲା ଅନନ୍ତ ବଟବୃକ୍ଷ ତଳେ । ଆଦ୍ୟ, ପୃ. ୨୨୫

×   ×   ×

ଆମ୍ଭର ଏ ରାଜ୍ୟେ ସ୍ୱାମୀ ଦେଲୁ ତୋତେ ପାଟ
ଏ ବେନି ନଗରେ ତୁହି ହେଲୁ ସମରାଟ ।
ଏହି ଗନ୍ଧନଦୀ ନାମେ ଅଟଇ ପ୍ରସିଦ୍ଧି
ଅନନ୍ତ ବଟ ଏ ଅଛି ବଇକୁଣ୍ଠ ଭେଦି । ଆଦ୍ୟ, ପୃ. ୨୨୫

ଏକାମ୍ରପୁରାଣ, ସ୍ୱର୍ଣ୍ଣାଦ୍ରିମହୋଦୟ, ଏକାମ୍ରଚନ୍ଦ୍ରିକା ପ୍ରଭୃତି ସଂସ୍କୃତ ଗ୍ରନ୍ଥରେ ଭୁବନେଶ୍ୱର ଉପକଣ୍ଠରେ ପ୍ରବାହିତା ଗଙ୍ଗୁଆ ନଦୀକୁ ଗନ୍ଧବତୀ ବା ଗନ୍ଧନଦୀ ବୋଲି ବର୍ଣ୍ଣନା କରାଯାଇଛି । ଏଠାରେ ସାରଳାଦାସ ଗନ୍ଧନଦୀକୁ ଉତ୍ତ୍ରଦେଶ ଶିବପୁର ସହିତ ସଂଶ୍ଳିଷ୍ଟ କରିଥିବାରୁ ଏହି ଶିବପୁର ଭୁବନେଶ୍ୱର ଛଡ଼ା ଆଉ କୌଣସି ସ୍ଥାନ ହୋଇ ନ ପାରେ । ଭୁବନେଶ୍ୱରରେ ବହୁ ଶିବମନ୍ଦିର ଥିବାରୁ ଏହାକୁ ଉତ୍ତ୍ରଦେଶୀ ଶିବପୁର ବୋଲି କହିବା ଯଥାର୍ଥ ମଧ୍ୟ ହୋଇଛି । ଭୁବନେଶ୍ୱର ଭୌମରାଜତ୍ୱରେ ଗୋଟିଏ ପ୍ରଧାନ ସାଂସ୍କୃତିକ କେନ୍ଦ୍ର ଥିଲା । ଏହାର ଅନତିଦୂର ଉଦୟଗିରିର ଗଣେଶ ଗୁମ୍ଫାରେ ଓ ଧଉଳିଗିରିର ଗୋଟିଏ ଗୁମ୍ଫାରେ ଭୌମରାଜା ଶାନ୍ତିକର ଦେବଙ୍କ ରାଜତ୍ୱର ଶିଳାଲେଖମାନ ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ଅଛି । ସାରଳା ଦାସ ଉଲ୍ଲିଖିତ ଆଖ୍ୟାୟିକା ମାନଙ୍କରେ ଶାନ୍ତିକରଙ୍କୁ ଶାନ୍ତିକ ନାମରେ ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି ଯେ ଉଦ୍ଦାଳକ ନାମକ ଜଣେ ବ୍ରାହ୍ମଣଙ୍କ ଔରସରେ ଶାନ୍ତିକନାମକ ଚଣ୍ଡାଳର ଶ୍ରିୟାନାମ୍ନୀ କନ୍ୟାର ଦଶ ପୁତ୍ର ଜାତ ହୋଇଥିଲେ । ଏମାନେ ଶିବପୁର ଅଧିକାର କରିଥିଲେ ଓ ପ୍ରତିବର୍ଷ ବ୍ରାହ୍ମଣମାନଙ୍କ ସଙ୍ଗରେ ଯୁଦ୍ଧ କରୁଥିଲେ । ଶିବପୁରର ବିଷ୍ଟୁକର ପଣ୍ଡାଙ୍କ ଘରେ ପାଣ୍ଡବମାନେ ଥିବା ବେଳେ ଏହି ଯୁଦ୍ଧ ସଂଘଟିତ ହୋଇଥିଲା ଓ ଭୀମ ଏହି ଯୁଦ୍ଧରେ ବ୍ରାହ୍ମଣ ଠାରୁ ଜାତ ସମସ୍ତ ଚଣ୍ଡାଳଙ୍କୁ ଧ୍ୱଂସ କରିଦେଇ ଶିବପୁରରେ ରାଜା ହୋଇଥିଲେ । ପରେ ଶିବପୁରରେ ବିଷ୍ଟୁକର ପଣ୍ଡାଙ୍କୁ ରାଜା କରାଯାଇଥିଲା । ଏହା ହିଁ ଆଖ୍ୟାୟିକାମାନଙ୍କର ସାରକଥା । ଆଗରୁ କୁହାଯାଇଛି ଯେ ଭୌମମାନେ ଭୂୟାଁବଂଶୀୟ ଥିବାରୁ ସେମାନେ ଓଡ଼ିଶାର କିମ୍ବଦନ୍ତୀରେ ସ୍ଥାନ ପାଇନାହାନ୍ତି । ସାରଳା ଦାସ ଶାନ୍ତି କରଙ୍କୁ ଚଣ୍ଡାଳ ବୋଲି ବର୍ଣ୍ଣନା କରିଥିଲେ ହେଁ ଭୌମବଂଶକୁ ଓଡ଼ିଶାର କିମ୍ବଦନ୍ତୀରେ ସ୍ଥାନ ଦେଇ ତାଙ୍କର ମହତ୍ତ୍ୱର ପରିଚୟ ଦେଇଛନ୍ତି ।

(୪) ଭୌମବଂଶ ପରେ ଓଡ଼ିଶାରେ କେଶରୀ ସୋମବଂଶୀମାନେ ରାଜତ୍ୱ କରିଥିଲେ; କିନ୍ତୁ ଆମ ଦେଶର ସମସ୍ତ କିମ୍ବଦନ୍ତୀରେ ଏହି ବଂଶକୁ କେଶରୀବଂଶ ବୋଲି କୁହାଯାଇଛି । ସାରଳାଦାସ କେଶରୀବଂଶର ମଧ୍ୟ ଉଲ୍ଲେଖ କରିଛନ୍ତି । ଭୀଷ୍ମ ପର୍ବରେ ବିଭିନ୍ନ ରାଜବଂଶର ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି—

ଅମଳାନ ସୋମବଂଶ ମୂଳ ଏହାଙ୍କର
ଭୋଜ ଅନ୍ଧକ ବଂଶ ଯେ କୌରବ କେଶରୀ । ଭୀଷ୍ମ, ପୃ. ୧୮

ବମ୍ବେ ରାଜ୍ୟର ପୂର୍ବାଞ୍ଚଳ ବେରାରକୁ ( ନାଗପୁର, ଓ୍ୱାରଧା, ଅମରାବତୀ ଭଣ୍ଡାରା ଇତ୍ୟାଦି ଅଞ୍ଚଳକୁ ) ପୂର୍ବେ ବିଦର୍ଭ ଓ କୁନ୍ତିଭୋଜ ବୋଲି କୁହା-

ଯାଉଥିଲା । କୁନ୍ତିଦେଶରୁ ଆସିଥିବାରୁ ପଣ୍ଡୁଙ୍କ ପ୍ରଥମା ପତ୍ନୀ କୁନ୍ତୀ ନାମରେ ଅଭିହିତ ହୋଇଥିଲେ । ଏହି କୁନ୍ତିଭୋଜ ରାଜ୍ୟରେ ଭୋଜବଂଶ ରାଜତ୍ୱ କରୁଥିଲେ । ଆନ୍ଧ୍ରମାନଙ୍କୁ ସାରଳା ଦାସ ସବୁବେଳେ ଅନ୍ଧକବଂଶ ବୋଲି ବର୍ଣ୍ଣନା କରିଛନ୍ତି । କୌରବମାନେ ସୁବିଖ୍ୟାତ ସୋମବଂଶର ରାଜା ଥିଲେ ଓ କେଶରୀମାନେ ଓଡ଼ିଶାରେ ରାଜତ୍ୱ କରୁଥିଲେ । ସାରଳା ଦାସ ଏପରି ଭାବରେ କେଶରୀ ସୋମ-ବଂଶୀମାନଙ୍କୁ ତାଙ୍କ ମହାଭାରତରେ ଉଲ୍ଲେଖ କରିଛନ୍ତି । ତା'ଛଡ଼ା ଏହି ବଂଶୀୟ ବିଖ୍ୟାତ ଯଯାତିଙ୍କ କଥା ସେ ଏକାଧିକ ଥର ଲେଖିଛନ୍ତି । ସତ୍ୟଯୁଗର ଜଣେ ରାଜାଙ୍କ ନାମ ମଧ୍ୟ ଯଯାତି ଥିଲା, ମାତ୍ର ସାରଳା ଦାସ ସମୟ ସମୟରେ ଯଯାତି ନାମଟିକୁ ଏପରି ପ୍ରକାଶ କରିଛନ୍ତି ଯେ, ତାହା ଓଡ଼ିଶାର ଯଯାତିକେଶରୀଙ୍କ ପ୍ରତି ଲକ୍ଷ୍ୟ କରାଯାଇଛି ବୋଲି ଜଣାଯାଏ । ଆଦ୍ୟ ପର୍ବରେ ଭାନୁମତୀ ସ୍ୱୟମ୍ବରକୁ ଆସିଥିବା ରାଜାମାନଙ୍କ ନାମ ବର୍ଣ୍ଣନା କରିବାକୁ ଯାଇ ସେ କହିଛନ୍ତି—

ସ୍ଥାପି ଥିଲେ ଯେ ଛତିଶ ମଣ୍ଡଳ ଯଯାତି
ବରଣ ପାଇଁ ଅଇଲେ ଏସବୁ ନୃପତି । ଆଦ୍ୟ, ପୃଃ ୧୧୭

ସୋମବଂଶୀ-କେଶରୀମାନେ ଛତିଶଗଡ଼ ଅଞ୍ଚଳରୁ ଓଡ଼ିଶାକୁ ଆସିଥିଲେ । ଏହି ଛତିଶଗଡ଼କୁ ସାରଳା ଦାସ ଛତିଶମଣ୍ଡଳ ବୋଲି ଲେଖିଛନ୍ତି । ତା'ଛଡ଼ା ଦୁର୍ଯ୍ୟୋଧନ ରାଜା ହେବା ପରେ "ଯଯାତି-ପାଞ୍ଜି-ପ୍ରମାଣେ" ପ୍ରଜାମାନଙ୍କୁ ପାଳନ କରିଥିବା କଥା କବି ଆଦ୍ୟପର୍ବରେ ବର୍ଣ୍ଣନା କରିଛନ୍ତି ।

ଥାନ ଜାଗିରର କର ଛାଡ଼ ପରଜାଙ୍କୁ
ବିହନ ଭିଆଣ କଲା ଭଣ୍ଡାର ଦେବାକୁ ।
ଏ ବିଧି ଭିଆଣ ହେଲେ ଛତିଶମଣ୍ଡଳେ
ଦେବ ବ୍ରାହ୍ମଣଙ୍କୁ କର ଛାଡ଼ ସର୍ବକାଳେ ।
ନିଯୋଗ ଭୂମିକି ଛାଡ଼ି ଦେଲେ ଦେବତାଙ୍କୁ
ଯଯାତି ପାଞ୍ଜି ପ୍ରମାଣେ ପାଳିଲେ ପ୍ରଜାଙ୍କୁ । ଆଦ୍ୟ ପୃଃ ୨୦୧

କେଶରୀ-ସୋମବଂଶୀ ଯଯାତି ଆଦର୍ଶ ରାଜା ଥିଲେ । ସେ ଛତିଶମଣ୍ଡଳ ବା ଛତିଶଗଡ଼ରେ ପ୍ରଜାମାନଙ୍କ ପାଇଁ ଯାହା କରିଥିଲେ, କବି ଦୁର୍ଯ୍ୟୋଧନ ରାଜତ୍ୱରେ ତାହା ଯୋଡ଼ିଦେଇଛନ୍ତି । ଏଠାରେ ଜାଗିର ଶବ୍ଦଟିକୁ ବିଶେଷ ଲକ୍ଷ୍ୟ କରିବାର କଥା । ଏହା ଏକ ଫାରସୀ ଶବ୍ଦ ଓ ଜାଗିର ପ୍ରଥା ମୁସଲମାନ ରାଜତ୍ୱରେ ହିଁ ପ୍ରଚଳିତ ହୋଇଥିଲା ।

କେଶରୀ-ସୋମବଂଶରେ ଉଦ୍ୟୋତକେଶରୀ ନାମକ ଆଉ ଜଣେ ବିଖ୍ୟାତ ରାଜା ଥିଲେ । ସାରଳା ଦାସ ତାଙ୍କ ନାମ ଉଲ୍ଲେଖ କରି ନ ଥିଲେହେଁ, ତାଙ୍କ ରାଜତ୍ୱ କାଳରେ କୋଶଳ ଦେଶର (ଜବଲପୁର ଅଞ୍ଚଳର) କାଳଚୁରି ବା ହୈହୟ-ବଂଶୀୟ ଯେଉଁ କର୍ଣ୍ଣନାମକ ରାଜା ଓଡ଼ିଶା ଆକ୍ରମଣ କରିଥିଲେ, ତାଙ୍କ ନାମ ସଭାପର୍ବରେ ଉଲ୍ଲେଖ କରିଛନ୍ତି ।

ହରିହର ବଂଶେ ଥିଲେ କଣିସ୍ୟ ଯେ ରାଯ୍ୟେ
କୌଶଲ୍ୟା ନାମେ ଉପୁଜେ ତା'ର ଦୁହିତାଏ । ସଭା, ପୃ. ୮୮

ଭୀମ କୋଶଳ ଦେଶରେ ପ୍ରବେଶ କଲା ପରେ ବିରାଜନାମକ ଜଣେ ବେଣ୍ଟକାର ଠାରୁ ଶୁଣିଲେ ଯେ, ହରିହର ବଂଶରେ କଣିସ୍ୟ ନାମକ ଜଣେ ରାଜା ଥିଲେ । ସେ ରାଜା ଏଡ଼େ ଦାନୀ ଥିଲେ ଯେ, ଶେଷକୁ ଦରିଦ୍ର ହୋଇ ଚନ୍ଦ୍ରଭାଗା-କୋଣାର୍କରେ ସୂର୍ଯ୍ୟ ଆରାଧନା କରିଥିଲେ ଓ ସୂର୍ଯ୍ୟଙ୍କ ଆଜ୍ଞାରେ ତାଙ୍କ ରାଜ୍ୟରେ ସାତଘଡ଼ି ପର୍ଯ୍ୟନ୍ତ ସ୍ୱର୍ଣ୍ଣ-ବୃଷ୍ଟି ହୋଇଥିଲା । କୋଶଳ ରାଜ୍ୟ ହେଉଛି ଜବଲପୁର ଅଞ୍ଚଳ । ଏହି ଅଞ୍ଚଳରେ କାଳଚୁରି ବା ହୈହୟବଂଶୀୟ ରାଜାମାନେ ରାଜତ୍ୱ କରିଥିଲେ ଓ ସେମାନଙ୍କ ରାଜଧାନୀ ଥିଲା ଜବଲପୁର ନିକଟବର୍ତ୍ତୀ ତ୍ରିପୁରୀ । ଏହି ବଂଶର ରାଜା କର୍ଣ୍ଣ ଓଡ଼ିଶା-ଆକ୍ରମଣ କରିଥିବା କଥା କାଳଚୁରି ବଂଶର ଅଭିଲେଖମାନଙ୍କରେ ଉଲ୍ଲେଖ ଅଛି । ଏହି କଥା ସାରଳା ଦାସ ପ୍ରକାରାନ୍ତରେ ବର୍ଣ୍ଣନା କରିଛନ୍ତି । ହୈହୟବଂଶୀ କର୍ଣ୍ଣ ଓଡ଼ିଶାର କୋଣାର୍କରେ ସୂର୍ଯ୍ୟ-ସେବା କରି ସ୍ୱର୍ଣ୍ଣଲାଭ କରି ନ ଥିଲେ, ମାତ୍ର ସେ ଓଡ଼ିଶା ଆକ୍ରମଣ କରି ବହୁ ଧନ ରତ୍ନ ଘେନିଯାଇଥିଲେ । ଉଲ୍ଲିଖିତ ପଦରେ ଥିବା ହରିହର ଶବ୍ଦଟି ହୈହୟ ହିଁ ହେବ; କାରଣ ହରିହର ବୋଲି କୌଣସି ରାଜବଂଶ ନ ଥିଲା କିମ୍ବା ହରିହରବଂଶୀୟ କୌଣସି ରାଜା କୋଶଳରେ ରାଜତ୍ୱ କରି ନ ଥିଲେ । ହୈହୟ-ବଂଶୀ କର୍ଣ୍ଣ ସୋମବଂଶୀ-କେଶରୀ ଉଦ୍ୟୋତ କେଶରୀଙ୍କ ସାମସାମୟିକ ଥିଲେ । କର୍ଣ୍ଣ ଖ୍ରୀ: ୧୦୪୦ରୁ ୧୦୭୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ପଣ୍ଡିତମାନେ ସ୍ଥିର କରିଛନ୍ତି ।

ଅଳ୍ପବର୍ଷ ତଳେ ରତ୍ନଗିରିରୁ ଯେଉଁ ତାମ୍ରଶାସନ ମିଳିଛି, ସେଥିରେ କେଶରୀ ସୋମବଂଶୀମାନଙ୍କ ସମ୍ପୂର୍ଣ୍ଣ ବଂଶାବଳୀ ରହିଛି । ଏହି ବଂଶାବଳୀରୁ ଜଣାଯାଏ ଯେ, କର୍ଣ୍ଣ-ଦେବ ବା କର୍ଣ୍ଣ-କେଶରୀ ଏହି ବଂଶର ଶେଷ ରାଜା ଥିଲେ । ରାମଚରିତରୁ ମଧ୍ୟ କର୍ଣ୍ଣକେଶରୀ ନାମଟି ମିଳେ । ଓଡ଼ିଶାର କେଶରୀ-ସୋମବଂଶର ଏହି ଶେଷ ରାଜାଙ୍କ ନାମ ମଧ୍ୟ ସାରଳା ଦାସ ଉଲ୍ଲେଖ କରିଛନ୍ତି, ମାତ୍ର ତାଙ୍କୁ ବଙ୍ଗଦେଶର ରାଜା ରୂପେ ବର୍ଣ୍ଣନା କରିଛନ୍ତି—

ବଙ୍ଗଦେଶର ନୃପତ ଶ୍ରୀକଣ୍ଠ-କେଶରୀ
ତାଙ୍କୁ ବଧିଲ ଶିଖଣ୍ଡୀ ନାମେ ଦଣ୍ଡଧାରୀ । (ଦ୍ରୋଣ, ପୃ. ୩୦)

(୫) ସୋମବଂଶୀ କେଶରୀମାନଙ୍କ ପରେ ଗଙ୍ଗମାନେ ଓଡ଼ିଶାରେ ରାଜତ୍ୱ କଲେ । ଗଙ୍ଗବଂଶର ସ୍ଥାପୟିତାଙ୍କ ନାମ ଥିଲ ଅନନ୍ତ ବର୍ମ୍ମଣ ଚୋଡ଼ଗଙ୍ଗ, ମାତ୍ର ଓଡ଼ିଶାର ସମସ୍ତ କମ୍ବଦନ୍ତୀରେ ସେ ଚୁଡ଼ଙ୍ଗ ନାମରେ ହିଁ ପରିଚିତ । ବାରଙ୍ଗ ନିକଟବର୍ତ୍ତୀ ଯେଉଁ ଶାରଙ୍ଗଗଡ଼ ଅଛି ତା'ର ଅଂଶବିଶେଷକୁ ଅଦ୍ୟାପି ଚୁଡ଼ଙ୍ଗଗଡ଼ ବୋଲି କୁହାଯାଏ । ଚନ୍ଦକା-ଖୋର୍ଦ୍ଧା ସଡ଼କପାର୍ଶ୍ୱସ୍ଥ ଦକ୍ଷୁଆ ନାମକ ଗ୍ରାମ ଓ ଭଣ୍ଡାରିଖିଆ ପାହାଡ଼ ନିକଟବର୍ତ୍ତୀ କାଶିଆଗଡ଼ ନାମକ ପ୍ରାଚୀନଗଡ଼ର ଯେଉଁ ଧ୍ୱଂସାବଶେଷ ଅଛି, ତହିଁରେ ଥିବା ପତ୍ଥ-ସ୍ତୂପ ଟିକୁ ଲୋକମାନେ 'ଚୁଡ଼ଙ୍ଗ-ଦାଣ୍ଡଅଣୀ' ନାମ ଦେଇ ପୂଜା କରନ୍ତି । ପୁରୀ ସହରର ଅଂଶବିଶେଷ ଅଦ୍ୟାପି ଚୁଡ଼ଙ୍ଗ-ସାହି ନାମରେ ଅଭିହିତ । ଏହି ସବୁ ପ୍ରମାଣରୁ ଜଣାଯାଏ ଯେ ଦୀର୍ଘ ଅନନ୍ତ ବର୍ମ୍ମଣ ଚୋଡ଼ଗଙ୍ଗ ନାମଟି ଶେଷ ପର୍ଯ୍ୟନ୍ତ ସଂକ୍ଷିପ୍ତ ଚୁଡ଼ଙ୍ଗରେ ପରିଣତ ହୋଇଥିଲା । ସାରଳା ଦାସ ଏହି ସଂକ୍ଷିପ୍ତ ଚୁଡ଼ଙ୍ଗ ନାମଟିକୁ ଏକାଧିକ ଥର ଉଲ୍ଲେଖ କରିଛନ୍ତି । ମଧ୍ୟପର୍ବର ଶତଧନୁର ମରଣ ନାମକ ଉପାଖ୍ୟାନରେ କବି କୋଣାର୍କର ରାମଚଣ୍ଡୀଙ୍କୁ ନିମ୍ନଲିଖିତ ଭାବରେ ବନ୍ଦନା କରିଛନ୍ତି—

ପ୍ରଥମେ ବନ୍ଦଇ ମାଗୋ କୋଣାରକ ଚଣ୍ଡୀ
ମୁଖଗୋଟି ଶୋଭେ ତୋର ସିନ୍ଦୂରରେ ମଣ୍ଡି ।
ମାଡ଼ି ବସିଲୁ ଦକ୍ଷିଣ ସମୁଦ୍ରର ତୀର
ଉତ୍ତରକୁ ଦ୍ୱାର ମାଗୋ ଅତ୍ୟନ୍ତ ବିସ୍ତାର ।
ଶ୍ରୀରାମ ପୂଜନ୍ତେ ରାମ-ଚଣ୍ଡୀ ନାମ ହେଲ
ରାଜ-ନିଯୋଗ ହିଁ ମାଟୋ କିଛି ନ ସ୍ଫୁରିଲ ।
ଦ୍ରବିଦାନ କାହିଁ ଆଣି ଖାଉ ମହାମାଈ
ଘନଶ ଷାଠିଏ ଦିନ ପଡ଼ିଆ ନୁହଇ ।
ଦାଣ୍ଡୀ ଯେ ତିଙ୍ଗର ମାଗେ ମାଳବ କୁଞ୍ଜର
ଏତେଦୂରୁ ଆଣି ମାଗୋ ପୋଷୁ ତୁ ଉଦର ।
ମୁଦୁସୁଲି ରୂପେ ମାଗୋ ମାଠିଆ କାଖର ।
ମାଜଣା ନିମନ୍ତେ ମା'ଗୋ ହୋଇଲୁ ବାହାର ।
ବଡ଼ ଚୁଡ଼ଙ୍ଗକୁ ମା'ଗୋ ଭଣ୍ଡି ତୁ ଅଇଲୁ ।
ହାତେ ହାତେ ବଡ଼ି ମା'ଗୋ ସମୁଦ୍ରେ ପଶିଲୁ ।

ମଧ୍ୟ, ପୃ. ୭୬

ଉଲ୍ଲିଖିତ ପଦମାନଙ୍କର ତାତ୍ପର୍ଯ୍ୟ ଏହି ଯେ ବର୍ତ୍ତମାନ କୋଣାର୍କ ନିକଟବର୍ତ୍ତୀ ଲଆଖିଆ ମୁହାଣ ପାଖରେ ଯେଉଁ ଦେବୀ ଅଛନ୍ତି, ସେ ଦକ୍ଷିଣ-ସମୁଦ୍ର-ତୀର ମାତ୍ର ବସିଥିବାରୁ ସେ ଦିଗରୁ ଶତ୍ରୁ ଆକ୍ରମଣର ଭୟ ନ ଥିଲା, ମାତ୍ର ଉତ୍ତର ପାଖଟା ଶତ୍ରୁ ଆକ୍ରମଣ ପାଇଁ ଅତ୍ୟନ୍ତ ବିସ୍ତୃତ ହୋଇ ରହିଥିଲା । ଏହି ଦେବୀଙ୍କୁ ଶ୍ରୀରାମ ପୂଜା କରିଥିବାରୁ ତାଙ୍କ ନାମ ରାମଚଣ୍ଡୀ ହୋଇଛି । ତାଙ୍କ ପାଇଁ ରାଜ-ନିଯୋଗ ( ସରକାରୀ ଖଞ୍ଜା ) କିଛି ନ ଥିଲା, ତଥାପି ବର୍ଷଯାକ ତାଙ୍କ ପାଖରେ ବଳି ପଡ଼ୁଥିଲା । ତିନିଶ ଷାଠିଏ ଦିନ ମଧ୍ୟରୁ ଗୋଟିଏ ଦିନସୁଦ୍ଧା ବଳି ପଡ଼ିବା ବନ୍ଦ ହେଉ ନ ଥିଲା । ଏପରିକି ଡ଼ିଗର ( ଡ଼ିଙ୍ଗର ) ଦିଲ୍ଲୀ, ମାଲବ ( ମାଲ୍ୱା ) ଓ କୁଞ୍ଜର ( କାଲିଞ୍ଜର ) ପ୍ରଭୃତି ସୁଦୂର ଦେଶମାନଙ୍କରୁ ବଳି ଆଣି ରାମଚଣ୍ଡୀ ଉଦର ପୋଷୁଥିଲେ । ଅର୍ଥାତ୍ ଏହି ଶତ୍ରୁଦେଶୀୟ ରାଜ୍ୟମାନଙ୍କରୁ ଯେଉଁସବୁ ବନ୍ଦୀ ଧରା ହୋଇ ଆସୁଥିଲେ, ସେମାନେ ରାମଚଣ୍ଡୀଙ୍କ ଠାରେ ବଳି ପଡ଼ୁଥିଲେ ( ଏପରି ପ୍ରଥା ପୂର୍ବକାଳରେ ଥିଲା ) । ରାମଚଣ୍ଡୀ ମୃଦୁସୁନ୍ଦରୀ ରୂପରେ କଳସୀଟିଏ କାଖରେ ନେଇ ଓ ବଡ଼ ଚୂଡ଼ଙ୍ଗଙ୍କୁ ଭଣ୍ଡି ଦେଇ ଲଆଖିଆ ମୁହାଁଣ ନିକଟରେ ଥିବା ସମୁଦ୍ରରେ ଆସ୍ତେ ଆସ୍ତେ ଅଗ୍ରସର ହୋଇ ପଶି ଯାଇଥିଲେ ।

କୋଣାର୍କରେ ବର୍ତ୍ତମାନ ସୁଦ୍ଧା କିମ୍ବଦନ୍ତୀ ଅଛି ଯେ ଯେତେବେଳେ କଳା-ପାହାଡ଼ କୋଣାର୍କ ଆକ୍ରମଣ କରିବାକୁ ଆସିଲେ, ସେତେବେଳେ ରାମଚଣ୍ଡୀ କଳା-ପାହାଡ଼ଙ୍କୁ ଦୁଆରେ ବସାଇ ଦେଇ ପାଣି ଆଣିବା ପାଇଁ ଚାଲିଗଲେ ଓ ଆଉ ଫେରିଲେ ନାହିଁ । କିମ୍ବଦନ୍ତୀଟି ପଦ୍ୟାକାରରେ ପ୍ରଚଳିତ ଅଛି ଓ ତାହା ସ୍ୱର୍ଗତ କୃପାସିନ୍ଧୁ ମିଶ୍ର ତାଙ୍କର କୋଣାର୍କ ପୁସ୍ତକରେ ଲିପିବଦ୍ଧ କରିଛନ୍ତି—

ଭଲ ରାମଚଣ୍ଡୀ ଭଲରେ
କଳାପାହାଡ଼କୁ ଦୁଆରେ ବସାଇ
ଭଲ ପାଣି ପାଇଁ ଗଲରେ ।

କିନ୍ତୁ ଉଲ୍ଲିଖିତ ପଦମାନଙ୍କରୁ ପ୍ରତିପାଦିତ ହେଉଛି ଯେ ଗାଧୋଇଯିବା ବାହାନାରେ ବଡ଼ଚୁଡ଼ଙ୍ଗଙ୍କୁ ଭଣ୍ଡି ଦେଇ ରାମଚଣ୍ଡୀ ସମୁଦ୍ରଭିତରେ ପଶି ଯାଇଥିଲେ ଏହାର ତାତ୍ପର୍ଯ୍ୟ ଏହି ଯେ ରାମଚଣ୍ଡୀ ପ୍ରଥମେ କୋଣାର୍କରେ ଥିଲେ; କିନ୍ତୁ ବଡ଼ଚୁଡ଼ଙ୍ଗହିଁ ତାଙ୍କର ସ୍ଥାନାନ୍ତରିତ ହେବାର କାରଣ ହୋଇଥିଲେ । ବଡ଼ଚୁଡ଼ଙ୍ଗ ବା ଚୋଡ଼ଗଙ୍ଗ ଦେବଙ୍କୁ ଆମର ସମସ୍ତ କିମ୍ବଦନ୍ତୀରେ ଶାକ୍ତମତର ବିରୋଧୀ ରୂପେ ଉପସ୍ଥାପିତ କରାଯାଇଛି । ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ଯେଉଁ ତିନୋଟି ପୋଥି ସାହାଯ୍ୟରେ ମାଦଳାପାଞ୍ଜି ପୁସ୍ତକପ୍ରକାଶ କରିଛନ୍ତି, ସେଥିମଧ୍ୟରୁ ଚୋଡ଼ଗଙ୍ଗଙ୍କ ସମ୍ବନ୍ଧରେ ପ୍ରଥମ

ପାଞ୍ଜିରେ ଲେଖା ଅଛି—"(ସେ) ଓଡ଼ିଶା ଗୋସାଣୀମାନ କଲଲେ (ପୃ.୬୩) ।" ଦ୍ୱିତୀୟ ପାଞ୍ଜିରେ ଅଛି—"ତହୁଁ ଆସି ଓଡ଼ିଶା ଗୋସାଣୀଙ୍କୁ ସମସ୍ତ କଲଲେ (ପୃ. ୬୩) ।" ମାଦଳାପାଞ୍ଜି ଛଡ଼ା ଗଞ୍ଜାମରୁ ପ୍ରାପ୍ତ ପାଞ୍ଜିରେ ଲେଖା ଅଛି— "ଚୁଡ଼ଙ୍ଗଦେବ ଭୋଗ କଲେ ଚଉଷଠି ବର୍ଷ । ଏ ରାଜା ସମସ୍ତ ଗୋସାଣୀମାନଙ୍କୁ ବନ୍ଦୀ କଲେ । ବିରଜା, ଗୋସାଣୀ, କାଳିକା, କାମଚଣ୍ଡୀ, ସର୍ବମଙ୍ଗଳା ଏ ପାଞ୍ଚଙ୍କୁ ବନ୍ଦୀ କରି ନ ପାରିଲେ । (ମାଦଳାପାଞ୍ଜି ପୃ. ୧୦୨)" କାମଚଣ୍ଡୀ ବୋଲି କୌଣସି ଦେବୀ ଓଡ଼ିଶାରେ ନାହାନ୍ତି । ଏଣୁ ଏଠାରେ ଅଜ୍ଞତା ଦୋଷରୁ ହେଉ ବା ମୁଦ୍ରା-ଦୋଷରୁ ହେଉ ରାମଚଣ୍ଡୀ କାଗାରେ କାମଚଣ୍ଡୀ ହୋଇଯାଇଛି । ଏ ସମସ୍ତ ବିକ୍ଷିପ୍ତ କିମ୍ବଦନ୍ତୀରୁ ଜଣାଯାଏ ଯେ ଚୁଡ଼ଙ୍ଗ ବା ଚୋଡ଼ଗଙ୍ଗ ଶାକ୍ତ-ମତର ବିରୋଧୀ ଥିଲେ ଓ ସେହି ହେତୁରୁ ରାମଚଣ୍ଡୀଙ୍କୁ ସ୍ଥାନାନ୍ତରିତ କରିବାକୁ ପଡ଼ିଥିଲା । ଚୋଡ଼ଗଙ୍ଗ ଯାହା କରିଥିଲେ, ପରବର୍ତ୍ତୀ କିମ୍ବଦନ୍ତୀ ତାହା କଳାପାହାଡ଼ଙ୍କ ଠାରେ ଯୋଡ଼ିଦେଇ ତାଙ୍କୁ ସମସ୍ତ ମନ୍ଦ କର୍ମ ଓ ଧ୍ୱଂସର ପ୍ରତୀକ ରୂପେ ଉପସ୍ଥାପିତ କଲା ।

ସମ୍ରାଟ୍ ଚୋଡ଼ଗଙ୍ଗଙ୍କ ପ୍ରମାଡ଼ୀ (ପରମର୍ଦ୍ଦୀ) ନାମକ ଜଣେ ଭାଇ ଥିଲେ ଓ ଏହି ପ୍ରମାଡ଼ୀଦେବଙ୍କ ଜଣେ ପୁତ୍ରର ନାମ ମଧ୍ୟ ଚୋଡ଼ଗଙ୍ଗ ଥିଲା । ସାନ ଚୁଡ଼ଗଙ୍ଗ ତାଙ୍କ ଜ୍ୟେଷ୍ଠତାତଙ୍କ ଅଧୀନରେ ଦକ୍ଷିଣର ଗୋଟିଏ ଅଞ୍ଚଳରେ ଶାସନକର୍ତ୍ତା ହୋଇଥିବା କଥା ଶ୍ରୀ ସୁବାରାଓ ତାଙ୍କ ଗଙ୍ଗବଂଶର ଇତିହାସରେ ଉଲ୍ଲେଖ କରିଛନ୍ତି । ଚୋଡ଼ଗଙ୍ଗ-ନାମଧେୟ ଦୁଇଟି ବ୍ୟକ୍ତି ଥିବାରୁ ସାରଳା ଦାସ ସମ୍ରାଟ୍ ଚୋଡ଼ଗଙ୍ଗଙ୍କୁ ବଡ଼ ଚୁଡ଼ଗଙ୍ଗ ବୋଲି ବର୍ଣ୍ଣନା କରିଛନ୍ତି ।

ରାମଚଣ୍ଡୀଙ୍କ ଉଲ୍ଲିଖିତ ସ୍ତବ ଅନ୍ୟ ଏକ ବିଷୟରେ ମଧ୍ୟ ଇତିହାସ ଉପରେ ଆଲୋକପାତ କରୁଛି । ଗୋପୀନାଥପୁର-ମନ୍ଦିର ଶିଳାଲେଖ ଓ ବେଲିଗଲାନି ତାମ୍ରଶାସନରେ ଉଲ୍ଲେଖ ଅଛି ଯେ, ଗଜପତି କପିଳେଶ୍ୱରଙ୍କ ଦିଲ୍ଲୀ ଓ ମାଳବ (ମାଲ୍ୱା) ସହିତ ମଧ୍ୟ ସଂଘର୍ଷ ଘଟିଥିଲା, କିନ୍ତୁ କୌଣସି ଐତିହାସିକ ଏହା ମାନନାହାନ୍ତି । କପିଳେଶ୍ୱରଙ୍କ ଦିଲ୍ଲୀ ଓ ମାଳବ ସହିତ ସଂଘର୍ଷ କଥାକୁ ଏକାବେଳେ ଅସତ୍ୟ ଓ ଅତିରଞ୍ଜିତ ବୋଲି କୁହାଯାଇଛି । ଏ ସମ୍ବନ୍ଧରେ ଶ୍ରୀ ପ୍ରଭାତକୁମାର ମୁଖାର୍ଜୀ ଲେଖିଛନ୍ତି—

"Did Kapilendra make an attempt to conquer Delhi and Malwa before 1458, the date of Veligalani Plates ? The Muslim historians do not make the slightest allusion to the invasion of Malwa and

Delhi by a king of Orissa during this period. In the present state of our knowledge it is not safe to believe that Kapilendra invaded far-off Delhi and Malwa, instead of extending his frontiers by integrating the neighbouring territories."

The Gajapati kings of Orissa, p.11

କିନ୍ତୁ ଖାଲି ତାମ୍ର-ଶିଳାଲେଖରୁ ନୁହେଁ, ସାରଳା ଦାସଙ୍କ ରଚିତ ଏହି ଚଣ୍ଡୀଙ୍କ ସ୍ତବରୁ ମଧ୍ୟ ସୂଚିତ ହେଉଛି ଯେ କପିଳେଶ୍ୱରଙ୍କ ସମୟରେ ଓଡ଼ିଶାର ଦିଲ୍ଲୀ, ମାଳବ ଓ କୁଞ୍ଜର (କାଳଞ୍ଜର) ସହିତ ସଂଘର୍ଷ ଲାଗିଥିଲା । କବି କହିଛନ୍ତି ଯେ ତାଙ୍କ ସମୟରେ ରାମଚଣ୍ଡୀ ଦିଲ୍ଲୀ, ମାଳବ ଓ କୁଞ୍ଜର (କାଲଞ୍ଜର)ରୁ ବଳି ଆଣି ଉଦର ପୋଷୁଥିଲେ । ତାମ୍ରଲେଖ ଶିଳାଲେଖ ଓ ସମସାମୟିକ ଗ୍ରନ୍ଥ, ଏ ସମସ୍ତର କଥା କଅଣ ଏକାବେଳକେ ମିଥ୍ୟା ? ନିଆଁ ନ ଥିଲେ ଯେପରି ଧୂଆଁର ସମ୍ଭବ ହୁଏ ନାହିଁ, ଦିଲ୍ଲୀ ଓ ମାଳବ ସହିତ ଓଡ଼ିଶାର କୌଣସି ସଂଘର୍ଷ ଲାଗି ନ ଥିଲେ, ଏ ସମସ୍ତ ଉପାଦାନରେ ଏ କଥାର ଉଲ୍ଲେଖ ରହିବା କଦାପି ସମ୍ଭବ ହୁଅନ୍ତା ନାହିଁ । କଥା ହେଉଛି, କପିଳେଶ୍ୱରଙ୍କ ସମୟରେ ଓଡ଼ିଶା ଗୋଟିଏ ସାମ୍ରାଜ୍ୟରେ ପରିଣତ ହୋଇଥିଲା । ଜୋନପୁର ଓ ବାହାମନୀ ପ୍ରଭୃତି ଯେଉଁ ଶତ୍ରୁ ରାଜ୍ୟ ଥିଲେ ସେମାନେ ମଧ୍ୟ ସମୟ ସମୟରେ ଓଡ଼ିଶାର ସହଯୋଗିତା ନେଇ ସେମାନଙ୍କ ଶତ୍ରୁ-ରାଜ୍ୟ ଦିଲ୍ଲୀ ଓ ମାଲ୍ୱା ସହିତ ଯୁଦ୍ଧ କରୁଥିଲେ । ଜୋନପୁରର ଦିଲ୍ଲୀ ସହିତ, ବାହାମନୀର ମାଲ୍ୱା ସହିତ ବହୁକାଳ ଯୁଦ୍ଧ ଲାଗିଥିଲା । ଏହି ଯୁଦ୍ଧରେ ଓଡ଼ିଶାର ସହଯୋଗୀ ସୈନ୍ୟମାନେ (allied forces) ଅଂଶଗ୍ରହଣ କରିଥିବା କଥା ଖୁବ୍ ସମ୍ଭବ । ଦିଲ୍ଲୀ ଓ ମାଲ୍ୱା ସହିତ ଓଡ଼ିଶାର ଏହିପରି ସଂଘର୍ଷର କଥା ହିଁ ସମସାମୟିକ ସମସ୍ତ ଉପାଦାନରେ ସ୍ଥାନ ପାଇଛି ।

ସାରଳା ଦାସ ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ଚୂଡ଼ଙ୍ଗ ଦୁର୍ଗ ବା ଚୂଡ଼ଙ୍ଗ ନଗରର କଥା ମଧ୍ୟ ତାଙ୍କ ମହାଭାରତରେ ଉଲ୍ଲେଖ କରିଛନ୍ତି । ସେ ବିରାଟ ପର୍ବରେ ଭୀମଙ୍କ ମଲ୍ଲ ସହିତ ଯୁଦ୍ଧ ଉପାଖ୍ୟାନରେ ଲେଖିଛନ୍ତି—

ଭାର ଚୂଡ଼ଙ୍ଗ ନଗର ପଶ୍ଚିମର କୋଣେ
ବଜ୍ରବାହୁ ପଡ଼େ ନବ ସହସ୍ର ଯୋଜନେ । ବିରାଟ ପୃ.୪୩

ଏହା ପରେ ପରେ ସେ ଖଣ୍ଡଗିରି କଥା ମଧ୍ୟ ଉଲ୍ଲେଖ କରିଛନ୍ତି ।
ହରିଣ କେଶରୀ ପୁତ୍ର ମେରୁକେଶୀ ବୀର
ଏହାଙ୍କର ପ୍ରହାରରେ ଖଣ୍ଡଗିରି ଚୂର । ବିରାଟ ପୃଃ ୪୩

ବାରଙ୍ଗ ଷ୍ଟେସନ ପାଖରେ ଥିବା ଶାରଙ୍ଗଗଡ଼ ବା ଚୂଡ଼ଙ୍ଗଗଡ଼ ଖଣ୍ଡଗିରିର ନିକଟବର୍ତ୍ତୀ । ଏଣୁ ଖଣ୍ଡଗିରି ସହିତ ବୀର ଚୂଡ଼ଙ୍ଗ ନଗର ନାମଟିକୁ ବିଚାର କଲେ, ବୀରଚୂଡ଼ଙ୍ଗ ନଗର ଯେ ଚୂଡ଼ଙ୍ଗଗଡ଼ ଏଥିରେ ସନ୍ଦେହ ରହେ ନାହିଁ ।

ସାରଳା ଦାସ ଏହିପରି ଭାବରେ ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗଙ୍କ କଥା ତାଙ୍କ ମହାଭାରତରେ ଉଲ୍ଲେଖ କରିଛନ୍ତି । ଚୋଡ଼ଗଙ୍ଗଦେବ ଖ୍ରୀଃ ୧୦୭୮ରୁ ୧୧୪୭ ପର୍ଯ୍ୟନ୍ତ ଦୀର୍ଘକାଳ ରାଜତ୍ୱ କରିଥିଲେ (Dr. H. K. Mahtab—History of Orissa, p. 196) । ତାଙ୍କ ପରେ ତାଙ୍କ ଛଅ ପୁତ୍ର କ୍ରମାନ୍ୱୟରେ ରାଜତ୍ୱ କରିଥିଲେ । ଚୋଡ଼ଗଙ୍ଗଙ୍କ ଚନ୍ଦ୍ରଲେଖା ନାମ୍ନୀ ରାଣୀଙ୍କଠାରୁ ଜାତ ରାଜରାଜଦେବ ଏମାନଙ୍କ ମଧ୍ୟରେ ସବା ଶେଷ ଥିଲେ ଓ ସେ ଖ୍ରୀଃ ୧୧୭୦ରୁ ୧୧୯୦ ମଧ୍ୟରେ ରାଜତ୍ୱ କରିଥିଲେ । କିନ୍ତୁ ମାଦଳା ପାଞ୍ଜିରେ ଲେଖା ଅଛି—"ମଦନ ମହାଦେବଙ୍କ ନାମ ରାଜରାଜେଶ୍ୱର । ପୃଃ ୨୦ ।" ବୋଧହୁଏ ମଦନ ମହାଦେବ ନାମଟି ରାଜରାଜ ଦେବଙ୍କ ଉପନାମ ବା ଡାକନାମ ଥିଲା । ସାରଳା ଦାସ ଏହି ଡାକ ନାମଟିକୁ ମଧ୍ୟ ତାଙ୍କ ମହାଭାରତରେ ସ୍ଥାନ ଦେଇଛନ୍ତି—

ଭୀମଦେଶ ରାଜା ବୀରଭଦ୍ର ନରପତି
ମଦନ ମହାଦେବ ତା' ସଙ୍ଗରେ ଅଛନ୍ତି ।
ମଧ୍ୟ, ପୃ; ୨୫୭

(୭) ବର୍ତ୍ତମାନ ମୁସଲମାନ ରାଜତ୍ୱ ପର୍ଯ୍ୟନ୍ତ ଓଡ଼ିଶାର ଗଙ୍ଗମାନଙ୍କ ସମସାମୟିକ ବଙ୍ଗର ସେନରାଜାମାନଙ୍କ ସମ୍ବନ୍ଧରେ ସାରଳା ମହାଭାରତରେ ଯାହା ଅଛି, ତାହା ହିଁ ଆଲୋଚନା କରାଯାଉ । ମୁସଲମାନ ରାଜତ୍ୱ ପୂର୍ବରୁ ବଙ୍ଗରେ ହେମନ୍ତ ସେନ, ବିଜୟସେନ ଓ ବଲ୍ଲାଳସେନ ନାମରେ ତିନିଜଣ ସେନରାଜା ରାଜତ୍ୱ କରିଥିଲେ । ଏଥି ମଧ୍ୟରୁ ବଲ୍ଲାଳସେନଙ୍କ କଥା ସାରଳାଦାସ ଲେଖି ଯାଇଛନ୍ତି । ସାରଳା ଦାସଙ୍କୁ ଜଣା ଥିଲା ଯେ ବଙ୍ଗଦେଶରେ ଜଣେ ବଲ୍ଲାଳସେନ ବୋଲି ରାଜା ଥିଲେ, ବଙ୍ଗର ଅନ୍ୟ ନାମ ଥିଲା ଗୌଡ଼, ସେନବଂଶର ରାଜତ୍ୱ କାଳରେ ଏହି ଦେଶର ରାଜଧାନୀର ନାମ ମଧ୍ୟ ଥିଲା ଗୌଡ଼ । ଏହି ରାଜ୍ୟ ପାର୍ଶ୍ୱରେ ସମୁଦ୍ର ଅଛି । ଏ ଦେଶରେ ନଦୀ ଓ ଜଳା-ଭୂମି ବେଶୀ ଥିବାରୁ

ଲୋକମାନେ ନୌକାରେ ଯାତାୟାତ କରନ୍ତି । ବଙ୍ଗର ସେନବଂଶ କେରଳ ବା କର୍ଣ୍ଣାଟ ଦେଶରୁ ଆସିଥିଲେ । ବଙ୍ଗରେ ପ୍ରବାହିତା ଗଙ୍ଗାର ଅନ୍ୟ ନାମ ହେଉଛି ଗୌତମୀ । ବଲ୍ଲାଳସେନ କୁଳୀନ ପ୍ରଥାର ପୃଷ୍ଠପୋଷକ ଥିଲେ ଓ କୁଳୀନ ବ୍ରାହ୍ମଣ-ମାନଙ୍କର କନୌଜରୁ ବଙ୍ଗକୁ ଆସିବା ବିଷୟରେ ଗୋଟିଏ ଗଳ୍ପ ବା କିମ୍ବଦନ୍ତୀ ଅଛି । ଏହାଛଡ଼ା ଓଡ଼ିଆରେ ଗୌଡ଼ର ଅର୍ଥ ହେଉଛି ଗୋପାଳ । ଏ ସମସ୍ତ କଥାକୁ ଏକାଠି କରି ଓ ବଲ୍ଲାଳସେନ ନାମଟିକୁ ବେଲ୍ଲାଳସେନରେ ରୂପାନ୍ତରିତ କରି ସାରଳା ଦାସ ସଭାପର୍ବରେ(ପୃ-୨୧୩-୧୪) ଏକ ବିଚିତ୍ର ଆଖ୍ୟାୟିକା ସୃଷ୍ଟି କରିଛନ୍ତି । ରାଜସୂୟଯଜ୍ଞ ପାଇଁ ପୂର୍ବ ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରି କରି ସହଦେବ ଯାଇ ଗୋଟିଏ ଦେଶରେ ପହଞ୍ଚିଲେ ।

"କ୍ଷୀରୋଦକୂଳେ ବେଲାଳ ନାମେ ଅଛି ଦେଶ
ତହିଁ ସହଦେବ-ଥାଟ ହୋଇଲେ ପ୍ରବେଶ ।
ବାଲ୍ୟକାଳେ କଲା ସେହି ଗୌତମୀ ଭକତି
ସେ ଦେଶରାଜା କେରଳ-ନାମେ ଚକ୍ରବର୍ତ୍ତି ।
ସିଂହ-ବୃହସ୍ପତି ଯୋଗେ ଗୌତମୀ-କୂଳରେ
ଗୌତମ ଦାନ ଦେଲେ ପ୍ରଚୁର ପ୍ରକାରେ ।
ଏ ରୂପେ ଦାନ ଦେନ୍ତେ ଦିବସ-ରଜନୀ
ତହୁଁ ହୋଇଲା ତାଙ୍କର ଗୋରୁପଲ ଧନୀ ।"

କିନ୍ତୁ ଗୌତମ ମୁନି ଏ ସମସ୍ତ ଗାଈକୁ ବେଲାଳସେନଙ୍କୁ ଦେଇ-ଦେଲେ ।

"ଏମନ୍ତେ ଚଉଦ ମହାଘୋଇ ତହିଁ ଥିଲେ
ତୋଷେ ମାହାତ୍ମା ବେଲାଳସେନଙ୍କୁ ଯେ ଦେଲେ ।
ଯେତେକ ଘୃତ ଲାଗଇ ତାଙ୍କର ହୋମକୁ
ବେଲାଳସେନ ଦିଅଇ ନିତି ଗୌତମଙ୍କୁ ।

ସହଦେବ ତାଙ୍କ ରାଜ୍ୟରେ ପ୍ରବେଶ କରିବା କଥା ଶୁଣି ବେଲାଳସେନ ତାଙ୍କର ଗୋପାଳ-ସୈନ୍ୟମାନଙ୍କୁ ଆକ୍ରମଣ କରିବାକୁ ଆଜ୍ଞା ଦେଲେ ।

ରାଜା ଆଜ୍ଞା ପାଇକରି ସେ ଗୋପାଳମାନେ
ବହୁ ପ୍ରତିଜ୍ଞା କରିଣ ଧାଇଁଲେ ବହନେ ।
ପାଦରେ କଠାଉ ବେନି କରେ ଧରି ଯଷ୍ଟି
ମଥାରେ ତୋଲରି କାଶ ଫଳଶର ଗୋଟି ।

ଗଳେ ଜବାପୁଷ୍ପହାର ଗୁଞ୍ଜର ଲଲଟି
ପ୍ରଥଙ୍କା କରି ଧମେନ୍ତ ଓଷ୍ଠ କରି ପୁଷ୍ଟି ।
କଡ଼ା ମର୍ଦ୍ଦଳ ଘୁମୁରା ବଜାଇ ବାଂଶରି
ମଦ୍ଦରି ଖେଳେ ଖେମଟା ନୃତ୍ୟ କରି କରି ।
ଅଣ୍ଟାରେ କାଛେଣୀ ଭିଡ଼ି ଘଣ୍ଟି ମାଳେ ମାଳେ
ଦାନ୍ତ ପ୍ରକଟି ବିହାର କରନ୍ତି ଗୋପାଳେ ।
ଗୁଲିବନ୍ତ ଲଉଡ଼ିକୁ ପୁଣି ଗୀତ ଗାଇ
ବଳଦେ ବଳଦେ ଚଢ଼ି ଆସନ୍ତି ଖଡାଇ ।

ସହଦେବଙ୍କ ଆଗରେ ବିଷମ ସମସ୍ୟା ଉପସ୍ଥିତ ହେଲା, କାରଣ ଶର ବିନ୍ଧିଲେ ଗୋରୁମାନଙ୍କ ଦେହରେ ବାଜିବ । ଏଣୁ ସମାଧାନ କରିବାର ଚେଷ୍ଟା କଲେ, ମାତ୍ର ବେଲାଲସେନ ମାନିବାର ପାତ୍ର ନୁହନ୍ତି ।

ବେଲାଳ ବୋଇଲା କେଉଁ ଦେଶର ନୃପତି
ମୋହର ରାଜ୍ୟରେ କଥା କରୁଛ ଅନୀତି ।
ତୁମ୍ଭେ ଯୋଦ୍ଧା ସବୁ ଅଟ କେଉଁ ଦେଶବାସୀ
ଏଠାରେ ସମୁଦ୍ର ଛଡ଼ା କିଛି ନୁହେଁ କୃଷି ।
ଗୋରୁପଲ ଦେଲେ ମୋତେ ଗଉଡ଼ମ ପତି
ତାଙ୍କ ଆଜ୍ଞାରେ ପାଳେ ମୁଁ ସେ ଗୋରୁ ସବୁନ୍ତି ।

× × × ×

ସହଦେବର ବଚନେ ବୋଲଇ ବେଲାଳ
ମୁଁ କଥା ତୋ ରାଜ୍ୟେ ଯିବ ଗୁଡ଼ି ନଜ ସ୍ଥଳ ।

କୌଣସି ଉପାୟ ନ ଦେଖି ସହଦେବ ମୋହନା ଶର ପ୍ରୟୋଗ କରିବାରୁ ଗୋପାଳ ସୈନ୍ୟମାନେ ମୋହ ପାଇ ପଡ଼ିଗଲେ । ତା'ପରେ ସହଦେବ ବେଲାଲସେନଙ୍କୁ ପାଟଡୋରରେ ବାନ୍ଧି ରଥରେ ବସାଇଲେ ଓ ଗୋରୁପଲକୁ ଅଡ଼େଇ ନେବାପାଇଁ ସୈନ୍ୟମାନଙ୍କୁ ଆଦେଶ ଦେଲେ, ମାତ୍ର ଗୋରୁମାନେ ମଧ୍ୟ ମାନିବାର ଜନ୍ତୁ ନୁହନ୍ତି ।

ଘୋର ରୂପ ଦେଖି କରି ବିରୁଡ଼ିଲେ ଗାଈ
ହମ୍ବା ରବ କରିଣ ଯେ ଉଠିଲେ ବୋବାଇ ।
ସେ ଗୋରୁପଲ ପଡ଼ିଲେ ଯହୁଁ ଗଳଗାଜି
ପାଣ୍ଡବବଳ ସକଳ ପଳାଇଲେ ଭାଜି ।

× × × ×

ଯୁକତେ ଗାଈକୁ କେବେ ନ କରନ୍ତି ବଧ
ଧର୍ମ ପ୍ରମାଣେ ଛାଡ଼ିଲେ ସର୍ବ ମହାଯୋଧ ।

ଆଉ କଅଣ କରନ୍ତେ ? ଗୋରୁ ତ ଅବଧ । ସେମାନଙ୍କୁ ଛାଡ଼ି ଦେବାପାଇଁ ପାଣ୍ଡବ ସୈନ୍ୟ ବାଧ ହେଲେ, ମାତ୍ର ସହଦେବ ବେଲ୍ଲାଳସେନଙ୍କୁ ରଥରେ ବାନ୍ଧି ଘେନିଗଲେ ।

ଐତିହାସିକ ବେଲ୍ଲାଳସେନ ନାମଟି ସାମାନ୍ୟ ପରିବର୍ତ୍ତିନ କରି ସାରଳା ଦାସ ଭ୍ରମ ସୃଷ୍ଟି କରିବାର ଚେଷ୍ଟା କରିଛନ୍ତି । ମାତ୍ର ସେ ଯେଉଁ ପରିବେଷ୍ଟନୀ ମଧ୍ୟରେ ଏହି ଉପାଖ୍ୟାନଟି ସୃଷ୍ଟି କରିଛନ୍ତି, ସେଥିରୁ ଐତିହାସିକ ନାମଟି ନିଃସନ୍ଦେହରେ ଧରା ପଡ଼ୁଛି । ଭୀମଙ୍କର ଜଣେ ପୁତ୍ରଙ୍କର ନାମ ବେଲ୍ଲାଳସେନ ଥିଲା । ମହାଭାରତ ଯୁଦ୍ଧ ପୂର୍ବରୁ ଶ୍ରୀକୃଷ୍ଣ ତାଙ୍କୁ ମାରି ପକାଇଥିବା କଥା ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ବିଶଦ ଭାବରେ ଆଲୋଚନା କରିଛନ୍ତି (ଓଡ଼ିଆ ସାହିତ୍ୟର ଆଦିପର୍ବ, ପୃ-୨୧୭-୨୨୦) । ମାତ୍ର ଯେଉଁ ପରିବେଶ ମଧ୍ୟରେ ଏ ଆଖ୍ୟାୟିକାରେ କବି ବେଲ୍ଲାଳସେନ କଥା ଲେଖିଛନ୍ତି, ସେ ବେଲ୍ଲାଳସେନ ଭୀମଙ୍କ ପୁତ୍ର ହୋଇ ନ ପାରନ୍ତି । ଗୋରୁମାନଙ୍କ ସାହାଯ୍ୟ ନେଲେ ଯେ ଯୁଦ୍ଧରେ ସୁବିଧା ହୁଏ, ଏ କଥାଟି ସାରଳା ଦାସ ବଙ୍ଗଦେଶର କିମ୍ବଦନ୍ତୀରୁ ସଂଗ୍ରହ କରିଥିଲେ । କୁଲ୍ ଜୀ ନାମରେ ମାଦଳାପାଞ୍ଜି ପରି କିମ୍ବଦନ୍ତୀ ସମ୍ବଳିତ ଗ୍ରନ୍ଥମାନ ବଙ୍ଗଦେଶରେ ଅଛି । କନୌଜରୁ କୁଳୀନ ବ୍ରାହ୍ମଣମାନେ ପ୍ରଥମେ କିପରି ବଙ୍ଗଦେଶକୁ ଆସିଲେ, ସେ ସମ୍ବନ୍ଧରେ ଏହି ଗ୍ରନ୍ଥମାନଙ୍କରେ କିମ୍ବଦନ୍ତୀମାନ ଲିପିବଦ୍ଧ ହୋଇଛି । ସବୁ କୁଲ୍ଜୀର କିମ୍ବଦନ୍ତୀ ପ୍ରାୟ ଏକପ୍ରକାର । ଏଗୁଡ଼ିକରେ ବର୍ଣ୍ଣିତ ଅଛି ଯେ ବଙ୍ଗରାଜା ଆଦିସୁର ଯଜ୍ଞ କରିବାପାଇଁ ପାଞ୍ଚଜଣ ନୈଷ୍ଠିକ ବ୍ରାହ୍ମଣଙ୍କୁ ବଙ୍ଗଦେଶକୁ ପଠାଇବା ପାଇଁ କନୌଜ ରାଜାଙ୍କୁ ଅନୁରୋଧ କରିଥିଲେ । ମାତ୍ର କନୌଜର ରାଜା ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ । ତାହାପରେ ଆଦିସୁର ପାଞ୍ଚଜଣ ବ୍ରାହ୍ମଣଙ୍କୁ ଯୋଦ୍ଧା ବେଶରେ ସଜାଇ ଓ ଗୋରୁପିଠିରେ ଚଢ଼ାଇ କନୌଜକୁ ପଠାଇଲେ । ଆଦିସୁରଙ୍କ

କୌଶଳ ସଫଳ ହେଲା । ଗୋ ଓ ବ୍ରାହ୍ମଣ ଉଭୟେ ଅବଧ ହୋଇଥିବା ଯୋଗୁ କନୌଜର ରାଜା ବାଧ ହୋଇ ପାଞ୍ଚଜଣ ନୈଷ୍ଠିକ ବ୍ରାହ୍ମଣଙ୍କୁ ବଙ୍ଗଦେଶକୁ ପଠାଇଲେ (History of Bengal, Dacca University, Vol. I,p.625) । କନୌଜରୁ ଆଗତ ଏହି ନୈଷ୍ଠିକ ବ୍ରାହ୍ମଣମାନଙ୍କଠାରୁ ବଙ୍ଗର କୁଳୀନ ବ୍ରାହ୍ମଣମାନେ ଉଦ୍ଭବ ହେଲେ । ବଲ୍ଲାଳସେନଙ୍କ ରାଜତ୍ୱକାଳରେ ବଙ୍ଗର କୁଳୀନ ପ୍ରଥା ପ୍ରସାର ଲାଭ କରିଥିଲା, କାରଣ ସେ ନିଜେ ଏହି ପ୍ରଥାର ପୃଷ୍ଠପୋଷକ ଥିଲେ । ବଲ୍ଲାଳସେନ ଖ୍ରୀ: ୧୧୬୫ରୁ ୧୧୮୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ପଣ୍ଡିତମାନେ ସ୍ଥିର କରିଛନ୍ତି ।

ବଲ୍ଲାଳସେନ ବଙ୍ଗରେ ରାଜତ୍ୱ କରିଥିବାରୁ ସାରଳା ଦାସ ଏ ଦେଶର ଅଂଶ-ବିଶେଷକୁ ବେଳେ ବେଳେ ବେଲ୍ଲାଳଦେଶ, ବେଲ୍ଲବଳୀଦେଶ ବା ବେଲ୍ଲବଳୀପୁର ବୋଲି ମଧ୍ୟ ବର୍ଣ୍ଣନା କରିଛନ୍ତି । ତା'ଛଡ଼ା ତାଙ୍କ ବର୍ଣ୍ଣନାନୁଯାୟୀ ଏ ଦେଶରେ ବହୁ କ୍ଷୀର ହେଉଥିବାରୁ ଏହାକୁ ବେଳେ ବେଳେ ସେ କ୍ଷୀରଦେଶ ବୋଲି ମଧ୍ୟ ଉଲ୍ଲେଖ କରିଛନ୍ତି । ଏହି ଆଖ୍ୟାୟିକାଟିରେ ସାରଳା ଦାସଙ୍କ ବଙ୍ଗବାସୀମାନଙ୍କ ପ୍ରତି ପ୍ରଚ୍ଛନ୍ନ ବ୍ୟଙ୍ଗ ଓ ତାଚ୍ଛଲ୍ୟ ରହିଛି । ବ୍ରିଟିଶ ରାଜତ୍ୱ କାଳରେ ବଙ୍ଗବାସୀମାନଙ୍କ ଚକ୍ଷୁରେ ଓଡ଼ିଶାବାସୀମାନେ ଯେଉଁପରି ଦେଖା ଗଲେ, କପିଳେଶ୍ୱରଙ୍କ ରାଜତ୍ୱ କାଳରେ ଓଡ଼ିଶାବାସୀମାନଙ୍କ ଚକ୍ଷୁରେ ବଙ୍ଗବାସୀମାନେ ମଧ୍ୟ ଠିକ୍ ସେହିପରି ଦେଖାଯାଇଥିବା ଅତ୍ୟନ୍ତ ସ୍ୱାଭାବିକ । ସାରଳା ଦାସଙ୍କ ପ୍ରାଧାନ୍ୟ ମନୋବୃତ୍ତି (Superiority complex) ମଧ୍ୟ ସ୍ୱାଭାବିକ । କାଳର ଏହିପରି କୁଟିଳା ଗତି !

—·—

# ଅଷ୍ଟମ ପରିଚ୍ଛେଦ

## ମୁସଲମାନ ଆଧିପତ୍ୟ କାଳର କେତେକ ଭୌଗୋଳିକ ଓ ଐତିହାସିକ ଚିତ୍ର

ମୁସଲମାନ ଆଧିପତ୍ୟ କାଳର ବା ୧୨୦୬ ଖ୍ରୀଷ୍ଟାବ୍ଦର ପରବର୍ତ୍ତୀ କାଳର ଯେଉଁ ଭୌଗୋଳିକ ଓ ଐତିହାସିକ ଚିତ୍ର ସାରଳା ମହାଭାରତରେ ଅଛି, ତାହା ହିଁ ଏ ଅଧ୍ୟାୟର ଆଲୋଚ୍ୟ ବିଷୟ । ଭୌଗୋଳିକ ଓ ଐତିହାସିକ ଉଭୟ ବିବରଣୀକୁ ଆଲୋଚନା କରିବା ଆବଶ୍ୟକ ହେଉଛି; କାରଣ ଉଭୟେ ଉଭୟର ପରିପୂରକ ଓ ଗୋଟିକୁ ବାଦ୍ ଦେଲେ ଅନ୍ୟଟି ବୁଝାଯାଏ ନାହିଁ । ସାରଳା ସାହିତ୍ୟରେ ସତ୍ୟ-ଯୁଗଠାରୁ ଆରମ୍ଭ କରି ମୁସଲମାନ ଯୁଗ ପର୍ଯ୍ୟନ୍ତ ସବୁ ଯୁଗର ଭୌଗୋଳିକ ନାମମାନ ରହିଛି । ସେଗୁଡ଼ିକୁ ଯଥାଯଥ ଭାବରେ ଚିହ୍ନଟ କରି ସମ୍ୟକ୍ ଆଲୋଚନା କଲେ ଗୋଟିଏ ବଡ଼ ଗ୍ରନ୍ଥ ହେବ ଏବଂ ଏହା ମଧ୍ୟ ପ୍ରତିପାଦିତ ହେବ ଯେ, ସାରଳା ଦାସଙ୍କ ସମୟରେ ବା ପୂର୍ବେ ରଚିତ କୌଣସି ଭାରତୀୟ ଭାଷା ବା ସଂସ୍କୃତ ଗ୍ରନ୍ଥରେ ସାରଳା ମହାଭାରତର ଭୌଗୋଳିକ ବିବରଣୀ ପରି ଏତେ ବେଶୀ ଭୌଗୋଳିକ ବିବରଣୀ ନାହିଁ । ଏ ଅଧ୍ୟାୟର ପ୍ରତିପାଦ୍ୟ ବିଷୟ ଦୃଷ୍ଟିରୁ ସାରଳା ଦାସଙ୍କ ବର୍ଣ୍ଣିତ ଭୌଗୋଳିକ ନାମମାନଙ୍କ ମଧ୍ୟରୁ କେତେକ ଗୁରୁତ୍ୱପୂର୍ଣ୍ଣ ନାମର ହିଁ ଆଲୋଚନା କରାଯାଉଛି ।

ଉତ୍ତର ପଶ୍ଚିମ ଓ ଉତ୍ତର ଭାରତରେ ହିଁ ପ୍ରଥମେ ମୁସଲମାନ ଆଧିପତ୍ୟ ଆରମ୍ଭ ହୋଇଥିଲା । ଫଳରେ ଏହି ଅଞ୍ଚଳର କେତେଗୁଡ଼ିଏ ସ୍ଥାନ ସର୍ବଭାରତୀୟ ଖ୍ୟାତିସମ୍ପନ୍ନ ହୋଇ ଉଠିଥିଲେ । ଏଗୁଡ଼ିକ ମଧ୍ୟରୁ କେତେକର ଅବସ୍ଥିତି ଯେ ମୁସଲମାନ ରାଜତ୍ୱ ପୂର୍ବରୁ ନ ଥିଲା, ଏକଥା କୁହାଯାଉ ନାହିଁ । ବସ୍ତୁତଃ ରାଜତ୍ୱକାଳର ଅଭ୍ୟୁଦୟ ପୂର୍ବର ତାହାର ଅଖ୍ୟାତ ଇତିହାସ ମଧ୍ୟ ରହିଛି; କିନ୍ତୁ ସେପରି ଅଖ୍ୟାତ ଇତିହାସ ଆମ୍ଭମାନଙ୍କ ପ୍ରଣିଧାନର ବିଷୟ ନୁହେଁ । ଏଣୁ ମୁସଲମାନ ରାଜତ୍ୱରେ ଖ୍ୟାତି ଲାଭ କରିଥିବା ସ୍ଥାନମାନଙ୍କ ସମ୍ବନ୍ଧରେ ହିଁ ଆଲୋଚନା କରାଯାଉ ।

(୧) ଦିଲ୍ଲୀ—ମୁସଲମାନ ରାଜତ୍ୱର ପ୍ରାରମ୍ଭରୁ ଯେଉଁ ସ୍ଥାନମାନଙ୍କର ଅଭ୍ୟୁଦୟ ଘଟିଲା, ସେମାନଙ୍କ ମଧ୍ୟରେ ଦିଲ୍ଲୀ ହେଉଛି ସର୍ବଶ୍ରେଷ୍ଠ । ପୂର୍ବ ଅଧ୍ୟାୟରେ ଦିଲ୍ଲୀ ବିଷୟ ଆଲୋଚନା କରାଯାଇଛି । ତଥାପି ଏଠାରେ ତା'ର ସାମାନ୍ୟ ପୁନରାବୃତ୍ତି ଆବଶ୍ୟକ ।

ଦିଲ୍ଲୀ ଯେ ଢଙ୍ଗର ମାଗୋ ମାଳବ କୁଞ୍ଜର
ଏତେ ଦୂରୁ ଆଣି ମାଗୋ ପୋଷୁ ତୁ ଉଦର ।

ମଧ୍ୟ, ପୃ. ୭୬

ମୁସଲମାନ ସାମ୍ରାଜ୍ୟ ସ୍ଥାପିତ ହେବା ପୂର୍ବରୁ ପୃଥ୍ୱୀରାଜ ଚୌହାନଙ୍କ ରାଜ୍ୟରେ ଦିଲ୍ଲୀ ଗୋଟିଏ ପ୍ରଦେଶ ବା ଜିଲାର ରାଜଧାନୀ ଥିଲା ଓ ସେଠାରେ ଗୋବିନ୍ଦରାଜ ଶାସନକର୍ତ୍ତା ଥିଲେ । ପରେ ୧୨୦୬ ଖ୍ରୀଷ୍ଟାବ୍ଦରୁ ୧୮୫୭ ପର୍ଯ୍ୟନ୍ତ ଦିଲ୍ଲୀ ବିଭିନ୍ନ ମୁସଲମାନ ସାମ୍ରାଜ୍ୟର ରାଜଧାନୀ ହୋଇ ସର୍ବଭାରତୀୟ ଖ୍ୟାତି-ସମ୍ପନ୍ନ ହେଲା (୧) । ସାରଳା ମହାଭାରତ ଲେଖା ହେବା ବେଳକୁ ଦିଲ୍ଲୀ ଭାରତର ରାଜଧାନୀ ହୋଇସାରିଥିଲା; ତାହା ତା'ର ବିଶେଷଣ 'ଢଙ୍ଗର' ଶବ୍ଦରୁ ସୂଚିତ ହେଉଛି । ଯେଉଁ ନଗର ଭାରତ ପରି ଗୋଟିଏ ଉପମହାଦେଶର ରାଜଧାନୀ, ତାହା ଢଙ୍ଗର ବା ଉନ୍ନତ ହେବାର କଥା । ଆଧୁନିକ ଯୁଗରେ କଲିକତା ଏଇଥିପାଇଁ ଉନ୍ନତ ହୋଇଥିଲା ଓ ବର୍ତ୍ତମାନ ଦିଲ୍ଲୀ ଆଉ ଥରେ ଉନ୍ନତ ହୋଇଛି ।

(୨) ରଣସ୍ତମ୍ଭପୁର—ପୂର୍ବତନ ଜୟପୁର ଷ୍ଟେଟରେ ଅବସ୍ଥିତ ରଣସ୍ତମ୍ଭପୁର ଚୌହାନ (ବା ଚୃହମାନ) ରାଜବଂଶର ଅନ୍ୟ ଏକ ଶାଖାର ରାଜଧାନୀ ଥିଲା । ଏହାର ଡାକ ନାମ ଥିଲା ରନ୍ଥମ୍ଭୋର । ୧୧୯୨ ଖ୍ରୀଷ୍ଟାବ୍ଦରେ ପୃଥ୍ୱୀରାଜ ତରାଇଁ ଯୁଦ୍ଧରେ ମହମ୍ମଦ ଘୋରୀଙ୍କ ଦ୍ୱାରା ପରାସ୍ତ ଓ ନିହତ ହେବାପରେ ତାଙ୍କ ସାନଭାଇ ହରିରାଜ

---

(୧) ପ୍ରତ୍ୟେକ ଐତିହାସିକ ଘଟନା ପାଇଁ ପ୍ରାମାଣିକ ଗ୍ରନ୍ଥର ଉଲ୍ଲେଖ କଲେ ଅନେକ ଗୁଡ଼ିଏ ଫୁଟ୍‌ନୋଟ୍‌ରେ ଭାରାକ୍ରାନ୍ତ ହୋଇ ଗ୍ରନ୍ଥଟି ଦୁଷ୍ପାଠ୍ୟ ହେବ । ଏଣୁ ସର୍ବଜନବିଦିତ ଐତିହାସିକ ଘଟନାମାନଙ୍କ ପାଇଁ ପ୍ରାମାଣିକ ଗ୍ରନ୍ଥର ଉଲ୍ଲେଖ କରାଯାଉନାହିଁ । ସନ୍ଦେହ ହେଲେ ସନ୍ଦେହ ଦୂର ପାଇଁ କେମ୍ବ୍ରିଜ୍ ଇତିହାସ ସିରିଜ୍ ବା ଭାରତୀୟ ବିଦ୍ୟା ଭବନ ସିରିଜ୍ ପରି ଟିକିଏ ବଡ଼ ଧରଣର ଭାରତ-ଇତିହାସର ସାହାଯ୍ୟ ନେଲେ ପ୍ରବନ୍ଧର ପ୍ରତ୍ୟେକ ଐତିହାସିକ ଘଟନା ସହଜରେ ସାଧ୍ୟ କରାଯାଇପାରିବ ।

ପ୍ରଥମେ ଆଜମେରକୁ ଓ ପରେ ରନ୍ଥମ୍ଭୋରକୁ ପଳାଇ ଯାଇ କିଛିକାଳ ଆତ୍ମରକ୍ଷା କରିଥିଲେ । ଏହି ଦୁର୍ଗ ଦୁର୍ଭେଦ୍ୟ ଓ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ମୁସଲମାନ ସମ୍ରାଟମାନଙ୍କ ଦ୍ୱାରା ଏହା ବାରମ୍ବାର ଆକ୍ରାନ୍ତ ହୋଇ ଶେଷରେ ୧୩୦୧ ଖ୍ରୀଷ୍ଟାବ୍ଦରେ ଆଲାଉଦ୍ଦିନ ଖିଲିଜିଙ୍କ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହେଲା । ଏହି ଦୁର୍ଗର କଥା ସାରଳା ଦାସ ବାରମ୍ବାର ଉଲ୍ଲେଖ କରିଛନ୍ତି ।

ବହୁ କଥା ଅଛି ରଣସ୍ତମ୍ଭର ଗଡ଼ରେ
ସେ ପୁର ରଚେ କରତା କାନନ ଭିତରେ ।

ବନ, ପୃ ୨୮୭

ଏହାଛଡ଼ା ସଭାପର୍ବରେ (ପୃ ୧୭୧—୧୭୯) କବି ଅର୍ଜ୍ଜୁନଙ୍କର ରଣସ୍ତମ୍ଭପୁର ଜୟ ସମ୍ବନ୍ଧରେ ଗୋଟିଏ ଦୀର୍ଘ ଆଖ୍ୟାୟିକା ସୃଷ୍ଟି କରିଛନ୍ତି । ଏଥିରେ କଳ୍ପନା-ବିଳାସ ଓ ଅତିମାନୁଷିକତା ପୂର୍ଣ୍ଣମାତ୍ରାରେ ରହିଛି । ଏହା ରହିବାର କଥା, ମାତ୍ର ଏଠାରେ ଲକ୍ଷ୍ୟ କରିବାର ବିଷୟ ଏହି ଯେ, ସାରଳା ମହାଭାରତ ରଚିତ ହେବାବେଳକୁ ରଣସ୍ତମ୍ଭଗଡ଼ର ଖ୍ୟାତି ବହୁଳ ଭାବରେ ସର୍ବତ୍ର ପ୍ରଚାରିତ ହୋଇ-ସାରିଥିଲା ଓ ସେହି ହେତୁରୁ ଏହା ଏ ଗ୍ରନ୍ଥରେ ବହୁ ଭାବରେ ସ୍ଥାନ ପାଇଛି ।

(୩) ଅଜୟମେରୁ—ଏହାର ପ୍ରଚଳିତ ନାମ ଥିଲା ଆଜମେର ବା ଆଜମିର୍ । ଏହା ପୃଥ୍ୱୀରାଜଙ୍କ ରାଜଧାନୀ ଥିଲା । ମୁସଲମାନମାନେ ଦିଲ୍ଲୀ ଅଧିକାର କରି ନେବା ପରେ ପୃଥ୍ୱୀରାଜଙ୍କ ବଂଶ ଏହିଠାରେ କିଛିକାଳ ତିଷ୍ଠି ରହିଥିଲେ, ମାତ୍ର କୁତବୁଦ୍ଦିନ୍ ଏହାକୁ ୧୨୯୪ରେ ଦିଲ୍ଲୀ-ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କଲେ । ମୁସଲମାନ ରାଜତ୍ୱରେ ଆଜମେର ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲା । ଅଜୟମେରୁକୁ ସାରଳା ଦାସ ମେରୁ, ମେରୁ ମନ୍ଦାର, ମେରୁ କୋଶଳ ଇତ୍ୟାଦି ନାମରେ ଉଲ୍ଲେଖ କରିଛନ୍ତି । ଭାନୁମତୀ ସ୍ୱୟମ୍ବରରେ ଯୋଗ ଦେଇଥିବା ବିଭିନ୍ନ ରାଜା ଓ ରାଜ୍ୟର ନାମ ବର୍ଣ୍ଣନା କରି କବି ଆଦ୍ୟ ପର୍ବରେ ଲେଖିଛନ୍ତି—

ମତ୍ସ୍ୟ କୋଶଳ ଆବର ଉତ୍ତର କୋଶଳ
ମେରୁ କୋଶଳ ମଳୟ ଅନଳ ।

ଆଦ୍ୟ, ପୃ ୧୧୭

ମତ୍ସ୍ୟ କୋଶଳ ହେଉଛି ରାଜସ୍ଥାନର ଜୟପୁର ଅଞ୍ଚଳ । ମେରୁକୋଶଳ ହେଉଛି ରାଜସ୍ଥାନର ଅଜୟମେରୁ ବା ଆଜମେର୍ ଅଞ୍ଚଳ । ଉତ୍ତରକୋଶଳ ହେଉଛି ଉତ୍ତର ପ୍ରଦେଶର ଅଯୋଧ୍ୟା ଅଞ୍ଚଳ ଓ ଅନଳ କୋଶଳ ହେଉଛି ଅନହିଲ୍‌ଓ୍ୱାର

ବା ଗୁଜରାଟ ଅଞ୍ଚଳ । ୧୨୯୯ ଖ୍ରୀଷ୍ଟାବ୍ଦରେ ଗୁଜରାଟ ଆଲ୍ଲାଉଦ୍ଦିନ ଖିଲଜିଙ୍କ ଦ୍ୱାରା ଅଧିକୃତ ହେବା ପର୍ଯ୍ୟନ୍ତ ଗୁଜରାଟର ରାଜଧାନୀର ନାମ ଥିଲା ଅଣହିଲ୍ଲ ପାଟନ ବା ଅଣହିଲ୍ଲ ପଟନ; କିନ୍ତୁ ଏହାର ପ୍ରଚଳିତ ନାମ ଥିଲା ଅନଲ୍‌ଓ୍ୱାର । କବି ଏହାକୁ ବେଳେ ବେଳେ ଖାଲି ପଟନ ବ. ପାଟଣା ବୋଲି ମଧ୍ୟ ଲେଖିଛନ୍ତି ।,

ଯଥା:—

ପାଟଣା ରାଜ୍ୟର ଏହି ସୁଜାଣ ନୃପତି
ଲକ୍ଷେ ବଳ ଘେନି ବିଜେ କରିଅଛି ଏଥି ।
ଦ୍ରୌପଦୀ ସ୍ୱୟମ୍ବର, ଆଦ୍ୟ, ପୃ-୨୫୭

ଏ ସ୍ଥାନ ମଧ୍ୟ ମୁସଲମାନ ରାଜତ୍ୱରେ ଯଥେଷ୍ଟ ଖ୍ୟାତିଲାଭ କରିଥିଲା । କବି କାହାକୁ ମଳୟକୋଶଳ ବୋଲି ଲେଖିଛନ୍ତି, ତାହା ସ୍ଥିର କରିବା ସମ୍ଭବପର ହେଉନାହିଁ ।

ଏଠାରେ ପ୍ରଶ୍ନ ହୋଇପାରେ—ସାରଳାଦାସ ନାମଗୁଡ଼ିକୁ ଏପରି ଖଣ୍ଡିତ କରି କାହିଁକି ଲେଖିଛନ୍ତି ? ଏହାର କାରଣ ଅନେକ; ଆଗରୁ କେତେକ କୁହା-ଯାଇଛି । ଛନ୍ଦ ରକ୍ଷା କରିବା ପାଇଁ ତାଙ୍କୁ କେତେକ ନାମକୁ ସଂକ୍ଷିପ୍ତ ବା ବର୍ଦ୍ଧିତ କରିବାକୁ ପଡ଼ିଛି । ଦ୍ୱିତୀୟତଃ କବି ଯାହା ଲେଖିଥିଲେ, ଠିକ୍ ତାହା ଆମ୍ଭମାନଙ୍କ ପାଖରେ ଆସି ପହଞ୍ଚିପାରି ନାହିଁ । ଗତ ପାଞ୍ଚସାତ ବର୍ଷ ମଧ୍ୟରେ ତାହା ବହୁ ଭାବରେ ବିକୃତ, ଖଣ୍ଡିତ ଓ ରୂପାନ୍ତରିତ ହୋଇଯାଇଛି । ତୃତୀୟତଃ ମହାଭାରତରେ ଖାଲି ସତ୍ୟ, ତ୍ରେତା ଓ ଦ୍ୱାପରଯୁଗର ନାମ ଓ ବିଷୟମାନ ରହିବାର କଥା; କିନ୍ତୁ ସାରଳା ଦାସ ତାଙ୍କ ମହାଭାରତରେ ତାଙ୍କ ସମୟର ଚେଙ୍କିଶାଳରୁ ଢେଙ୍କାନାଳ ପର୍ଯ୍ୟନ୍ତ କୌଣସି କଥା ଲେଖିବାକୁ ଭୁଲି ନାହାନ୍ତି । କଳିଯୁଗର ଏତେଗୁଡ଼ାଏ କଥା ଧର୍ମ ଓ ପୁରାଣ ମାଧ୍ୟମରେ ଲେଖିଲାବେଳକୁ ସେଗୁଡ଼ିକୁ ଟିକିଏ ବୁଲେଇ ବଙ୍କେଇ ଲେଖିବା ପାଇଁ ସେ ବାଧ୍ୟ ହୋଇଛନ୍ତି । ସେ କାହିଁକି ଗୋଳେଇ ମାଳେଇ ଲେଖିଛନ୍ତି, ତା'ର କାରଣ ସେ ନିଜେ ଚଣ୍ଡୀପୁରାଣରେ ଲେଖିଯାଇଛନ୍ତି । ସେ ଯାହା ଲେଖିଛନ୍ତି ତା'ର ସାରମର୍ମ ହେଉଛି—ଲୋକେ କହିବେ ଯେ ମୁଁ ଭାରି 'ଗୋଳିଆ', କିନ୍ତୁ ମୁଁ କଅଣ କରିବି ? ମୁଁ ତ ମୂର୍ଖ, ଅପଣ୍ଡିତ, ଅଜ୍ଞାନୀ, ଏପରିକି ମୁଁ ଖଡ଼ି ବି ଛୁଇଁନାହିଁ । ସାରଳା ମୋତେ ଯାହା କହନ୍ତି, ତାହା ମୁଁ ଲେଖିଯାଏ । ଏହି ହେଲା ତାଙ୍କର କାରଣ । ଯେଉଁମାନେ ଧର୍ମବିଶ୍ୱାସୀ, ସେମାନେ ଏହି କାରଣ ଗ୍ରହଣ କରି ନିଅନ୍ତୁ; ଯେଉଁମାନେ ଯୁକ୍ତିବାଦୀ ସେମାନେ ଉଲ୍ଲିଖିତ କାରଣମାନ ବିଚାର

କରନ୍ତୁ । ମୋଟକଥା ସାରଳା ଦାସ ଯେଉଁ ସ୍ଥଳରେ ସବୁକଥା ପ୍ରକାଶ କରି–ଯାଇଛନ୍ତି, ତାହା ଏକ ବଶିଷ୍ଟ ସ୍ଥଳ ଓ ତାକୁ 'ସାରଳାଦାସୀୟ ସ୍ଥଳ' ବୋଲି ଆଖ୍ୟା ଦିଆଯାଇପାରେ । ଏହି ସ୍ଥଳକୁ ସମାଲୋଚନା ନ କରି ତାକୁ ଶ୍ରଦ୍ଧା, ସହାନୁଭୂତି, ଚିନ୍ତା ଓ ମନୋନିବେଶ ସହିତ ବୁଝିବାକୁ ଚେଷ୍ଟା କଲେ ହିଁ ତାଙ୍କ ଗ୍ରନ୍ଥର ମହତ୍ତ୍ୱ ଉପଲବ୍‌ଧି କରିହେବ ।

(୪) ବାଗ୍‌ଲନ—ବାଗ୍‌ଲନ ନାସିକ ଜିଲ୍ଲାର ଗୋଟିଏ କ୍ଷୁଦ୍ର ଅଖ୍ୟାତ ରାଜ୍ୟ, ମାତ୍ର ମୁସଲମାନ ରାଜତ୍ୱରେ ଥରେ ଏହା ସମଗ୍ର ଭାରତରେ ଚହଳ ସୃଷ୍ଟି କରିଥିଲା । ୧୨୯୯ ଖ୍ରୀଷ୍ଟାବ୍ଦରେ ଗୁଜରାଟ ଆଲ୍ଲାଉଦ୍ଦିନ ଖିଲିଜଙ୍କ ଦ୍ୱାରା ଅଧିକୃତ ହେବା ପରେ ଗୁଜରାଟର ରାଣୀ କମଳାଦେବୀ ଆଲ୍ଲାଉଦ୍ଦିନଙ୍କ ଅନ୍ତଃପୁରବାସିନୀ ହେଲେ । ଗୁଜରାଟର ବିଖ୍ୟାତ ବାଘେଲବଂଶୀୟ ରାଜା କର୍ଣ୍ଣଦେବ, ରାଜ୍ୟ ଓ କମଳାଦେବୀଙ୍କୁ ହରାଇ କନ୍ୟା ଦେବଲାଙ୍କ ସହିତ ପଳାଇ ଆସି କ୍ଷୁଦ୍ର ବାଗ୍‌ଲନରେ କିଛିକାଳ ରାଜତ୍ୱ କରିଥିଲେ, ମାତ୍ର ସେଠାରେ ମଧ୍ୟ ଶାନ୍ତିରେ ରହିପାରିଲେ ନାହିଁ । ଦେବଲାଙ୍କ ମାତା କମଳାଦେବୀ ତାଙ୍କ କନ୍ୟାକୁ ଦେଖିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ଦେବଲାଙ୍କୁ ଧରି ଆଣିବା ପାଇଁ ଆଲ୍ଲାଉଦ୍ଦିନ ଆଦେଶ ଦେଇଥିଲେ । ସେତେବେଳକୁ ଦେବଗିରିର ରାଜପୁତ୍ର ଶଙ୍କର (ସିଙ୍ଘନ) ଦେବଙ୍କ ସହିତ ଦେବଲାଙ୍କ ବିବାହ ହେବା ପାଇଁ ନିର୍ବନ୍ଧ ହୋଇସାରିଥିଲା । ଏଣୁ କର୍ଣ୍ଣଦେବ ଆଲ୍ଲାଉଦ୍ଦିନଙ୍କ ଆଦେଶ କଥା ଜାଣିବାମାତ୍ରେ ଦେବଲାଙ୍କୁ ଦେବଗିରିକୁ ପଠାଇଦେଲେ । ମାତ୍ର ଅଙ୍ଗରକ୍ଷୀମାନଙ୍କ ସହିତ ଦେବଗିରି ଆଡ଼କୁ ଯାଉଥିବାବେଳେ ବାଟରେ ବିଖ୍ୟାତ ଏଲୋରା ଗୁମ୍ଫାମାନଙ୍କ ନିକଟରେ ମୁସଲମାନ ସୈନ୍ୟମାନେ ଦେବଲାଙ୍କୁ ଧରି ଦିଲ୍ଲୀକୁ ଘେନି ଯାଇଥିଲେ । ଶେଷରେ ଦେବଲାଙ୍କ ସହିତ ଆଲ୍ଲାଉଦ୍ଦିନଙ୍କ ଜ୍ୟେଷ୍ଠପୁତ୍ର ଖିଜିର ଖାଁଙ୍କ ବିବାହ ହୋଇଥିଲା । ବିଖ୍ୟାତ କବି ଅମିର୍ ଖୁସ୍ରୁଙ୍କ 'ଆଶିକ୍' କାବ୍ୟରେ, ଫେରିସ୍ତାଙ୍କ ଇତିହାସରେ ଓ ଡି.ଏଲ୍. ରାୟଙ୍କ ଦେବଳା-ଦେବୀ ନାଟକରେ ଏହି ଘଟଣାମାନ ସ୍ଥାନ ପାଇଛି । ଏଥି ମଧ୍ୟରୁ କେତେକ ଘଟଣା ସମ୍ବନ୍ଧରେ ପଣ୍ଡିତମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଥିଲେ ହେଁ ବିଶାଳ ଓ ଅତୁଳ ଧନଶାଳୀ ଗୁଜରାଟର ବାଘେଲ ବଂଶୀୟ ରାଜରାଣୀ କମଳା ଓ ରାଜକନ୍ୟା ଦେବଲା ଯେ ଦିଲ୍ଲୀ ସୁଲତାନଙ୍କ ଅନ୍ତଃପୁରବାସିନୀ ହୋଇଥିଲେ, ଏଥିରେ ମତଦ୍ୱୈଧ ନାହିଁ । ଏ ଘଟଣା ହିନ୍ଦୁ ଭାରତରେ ଚହଳ ସୃଷ୍ଟି କରିଥିଲା ଓ ଏହା ସହିତ ସମ୍ପୃକ୍ତ ଅଖ୍ୟାତ ବାଗ୍‌ଲନ ଏହିପରି ଭାବରେ ବିଖ୍ୟାତ ହୋଇପଡ଼ିଥିଲା । ସାରଳା ଦାସଙ୍କ ମହାଭାରତର ରଚନାକାଳ ପର୍ଯ୍ୟନ୍ତ ବାଗ୍‌ଲନ ନାମଟି ପ୍ରତ୍ୟେକ ହିନ୍ଦୁ ରାଜ୍ୟର ମନୀଷୀମାନଙ୍କୁ ଜ୍ଞାତ ଥିବା ଖୁବ୍ ସମ୍ଭବ । ଏଣୁ ସାରଳା ଦାସ ବିରାଟ ପର୍ବରେ

ପାଣ୍ଡବମାନଙ୍କ ଅନୁସନ୍ଧାନ ପାଇଁ ଦୁର୍ଯ୍ୟୋଧନଙ୍କ ଦ୍ୱାରା ପ୍ରେରିତ ପଶ୍ଚିମ ଦିଗର ଗୁପ୍ତଚରମୁଖରେ ଏହି ନାମଟି ପ୍ରକାଶ କରାଯାଇଛନ୍ତି—

ଋଷ୍ୟମୁଖ ପଞ୍ଚବଟୀ ଚନ୍ଦ୍ରକୂଟ ବନ
ବାଗାନଲ କଳାପ ଯେ ବନ ମଧୁବନ ।

ବିରାଟ—ପୃ. ୮୮

ଏଥିମଧ୍ୟରୁ ଋଷ୍ୟମୂକ, ପଞ୍ଚବଟୀ, ଚନ୍ଦ୍ରକୂଟ ଓ ମଧୁବନ ହେଉଛି ପୌରାଣିକ ନାମ । ଋଷ୍ୟମୂକକୁ ମହୀଶୂରରେ, ପଞ୍ଚବଟୀକୁ ଗୋଦାବରୀର ଉତ୍ପତ୍ତି ସ୍ଥଳ ନିକଟରେ, ଚନ୍ଦ୍ରକୂଟକୁ ଉତ୍ତର ପ୍ରଦେଶର ବାନ୍ଦାଠାରୁ ୫୦ ମାଇଲ ଦୂରବର୍ତ୍ତୀ ଏହି ନାମଧେୟ ସ୍ଥାନ ସଙ୍ଗରେ ଓ ମଧୁବନକୁ ମଥୁରା ଠାରୁ ୧୩ ମାଇଲ ଦକ୍ଷିଣରେ ଥିବା ମହୋଲି ସଙ୍ଗରେ ପଣ୍ଡିତମାନେ ଚିହ୍ନିତ କରିଛନ୍ତି ( Cunningham Report, Vol. XX, P. 41 ) । ମହୋଲିର ବହୁମୂର୍ତ୍ତି ଓ ସ୍ଥାପତ୍ୟର ଭଗ୍ନାଂଶ ବର୍ତ୍ତମାନ ମଥୁରାର କର୍ଜନ ମିଉଜିୟମରେ ସ୍ଥାନ ପାଇଛି । ଅବଶିଷ୍ଟ ଭୌଗୋଳିକ ନାମ ଦୁଇଟି ହେଉଛି ଐତିହାସିକ ଓ ଉଭୟ ବିକୃତ ରୂପରେ ଆମ୍ଭମାନଙ୍କ ପାଖରେ ପହଞ୍ଚିଛନ୍ତି । କଳାପ ନାମଟି କଳପି ହେବାର କଥା । ସାରଳା ଦାସ କଳପି ବା କଲ୍ପି ସମ୍ବନ୍ଧରେ ଏତେ ବେଶୀ କଥା ଲେଖିଛନ୍ତି ଯେ ତା'ର ସ୍ୱତନ୍ତ୍ର ଆଲୋଚନାର ଆବଶ୍ୟକତା ଥିବାରୁ ତାହା ପରେ ଆଲୋଚନା କରାଯିବ । ବାଗାନଲ ନାମଟିର ପ୍ରକୃତ ରୂପ ବାଗଲାନ ହେବାର କଥା । କୌଣସି ପଣ୍ଡିତମନ୍ୟ ବ୍ୟକ୍ତି ତାକୁ ଏହି ରୂପ ଦେଇଛନ୍ତି କିମ୍ବା ନକଲକାରୀଙ୍କ ଦୋଷରୁ ବା ମୁଦ୍ରାଦୋଷରୁ ଏପରି ଘଟିଛି । ଏହି ରୂପ ବିକୃତିର ସଠିକ କାରଣ କହିବା ସମ୍ଭବପର ନୁହେଁ । କିନ୍ତୁ ନାମଟିର ପ୍ରକୃତ ରୂପ ହେଉଛି ( ବାଗଲାନ ) —ବାଗାନଲ ନୁହେଁ ।

(୫) କାଲ୍ପି—ଉତ୍ତର ପ୍ରଦେଶର ଜାଲୌନ୍ ଜିଲାରେ ଅବସ୍ଥିତ ଏହା ଏକ କ୍ଷୁଦ୍ର ଓ ଅଖ୍ୟାତ ସ୍ଥାନ । କାଲ୍ପିର ନାମ ସଂସ୍କୃତ ରାମାୟଣ, ମହାଭାରତ ବା ପୁରାଣମାନଙ୍କରେ କିମ୍ବା ହିନ୍ଦୁ, ବୌଦ୍ଧ ଓ ଜୈନମାନଙ୍କର କୌଣସି ପ୍ରାଚୀନ ଗ୍ରନ୍ଥରେ ନାହିଁ । ଏହାର ନାମ କୌଣସି ମାନଚିତ୍ରରେ ମିଳିବା ମଧ୍ୟ କଷ୍ଟକର । ଓ୍ୟାଲ୍‌ମେପ୍‌ମାନଙ୍କରେ କିମ୍ବା ୧୯୫୮ରେ ପ୍ରକାଶିତ ଭାରତ ସରକାରଙ୍କ ପର୍ଯ୍ୟଟକ-ମାନଚିତ୍ରମାନଙ୍କରେ (Tourist Maps of India) ଏହି ନାମ ସ୍ଥାନ ପାଇନାହିଁ । ଅକ୍ସଫୋର୍ଡ ସ୍କୁଲ ଏଟଲସରେ କରଞ୍ଜିଆର ନାମ ଥିଲେ ମଧ୍ୟ କାଲ୍ପିର ନାମ ନାହିଁ । କାଲ୍ପି-ସମ୍ବନ୍ଧୀୟ ଏ ସମସ୍ତ କଥାରୁ ସୂଚିତ ହେବ ଯେ

ଏହାର ପ୍ରାଚୀନ ବା ଆଧୁନିକ ଖ୍ୟାତି ନାହିଁ । ଭାରତର ପ୍ରାଚୀନ ଭୂଗୋଳ ସମ୍ବନ୍ଧରେ ଲିଖିତ ଗ୍ରନ୍ଥମାନଙ୍କରେ ଏହାର ଉଲ୍ଲେଖ ନାହିଁ, ମାତ୍ର ଜ୍ଞାନ-ପିପାସୁ ଜର୍ମାନ୍ ଫୁହ୍ରେ ସାହେବ ଏହା ସମ୍ବନ୍ଧରେ କେତେକ କଥା ଲେଖିଯାଇଛନ୍ତି । ସେ ଯାହା ଲେଖିଯାଇଛନ୍ତି, ତା'ର ସାରମର୍ମ ହେଉଛି— କାଲୌନ୍ ସହରର ୨୬ ମାଇଲ୍ ପୂର୍ବ ଦିଗରେ କାଲ୍ପି ଅବସ୍ଥିତ । ଏହାର ପ୍ରଶ୍ନ-ବର୍ତ୍ତୀ ମଣ୍ଡି ନାମକ ସ୍ଥାନରେ ହିନ୍ଦୁ ବୌଦ୍ଧ ମୁଦ୍ରାମାନ ମିଳେ । କିମ୍ବଦନ୍ତୀ ଅନୁସାରେ ଆକବରଙ୍କ ସଭାର ରଜା ବୀରବଲ୍‌ଙ୍କ ଏହା ଜନ୍ମସ୍ଥାନ । ଫେରିସ୍ତା ଲେଖିଛନ୍ତି ଯେ, କନୌଜର ରଜା ବାସୁଦେବ ଏଠାରେ ଗୋଟିଏ ଦୁର୍ଗ ନିର୍ମାଣ କରିଥିଲେ । ଏହି ଦୁର୍ଗକୁ ୧୧୯୬ ଖ୍ରୀଷ୍ଟାବ୍ଦରେ କୁତୁବୁଦ୍ଦିନ୍ ଆଇବାକ୍ ଅଧିକାର କରିଥିଲେ । ଏ ସ୍ଥାନର ପ୍ରଧାନ ପ୍ରାଚୀନ କୀର୍ତ୍ତିର ନାମ ହେଉଛି ଚଉରାଶି-ଗମ୍ବୁଜ । କଥିତ ଅଛି ଯେ, ଏହା ସିକନ୍ଦର ଲୋଦିଙ୍କ କବର (A. Fuhrer—The Monuments Antiquities and Inscriptions in the North Western Provinces and Oudh, 1861, PP. 112-114) । ସାରଳା ଦାସଙ୍କ ସମୟରେ ସିକନ୍ଦର ଲୋଦି ବା ରଜା ବୀରବଲ୍ ଜାତ ହୋଇ ନ ଥିଲେ । ଏଣୁ ଏମାନଙ୍କ ପାଇଁ କାଲପିର ଯେଉଁ ପରବର୍ତ୍ତୀ ଖ୍ୟାତି ହେଲା, ସାରଳା ଦାସଙ୍କ ସମୟରେ ତା'ର ସେ ଖ୍ୟାତି ମଧ୍ୟ ନ ଥିଲା ।

ତଥାପି ସାରଳା ଦାସ କଳିଙ୍ଗ ବା କାଳିଙ୍ଗର କଥା ବାରମ୍ବାର ଉଲ୍ଲେଖ କରିଛନ୍ତି; ତାକୁ ଏକାଧିକ ଆଖ୍ୟାୟିକା ସହିତ ସଂଶ୍ଳିଷ୍ଟ କରିଛନ୍ତି । ଏଥିରୁ ମନେହୁଏ ଯେ, ସାରଳା ମହାଭାରତ ଲେଖା ହେଉଥିବାବେଳେ କଳିଙ୍ଗ କେତେକ ବିଶିଷ୍ଟ ଘଟଣା ସହିତ ସଂଶ୍ଳିଷ୍ଟ ହୋଇପଡ଼ିଥିଲା ଓ ସେହି ହେତୁରୁ ଏହି ନାମଟି ସାରଳା ଦାସଙ୍କ ମୁଣ୍ଡ ଭିତରେ ଖେଳି ବୁଲୁଥିଲା । ରନ୍ତଲେଇର ନାମ କିଏ ଜାଣିଥିଲା ? ମାତ୍ର କେତେକ ବିଶିଷ୍ଟ ଘଟଣା ସହିତ ସଂପୃକ୍ତ ହୋଇପଡ଼ିଥିବାରୁ ରନ୍ତଲେଇ ନାମଟି ସର୍ବଭାରତୀୟ ସ୍ତରରେ କିଛିଦିନ ପାଇଁ ସମସ୍ତଙ୍କ ମୁଣ୍ଡରେ ଖେଳି ବୁଲିଲା । ସାରଳା ଦାସ କଳିଙ୍ଗ ସମ୍ବନ୍ଧରେ ଯାହା ଲେଖିଛନ୍ତି, ସେଥିମଧ୍ୟରୁ କେତେକ ଉଦାହରଣ ନିମ୍ନରେ ଦିଆଗଲା ।

ରାଜସୂୟ ଯଜ୍ଞ ପାଇଁ ଅର୍ଜ୍ଜୁନ ଉତ୍ତର ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରିବା ପ୍ରସଙ୍ଗରେ କଳିଙ୍ଗର ନାମ ଉଲ୍ଲେଖ ରହିଛି—

'ଚଳି ଗଲେ ଧନଞ୍ଜୟ କଳିଙ୍ଗ ରାଜ୍ୟ ଜିଣି
ରୁଦ୍ରପୁରରେ ପ୍ରବେଶ ହେଲେ ଫାଲଗୁନି ।'

ସଭା, ପୃଷ୍ଠା : ୧୬୨

ଅଜ୍ଞାତ ବନବାସ ପାଇଁ ବିରାଟ ରାଜ୍ୟ ମତ୍ସ୍ୟଦେଶକୁ ଯିବା ପୂର୍ବରୁ କୀଚକ-ବାହୁବଳରେ ବିରାଟ କପର ରାଜା ହୋଇଥିଲେ, ଏହାର ଇତିହାସ ଯୁଧିଷ୍ଠିର ବ୍ୟାସଙ୍କ ମୁଖରୁ ଶୁଣିଥିଲେ । ଏହି ପ୍ରସଙ୍ଗରେ କବି ବନପର୍ବରେ ଦୁଇଟି ଆଖ୍ୟାୟିକା ଲେଖିଛନ୍ତି । ସେଗୁଡ଼ିକରେ ସମସାମୟିକ କେତେକ ଘଟନା ଯୋଡ଼ା ହୋଇଥିବାର ଅନୁମିତ ହୁଏ । ଅବାଧ କଳ୍ପନା ବଳରେ ଲିଖିତ ପୌରାଣିକ ଗଳ୍ପମାନଙ୍କ ମଧ୍ୟରୁ ଐତିହାସିକ ଘଟନାମାନ ବାହାର କରିବା ସହଜ ବା ନିରାପଦ ନୁହେଁ, ମାତ୍ର କଳିଙ୍ଗ ନାମଟି ନିଶ୍ଚୟ ସତ୍ୟ ଓ ଐତିହାସିକ । ଏହି ନାମଟି କପର ଏହି ଆଖ୍ୟାୟିକାମାନଙ୍କରେ ବର୍ଣ୍ଣିତ ହୋଇଛି, ତାହା ଲକ୍ଷ୍ୟ କରିବା କୌତୁକ ଓ ବିଜ୍ଞାନସମ୍ମତ ।

"କାଶୀ ଦେଶର ନୃପତି ଅଟେ କାଳନେମି
ବଇରାଷ୍ଟ୍ର ଦେଶକୁ ସେ ସାଜିଲା ବାହିନୀ ।"

ବନ, ପୃଃ ୩୦୨

"କଳିଙ୍ଗ ଦେଶେ ଯାଇଁ କରି ବେଢ଼ିଲା ସେ ରାଷ୍ଟ୍ର
କାଳନେମି ରାଜାର ଯେ ଅଟେ ବଡ଼ ଆଟ ।"

ବନ, ପୃଃ ୩୦୨

"ଉଜାଣି ଦେଶ ନୃପତି ସମରେ ପ୍ରଚଣ୍ଡା
କଳିଙ୍ଗ ରାଜା ସୈନ୍ୟ ସବୁ କଲେ ମସୀଗୁଣ୍ଡା ।"

ବନ, ପୃଃ ୩୦୪

"ତେଣେ କଳିଙ୍ଗ ରାଜା ଭଗ୍ନଦଣ୍ଡକୁ ଘେନଣ
ମଘ ଦେଶେ ମିଳି କହେ କାଳନେମି ଶୁଣ ।"

ବନ, ପୃଃ ୩୦୫

ଏହାପରେ ବିରାଟ ପର୍ବରେ "ବିରାଟ-ରାଜାଙ୍କ ଗୋଧନ-ହରଣ ପାଇଁ କୁରୁସୈନ୍ୟର ମତ୍ସ୍ୟ ରାଜ୍ୟରେ ପ୍ରବେଶ" ପ୍ରସଙ୍ଗରେ କବି କଳିଙ୍ଗର ନାମ ବାରମ୍ବାର ଲେଖିଛନ୍ତି ।

"କଳିଙ୍ଗ ଦେଶ ରାଜା ନାମ ଅଟେ ବୀରବାହୁ
ଦଣ୍ଡ ବାହିଲଣି ଆସି ଯେସନେକ ରାହୁ ।"

ବିରାଟ, ପୃଃ ୧୦୨

ଏତ୍ଵାଛଡ଼ା ବିରାଟ ପର୍ବରେ (ପୃ: ୧୫୧-୫୬) "ବିରାଟ କଳିଙ୍ଗ-ରାଜା ସହିତ ଯୁଦ୍ଧକୁ ଗମନ ଓ ଭ୍ରମକର୍ତ୍ତୃକ ବୀରବାହୁର ପତନ" ନାମକ ଆଖ୍ୟାୟିକାରେ ସାରଳା ଦାସ ଶେଷରେ ବିରାଟ-ପୁତ୍ର ଶ୍ୱେତକୁମାରକୁ କଳିଙ୍ଗ ଦେଶରେ ରାଜା କରାଇଛନ୍ତି ।

କବି ଶେଷଥର ପାଇଁ ଆଶ୍ରମିକ ପର୍ବରେ କଳିଙ୍ଗର ନାମ ଉଲ୍ଲେଖ କରିଛନ୍ତି । ଧୃତରାଷ୍ଟ୍ର ରାଜ୍ୟ ଛାଡ଼ିଗଲେ ଓ ବିଭିନ୍ନ ତୀର୍ଥରେ ବୁଲି ଶେଷରେ କୁନ୍ତୀ-ଗାନ୍ଧାରୀ ସହିତ ବନଦାହରେ ପୋଡ଼ି ମଲେ । ସେ ଯେତେବେଳେ ବିଭିନ୍ନ ତୀର୍ଥ ବୁଲୁଥିଲେ, ସେତେବେଳେ କଳିଙ୍ଗର ରାଜା ହିଁ ତାଙ୍କୁ ପ୍ରୟାଗରେ (ଏଲାହାବାଦରେ) ସାକ୍ଷାତ୍ କରିଥିଲେ ।

"ପୁଣି ବିଷ୍ଣୁ ଧନୁ ବେନି ମାସର ଅନ୍ତରେ
ପ୍ରୟାଗ ତୀର୍ଥେ ପ୍ରବେଶ ହେଲେ ଗଙ୍ଗାତୀରେ ।
ବେଦ ଅନୁଯାୟୀ ତହିଁ ପିଣ୍ଡଦାନ କଲେ
ମାଧବ ପ୍ରସନ୍ନେ ତହିଁ ମାସେକ ରହିଲେ ।
କଳିଙ୍ଗ ନାମେ ରାଜା ଆସି ସେଠାରେ ପ୍ରବେଶି
ବୋଲେ ଧୃତରାଷ୍ଟ୍ର ତୁହି ଅଟୁ ପୁଣ୍ୟଅଂଶୀ ।"

ଆଶ୍ରମିକ, ପୃ: ୪୧

ବଙ୍ଗାଳୀରୁ ବଙ୍ଗାଳୀ ହେବା ପରି ଓଡ଼ିଆରେ କାଳିଙ୍ଗରୁ କଳିଙ୍ଗ ହେବା ସ୍ୱାଭାବିକ କଥା । ଉଲ୍ଲିଖିତ ଉଦ୍ଧୃତାଂଶମାନଙ୍କରୁ ଜଣାଯିବ ଯେ, କାଶୀଦେଶର ରାଜା କାଳନେମି, ମତ୍ସ୍ୟଦେଶର ରାଜା ବିରାଟ ଓ "ଉଜାଣି ଦେଶ ନୃପତି" କଳିଙ୍ଗକୁ ଆକ୍ରମଣ କରିଥିଲେ । ବୀରବାହୁ କଳିଙ୍ଗର ରାଜା ଥିଲେ । ମଗଧଦେଶକୁ ସାଧାରଣତଃ ଆଧୁନିକ ବିହାର ସହିତ ସମ୍ପୃକ୍ତ କରାଯାଏ । ବିହାର ଜୋନପୁର ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । କାଶୀ ବନାରସ ଜୋନପୁର ଠାରୁ ମାତ୍ର ୩୭ ମାଇଲ ଦୂରରେ ଅବସ୍ଥିତ । ମତ୍ସ୍ୟଦେଶ କହିଲେ ବ୍ୟାପକ ଅର୍ଥରେ ସମଗ୍ର ରାଜସ୍ଥାନକୁ ବୁଝାଉ-ଥିଲେ ହେଁ ସଙ୍କୀର୍ଣ୍ଣ ଅର୍ଥରେ ଏହା ରାଜସ୍ଥାନର ଜୟପୁର ଅଞ୍ଚଳକୁ ହିଁ ସୂଚାଉଥିଲା । ଜୟପୁରର ଗୋଟିଏ ଅତି ପ୍ରାଚୀନ ସ୍ଥାନର ନାମ ବୈରାଟ ଓ ଏହା ପ୍ରାଚୀନ ମତ୍ସ୍ୟଦେଶର ରାଜଧାନୀ ଥିଲା ବୋଲି ଅନେକ ମତପ୍ରକାଶ କରିଛନ୍ତି । ୧୯୩୮-୩୯ରେ ସ୍ୱର୍ଗତ କେଦାରନାଥ ପୁରୀ ବୈରାଟରେ ଖୋଦନ କାର୍ଯ୍ୟ ଚଳାଇ ଏହା ସମ୍ବନ୍ଧରେ ଖଣ୍ଡିଏ ପୁସ୍ତକ ଲେଖିଯାଇଛନ୍ତି । ପ୍ରାଚୀନ ମାଳବର ରାଜଧାନୀ ଉଜ୍ଜୟିନୀକୁ ସାରଳା ଦାସ ସବୁ ସ୍ଥାନରେ ଉଜାଣି ବୋଲି ଲେଖିଛନ୍ତି । ଏଣୁ ଉଜାଣି ଦେଶର ଅର୍ଥ

ମାଳବ ବା ଆଧୁନିକ ମାଲ୍ୱା । କଳିଙ୍ଗର ରାଜା ପ୍ରୟାଗ ବା ଏଲହାବାଦରେ ଧୃତରାଷ୍ଟ୍ରଙ୍କୁ ସାକ୍ଷାତ କରିଥିଲେ । ଏସବୁ କଥା ବିଚାର କଲେ ଜଣାଯାଏ ଯେ, କବିବର୍ଣ୍ଣିତ କଳିଙ୍ଗଦେଶ ରାଜସ୍ଥାନ, ମାଲ୍ୱା ଓ ଏଲହାବାଦର ସନ୍ନିହିତ ଅଞ୍ଚଳରେ ଅବସ୍ଥିତ ଥିଲା । ଏହା ହିଁ କାଲିଞ୍ଜିର ଆଧୁନିକ ଅବସ୍ଥିତି । ଜାଲୌନ ଜିଲ୍ଲା ମଧ୍ୟପ୍ରଦେଶ ମାଲ୍ୱା ଓ ଉତ୍ତର ପ୍ରଦେଶର ସୀମାନ୍ତରେ ଅବସ୍ଥିତ । ଅତଏବ ସାରଳା ଦାସଙ୍କ କଳିଙ୍ଗର ଅବସ୍ଥିତି ସମ୍ବନ୍ଧରେ ସୁସ୍ପଷ୍ଟ ଧାରଣା ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଗରୁ କୁହାଯାଇଛି ଯେ କାଲିଞ୍ଜି ବେଶୀ ବିଖ୍ୟାତ ବା ବେଶୀ ପ୍ରାଚୀନ ନୁହେଁ, କିନ୍ତୁ ଦିଲ୍ଲୀ ସାମ୍ରାଜ୍ୟର ପତନ ବେଳକୁ ଏହା ଥରେ ବିଖ୍ୟାତ ହୋଇ-ଉଠିଥିଲା । ମହମ୍ମଦ ତୋଗ୍‌ଲକ୍‌ଙ୍କ ରାଜତ୍ୱ ସମୟରେ ଓ ତାଙ୍କ ମୃତ୍ୟୁପରେ, ବିଶେଷତଃ ତୈମୁରଲଙ୍ଗଙ୍କ ଆକ୍ରମଣ ପରେ, ଦିଲ୍ଲୀ ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡ ହୋଇ ବଙ୍ଗଳା, ଜୋନପୁର, ମାଲ୍ୱା, ଗୁଜରାଟ, ବାହାମନୀ, ବିଜୟନଗର ପ୍ରଭୃତି ପରି କେତେଗୁଡ଼ିଏ ବଡ଼ ବଡ଼ ସ୍ୱାଧୀନ ରାଜ୍ୟରେ ଏବଂ ସମାନ, ବୟାନ, କାଲିଞ୍ଜି, ମହୋବା, ଖାନ୍ଦେଶ ପ୍ରଭୃତି ପରି କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟରେ ପରିଣତ ହେଲା, ମାତ୍ର ଦିଲ୍ଲୀ ଓ ଆଖପାଖ ଅଞ୍ଚଳକୁ ନେଇ ଦିଲ୍ଲୀ-ସାମ୍ରାଜ୍ୟ ନାମ-ମାତ୍ରକୁ ତିଷ୍ଠି ରହିଲା । ଛୋଟ ରାଜ୍ୟକୁ ଗ୍ରାସ କରିବା ପାଇଁ ବଡ଼ ବଡ଼ ରାଜ୍ୟ ସବୁ ଯୁଗରେ ଉଦ୍ୟମ କରିଥାନ୍ତି । କଳିଙ୍ଗର ଭାଗ୍ୟରେ ତାହା ହିଁ ଘଟିଥିଲା । ମାଲ୍ୱାର ସୁଲତାନ ହୋସାଙ୍ଗଶାହ ଘୋରି ଓ ମାହମୁଦ ଖାଲିଜ, ଜୋନପୁରର ସୁଲତାନ ଇବ୍ରାହିମ୍ ଶର୍କି ଓ ମହମ୍ମଦ ଶର୍କି ଏବଂ ଦିଲ୍ଲୀର ସୁଲତାନ ମୁବାରକ ଶାହ ସୟଦ୍ ଓ ବାହାଲୁଲ୍ ଲୋଦି କଳିଙ୍ଗକୁ ଗ୍ରାସ କରିବା ପାଇଁ ଯେଉଁ ପ୍ରବଳ ଉଦ୍ୟମ କରିଥିଲେ, ତାହାର ବିସ୍ତୃତ ଇତିହାସ ରହିଛି । ଅବଶେଷରେ ବାହାଲୁଲ୍ ଲୋଦି ଜୋନପୁର ରାଜ୍ୟକୁ ଧ୍ୱଂସ କରି ଦିଲ୍ଲୀ ସାମ୍ରାଜ୍ୟର ପୂର୍ବ ଗୌରବ କିଛିଦିନ ପାଇଁ ଫେରାଇ ଆଣିଥିବା କଥା ସ୍କୁଲ ପାଠ୍ୟ ପୁସ୍ତକମାନଙ୍କରେ ମଧ୍ୟ ଥିବା ସମ୍ଭବ । ଏଠାରେ ସମସ୍ତ ଇତିହାସ କଥା ଲେଖିବା ସମ୍ଭବପର ନୁହେଁ ।

ଉଲ୍ଲିଖିତ ସମସ୍ତ ମୁସଲମାନ ରାଜା କପିଳେଶ୍ୱରଙ୍କ ସମସାମୟିକ ଥିଲେ ଏବଂ ଏମାନଙ୍କ ମଧ୍ୟରୁ ହୋସାଙ୍ଗ୍ ଶାହ ଘୋରି ଓ ମାହମୁଦ ଶର୍କି ଓଡ଼ିଶା ଆକ୍ରମଣ କରିଥିବା କଥା ଇତିହାସରେ ଅଛି । କପିଳେଶ୍ୱରଙ୍କ ସମୟରେ ଓଡ଼ିଶା ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ଏବଂ ସମୁଦ୍ର ଉପକୂଳଠାରୁ ଓ୍ୱାରଙ୍ଗଲ ପର୍ଯ୍ୟନ୍ତ ବିସ୍ତୃତ ହୋଇ ଗୋଟିଏ ବଡ଼ ସାମ୍ରାଜ୍ୟରେ ପରିଣତ ହୋଇଥିଲା । ଭାରତର ଅନ୍ୟ ଅଞ୍ଚଳ-ମାନଙ୍କରେ ଏହି ସମୟରେ ବଡ଼ ବଡ଼ ରାଜ୍ୟମାନଙ୍କ ମଧ୍ୟରେ ଯେଉଁ ସଂଘର୍ଷ ଘଟୁଥିଲା, ଓଡ଼ିଆମାନେ ସେସବୁ ନିଶ୍ଚୟ ଜାଣୁଥିଲେ ଓ ସେଥିରେ କେବେ କେବେ

ଯୋଗ ମଧ୍ୟ ଦେଉଥିଲେ । ତା' ନହେଲେ ଏଡ଼େ ବଡ଼ ସାମ୍ରାଜ୍ୟ ରକ୍ଷା କରିବା ସମ୍ଭବପର ହୋଇ ନ ଥାନ୍ତା । ସାରଳାଦାସ ଯାହା ଶୁଣୁଥିଲେ, ତାହା ପୌରାଣିକ ଖାଞ୍ଚରେ ଲେଖିଯାଉଥିଲେ । କଳିଙ୍ଗ ସମ୍ବନ୍ଧୀୟ ଐତିହାସିକ ଘଟଣାମାନ ମଧ୍ୟ ସେ ଏହିପରି ପୌରାଣିକ ଖାଞ୍ଚରେ ପ୍ରକାଶ କରିଯାଇଛନ୍ତି; ଏଥିରେ କେତେ ଭାଗ ଇତିହାସ ଅଛି ଓ କେତେଭାଗ କଳ୍ପନା ଅଛି, ତାହା ପରବର୍ତ୍ତୀ ଯୁଗର ପାଠକ ଓ ଆଲୋଚକମାନେ ସ୍ଥିର କରିବାର କଥା । କଳିଙ୍ଗ ସମ୍ବନ୍ଧରେ ଦୀର୍ଘ ଆଖ୍ୟାୟିକାମାନ ଲେଖିସାରିବା ପରେ ସାରଳାଦାସ ଭୀମର ଗଦାରେ କଳିଙ୍ଗର ରାଜା ଖାଟବାହୁଙ୍କୁ (ବାହାଲୁଲ୍‌ଙ୍କୁ ?) ମସୀଗୁଣ୍ଡା କରାଇ କଳିଙ୍ଗରେ ବିରାଟପୁତ୍ର ଶ୍ୱେତକୁମାରଙ୍କୁ ରାଜା କରାଇଛନ୍ତି । ତାଙ୍କ ମହାଭାରତ ପଢ଼ିଲେ ଜଣାଯାଏ ଯେ, ଯେଉଁ ରାଜାମାନେ ଓଡ଼ିଶା ପ୍ରତି ଶତ୍ରୁତା ଆଚରଣ କରିଥିଲେ, ସେମାନେ ଅର୍ଜ୍ଜୁନଙ୍କ ଶରରେ ମରିଛନ୍ତି କିମ୍ବା ଭୀମଙ୍କର ଗଦାରେ ମସୀଗୁଣ୍ଡା ହୋଇଛନ୍ତି, କିମ୍ବା ପାଟଡୋରରେ ବନ୍ଧାହୋଇ ପାଣ୍ଡବମାନଙ୍କ ରଥରେ ବନ୍ଦୀ ହୋଇ ଆସିଛନ୍ତି । ଅବଶ୍ୟ ଏ ସମସ୍ତଙ୍କୁ ଐତିହାସିକ ସତ୍ୟ ବୋଲି କହିବା ସମ୍ଭବପର ନୁହେଁ । କଳିଙ୍ଗସମ୍ବନ୍ଧୀୟ ଆଖ୍ୟାୟିକାମାନଙ୍କରେ କେତେଭାଗ ଇତିହାସ ଅଛି ଓ କେତେଭାଗ କଳ୍ପନା ଅଛି ତାହା ସ୍ଥିର କରିବା ଅସମ୍ଭବ କଥା ନୁହେଁ, କିନ୍ତୁ ମୁଁ ଐତିହାସିକ ବିଷୟମାନଙ୍କର ସୂଚନା ମାତ୍ର ଦେଉଛି । ତା' ନ ହେଲେ ମୋର ସାରଳା ସାହିତ୍ୟ ସମ୍ବନ୍ଧୀୟ ଐତିହାସିକ ଆଲୋଚନା ଶେଷ ହେବାର ସମ୍ଭାବନା ରହିବ ନାହିଁ । ତିଙ୍ଗର ଦିଲ୍ଲୀ ପ୍ରତି ସାରଳା ଦାସଙ୍କ ରାଗର କାରଣ ପୂର୍ବ ଅଧ୍ୟାୟରେ ସୂଚାଇ ଦିଆଯାଇଛି । ଦିଲ୍ଲୀର ସୁଲତାନ ବାହାଲୁଲ୍ ଲୋଦି କପିଳେଶ୍ୱରଙ୍କ ଓ ସାରଳା ଦାସଙ୍କ ସମସାମୟିକ ଥିଲେ । ବାହାଲୁଲ ଖ୍ରୀ. ୧୪୫୧ରୁ ୧୪୮୯ ପର୍ଯ୍ୟନ୍ତ ଓ କପିଳେଶ୍ୱର ଖ୍ରୀ: ୧୪୩୫ରୁ ୧୪୬୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ସାହିତ୍ୟ ଓ ଇତିହାସ ପରସ୍ପର ସହିତ ସଂଶ୍ଳିଷ୍ଟ ହେଲେ ହେଁ ଉଭୟେ ଏକ ଜିନିଷ ନୁହନ୍ତି । ସାରଳା ମହାଭାରତ ସାହିତ୍ୟ । ମୁଁ ଏଥିରୁ ଇତିହାସ ବାହାର କରୁନାହିଁ, କିନ୍ତୁ ଏଥିରେ ଇତିହାସର ଯେଉଁ ଚିତ୍ର ପ୍ରତିଫଳିତ ହୋଇଛି, ତାହା ହିଁ ଦେଖାଇବା ପାଇଁ ଚେଷ୍ଟା କରୁଛି । ଉଭୟ କଥା ଏକ ନୁହେଁ । ମୁଁ ଏଥିରୁ ଇତିହାସ ବାହାର କରୁଛି ବୋଲି ଅଭିଯୋଗ କରିବା ଯଥାର୍ଥ ନୁହେଁ । କଳିଙ୍ଗକୁ କେନ୍ଦ୍ର କରି କବି ଯେଉଁସବୁ ଆଖ୍ୟାୟିକାମାନ ସୃଷ୍ଟି କରିଛନ୍ତି, ସେଥିରେ କଅଣ ଐତିହାସିକ ଚିତ୍ର ପ୍ରତିଫଳିତ ହୋଇନାହିଁ ? କଳିଙ୍ଗର ନାମ ଏ ଯୁଗରେ ସୁଦ୍ଧା ଓଡ଼ିଆମାନେ ଜାଣନ୍ତି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ଯୁଗରେ ଇତିହାସ, ଭୂଗୋଳ, ମ୍ୟାପ ଇତ୍ୟାଦି କିଛି ନ ଥିଲା, ସେ ଯୁଗରେ ସାରଳା ଦାସ ତାକୁ ଜାଣିଲେ କିପରି ଓ ତା' ସମ୍ବନ୍ଧରେ ଏତେକଥା ଲେଖିଲେ କିପରି ?

ପ୍ରତିଭାବାନ ବ୍ୟକ୍ତିମାନେ ଉଚ୍ଚଶିକ୍ଷା ପାଇ ଓ ବହୁ ଗ୍ରନ୍ଥ ଅଧ୍ୟୟନ କରି ସାହିତ୍ୟ ସୃଷ୍ଟି କରନ୍ତି, କିନ୍ତୁ ଅସାଧାରଣ ପ୍ରତିଭାର ଅଧିକାରୀମାନେ ସାମାନ୍ୟ ଶିକ୍ଷାଲାଭ କରି ଓ ଆଖି କାନର ସଦୁପଯୋଗ କରି ବିଶ୍ୱ-ସାହିତ୍ୟରେ ଅମର ଅବଦାନ ରଖିଯାଆନ୍ତି । ସାରଳା ଦାସ ଆଖି କାନର ସଦୁପଯୋଗ କିପରି କରିଥିଲେ, ତାହା ତାଙ୍କର ସାହିତ୍ୟ ପଢ଼ିଲେ ସହଜରେ ଜଣାଯାଏ । ମଇଦା-ବେପାରୀ ସେକ୍ସପିଅର ଓ କୃଷିଜୀବୀ ସାରଳା ଦାସ ଉଭୟେ ଅସାଧାରଣ ପ୍ରତିଭାର ଅଧିକାରୀ ଥିଲେ । ଏମାନେ ଯାହା ପଢ଼ିଥିଲେ, ଶୁଣିଥିଲେ, ଦେଖିଥିଲେ କିମ୍ବା ନିଜେ ଯାହା ଅନୁଭବ କରିଥିଲେ, ସେ ସବୁକୁ ସେମାନଙ୍କ ସାହିତ୍ୟ-ସୌଧରେ ଯୋଡ଼ି ଦେଇଛନ୍ତି । ସେକ୍ସପିଅରଙ୍କ ପ୍ରତି ତାଙ୍କ ଦେଶବାସୀମାନଙ୍କର ଅସୀମ ଶ୍ରଦ୍ଧା ରହିଛି ଓ ତାଙ୍କ ସମ୍ବନ୍ଧରେ ଶତ ଶତ ଗ୍ରନ୍ଥ ରଚିତ ହୋଇଛି । ସେକ୍ସ-ପିଅରଙ୍କ ଠାରୁ ଅଧିକ ପ୍ରତିକୂଳ ଅବସ୍ଥାରେ ଓ ବିନା ଆଦର୍ଶରେ ସାରଳାଦାସ ସେକ୍ସପିଅରଙ୍କ ଶହେବର୍ଷ ପୂର୍ବେ ତାଙ୍କ ଗ୍ରନ୍ଥମାନ ଲେଖି ଓଡ଼ିଆ ସାହିତ୍ୟର ଜନ୍ମଦାତା ହୋଇଛନ୍ତି । ସେକସପିଅରଙ୍କ ନାଟକମାନଙ୍କରେ ଓ ସ୍କଟଙ୍କର ଉପନ୍ୟାସମାନଙ୍କରେ କେତେଭାଗ କଳ୍ପନା ଓ କେତେଭାଗ ଇତିହାସ ରହିଛି, ଏ ବିଷୟରେ ବିବିଧ ପ୍ରଶ୍ନ ପଚରାଗଲେ ଆମ ଦେଶର ଉଚ୍ଚଶିକ୍ଷିତ ତରୁଣ ତରୁଣୀମାନଙ୍କ ମଧ୍ୟରୁ ଅନେକେ ଯଥାଯଥ ଉତ୍ତର ଦେଇପାରିବେ; କିନ୍ତୁ ସାରଳାଦାସ—କିଏ, କେବେ ଜନ୍ମିଥିଲେ ବା କଅଣ କରିଥିଲେ, ଏପରି ପ୍ରଶ୍ନର ଉତ୍ତର ଅନେକେ ଦେଇପାରିବେ ନାହିଁ । ଏହା ସାରଳା ଦାସଙ୍କ ଦୁର୍ଭାଗ୍ୟ କିମ୍ବା ଏ ଦେଶର ଦୁର୍ଭାଗ୍ୟ, ତାହା ବିଚାର କରିବାର କଥା ।

ସାରଳା ଦାସ ଖାଲି କଳିଙ୍ଗ ଯୁଦ୍ଧର ବିବରଣୀ ବର୍ଣ୍ଣନା କରି କ୍ଷାନ୍ତ ହୋଇ ନାହାନ୍ତି, କଳିଙ୍ଗରେ ଯେ ଖୁବ୍ ଭଲ ଦେଶୀ ଘୋଡ଼ା ମିଳୁଥିଲେ, ତା'ର ସୂଚନା ମଧ୍ୟ ସେ ଦେଇଛନ୍ତି । ବଳରାମଙ୍କ ତାଳଧ୍ୱଜ ରଥର ବର୍ଣ୍ଣନା କରି କବି ଲେଖିଛନ୍ତି—

"ଶ୍ୱେତ ଗୋକ୍ଷୁ ( କ୍ଷୀ )ର ଅନନ୍ତ ଘୁରଗୋଟି ହୟ
କଳପି ହୟ ଅଟନ୍ତି ମହା ତେଜୋମୟ ।
ଏକ ନିମିଷେ ତ୍ରୈଲୋକ୍ୟ ପାରନ୍ତି ଯେ କ୍ଷେପି
ମହା ଯକ୍ଷରୁ ସେ ଜାତ ତେଣୁ କାମରୂପୀ ।"

ଆଦ୍ୟ, ପୃ. ୭୦

ମଧ୍ୟପର୍ବର ଖାଣ୍ଡବବନ ଦାହ ପ୍ରସଙ୍ଗରେ କବି ପୁଣି କଳିଙ୍ଗି ଘୋଡ଼ାର କଥା ଲେଖିଛନ୍ତି—

"ଅଗ୍ନି ଦେବତାଙ୍କ ଦେହ ଆରୋଗ୍ୟ ନିମନ୍ତେ
କଳପି ଅଶ୍ୱଙ୍କୁ ଆଣିଦେଲେ ଜଗନ୍ନାଥେ ।
ଶସ୍ତ୍ରଭେଦ ନୁହେଁ ଯେଉଁ ଅଶ୍ୱଙ୍କର କାୟେ
କାମରୂପୀ ଅଟନ୍ତି ସେ ପୁଣି ହରହୟେ ।" ମଧ୍ୟ ପୃ. ୬

ଉକ୍ତ ଅଂଶମାନଙ୍କରେ ନିଶ୍ଚୟ ଅତିଶୟୋକ୍ତି ଓ ଅତିଭୌତିକତା ରହିଛି, ମାତ୍ର ଏ ସମସ୍ତ ସାରଳା ଦାସଙ୍କ ନିଜସ୍ୱ ସୃଷ୍ଟି ନୁହେଁ । ସଂସ୍କୃତ ରାମାୟଣ, ମହାଭାରତ, ପୁରାଣ ଏପରିକି ସମସ୍ତ ପ୍ରାଚୀନ ଭାରତୀୟ ଭାଷା ସାହିତ୍ୟରେ ଏ ସବୁ ଘୂର୍ଣ୍ଣିମାତ୍ରାରେ ରହିଛି । ବସ୍ତୁତଃ ସଂସ୍କୃତ, ଗ୍ରୀକ୍, ଲାଟିନ ପ୍ରଭୃତି ପୃଥିବୀର ସମସ୍ତ ପ୍ରାଚୀନ ସାହିତ୍ୟ ପ୍ରଥମେ ପୁରାଣ ( mythology ) ଆକାରରେ ହିଁ ଆତ୍ମପ୍ରକାଶ କରିଥିଲା । ସାରଳାଦାସଙ୍କ ବର୍ଣ୍ଣନାରେ ଐତିହାସିକ-ଅସଙ୍ଗତି (anachronism) ମଧ୍ୟ ରହିଛି, କାରଣ କଳିଯୁଗର କଳିଙ୍ଗି ଘୋଡ଼ାକୁ ନେଇ ସେ ଦ୍ୱାପରଯୁଗର ତାଳଧ୍ୱଜ ରଥରେ ଯୋଡ଼ିଛନ୍ତି; କିନ୍ତୁ ଏପରି ଐତିହାସିକ ଅସଙ୍ଗତି କେଉଁ ସାହିତ୍ୟରେ ନାହିଁ ? ଏ ସମସ୍ତ ସତ୍ତ୍ୱେ ସାରଳାଦାସଙ୍କ ବର୍ଣ୍ଣନାରୁ ଗୋଟିଏ ଐତିହାସିକ ସତ୍ୟ ବାହାରି ପଡ଼ୁଛି । ତାଙ୍କ ସମୟର ଦେଶୀ ଘୋଡ଼ାମାନଙ୍କ ମଧ୍ୟରେ କଳିଙ୍ଗି ଅଞ୍ଚଳର ଘୋଡ଼ା ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଉଥିଲେ ଓ ସେମାନେ ହିଁ ଯୁଦ୍ଧରେ ବ୍ୟବହୃତ ହେଉଥିଲେ । ସେମାନଙ୍କ ଦେହରେ ଶସ୍ତ୍ର ଭେଦୁ ନ ଥିବା କଥାଟା ପୌରାଣିକ ଅତିରଞ୍ଜନ ।

କଳିଙ୍ଗି ଓ ତା'ର ସନ୍ନିହିତ ଅଞ୍ଚଳମାନଙ୍କରେ ଯେ ସର୍ବୋତ୍କୃଷ୍ଟ ଦେଶୀ ଘୋଡ଼ା ମିଳୁଥିଲେ, ଏ କଥା କବି ସଭାପର୍ବର ଭୀମଙ୍କର ସୁଜାଣସେନ ରାଜାଙ୍କୁ ନିମନ୍ତ୍ରଣ ଓ ଅଶ୍ୱିନୀ କୁମାର-ଜନ୍ମ ନାମକ ଉପାଖ୍ୟାନରେ ( ପୃ. ୮୧-୮୪ ) ମଧ୍ୟ ସୂଚାଇ ଦେଇଛନ୍ତି ।

"ତାହାର ଦେଶେ ପ୍ରବେଶ ହୋଇଲେ ମାରୁତି
ସେ ଦେଶେ ରାଜା ସୁଜାଣେଶ୍ୱର ଚକ୍ରବର୍ତ୍ତୀ ।"

× × ×

ସୁଜାଣେଶ୍ୱର କହୁଛନ୍ତି—

"ସମସ୍ତ ରାଜାଙ୍କ ମୁହିଁ ଅଟେ ଗଉରବ
ଅଶ୍ୱବଣିକ ମୋ ଯେତେ ଲୋଡ଼ା ତେତେ ଦେବ ।

ତନଶତ ଯୋଜନ ମୋ ମନୋହର ବନ
ଅଶ୍ୱିନୀକୁମାରଙ୍କ ଏ ଅଟେ ଜନ୍ମସ୍ଥାନ ।

× × ×

ନାନାକାରାସ୍ତ ସୁନ୍ଦର ସୁନ୍ଦର ତୁରଗ
ପୂର୍ଣ୍ଣ ହୋଇ ରହିଛନ୍ତି ଏହି ବନସ୍ଥଗ ।

ସେ ଅଶ୍ୱକୁ ସମ୍ଭାଳି ମୁଁ ରଖିଛୁ ଯତନେ
କିଣିବାକୁ ଆସୁଛନ୍ତି ଧନୀ ଲୋକମାନେ ।
ଯେଉଁ ଅଶ୍ୱର ହୋଇବ ଯେତେକଟି ମୂଲ୍ୟ
ଅଧା ଧନ ନେଇ ବାଛି ଦିଅଇ ମୁଁ ଭଲ ।

ମୋହର ତହୁଁ ସମସ୍ତେ ଅଶ୍ୱ ଘେନି ଯା'ନ୍ତି
ତେଣୁ କରି ନାମ ମୋର ଅଟେ ଅଶ୍ୱପତି ।"

ଉକ୍ତ ଅଂଶମାନଙ୍କରେ ଥିବା ଡାହାଲ ଦେଶ ଓ ଅଶ୍ୱପତି ନାମ ସମ୍ବନ୍ଧରେ ହିଁ ବିଶେଷ ଭାବରେ ବିଚାର କରିବା ଆବଶ୍ୟକ । ଅବଶିଷ୍ଟ ଅଂଶମାନ ସମସ୍ତଙ୍କର ସହଜରେ ବୋଧଗମ୍ୟ ହେବ । ଯେଉଁ ଅଞ୍ଚଳକୁ ଚେଦି ଦେଶ (ବୁନ୍ଦେଲ ଖଣ୍ଡ-ବାଘେଲ ଖଣ୍ଡ) ବୋଲି କୁହାଯାଉଥିଲା, ତାହା ଡାହାଲ ଦେଶ ନାମରେ ମଧ୍ୟ ଅଭିହିତ ହେଉଥିଲା, ମାତ୍ର ଡାହାଲ ବା ଚେଦି ଦେଶର ସୀମା ସବୁବେଳେ ସମାନ ନ ଥିଲା । ବେଳେ ବେଳେ ଏହା ବର୍ଦ୍ଧିତ ହୋଇ ଜବଲପୁର ଅଞ୍ଚଳ କିମ୍ବା ତା'ର ଅଧିକ ପୂର୍ବକୁ ବ୍ୟାପ୍ତ ହୋଇଯାଇଥିଲା । ଜବଲପୁର ନିକଟବର୍ତ୍ତୀ ତ୍ରିପୁରୀକୁ ରାଜଧାନୀ କରି ଯେଉଁ ରାଜବଂଶ ବହୁବର୍ଷ ଧରି ରାଜତ୍ୱ କରିଥିଲେ, ତାମ୍ର ଶିଳାଲେଖମାନଙ୍କରେ ସେହି ରାଜବଂଶକୁ କଲଚୁରି, ଚେଦି ଓ ହୈହୟବଂଶୀ ବୋଲି ବର୍ଣ୍ଣନା କରାଯାଇଛି । ତା'ଛଡ଼ା ସେମାନେ ଯେଉଁ ରାଜ୍ୟରେ ରାଜତ୍ୱ କରୁଥିଲେ, ତାକୁ ଚେଦି, ଡାହାଲ ବା ମହାକୋଶଳ ନାମରେ ଆଖ୍ୟାତ କରାଯାଇଛି । ତ୍ରିପୁରୀର ରାଜବଂଶର ରାଜତ୍ୱ ପୂର୍ବରୁ ଗୁର୍ଜ୍ଜର-ପ୍ରତିହାରମାନେ ବୁନ୍ଦେଲ ଖଣ୍ଡ-ବାଘେଲ ଖଣ୍ଡ ପ୍ରଭୃତି ଡାହାଲ ଅଞ୍ଚଳ ସମେତ ସମଗ୍ର ଆଧୁନିକ ଉତ୍ତରପ୍ରଦେଶକୁ ଅଧିକାର କରି ଗୋଟିଏ ବଡ଼ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଏହି

ଗୁର୍ଜ୍ଜର ପ୍ରତିହାର ରାଜାମାନେ ତାମ୍ର-ଶିଳା-ଲେଖମାନଙ୍କରେ ନିଜକୁ ଅଶ୍ୱପତି ନାମରେ ଅଭିହିତ କରିଯାଇଛନ୍ତି (୧)। ଚିଲ୍‌କାର ମାଛ ଓ ଆକାଶର କଇଁଆକୁ ସଂଯୋଗ କରିବାରେ ସାରଳା ଦାସଙ୍କ ଅସାଧାରଣ କ୍ଷମତା ଥିଲା। ଏହି ଅଞ୍ଚଳର ଗୋଟିଏ ରାଜବଂଶର ରାଜାମାନେ ଯେ ଅଶ୍ୱପତି ନାମରେ ଅଭିହିତ ହେଉଥିଲେ, ଏ କଥା ସାରଳା ଦାସ ହୁଏତ କମ୍ବଦନ୍ତୀରୁ ଜାଣିଥିଲେ। ତାହା ହିଁ ସେ ଲେଖି-ଯାଇଛନ୍ତି। ତା'ଛଡ଼ା ସାରଳା ଦାସଙ୍କ ସମୟରେ ଏହି ଅଞ୍ଚଳରେ ଭାରତର ସର୍ବୋତ୍କୃଷ୍ଟ ଘୋଡ଼ା ମିଳୁଥିବା ଅତ୍ୟନ୍ତ ସମ୍ଭବ; କାରଣ ବ୍ରିଟିଶ ରାଜତ୍ୱର ଶେଷଭାଗରେ ସୁଦ୍ଧା ପଞ୍ଜାବ ସମେତ ଉତ୍ତର ପ୍ରଦେଶର ପଶ୍ଚିମାଞ୍ଚଳରେ ହିଁ ଭାରତର ସର୍ବୋତ୍କୃଷ୍ଟ ଘୋଡ଼ା ମିଳୁଥିଲେ। କଳିଙ୍ଗି ଉତ୍ତର ପ୍ରଦେଶର ଦକ୍ଷିଣ ପଶ୍ଚିମାଞ୍ଚଳର ଶେଷ ଭାଗରେ ଅବସ୍ଥିତ। ଏହି ଅଞ୍ଚଳର ଘୋଡ଼ା ଯୁଦ୍ଧରେ ଓ ଯାନ-ବାହନରେ ବହୁଳ ଭାବରେ ବ୍ୟବହୃତ ହେଉଥିଲେ। ଆଜିକାଲି ଯୁଦ୍ଧରେ ଘୋଡ଼ାର ବ୍ୟବହାର ଅତ୍ୟନ୍ତ ସୀମିତ ହୋଇଯାଇଛି। ତା'ଛଡ଼ା ବସ୍, ଟେକ୍ସି, ସ୍କୁଟର ଓ ରିକ୍ସା ସହିତ ପ୍ରତିଯୋଗିତାରେ ଜିଣି ନ ପାରି ଏ ଅଞ୍ଚଳରେ ମଧ୍ୟ ଘୋଟକ ବଂଶ ଲୋପ ପାଇ ଆସୁଛନ୍ତି।

---

(୧) The Gurjara-pratiharas maintained a fine cavalry and are sometimes referred to in inscriptions as Aswapati or Hayapati,

V. V. Mirashi—Corpus Inscriptionum Indicarum, Vol. IV, Part I, Introduction, P. ci. ଏହି ଅଞ୍ଚଳରେ ଗୁର୍ଜ୍ଜର-ପ୍ରତିହାର ରାଜବଂଶ ପରେ କଳଚୁରି ରାଜବଂଶ ଓ ଗହଡ଼ବାଲ ରାଜବଂଶ ରାଜତ୍ୱ କରିଥିଲେ। ଏହି ଉଭୟ ବଂଶର ରାଜାମାନେ ମଧ୍ୟ ଅଶ୍ୱପତି ଉପାଧି ଧାରଣ କରିଥିଲେ।

The Struggle for Empire, ଭାରତୀୟ ବିଦ୍ୟାଭବନ pp. 274-76.

ଭାରତ ବାହାରୁ ଯେଉଁ ବିଦେଶୀ ଘୋଡ଼ା ଆମ ଦେଶକୁ ଆମଦାନୀ ହୋଇ ଆସୁଥିଲେ ସେମାନଙ୍କ ସମ୍ବନ୍ଧରେ ସୂଚନା ମଧ୍ୟ ସାରଳା ମହାଭାରତରେ ଅଛି । "ପଶ୍ଚିମଦିଗ-ରାଜା ନିମନ୍ତ୍ରଣ-କାରଣ ଭୀମଙ୍କ ଗମନ" ଶୀର୍ଷକ ଉପାଖ୍ୟାନରେ ସାରଳା ଦାସ ସଭାପର୍ବରେ ଲେଖିଛନ୍ତି—

ମୃଗୟାବିନୋଦେ ଭ୍ରମୁଥିଲା ଶିଶୁପାଳ
ରୈଖଅଶ୍ୱ ଖୁରଷାଣି ପାଞ୍ଚଶତ ବଳ । ସଭା, ପୃ: ୬୧

ପୁଣି "ବିରାଟ ଭାରବାହୁ ସହିତ ଯୁଦ୍ଧ ଗମନ" ନାମକ ଆଖ୍ୟାୟିକାରେ ଲେଖିଛନ୍ତି—

ହସ୍ତୀଙ୍କର ଘଣ୍ଟିନାଦ ଗର୍ଜନର ବାଣୀ
କ୍ଷତ୍ରିଙ୍କ ଗୁଣଟଙ୍କାର ଅଶ୍ୱକ୍ଷୁର ଶାଣି ।

ବିରାଟ ପୃ. ୧୦୪

କହିବା ବାହୁଲ୍ୟ ଯେ, ଅଜ୍ଞତା ହେତୁରୁ ଉଲ୍ଲିଖିତ ଉଦାହରଣମାନଙ୍କରୁ ଦ୍ୱିତୀୟଟିରେ ଖୁରଷାଣି ଶବ୍ଦଟି "କ୍ଷୁରଷାଣି"ରେ ପରିଣତ ହୋଇ ନିରର୍ଥକ ହୋଇଯାଇଛି । ଏପରି ଅଜ୍ଞତା ଦେଖିବା ପରେ ପିଲାକାଳର ଗୋଟାଏ କଥା ମନେ ପଡ଼ିଯାଉଛି । ସଂସ୍କୃତ ପଣ୍ଡିତେ କ୍ଲାସକୁ ଆସି ଆରମ୍ଭ କଲେ—"ଇଦ୍ଭୁଗେବ ସଂସାରଃ" । ତା'ପରେ ପିଲାମାନଙ୍କ ଆଡ଼କୁ ଚାହିଁ ପଚାରିଲେ—"ଇଦ୍ଭୁଗେବ"ର ଅର୍ଥ ବୁଝିଲ ? ଜଣେ ପିଲା ଉଠିପଡ଼ି କହିଲା—ହଁ, ସାର୍, ମୁଁ ବୁଝିଗଲି । ଇଦ୍ଭୁର ମାନେ ତ ଏହିପରି କିନ୍ତୁ ଗେବଟାକୁ ବୁଝିପାରୁ ନାହିଁ । ପଣ୍ଡିତେ ତାକୁ ଚାପୋଡ଼ାଟିଏ ଦେଇ କହିଲେ —ଏତେ ସନ୍ଧି ଶିଖେଇଲି, ତଥାପି ଗେବଟାର ଅର୍ଥ ବୁଝିପାରିଲୁ ନାହିଁ ।

ପାରସ୍ୟ (ଇରାନ୍)ର ଖୁରସାନ୍ ବା ଖୋରସାନ୍ ନାମକ ଗୋଟିଏ ପ୍ରଦେଶ ଅଛି । ଏହାର ଉତ୍ତରରେ ରୁଷିଆର ଏସିଆ ଅଞ୍ଚଳ, ପୂର୍ବରେ ଆଫଗାନିସ୍ତାନ । ଏହାର ରାଜଧାନୀର ନାମ ମେଶ୍‌ହେଦ୍, କ୍ଷେତ୍ରଫଳ ପ୍ରାୟ ୭୦,୦୦୦ ବର୍ଗମାଇଲ ଓ ଜନସଂଖ୍ୟା ପ୍ରାୟ ୯୦୦,୦୦୦ । ଏହା ଅତି ପ୍ରାଚୀନ କାଳରେ ପାର୍ଥିଆ ନାମରେ ଅଭିହିତ ହେଉଥିଲା, କିନ୍ତୁ ମଧ୍ୟଯୁଗରୁ ଏହାର ନାମ ଖୁରସାନ୍ ବା ଖୋରସାନ୍ ହୋଇଛି । (Asia by L, Dudley Stump, London, 1929, p. 57; The Century Cyclopedia of Names, The Times, p. 569) । ଖୁରସାନ୍‌ରୁ ଯେଉଁ ଘୋଡ଼ା ଆମଦାନୀ ହୋଇ ଆସୁଥିଲେ, ସେମାନଙ୍କୁ

ଖୁରସାଣି ଘୋଡ଼ା କୁହାଯାଉଥିଲା । ଭାରତର ପାର୍ଶୀ ସମ୍ପ୍ରଦାୟ ଏହି ଖୋର୍‌ସାନ୍‌ରୁ ଆସିଥିବାରୁ ଏମାନେ ପ୍ରଥମେ ଖୋର୍‌ସାନ୍ ମଣ୍ଡଳୀ ନାମରେ ଅଭିହିତ ହୋଇଥିବାର ପ୍ରମାଣ ତାମ୍ରଲେଖରୁ ମିଳୁଛି । (The Age of Imperial Kanauj, Bharatiya Bidya Bhavan, p. 353) । ଖୁରସାନରୁ କେତେକ ବୃକ୍ଷଲତା ମଧ୍ୟ ଆମଦାନୀ ହୋଇ ଭାରତରେ ରୋପିତ ହୋଇଥିଲା । ମଧ୍ୟପ୍ରଦେଶସ୍ଥ ଧାର୍ (ପ୍ରାଚୀନ ଧାରା ନଗରୀ) ଜିଲାର ମାଣ୍ଡୁରେ (ମଣ୍ଡପଦୁର୍ଗରେ) ପେଶବା ପ୍ରଥମ ବାଜୀରାଓଙ୍କ ଦ୍ୱାରା ସ୍ଥାପିତ ଯେଉଁ ନୀଳକଣ୍ଠେଶ୍ୱର ମନ୍ଦିର ଅଛି, ସେହି ମନ୍ଦିର ପାର୍ଶ୍ୱରେ ଭୀଲ୍ ଉପଜାତୀୟ ମହିଳାମାନେ ଏକପ୍ରକାର ତେନ୍ତୁଳି ବିକ୍ରୀ କରନ୍ତି ଓ 'ବାବୁ ଖୁର୍‌ସାନି ଇମ୍ଲି" ନିଅ ବୋଲି ପାଟିକରି ଡାକନ୍ତି । ଏହି ତେନ୍ତୁଳି ଆକାରରେ ବନ୍ତୁଲକଦଳୀ ପରି ବଡ଼; କିନ୍ତୁ ଏହା ଭାରତୀୟ ତେନ୍ତୁଳି ପରି ଖଟା କମ୍ବା ମିଠା ନୁହେଁ, ତାହା ମୁଁ ପରୀକ୍ଷା କରି ନାହିଁ । ଏହା ନିଶ୍ଚୟ ଖୁରସାନ୍‌ରୁ ଆସିଥିଲା ।

ସାରଳା ଦାସଙ୍କ ସମୟରେ ଖୁର୍‌ସାନ୍ ଛଡ଼ା ପାରସ୍ୟରୁ ମଧ୍ୟ ଯେ ଭଲ ଘୋଡ଼ାମାନ ଆମଦାନୀ ହୋଇ ଆସୁଥିଲେ, ଏ କଥାର ସୂଚନା ମଧ୍ୟ ସାରଳା ମହାଭାରତରେ ରହିଛି । ବିରାଟ ରାଜ୍ୟରେ ଅଜ୍ଞାତ ବନବାସ କରିବାବେଳେ ପାଣ୍ଡବମାନଙ୍କ ମଧ୍ୟରୁ କିଏ କେଉଁ ବୃତ୍ତି କରି ଆତ୍ମଗୋପନ କରିବେ, ଏହି ବିଷୟ ବିଚାର କରୁଥିବାବେଳେ ନକୁଳ ଯୁଧିଷ୍ଠିରଙ୍କୁ କହିଲେ ଯେ ସେ ଅଶ୍ୱବିଦ୍ୟା ଜାଣନ୍ତି, ଏଣୁ ଭଣ୍ଡୀପାଳ ରୂପେ ଆତ୍ମଗୋପନ କରିପାରିବେ । ଯୁଧିଷ୍ଠିର ତାଙ୍କୁ ତାଙ୍କର ଅଶ୍ୱବିଦ୍ୟାର ପରୀକ୍ଷା ଦେବାପାଇଁ କହିବାରୁ ନକୁଳ ବିଦ୍ୟାବଳରେ ଗୋଟିଏ ଘୋଡ଼ାକୁ ସୁଦୂର ପାରସ୍ୟରୁ ଡାକି ଆଣିଲେ ।

ଯେ ବିଦ୍ୟାସକଳ ଦେବ ମୁହିଁ ଅଛି ସାଧି
ମୁଁ ଯତ୍ନ କଲେ ଅଶ୍ୱଙ୍କ ନାହିଁ ମୃତ୍ୟୁ ବ୍ୟାଧି ।
ଅବଧାନ ବୋଲି କରି ଯେଉଁ ମନ୍ତ୍ର ଦେବ
ସେ ମନ୍ତ୍ରେ ସାମାନ୍ୟ ଅଶ୍ୱ ଆକାଶେ କ୍ଷେପିବ ।
ଅସାଧ୍ୟ ଅଶ୍ୱକୁ ମୁହିଁ କରିବି ସାଧନ
ଏ ରୂପେ ହେଜନ୍ତେ (ରେହନ୍ତେ)
ମୋତେ କଲେ ମନ୍ତ୍ରଦାନ ।
ନକୁଳ କହନ୍ତେ ତୁଷ୍ଟୀଭୂତ ଧର୍ମସୁତ ।
ଭାବିଲେ ଦୁଃଖକୁ ଧାତା ସୃଜିଛି ଏମନ୍ତ ।
ଯୁଧିଷ୍ଠିର ବୋଇଲେକ ଶୁଣ ଆରେ ଭାଇ
ମନ୍ତ୍ରଦ୍ୱାରା ଏକଗୋଟି ଅଶ୍ୱ ଆଣ ତୁହି ।

ଆମ୍ଭେ ପରୀକ୍ଷା କରିବା ଆଗେ କଥା ତୋର
ନୋହିଲେ ବରିଷ୍ଠଠାରେ ହେବୁ ହତାଦର ।
ନକୁଳ ଗୃହିଲା ଅଶ୍ୱ ଅନ୍ତରକୁ ଘେନ
ଦେଖିଲା ଅଶ୍ୱ ଅଛନ୍ତି ମୁଣ ଶତ ତିନ ।
ନକୁଳ ବୋଇଲା ଦେବ କରନ୍ତୁ ଶ୍ରବଣ ।
ବାରାସ ଦେଶ ଏଥକୁ ତିନଶତ ମୁଣ ।
ସେହିଠାରେ ଅଶ୍ୱଙ୍କର ଉତ୍ପତ୍ତି ସ୍ଥାନ
କଳା ପାଟଳ ହରିତ ଆଦ ନାନାବର୍ଣ୍ଣ ।
କପଟ ଆଣିବ ଅଶ୍ୱ ଏ ତ ବହୁଦୂର
ଶ୍ୱେତ ଅଶ୍ୱେ ତହିଁଛନ୍ତି ଅତ୍ୟନ୍ତ ସୁନ୍ଦର ।
ବାମମନ୍ତ୍ରକୁ ଜପନ୍ତେ ନକୁଳ ମନରେ
ଅଦ୍ଭୁତେ ଅଶ୍ୱ ଆସି ମିଳିଲା ପାଶରେ ।
ଦେଖି କରି ଧର୍ମସୁତ ହୋଇଲେ ଆଶ୍ଚର୍ଯ୍ୟ
ବୋଇଲେ ତୋର ପ୍ରସାଦେ ପାଇବ ମୁଁ ରାଜ୍ୟ ।
ଅଶ୍ୱ ସାହାଯ୍ୟରେ ବାରୁ ଶତ୍ରୁ ହୁଏ ଜିଣି
ତୋ ବୁଦ୍ଧିରେ ବହୁ ଅଶ୍ୱ ପ୍ରାପ୍ତ ହେବ ପୁଣି ।
କୌରବମାନଙ୍କୁ ଜିଣି ଆଉ ଭୟ କିସ
ଅଜ୍ଞାତବାସ କପଟ ଏବେ ହେଉ ଶେଷ ।

ବନ, ପୃ. ୩୧୫

ତାଙ୍କ ସମୟର ସବୁକଥା ପରି ସାରଳା ଦାସ ତାଙ୍କ ସମୟର ଘୋଡ଼ାମାନଙ୍କ କଥା ମଧ୍ୟ ମହାଭାରତର ବ୍ୟକ୍ତିମାନଙ୍କ ମୁଖରେ ଓ ପୌରାଣିକ ଛାଞ୍ଚରେ ପ୍ରକାଶ କରିଯାଇଛନ୍ତି । ଏ ଉପାୟ ଛଡ଼ା ମହାଭାରତ ଲେଖୁଥିବା ବେଳେ ସମସାମୟିକ ଜୀବନକୁ ପରିବେଷଣ କରିବା ପାଇଁ ତାଙ୍କର ଉପାୟାନ୍ତର ନ ଥିଲା । ଉଲ୍ଲିଖିତ ପଦମାନଙ୍କରେ ଥିବା "ବାରାସଦେଶ"ର ଶୁଦ୍ଧପାଠ "ପାରାସଦେଶ" ହିଁ ହେବ । ବାରାସଦେଶ ବୋଲି କୌଣସି ଦେଶ ନ ଥିଲା ଓ ବର୍ତ୍ତମାନ ମଧ୍ୟ ନାହିଁ, କିମ୍ବା ବାରାସଦେଶ ଅଶ୍ୱ ପାଇଁ ପ୍ରସିଦ୍ଧି ଲାଭ କରିଥିବା କଥା କୌଣସି ଇତିହାସ ପୁରାଣରେ ନାହିଁ, ମାତ୍ର ପାରସ୍ୟ ଅଶ୍ୱ ପାଇଁ ଇତିହାସରେ ପ୍ରସିଦ୍ଧି ଲାଭ କରିଥିଲା । ସାରଳା ଦାସ କୌଣସି ନିରର୍ଥକ ଭୌଗଳିକ, ପୌରାଣିକ ବା ଐତିହାସିକ ନାମ ଲେଖି ନ ଥିଲେ, କିନ୍ତୁ ପରେ ତାଙ୍କର ଦାୟାଦମାନେ ସେଗୁଡ଼ିକୁ ଯେପରି ଭାବରେ କପି କଲେ ବା "ସଂଶୋଧନ" କଲେ ତଦ୍ଦ୍ୱାରା କେତେଗୁଡ଼ିଏ ନାମ ନିରର୍ଥକ ହେବା ଅନିବାର୍ଯ୍ୟ ହୋଇପଡ଼ିଛି ।

ସାରଳା ମହାଭାରତର ରଚନାକାଳ ବେଳକୁ ଓଡ଼ିଆଭାଷା ଏକ ପକ୍ଷରେ ସଂସ୍କୃତ ଓ ଅନ୍ୟ ପକ୍ଷରେ ମାଗଧୀ ଅପଭ୍ରଂଶ ସହିତ ସଂଗ୍ରାମ କରି ଗୋଟିଏ ସ୍ୱତନ୍ତ୍ର ଭାଷାରୂପେ ପ୍ରତିଷ୍ଠିତ ହୋଇସାରିଥିଲା । ସାରଳା ଦାସଙ୍କ ବଳିଷ୍ଠ ପ୍ରତିଭା ଏହି ଭାଷାର ସଦୁପଯୋଗ କରି ଓଡ଼ିଆ ଭାଷାର ପ୍ରଥମ ସାହିତ୍ୟ ସୃଷ୍ଟି କଲା । ଏ ସାହିତ୍ୟରେ ଥିବା ମହାକବିଙ୍କ ଭାଷାରେ ଦାରିଦ୍ର୍ୟ ବା ଭିକ୍ଷୁକତ୍ୱର ଚିହ୍ନ ନାହିଁ, କିମ୍ବା ତାଙ୍କର ଗୌଣତ୍ୱ ମନୋବୃତ୍ତି ଥିବାର କୌଣସି ପ୍ରମାଣ ନାହିଁ, କିମ୍ବା ବିଦ୍ୟାସାଗରୀୟ ପ୍ରଭାବରେ ଉଚିତ ଶୁଦ୍ଧି ଚନ୍ଦ୍ରିକା-ଅପଭ୍ରଂଶବୋଧିନୀ ପ୍ରଭୃତି ବଳରେ ଓଡ଼ିଆ ଭାଷାର ସ୍ୱାଭାବିକ ଗତିକୁ ବିପରୀତ ଦିଗରେ ଚଳାଇବା ପାଇଁ ପ୍ରଚେଷ୍ଟା ପରି ପ୍ରଚେଷ୍ଟା ଏଥିରେ ପରିଲକ୍ଷିତ ହୁଏ ନାହିଁ । ଓଡ଼ିଶା ବାହାରେ ଥିବା ଭୌଗୋଳିକ ନାମଗୁଡ଼ିକୁ ଓଡ଼ିଆମାନେ ଯେପରି କହୁଥିଲେ, ସାରଳାଦାସ ଠିକ୍ ସେହି ଭାବରେ ଲେଖିଯାଇଛନ୍ତି । ଏଥିମଧ୍ୟରୁ କେତେଗୁଡ଼ିଏ 'ସଂଶୋଧିତ' ହୋଇଯାଇଥିବା ଖୁବ୍ ସମ୍ଭବ, ତଥାପି ଯାହା ଅଛି, ସେଥିମଧ୍ୟରୁ କେତେଗୁଡ଼ିଏ ଉଦାହରଣ ଦିଆଯାଉଛି । ପାରିସଦେଶ—ପାରସ୍ୟ ପାର୍ସିଆ ବା ଇରାନ୍ ଦେଶ । ଖୁରୁସାଣ ଦେଶ—ଖୁରସାନ୍ ବା ଖୋରସାନ୍ ପ୍ରଦେଶ, ଗାର୍ଜିନ ଦେଶ—ଗଜ୍‌ନା ବା ଗାଜ୍‌ନୀ ଦେଶ ଅର୍ଥାତ୍ ଆଫଗାନିସ୍ତାନ । ପ୍ରାଞ୍ଜଳ ଦେଶ-ପଞ୍ଜାବ ଦେଶ । ଲୋହପୁର—ଲୋହାବାର ବା ଆଧୁନିକ ଲାହୋର । କୁଞ୍ଜଗଳ ଦେଶ—ହସ୍ତିନାପୁର ଅଞ୍ଚଳ ବା ଆଧୁନିକ ଦିଲ୍ଲୀ ଅଞ୍ଚଳ । ମେରୁଦେଶ ବା ମେରୁକୋଶଳ—ଅଜୟମେରୁ ବା ଆଧୁନିକ ଆଜମେର ଅଞ୍ଚଳ । କୁଞ୍ଜରଦେଶ—ଯେଉଁ ଦେଶରେ କାଲଞ୍ଜର ଦୁର୍ଗ ଅଛି, ଅର୍ଥାତ୍ ବୁନ୍ଦେଲଖଣ୍ଡ—ବାଘେଲଖଣ୍ଡ ଅଞ୍ଚଳ । ଉଜାଣିନଗରୀ ବା ଦେଶ—ଉଜ୍ଜୟିନୀ ନଗରୀ ବା ମାଳବ (ମାଲ୍ୱା) ଦେଶ । ବାଗଲାନ—ବାଗ୍‌ଲାନ । କଳିନ୍ଦି ଦେଶ—କାଳିନ୍ଦି ଦେଶ । ହେମ-କେଦାର—ପ୍ରସିଦ୍ଧ କେଦାରନାଥ । ଯମ-କୋଣ—ଯମୁନୋତ୍ରୀ, ଯମର ଭଉଣୀ ହେଉଛନ୍ତି ଯମୁନା, ଏଣୁ ସେ ଯେଉଁଠାରୁ ବାହି ଆସୁଛନ୍ତି, ତାହା ଯମକୋଣ । ନନ୍ଦାନଦୀ—ଗଙ୍ଗୋତ୍ରୀ-ଯମୁନୋତ୍ରୀ ପାର୍ଶ୍ୱରେ ପ୍ରବାହିତ କ୍ଷୁଦ୍ର ନନ୍ଦାକିନୀ ନଦୀ । ଯମୁନା ନଗ୍ର-ଜୋନପୁର । ବୃଷାଳନଗ୍ର—ପ୍ରଖ୍ୟାତ ବୈଶାଳୀନଗରୀ । ଏହା ବର୍ତ୍ତମାନ ବସାଡ଼୍ ନାମରେ ଅଭିହିତ ଓ ମୁଜାଫରପୁର ଠାରୁ ୪୪ ମାଇଲ ଦୂରରେ ଅବସ୍ଥିତ । କର୍ଣ୍ଣମଣ୍ଡଳ—ମହାଭାରତର କର୍ଣ୍ଣ ଯେଉଁ ଦେଶରେ ରାଜା ହୋଇଥିଲେ, ଅର୍ଥାତ୍ ଅଙ୍ଗଦେଶ ବା ଆଧୁନିକ ଭାଗଲପୁର-ମୁଙ୍ଗେର ଅଞ୍ଚଳ । ଚଉପୁର—ଚମ୍ପାପୁର । ଏହା ଅଙ୍ଗଦେଶର ରାଜଧାନୀ ଥିଲା ଓ ଏହାର ଅନ୍ୟନାମ ଥିଲା ମାଳିନୀ । ବେଲ୍ଲାଳ ଦେଶ—ଐତିହାସିକ ବଲ୍ଲାଳ-ସେନ ରାଜା ଯେଉଁ ରାଜ୍ୟରେ ରାଜତ୍ୱ କରିଥିଲେ ଅର୍ଥାତ ବଙ୍ଗଦେଶ । ଚୁଡ଼ଙ୍ଗଦେଶ—ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଅନନ୍ତବର୍ମଣ ଚୋଡ଼ଗଙ୍ଗଦେବ ଯେଉଁ ଦେଶରୁ ଆସିଥିଲେ, ଅର୍ଥାତ୍ ଗଞ୍ଜାମ ଓ ଗୋଦାବରୀର ମଧ୍ୟବର୍ତ୍ତୀ ଅଞ୍ଚଳ ।

ଉଡ଼ଙ୍ଗ ଦେଶ—ଉରଗ, ଉରଙ୍ଗ ଓ ଉଁରଙ୍ଗମର ଅର୍ଥ ଏକ । ଓଡ଼ିଆରେ ର ସ୍ଥାନରେ ଲ ବା ଡ଼ ବ୍ୟବହୃତ ହୋଇପାରେ । ଏଣୁ ଉଡ଼ଙ୍ଗଦେଶ ହେଉଛି ଉରଗପୁର ଅଞ୍ଚଳ ବା ଆଧୁନିକ ତ୍ରିଚିନାପଲ୍ଲୀ ଅଞ୍ଚଳ (୨) । ମହେନ୍ଦ୍ର-ନଗର— ଆଧୁନିକ ରାଜମାହେନ୍ଦ୍ରୀ । କୁଣ୍ଡାବେଢ଼ା—କୁଣ୍ଡବୀଡ଼ୁ ଦୁର୍ଗ । ଗୈଖାରମଣ୍ଡଳ ବା ଦେଶ—ଘୋଡ଼ାବେପାରୀମାନଙ୍କ ରାଜ୍ୟ ଅର୍ଥାତ୍ ମୁସଲମାନ ରାଜ୍ୟ । ସାରଳା ଦାସ ଏକାଧିକ ଗୈଖାର ଦେଶ କଥା ଲେଖିଯାଇଛନ୍ତି । ଏଣୁ ସେ କେଉଁ ମୁସଲମାନ୍ ରାଜ୍ୟ କଥା ଲେଖୁଛନ୍ତି, ତାହା ପୂର୍ବାପର ସମ୍ବନ୍ଧ ବିଚାର କରି ସ୍ଥିର କରିବାକୁ ହୁଏ । ଯଦି ଦକ୍ଷିଣର ଅନ୍ୟାନ୍ୟ ଦେଶ ବା ସ୍ଥାନ ସହିତ ଗୈଖାରଦେଶ କଥା ଲେଖୁଛନ୍ତି, ତେବେ ତାହା ବାହାମନି ରାଜ୍ୟ ବୋଲି ବୁଝିବାକୁ ହୁଏ । ମୁସଲମାନ-ମାନଙ୍କ ବାହାମନି ରାଜ୍ୟକୁ ସେ ଥରେ ମାତ୍ର ବ୍ରହ୍ମଣାସ୍ତ୍ରୀ ବୋଲି ଲେଖିଛନ୍ତି । ମଲ୍ଲିକାମଣ୍ଡଳ—ବିଜୟନଗରର ରାଜା ମଲ୍ଲିକାର୍ଜୁନ ଯେଉଁ ଦେଶରେ ରାଜତ୍ୱ କରୁଥିଲେ ବା କରିସାରିଥିଲେ ଅର୍ଥାତ୍ ବିଜୟନଗର ସାମ୍ରାଜ୍ୟ; କିନ୍ତୁ କବି ଏହି ସାମ୍ରାଜ୍ୟକୁ ବିଜୟନଗର, ବିଦ୍ୟାନଗର, ଭୂମିନୁମଣ୍ଡଳ, କରଣାରପୁର ଇତ୍ୟାଦି ନାମରେ ମଧ୍ୟ ଉଲ୍ଲେଖ କରିଛନ୍ତି । ଚରଦେଶ—ପ୍ରାଚୀନ ଚେରଦେଶ । ଆଧୁନିକ କେରଳ ରାଜ୍ୟର ଅଧିକାଂଶ ଅଞ୍ଚଳ ପ୍ରାଚୀନ ଚେରଦେଶର ଅନ୍ତର୍ଭୁକ୍ତ । ଦ୍ରୁମନ-ଗିରି-ପାଲଘାଟ ଓ କୈମ୍ବତୁରର ପୂର୍ବପଟରେ ଥିବା ନୀଳଗିରି ପର୍ବତ । ଏହା ସଂସ୍କୃତ ସାହିତ୍ୟରେ ଦର୍ଦ୍ଦୁର ପର୍ବତ ନାମରେ ଅଖ୍ୟାତ ହୋଇଛି । ଭୃଗୁପୁରୀ—ଭୃଗୁକଚ୍ଛ ବା ଗୁଜରାଟର ଆଧୁନିକ ବ୍ରୋଚବନ୍ଦର ଇତ୍ୟାଦି ।

---

(୨) ଆଥୋରଗାଖ୍ୟସ୍ୟ ପୁରସ୍ୟନାଥଂ ଦୌବାରିକୀ ଦେବସରୂପମେତ୍ୟ ।
ଇତଶ୍ଚକୋରାକ୍ଷି ! ବିଲୋକୟେତି ପୂର୍ବାନୁଶିଷ୍ଟାଂ ନିଜ ଗାଦ ଭୋଜ୍ୟାମ୍ ॥
ରଘୁବଂଶ, ୬ଷ୍ଠ ସର୍ଗ

( ତା'ପରେ ସୁନନ୍ଦା ଦେବତୁଲ୍ୟକାନ୍ତି ଉରଗପୁରର ଅଧୀଶ୍ୱର ନିକଟକୁ ଯାଇ "ଚକୋର ନୟନେ ! ଥରେ ଏହିଆଡ଼େ ଦେଖ" କହି ଇନ୍ଦୁମତୀଙ୍କୁ ଆହ୍ୱାନ କଲା ଓ କହିଲା )

ଏହାର ଠିକ ପରବର୍ତ୍ତୀ ଶ୍ଳୋକରେ "ପାଣ୍ଡ୍ୟୋଽୟମଂସାର୍ପିତଲମ୍ବହାରଃ" ଇତ୍ୟାଦି କହି ସୁନନ୍ଦା ପାଣ୍ଡ୍ୟ ରାଜାଙ୍କ ପରିଚୟ ଦେଇଛି । ଏଣୁ ଉରଗପୁର ପାଣ୍ଡ୍ୟ ରାଜାଙ୍କ ରାଜଧାନୀ ବା ଗୋଟିଏ ପ୍ରଧାନ ନଗର ଥିବାର ନିଶ୍ଚିନ୍ତ ପ୍ରମାଣ ମିଳୁଛି । ଖ୍ରୀଷ୍ଟଜନ୍ମ ପୂର୍ବରୁ ଦକ୍ଷିଣରେ ଚେର, ଚୋଳ ଓ ପାଣ୍ଡ୍ୟରାଜବଂଶ ରାଜତ୍ୱ କରିଥିଲେ । ଏମାନଙ୍କ ମଧ୍ୟରୁ ଚୋଳ ଓ ପାଣ୍ଡ୍ୟମାନେ ମୁସଲମାନ ରାଜତ୍ୱ ପର୍ଯ୍ୟନ୍ତ ତିଷ୍ଠି ରହିଥିଲେ । କାଞ୍ଚିର ଦକ୍ଷିଣକୁ ଉରଗପୁର ( ଉରେୟୁର ), ତାଞ୍ଜୋର, ଓ କଦୁମ୍ବଇ

ସଂସ୍କୃତ ସାହିତ୍ୟ ସାହାଯ୍ୟରେ ସାରଳା ଦାସଙ୍କ ବର୍ଣ୍ଣିତ ଭୌଗୋଳିକ ନାମଗୁଡ଼ିକ ଶୁଦ୍ଧ କରିବା ପାଇଁ ଚେଷ୍ଟା କଲେ ନିରାଶ ହେବାକୁ ପଡ଼େ । ସାରଳା ଦାସଙ୍କର ସଂସ୍କୃତ ସାହିତ୍ୟ ସହିତ ବିଶେଷ ସମ୍ପର୍କ ନ ଥିଲା । କେତେଗୁଡ଼ିଏ ଶବ୍ଦକୁ (ତତ୍ସମଶବ୍ଦଗୁଡ଼ିକୁ) "ଗୁରୁ" ଓ କେତେଗୁଡ଼ିଏ ଶବ୍ଦକୁ (ତଦ୍ଭବ ଓ ଦେଶଜ ଶବ୍ଦଗୁଡ଼ିକୁ) "ଚଣ୍ଡାଳ" କହି ସଂସ୍କୃତ ପଣ୍ଡିତମାନେ ଭାଷାରେ "ଗୁରୁଚଣ୍ଡାଳ" ଦୋଷଟାକୁ ଏଡ଼ିବା ପାଇଁ ଯେପରି ଚେଷ୍ଟା କରୁଥିଲେ, ଘଟନା ଓ ନାମମାନଙ୍କ ମଧ୍ୟରେ "ପ୍ରାଚୀନ" ଓ "ଅର୍ବାଚୀନ" ଭେଦ ସୃଷ୍ଟି କରି ସେମାନେ "ଅର୍ବାଚୀନ" ଗୁଡ଼ାକୁ ସେମାନଙ୍କ ଲେଖାରୁ ଏକାବେଳକେ ବାଦ୍ କରିଦେବା ପାଇଁ ସେହିପରି ଚେଷ୍ଟା କରୁଥିଲେ । "ଗୁରୁଚଣ୍ଡାଳ ଦୋଷ" କଥାଟା ବା "ପ୍ରାଚୀନ-ଅର୍ବାଚୀନ" ଭାବଟା ସାରଳାଦାସଙ୍କ ମୁଣ୍ଡରେ ପଶି ନ ଥିଲା । ସେ ଯାହା ଜାଣିଥିଲେ ବା ଶୁଣିଥିଲେ, ତାକୁ ଠିକ୍ ସେହିଭାବରେ ଲେଖି ଯାଉଥିଲେ । ପାରସ୍ୟ ଶବ୍ଦଟି କିପରି ପାରିସ ହେଲା, ଏଥିରେ ଚମତ୍କୃତ ହେବାର କାରଣ ନାହିଁ । ଗ୍ରୀକ୍ ମୁଖରେ ଓ ଲେଖାରେ ଚନ୍ଦ୍ରଗୁପ୍ତ ସ୍କେଣ୍ଡ୍ରୋକୋଟାରେ ପରିଣତ ହୋଇଛନ୍ତି, ଅଶୋକଙ୍କ ମୁଖରେ ଓ ଅନୁଶାସନରେ ଗ୍ରୀକ୍ ରାଜା ଆଲେକ୍‌ଜାଣ୍ଡର ଅଲିକ ସୁନ୍ଦର ହୋଇଚନ୍ତି, ଚୀନ୍-ପରିବ୍ରାଜକ ହୁଏନ୍‌ସାଂଙ୍କ ମୁଖରେ ଓ ଲେଖାରେ ତାମ୍ରଲିପ୍ତି ତାନ୍-ମୋ-ଲି-ଢି ହୋଇଛି, ପାରସୀୟ ଭୂଗୋଳ ଲେଖକଙ୍କ ଲେଖାରେ ଗୋଦାବରୀ କୁଦାଫଲିଦ ହୋଇଛି, ପର୍ତ୍ତୁଗୀଜ୍‌ନୁନିଜଙ୍କ ମୁହଁରେ ବିଜୟନଗରର ରାଜା (ସାଲୁବ) ନରସିଂହ ନର୍‌ସ୍ୟଂଗୁଅ ହେଇଛନ୍ତି; ପ୍ରବାସୀ ବଙ୍ଗାଳୀ ଓଡ଼ିଆକୁ କହନ୍ତି ଉଡ଼େ, ପ୍ରବାସୀ ଓଡ଼ିଆ ବାଙ୍ଗାଳୀକୁ କହନ୍ତି ବଙ୍ଗାଲୀ । ଏଣୁ ସାରଳାଦାସଙ୍କ ଓଡ଼ିଆ ମୁହଁରେ ଓ ଲିପିଲେଖନରେ ବିଦେଶର ପାରସ୍ୟ ନାମଟା ପାରିସ ହେବାରେ କୌଣସି ବିଚିତ୍ରତା ନାହିଁ ।

---

(ପୁଡ଼ୁକୋଟାଇ ଦେଇ ମଦୁରା ପର୍ଯ୍ୟନ୍ତ ରାଜରାସ୍ତା ପଡ଼ିଥିଲା ଓ ଏହି ରାସ୍ତାକୁ ହୁଏନ୍‌ସାଂ ତାଙ୍କ ଦକ୍ଷିଣଭାରତ ଭ୍ରମଣ ସମୟରେ ବ୍ୟବହାର କରିଥିଲେ, Cunningham's Ancient Geography of India, edited by S. N. Mazumdar, 1924, P. 741, କିନ୍ତୁ ଉତ୍ତରରେ ମଧ୍ୟ ଗୋଟିଏ ଉରଗପୁର ଥିଲା ଓ ଏହି ଉରଗପୁରର କଥା ମଲ୍ଲିନାଥ ଉଲ୍ଲେଖ କରିଛନ୍ତି (ମଲ୍ଲିନାଥଙ୍କ ଟୀକା ଦ୍ରଷ୍ଟବ୍ୟ) । ସାରଳା ଦାସ ଗୋଟିଏ ଦକ୍ଷିଣରେ ଓ ଗୋଟିଏ ଉତ୍ତରରେ ଉରଙ୍ଗଦେଶର ଉଲ୍ଲେଖ କରି ତାଙ୍କ ବ୍ୟାପକ ଭୌଗୋଳିକ ଜ୍ଞାନର ଆଶ୍ଚର୍ଯ୍ୟଜନକ ପ୍ରମାଣ ଦେଇଯାଇଛନ୍ତି ।

ସାରଳା ଦାସଙ୍କ ସମୟରେ ଓଡ଼ିଶା, ବାହ୍ମାମନି ଓ ବିଜୟନଗର, ଏହି ତିନି ସାମ୍ରାଜ୍ୟକୁ ପାରସ୍ୟର ସମର-ଅଶ୍ୱ ବହୁ ପରିମାଣରେ ଆମଦାନୀ ହୋଇ ଆସୁଥିଲେ । ପାରସ୍ୟ ଓ ଆରବର ବଣିକମାନଙ୍କର ଏହା ଗୋଟିଏ ପ୍ରଧାନ ବ୍ୟବସାୟ ଥିଲା । ପାରସ୍ୟ ଅଶ୍ୱକୁ ବହୁମୂଲ୍ୟ ଦେଇ କିଣା ଯାଉଥିଲା । ବାଟରେ ମରିଯାଇଥିବା ଘୋଡ଼ାର ଲାଞ୍ଜ ଦେଖାଇଲେ, ତା'ର ମୂଲ୍ୟ ଦେବା ପାଇଁ ସୁଦ୍ଧା ବିଜୟନଗରର ରାଜା ଅଶ୍ୱବଣିକମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ସାରଳା ଦାସଙ୍କ ପୂର୍ବରୁ ସୁଦ୍ଧା ଓଡ଼ିଶା ସହିତ ଆରବ ଓ ପାରସ୍ୟର ଅଶ୍ୱ କାରବାର ଥିବାର ପ୍ରମାଣ ମିଳେ । କୋଣାର୍କର ମନ୍ଦିର ଗାତ୍ରରେ ଯେଉଁ ଜିରାଫର ଚିତ୍ର ଅଛି, ତା ପାଖରେ ଠିଆ ହୋଇଥିବା ବ୍ୟକ୍ତିମାନଙ୍କ ପିନ୍ଧାପୋଷାକରୁ ଜଣାଯାଏ ଯେ, ଏମାନେ ବିଦେଶୀ । ଏମାନେ ଆରବ କିମ୍ବା ପାରସ୍ୟର ଘୋଡ଼ା-ବେପାରି । ଏମାନେ ଓଡ଼ିଶା ସହିତ ଅଶ୍ୱ ବଣିଜରେ ଲିପ୍ତ ରହୁଥିଲେ ଓ ମଝିରେ ମଝିରେ ଜିରାଫ ପରି ଅଦ୍ଭୁତ ଜୀବଟିଏ ରାଜାଙ୍କୁ ଦେଖାଇ ତାଙ୍କର ମନ ଖୁସି କରୁଥିଲେ । ଉତ୍ତମ ଅଶ୍ୱ ଉତ୍ପାଦନ କରିବାରେ ଓ ଅଶ୍ୱମାନଙ୍କ ଯତ୍ନ ନେବା ବିଷୟରେ ମୁସଲମାନମାନଙ୍କଠାରୁ ପୃଥିବୀର ଅନ୍ୟ କୌଣସି ଜାତି ବଳିଯାଇ ପାରିନଥିଲେ । ମୁସଲମାନ ଶବ୍ଦଟି ସିଧାସଳଖ ଭାବରେ ଲେଖି ନ ପାରି ସାରଳା ଦାସ ମୁସଲମାନ ଦେଶକୁ ସ୍ଳେଚ୍ଛାର ଦେଶ ବା ମଣ୍ଡଳ ଓ ମୁସଲମାନ ଘୋଡ଼ାକୁ ସ୍ଳେଚ୍ଛାର ଅଶ୍ୱ ବୋଲି ବାରମ୍ବାର ବର୍ଣ୍ଣନା କରିଥିବା ବିଷୟ ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଛି । ଘୋଡ଼ାମାନେ ଯୁଦ୍ଧ ଜୟ କରିବାରେ କିପରି ସାହାଯ୍ୟ କରୁଥିଲେ, ସାରଳା ଦାସ ତାହା ଯୁଧିଷ୍ଠିରଙ୍କ ମୁଖରେ କହିଯାଇଛନ୍ତି—"ଅଶ୍ୱ ସାହାଯ୍ୟରେ ବାକୁ ଶତ୍ରୁ ହୁଏ ଜିଣି ।" ଅନେକ ସମୟରେ ମୁସଲମାନମାନଙ୍କ ଘୋଡ଼ା ଯୋଗୁ ହିନ୍ଦୁମାନେ ଯୁଦ୍ଧରେ ହାରିଯାଇ ପରେ ସେମାନେ ମଧ୍ୟ ଯୁଦ୍ଧରେ ବେଶୀ ଭାବରେ ଘୋଡ଼ା ବ୍ୟବହାର କରିବାର ଆବଶ୍ୟକତା ଉପଲବ୍ଧି କରିଥିଲେ । ଘୋଡ଼ା ବ୍ୟବସାୟ ମୁସଲମାନମାନଙ୍କ ଏକପ୍ରକାର ଏକଚାଟିଆ ଥିଲା; କିନ୍ତୁ ପରେ ପର୍ତ୍ତୁଗୀଜମାନେ ସେମାନଙ୍କ ସଙ୍ଗରେ ଏ ବ୍ୟବସାୟରେ ପ୍ରତିଯୋଗିତା କରିଥିଲେ । କବି ଦେଶୀ ବିଦେଶୀ ବିଭିନ୍ନ ଘୋଡ଼ାର ସୂଚନା ଦେବା ସଙ୍ଗେ ସଙ୍ଗେ ଅଶ୍ୱବିଦ୍ୟା ବିଷୟରେ ବହୁକଥା ତାଙ୍କ ମହାଭାରତରେ ଲେଖି ଯାଇଛନ୍ତି । ପ୍ରସଙ୍ଗୋଚିତ ହେଉନଥିବାରୁ ସେ ସମସ୍ତ ଏ ପ୍ରବନ୍ଧରେ ଆଲୋଚନା କରାଯାଉ ନାହିଁ । ବସ୍ତୁତଃ "ସାରଳାଦାସଙ୍କ ଘୋଡ଼ା" ସାମାନ୍ୟ ବିଷୟ ନୁହେଁ; ତା' ଉପରେ ଗୋଟିଏ ନିବନ୍ଧ ଲେଖାଯାଇ-ପାରେ ।

(୪) ଓ (୫)ରେ କରାଯାଇଥିବା ଆଲୋଚନା ଦୃଷ୍ଟିରୁ ଦୁଇଟି ଭୌଗୋଳିକ ନାମର ଶୁଦ୍ଧପାଠ ଉଦ୍ଧାର କରାଯାଇ ପାରୁଛି ।

ଋଷ୍ୟମୂକ ପଞ୍ଚବଟୀ ଚନ୍ଦ୍ରକୂଟ ବନ
ବାଗାନଲ କଲାପ ଯେ ବନ ମଧୁବନ । (ଅଶୁଦ୍ଧପାଠ)
ଋଷ୍ୟମୂକ ପଞ୍ଚବଟୀ ଚନ୍ଦ୍ରକୂଟ ବନ
ବାଗଲାନ କଲପି ଯେ ବନ ମଧୁବନ । (ଶୁଦ୍ଧପାଠ)

ଏଥିମଧ୍ୟରୁ ସମସ୍ତ ଭୌଗୋଳିକ ନାମର ଆଲୋଚନା କରାଯାଇଛି; କିନ୍ତୁ ଭ୍ରମବଶତଃ 'ବନ'ର ଆଲୋଚନା କରାଯାଇନାହିଁ । ବନର ମୌଳିକ ରୂପ ବୃନ୍ଦାବନ ଥିଲି ବୋଲି ଅନୁମିତ ହୁଏ । ଦାଣ୍ଡୀ ବୃତ୍ତିକୁ ୧୪ ଅକ୍ଷରରେ ପରିଣତ କଲାବେଳେ ହୁଏତ 'ବୃନ୍ଦା'ଟାକୁ ବାଦ କରି ଦିଆଯାଇଛି; କିନ୍ତୁ ଅଧା ନାମ ଦ୍ୱାରା ସମୁଦାୟ ନାମଟିର ସୂଚନା ଦିଆଯାଇଥିବାର ଉଦାହରଣ ମଧ୍ୟ ସାରଳା ସାହିତ୍ୟରେ ବିରଳ ନୁହେ । ଗୋପ, ମଥୁରା, ବୃନ୍ଦାବନ ଓ ମଧୁବନ ସମସ୍ତେ ପାର୍ଶ୍ୱବର୍ତ୍ତୀ ସ୍ଥାନ ।

---

# ନବମ ପରିଚ୍ଛେଦ

## ମୁସଲମାନ୍ ରାଜତ୍ୱକାଳର କେତେକ ବିଖ୍ୟାତ ସ୍ଥାନ

ମୁସଲମାନ ଆଧିପତ୍ୟ କାଳରେ ଖ୍ୟାତିଲାଭ କରିଥିବା ଦିଲ୍ଲୀ, ରଣସ୍ତମ୍ଭପୁର (ରନ୍ଥମ୍ଭୋର) ଅଜୟମେରୁ (ଆଜମେର), ବାଗ୍‌ଲାନ, କଲିଙ୍ଗ ପ୍ରଭୃତି କେତେକ ସ୍ଥାନର ଭୌଗୋଳିକତା ଓ ଐତିହାସିକତା ଏପର୍ଯ୍ୟନ୍ତ ଆଲୋଚନା କରାଯାଇଛି । ସାରଳା-ମହାଭାରତରେ ଏହି ସମୟର ଇତିହାସରେ ବିଶିଷ୍ଟ ଭୂମିକା ଗ୍ରହଣ କରିଥିବା ଆହୁରି ଅନେକ ଭୌଗୋଳିକ ନାମର ଉଲ୍ଲେଖ ରହିଛି । ସେମାନଙ୍କ ମଧ୍ୟରୁ କେତେକର ଆଲୋଚନା ଏଠାରେ କରାଯିବ ।

(୧) ଚନ୍ଦ୍ରଗିରି—ଏହାର ଡାକନାମ ଥିଲା ଚନ୍ଦେରି । ବର୍ତ୍ତମାନ ସୁଦ୍ଧା ତାହାର ଏହି ନାମ ପ୍ରଚଳିତ ଅଛି । ଉତ୍ତର ପ୍ରଦେଶର ଲଳିତପୁର ଓ ମଧ୍ୟପ୍ରଦେଶର ଈଶାଗଡ଼ର ମଧ୍ୟବର୍ତ୍ତୀ ଗିରିସଙ୍କୁଳ ଓ ଅବଧ ଦସ୍ୟୁ-ଅଧ୍ୟୁଷିତ ଅଞ୍ଚଳରେ ଏହି ଦୁର୍ଗମ ଗିରିଦୁର୍ଗ ପ୍ରାଚୀନ ମାଳବ (ମାଲ୍‌ୱା) ଓ ଚେଦି (ବୁନ୍ଦେଲଖଣ୍ଡ) ରାଜ୍ୟକୁ ବିଭକ୍ତ କରୁଥିବା ପ୍ରାଚୀନ କୋଲାହଳ ପର୍ବତ ମଧ୍ୟରେ ଅବସ୍ଥିତ ଥିବାରୁ ଏହାର ଅନ୍ୟନାମ ଥିଲା କୋଲାହଳ । ସଂସ୍କୃତ ମହାଭାରତରେ କୋଲାହଳର ନାମ ଉଲ୍ଲେଖ ଅଛି (*) ସାରଳାଦାସ ଏହି ଦୁର୍ଗକୁ କେତେବେଳେ ଚନ୍ଦ୍ରଗିରି ଓ କେତେବେଳେ କୋଲାହଳ ନାମରେ ଉଲ୍ଲେଖ କରିଛନ୍ତି । ଚନ୍ଦ୍ରଗିରି ନାମରେ ବହୁ ପର୍ବତ ଭାରତର ବିଭିନ୍ନ ଅଞ୍ଚଳରେ ଥିବାରୁ କବିବର୍ଣ୍ଣିତ ଚନ୍ଦ୍ରଗିରି ଯେ ଚନ୍ଦେରି ଦୁର୍ଗ, ଏକଥା ସ୍ଥିର କରିବା ସହଜ ହୁଏ ନାହିଁ, କିନ୍ତୁ ସେ ଏହି ଦୁର୍ଗର କୋଲାହଳ ନାମଟି ମଧ୍ୟ ଉଲ୍ଲେଖ କରିଥିବାରୁ ତାଙ୍କୁ ଯେ ଚନ୍ଦେରି ଦୁର୍ଗର କଥା ଜଣାଥିଲା, ଏ ବିଷୟରେ ସନ୍ଦେହ ରହେ

(*) କୋଲାହଳଃ ପର୍ବତଃ । ଆଦ୍ୟ ୬୪।୪୮ । The range of hills near Chanderi which separates Malwa from Bundel-Khand, Central India.
An Alphabetical Index of Sriman Mahabharat by Krishnacharya, Bombay, 1914, p. 51.

ନାହିଁ । ବିରାଟ ପର୍ବରେ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ଅନୁସନ୍ଧାନ କରିବା ପାଇଁ ପଠାଇଥିବା ଉତ୍ତରଦିଗର ଗୁପ୍ତଚରମୁଖରେ ସାରଳାଦାସ ଏହି କୋଳାହଳ ନାମଟି ଉଲ୍ଲେଖ କରିଛନ୍ତି—

ରଇବତ କୋଳାହଳ ପୁଣି ମୁଦ୍ରାପୁଷ
ଶୋଣିତାକ୍ଷ ମଣ୍ଡଳ ଯେ ଅଯୋଧାବି କରି । ବିରାଟ, ପୃ ୮୭

ମୁସଲମାନ ରାଜତ୍ୱ କାଳରେ ଚନ୍ଦେରି ଦୁର୍ଗ ବିଶିଷ୍ଟ ଐତିହାସିକ ଭୂମିକା ଗ୍ରହଣ କରିଥିଲା । ୧୨୫୧ ଖ୍ରୀଷ୍ଟାବ୍ଦରେ ନାସିରୁଦ୍ଦିନଙ୍କ ମନ୍ତ୍ରୀ ତଥା ସେନାପତି ବଲ୍‌ବନ୍ ଏହି ଦୁର୍ଗକୁ ଆକ୍ରମଣ କରି ଅକୃତକାର୍ଯ୍ୟ ହୋଇଥିଲେ । କାରାରେ ଶାସନକର୍ତ୍ତା ଥିବାବେଳେ ଆଲାଉଦ୍ଦିନ୍ ଖିଲିଜି ଚନ୍ଦେରି ଓ ଏଲିଚପୁର ମଧ୍ୟଦେଇ ଯାଇ ଦେବଗିରି ଆକ୍ରମଣ କରିଥିଲେ । ପରେ ୧୩୦୫ ଖ୍ରୀଷ୍ଟାବ୍ଦରେ ସେ ଏହି ଦୁର୍ଗକୁ ଦଖଲ କରି ତାଙ୍କ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରିଥିଲେ । ଦିଲ୍ଲୀ-ସାମ୍ରାଜ୍ୟର ପତନ ପରେ ପରେ ଚନ୍ଦେରି ମାଲ୍ୱା ସୁଲତାନ୍‌ମାନଙ୍କଦ୍ୱାରା ଅଧିକୃତ ହୋଇଥିଲା । ବାହାଲୁଲ୍ ଲୋଦି ଜୋନପୁରରାଜ୍ୟକୁ ଧ୍ୱଂସ କରିବା ପରେ ଦିଲ୍ଲୀ-ସାମ୍ରାଜ୍ୟର ସମ୍ପୂର୍ଣ୍ଣ ପୁନରୁତ୍ଥାନ ପାଇଁ ମାଲ୍ୱା ଆକ୍ରମଣ କରିଥିଲେ, ମାତ୍ର ମାଲ୍ୱା ସୁଲ୍‌ତାନ୍‌ଙ୍କ ଚନ୍ଦେରିଦୁର୍ଗର ଶାସନକର୍ତ୍ତା ଶେରଖାଁଙ୍କ ପ୍ରତିଆକ୍ରମଣ ହେତୁରୁ ତାହା ବିଫଳ ହୋଇଥିଲା । (The Delhi Sultanate, ଭାରତୀୟ ବିଦ୍ୟାଭବନ; p. 141) । ବାହାଲୁଲ ମାଲ୍ୱା ଅଧିକାର କରିପାରିଥିଲେ ଦିଲ୍ଲୀ ସାମ୍ରାଜ୍ୟର ପୁନରୁତ୍ଥାନ ଅନେକାଂଶରେ ସମ୍ପୂର୍ଣ୍ଣ ହୋଇଥାନ୍ତା ଓ ଭାରତରେ ପରବର୍ତ୍ତୀ ମୋଗଲ-ସାମ୍ରାଜ୍ୟ ସ୍ଥାପିତ ହେବାର ସମ୍ଭାବନା ରହି ନଥାନ୍ତା । ଭାରତ ଇତିହାସର ଗୁରୁତ୍ୱପୂର୍ଣ୍ଣ ସମୟରେ ଚନ୍ଦେରି-ଦୁର୍ଗର ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଭୂମିକା ଅବିସ୍ମରଣୀୟ ।

ଆଗରୁ କୁହାଯାଇଛି ଯେ ବାହାଲୁଲ ଲୋଦି (ଖ୍ରୀ: ୧୪୫୧-୮୯) ଓ ଓଡ଼ିଶାର କପିଳେଶ୍ୱର ଗଜପତି (ଖ୍ରୀ: ୧୪୩୫-୬୭) ସମସାମୟିକ ଥିଲେ । ଚନ୍ଦେରିଦୁର୍ଗର କଥା କପିଳେଶ୍ୱରଙ୍କ ସମସାମୟିକ ସାରଳାଦାସଙ୍କ କର୍ଣ୍ଣଗୋଚର ହୋଇଥିବା ଅସମ୍ଭବ ନୁହେଁ । କଲ୍‌ପିକୁ ଅଧିକାର କରିବା ପାଇଁ ମାଲ୍ୱା, ଦିଲ୍ଲୀ ଓ ଜୋନପୁର ମଧ୍ୟରେ ଘଟିଥିବା ତ୍ରିଶକ୍ତି ଯୁଦ୍ଧକୁ ସାରଳାଦାସ କପରି ପୌରାଣିକ ଭାବରେ ବର୍ଣ୍ଣନା କରି ଯାଇଛନ୍ତି, ତାହା ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି । ବାହାଲୁଲ ଲୋଦିଙ୍କ ରାଜତ୍ୱ-କାଳର ତିନୋଟି ପ୍ରଧାନ ଘଟନା ହେଉଛି ତାଙ୍କର ଜୋନପୁର ସହିତ ଯୁଦ୍ଧ, କଲ୍‌ପି ସହିତ ଯୁଦ୍ଧ ଓ ଚନ୍ଦେରିର ଶାସନକର୍ତ୍ତା ଶେରଖାଁଙ୍କ

ସହିତ ସଂଘର୍ଷ । ଏହି ଐତିହାସିକ ଘଟଣା ସାରଳାଦାସଙ୍କ କର୍ଣ୍ଣଗୋଚର ହୋଇଥିଲା ବୋଲି ପ୍ରତିପାଦିତ ହୁଏ ।

ଉଲ୍ଲିଖିତ ପଦରେ ଥିବା ଅନ୍ୟ ଭୌଗୋଳିକ ନାମମାନଙ୍କ ସଂକ୍ଷିପ୍ତ ଆଲୋଚନା ନିମ୍ନରେ ଦିଆଯାଉଛି ।

ରଇବତ—କାଥିଆବାଡ଼ର ଯୂନାଗଡ଼ରେ ଅବସ୍ଥିତ ଗିର୍ନାର ପର୍ବତ ପୂର୍ବକାଳରେ ରୈବତଗିରି ନାମରେ ଅଭିହିତ ହେଉଥିଲା ।

ମୁଦ୍ରାପୁରୀ—ଏହାର ଶୁଦ୍ଧପାଠ ହେଉଛି ମଦ୍ରପୁରୀ । ଲେଖନକାର କିମ୍ବା ମୁଦ୍ରାକର ଅଥବା ଅନୁଲେଖକଙ୍କ ଭ୍ରମ ହେତୁରୁ ଏହା ମୁଦ୍ରାପୁରୀରେ ପରିଣତ ହୋଇଛି । ମଧ୍ୟପଞ୍ଜାବ ମଦ୍ରଦେଶ ନାମରେ ଅଭିହିତ ହେଉଥିଲା । ଏହାର ରାଜଧାନୀର ନାମ ଥିଲା ସାକଲ ଓ ଏହି ନାମ ମହାଭାରତର ମଦ୍ରପତି ଶଲ୍ୟଙ୍କ ନାମରୁ ଉତ୍ପତ୍ତି ହୋଇଥିଲା ବୋଲି ପଣ୍ଡିତମାନେ ଅନୁମାନ କରନ୍ତି । ସାକଲକୁ ହିଁ ସାରଳା ଦାସ ମଦ୍ରପୁରୀ ବୋଲି ବର୍ଣ୍ଣନା କରିଛନ୍ତି । ସାକଲର ଆଧୁନିକ ନାମ ସିଆଲକୋଟ ବୋଲି ପଣ୍ଡିତମାନେ ନିର୍ଣ୍ଣୟ କରିଛନ୍ତି । ସଂସ୍କୃତ ମହାଭାରତରେ ସାକଲର ବର୍ଣ୍ଣନା ରହିଛି—

ସାକଲଂ ନାମ ନଗରମପଗା ନାମ ନିମ୍ନଗା
ଜାତକା ନାମ ବାହ୍ଲିକାସ୍ତେଷାଂ ବୃତ୍ତଂ ସୁନିନ୍ଦିତମ୍ ।

ଏହି ନଗରର ପାର୍ଶ୍ୱବର୍ତ୍ତୀ ନଦୀମାନଙ୍କର ନାମ ମଧ୍ୟ ଉଲ୍ଲେଖ ରହିଛି—

ଶତଦ୍ରୁଶ୍ଚ ବିପାଶାଚ ତୃତୀୟୈରାବତୀ ତଥା
ଚନ୍ଦ୍ରଭାଗା ବିତସ୍ତା ଚ ସିନ୍ଧୁ-ଷଷ୍ଠା ବହିର୍ଗିରେଃ ।

କର୍ଣ୍ଣପର୍ବ, ୭ମ ଅଧ୍ୟାୟ ।

ଏହି ବର୍ଣ୍ଣନାରୁ ଜଣାଯାଏ ଯେ ସାକଲ ଯେଉଁ ଅଞ୍ଚଳରେ ଅବସ୍ଥିତ, ସେ ଅଞ୍ଚଳରେ ଶତଦ୍ରୁ, ବିପାଶା, ଇରାବତୀ, ଚନ୍ଦ୍ରଭାଗା, ବିତସ୍ତା ଓ ସିନ୍ଧୁନଦୀ ପ୍ରବାହିତ ହେଉଛନ୍ତି । ଏ ଅଞ୍ଚଳର ଲୋକମାନଙ୍କୁ ଜାତକା (ଜାଟ୍) ବୋଲି କୁହା ଯାଉଥିଲା । ଏମାନେ ବାହ୍ଲିକା ବା ବହିର୍ଦେଶୀୟ ବୋଲି ବିବେଚିତ ହେଉଥିଲେ, କାରଣ ଏମାନଙ୍କ ଆଚାର ନିନ୍ଦନୀୟ ଥିଲା । ମହାଭାରତ ଲେଖା ହେବା ବେଳକୁ ବୈଦିକ ସଭ୍ୟତା ବ୍ରହ୍ମର୍ଷି ପ୍ରଦେଶରୁ (ପଞ୍ଜାବରୁ) ଚାଲିଆସି ଆର୍ଯ୍ୟାବର୍ତ୍ତରେ

(ଆଧୁନିକ ଉତ୍ତର ପ୍ରଦେଶରେ) ପ୍ରାଧାନ୍ୟ ଲାଭ କରିଥିଲା । ପଞ୍ଚାଳମାନେ ମାଛ ମାଂସ ଖାଉଥିଲେ । ଏହି ହେତୁରୁ ସେମାନଙ୍କ ଆଚାର ନିନ୍ଦନୀୟ ବୋଲି କୁହାଯାଇଛି ।

ଚୀନ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରେ ମଧ୍ୟ ସାକଲର ଉଲ୍ଲେଖ ରହିଛି ( Cunningham's Ancient Geography of India, edited by S. N. Mazumdar, 1924, pp. 207, 686 ) ।

ଶୋଣିତାଷମଣ୍ଡଳ—ଏହାର ଶୁଦ୍ଧ ପାଠ ଶୋଣିତାଖ୍ୟମଣ୍ଡଳ ( ଶୋଣିତ ନାମକ ମଣ୍ଡଳ ) ହେବ । ଆସାମର ତେଜପୁର ଅଞ୍ଚଳକୁ ଶୋଣିତମଣ୍ଡଳ କୁହାଯାଉଥିଲା ଓ ଏହି ଅଞ୍ଚଳରେ ବାଣାସୁରର ରାଜଧାନୀ ଶୋଣିତପୁର ଅବସ୍ଥିତ ଥିଲା । ଏହି ଅଞ୍ଚଳକୁ ବେଳେ ବେଳେ ଲୋହିତ ମଣ୍ଡଳ ବୋଲି ମଧ୍ୟ କୁହାଯାଉଥିଲା ଓ ଏହି ଅଞ୍ଚଳରେ ବ୍ରହ୍ମପୁତ୍ର ପ୍ରବାହିତ ହେଉଥିବାରୁ ଏହାର ଅନ୍ୟ ନାମ ଲୋହିତ୍ୟା ହୋଇଥିଲା । ସାରଳା ଦାସ ଅନ୍ୟତ୍ର ମଧ୍ୟ ଶୋଷିତ ମଣ୍ଡଳ ଓ ଶୋଣିତପୁରର ନାମ ଉଲ୍ଲେଖ କରିଛନ୍ତି—

ବ୍ୟୁହମଣ୍ଡଳ ଆବର ଶୋଣିତ ମଣ୍ଡଳ
ଶୈଳମଣ୍ଡଳ ଯେ ମେରୁମଣ୍ଡଳ ସୁଢ଼ଳ ।

ଭାନୁମତୀ ସ୍ୱୟମ୍ବର, ଆଦ୍ୟ, ପୃ-୧୧୫

ଶୋଣିତ ନଗରେ ବାଣାସୁର ଯେ ଦନୁଜ
ଚୌରାଶୀ କ୍ଷଉଣୀ ସୈନ୍ୟ ସହସ୍ରେକ ଭୁଜ ।

ଦ୍ରୌପଦୀ ସ୍ୱୟମ୍ବର, ଆଦ୍ୟ, ପୃ-୬୫୭

ଅଯୋଧ୍ୟା—ଉତ୍ତରପ୍ରଦେଶର ଫୈଜାବାଦଠାରୁ ୬ ମାଇଲ ଦୂରରେ ସରଯୂ କୂଳରେ ଅଯୋଧ୍ୟା ଅବସ୍ଥିତ । ଏଠାରେ ବହୁ ଆଧୁନିକ ମନ୍ଦିର ଅଛି । ଏହା ରାମଙ୍କ ରାଜଧାନୀ ଅଯୋଧ୍ୟା ବୋଲି ଅଦ୍ୟାପି ବିଦିତ ।

ଉଲ୍ଲିଖିତ ପଦଟିରେ ଥିବା ଭୌଗୋଳିକ ସ୍ଥାନମାନ ଗୁଜୁରାଟ ଓ ପଞ୍ଜାବଠାରୁ ଆସାମ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳରେ ଅବସ୍ଥିତ । ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ଅନୁସନ୍ଧାନ ପାଇଁ ଉତ୍ତର ଦିଗକୁ ଯେଉଁ ଚାର ପଠାଇଥିଲେ, ତାହାର ମୁହଁରେ ଏହି ଭୌଗୋଳିକ ନାମଗୁଡ଼ିକ ପ୍ରକାଶ କରାଯାଇଛି । ଏଣୁ ସାରଳାଦାସଙ୍କର ବର୍ଣ୍ଣନା ଅନୁଯାୟୀ ଏସବୁ ସ୍ଥାନ ଉତ୍ତରଦିଗରେ ଅବସ୍ଥିତ; କିନ୍ତୁ କବିଙ୍କ ବର୍ଣ୍ଣନା ଭୂଗୋଳ ସହିତ ମେଳ ଖାଉନାହିଁ । ଏଠାରେ ସ୍ମରଣ କରିବା ଉଚିତ ଯେ ସାରଳା ଦାସ ଭୌଗୋଳିକ

ବିବରଣୀ ପ୍ରକାଶ କରିବା ବେଳେ କୌଣସି ମାନଚିତ୍ର ବା ଭୂଗୋଳ ପୁସ୍ତକ ବ୍ୟବହାର କରି ନ ଥିଲେ । ସେ ଭୌଗୋଳିକ ସ୍ଥାନମାନଙ୍କ ଅବସ୍ଥିତି ସମ୍ବନ୍ଧରେ ଯାହା ଶୁଣିଥିଲେ ଓ ଲେଖିବାବେଳେ ଯାହା ସ୍ମରଣ କରିପାରୁଥିଲେ, ତାହା ହିଁ ଲେଖି ଯାଇଛନ୍ତି । ସଂସ୍କୃତ ପୁରାଣାଦିରେ ମଧ୍ୟ ଭୌଗୋଳିକ ସ୍ଥାନମାନଙ୍କ ଅବସ୍ଥିତି ସମ୍ବନ୍ଧରେ ବହୁ ଭ୍ରମ ଦେଖାଯାଏ । କୌଣସି ପ୍ରାଚୀନ ଗ୍ରନ୍ଥରୁ ଜ୍ଞାନ ଆହରଣ କଲାବେଳେ ସେଥିରେ ଥିବା ତ୍ରୁଟି ପ୍ରତି ଦୃଷ୍ଟିଦେବା ଅବିଧେୟ; କାରଣ ଆଜିକାଲି ଆମ୍ଭମାନଙ୍କ ଯେଉଁସବୁ ସୁବିଧା ଅଛି, ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କର ସେସବୁ ସୁବିଧା ନଥିଲା ।

(୬) ଉଜ୍ଜୟିନୀ—ମୁସଲମାନ ଆଧିପତ୍ୟ କାଳରେ ମାଳବ (ମାଲ୍ୱା) ଦେଶର ମାଣ୍ଡୁ (ମଣ୍ଡପଦୁର୍ଗ), ଗୋଆଲିୟର(ଗୋପଗିରି), ନରୱାର (ନଳପୁର) ଚନ୍ଦେରି (ଚନ୍ଦ୍ରଗିରି ବା କୋଳାହଳ) ପ୍ରଭୃତି ଦୁର୍ଗ ପ୍ରାଧାନ୍ୟ ଲାଭ କରିଥିଲେ ହେଁ ପଶ୍ଚିମ ମାଳବର ପ୍ରାଚୀନ ରାଜଧାନୀ ଉଜ୍ଜୟିନୀର ପ୍ରାଧାନ୍ୟ କ୍ଷୁଣ୍ଣ ହୋଇ ନଥିଲା । ଏହା ଗୋଟିଏ ପ୍ରଧାନ ନଗରୀ ରୂପେ ବିଦ୍ୟମାନ ଥିଲା । ସାରଳାଦାସ ଉଜ୍ଜୟିନୀର ନାମ ବାରମ୍ବାର ଉଲ୍ଲେଖ କରିଛନ୍ତି—

ଭୂପାଳ ଦେଶକୁ ତେଜି ବୀରଅରଜୁନ
ଉଜାଣକାନ୍ତି ରାଜ୍ୟକୁ କରିଲେ ପ୍ରୟାଣ ।
ସଭା, ପୃ-୧୩୧

ସେ ଉଜାଣ ନଗ୍ର ବେଢନ ଯୁଣ ଆୟତନ
ସେ ରାଜ୍ୟର ପୁରମାନ ସୁବର୍ଣ୍ଣେ ନିର୍ମାଣ ।
ସଭା, ପୃ-୧୩୧

ଉଜାଣି ଦେଶ ନୃପତି ସମରେ ପ୍ରଚଣ୍ଡା
କଲିଙ୍ଗ ରାଜା ସୈନ୍ୟସବୁ କଲେ ମସିଗୁଣ୍ଡା ।
ବନ, ପୃ-୩୦୪

ଉଲ୍ଲିଖିତ ପଦମାନଙ୍କରୁ ଦେଖାଯିବ ଯେ କବି ଉଜ୍ଜୟିନୀକୁ ଉଜାଣ, ଉଜାଣି, ଉଜାଣକାନ୍ତି ଆକାରରେ ଲେଖିଛନ୍ତି ଏବଂ ଏହାକୁ ନଗରୀ ଓ ଦେଶ ଉଭୟର ନାମ ରୂପେ ବ୍ୟବହାର କରିଛନ୍ତି । ତାଙ୍କ ମହାଭାରତର କୌଣସି କୌଣସି ଅଂଶରେ ସେ ଏହାକୁ ଉଜାଣକାଞ୍ଚି ବୋଲି ମଧ୍ୟ ଲେଖିଛନ୍ତି । ଉଜ୍ଜୟିନୀକୁ ଭୂପାଳର ପରବର୍ତ୍ତୀ ଓ ସନ୍ନିହିତ ଅଞ୍ଚଳ ରୂପେ ବର୍ଣ୍ଣନା କରିଥିବାରୁ ଏହାର ଅବସ୍ଥିତି ସମ୍ବନ୍ଧରେ କବିଙ୍କ ସମ୍ୟକ୍ ଧାରଣା ଥିଲା ବୋଲି ପ୍ରମାଣିତ ହେଉଛି ।

(୩) କାଲଞ୍ଜର—ବୁନ୍ଦେଲଖଣ୍ଡରେ ଅବସ୍ଥିତ ଏହି ବିଖ୍ୟାତ ଦୁର୍ଗ ଚନ୍ଦେଲ ରାଜବଂଶ ଅମଳରେ ଓ ପରେ ମୁସଲମାନ ରାଜତ୍ୱକାଳରେ ବିଶିଷ୍ଟ ଐତିହାସିକ ଭୂମିକା ଗ୍ରହଣ କରିଥିବା କଥା ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି । ଏଠାରେ ତା'ର ପୁନରାବୃତ୍ତି ଅନାବଶ୍ୟକ । ସାରଳାଦାସ ଏହାଙ୍କୁ କୁଞ୍ଜର ନାମରେ ବାରମ୍ବାର ଉଲ୍ଲେଖ କରିଛନ୍ତି ।

(୪) କାଲନଗର—ମୁସଲମାନ ରାଜତ୍ୱ ପୂର୍ବେ ଏହା ଗୋଟିଏ ଅତି ନଗଣ୍ୟ ସ୍ଥାନ ଥିଲା, ମାତ୍ର ମୁସଲମାନ ରାଜତ୍ୱରେ ଏହା କାରା ନାମରେ ଗୋଟିଏ ପ୍ରାଦେଶିକ ରାଜଧାନୀ ରୂପେ ବିଖ୍ୟାତ ହୋଇପଡ଼ିଥିଲା । କାନିଂହାମ ଓ ଫୁହ୍ରେର୍-ସାହେବ କାରା ସମ୍ବନ୍ଧରେ ଯାହା ଲେଖିଛନ୍ତି, ତା'ର ସାରମର୍ମ ନିମ୍ନରେ ଦିଆଗଲା ।

ସିରାଥୁ ତହସିଲ୍‌ରେ ଏଲାହାବାଦଠାରୁ ୪୧ ମାଇଲ ଉତ୍ତର ପଶ୍ଚିମ-କୋଣରେ ଗଙ୍ଗା କୂଳରେ ଅବସ୍ଥିତ ଏହା ଗୋଟିଏ ସହର୍ । ଏଠାରେ ଅଦ୍ୟାପି କାଲେଶ୍ୱର ନାମକ ଗୋଟିଏ ମନ୍ଦିର ଅଛି ଓ ଏହି ନାମରୁ ହିଁ କାଲନଗର ନାମଟିର ଉତ୍ପତ୍ତି ଘଟିଥିଲା । ତାମ୍ର ଶାସନରୁ ଓ ଜନଶ୍ରୁତିରୁ ଜଣାଯାଏ ଯେ କାରାର ଅନ୍ୟତମ ନାମ ଥିଲା କାଲୋଖେଲ ଓ କର୍କୋଟନଗର (A. Fuhrer—Monuments Antiquities and Inscriptions in the North western Provinces and Oudh, 1891, pp. 138-39; Cunningham's Reports, Vol. XVII, pp. 88-95) ।

ଦିଲ୍ଲୀ-ସୁଲତାନମାନଙ୍କ ଅମଳରେ ଆଧୁନିକ ଉତ୍ତର ପ୍ରଦେଶର ପୂର୍ବ-ଭାଗକୁ ଦୁଇଟି ପ୍ରଦେଶରେ ବିଭକ୍ତ କରାଯାଇ ଗୋଟିକର ରାଜଧାନୀ କାରା-ମାଣିକପୁରରେ ଓ ଅନ୍ୟଟିର ରାଜଧାନୀ ଅଯୋଧ୍ୟା (ଆଉଧ୍)ରେ ସ୍ଥାପନ କରାଯାଇଥିଲା । ଅଯୋଧ୍ୟା-ପ୍ରଦେଶର ରାଜଧାନୀ ଯେଉଁଠାରେ କରାଯାଇଥିଲା, ତାହା ଠିକ୍ ପ୍ରାଚୀନ ଅଯୋଧ୍ୟା ନୁହେଁ । ଅଯୋଧ୍ୟାଠାରୁ ୬ ମାଇଲ ଦୂରରେ ଏହା ସ୍ଥାପିତ ହୋଇଥିଲା ଓ କାଳକ୍ରମେ ଏହା ବିଶାଳ ଫଇଜାବାଦ୍ ନଗରରେ ପରିଣତ ହେଲା । ଏଲାହାବାଦ (ପ୍ରୟାଗ) ନିକଟରେ କାରାଠାରେ ଅନ୍ୟ ରାଜଧାନୀଟି ସ୍ଥାପିତ ହୋଇଥିବାରୁ ଏଲାହାବାଦର ପ୍ରାଧାନ୍ୟ ବହୁ ପରିମାଣରେ କମିଯାଇଥିଲା, ମାତ୍ର ମୋଗଲ ଓ ଇଂରେଜମାନଙ୍କ ଅମଳରେ ଏଲାହାବାଦ ତା'ର ପୂର୍ବ ପ୍ରାଧାନ୍ୟ ଫେରି ପାଇଲା ଓ କାରା ପୁଣି କ୍ଷୁଦ୍ର ସହରରେ ପରିଣତ ହେଲା ।

ଜଲାଲ୍‌ଉଦ୍ଦିନ ଖିଲଜି ତାଙ୍କ ପୁତୁରା ତଥା ଜାମାତା ଆଲାଉଦ୍ଦିନ ଖିଲଜିଙ୍କୁ କାରା ପ୍ରଦେଶର ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ । ଶାସନକର୍ତ୍ତା ଥିବାବେଳେ ଆଲାଉଦ୍ଦିନ ଚନ୍ଦେରି-ଏଲିଚପୁର ମଧ୍ୟଦେଇ ଦେବଗିରି ଆକ୍ରମଣ କରିଥିଲେ ଓ ସେଠାରୁ ବହୁ ଧନରତ୍ନ ନେଇ ଆସିଥିଲେ । ପରେ ଜଲାଲଉଦ୍ଦିନଙ୍କୁ ହତ୍ୟା କରି ଓ ଏହି ଧନରତ୍ନ ବଳରେ ମୁଖ୍ୟ ମୁସଲମାନ ଅମାତ୍ୟମାନଙ୍କୁ ସନ୍ତୁଷ୍ଟ କରି ସେ ୧୨୯୬ ଖ୍ରୀଷ୍ଟାବ୍ଦରେ ନିଜେ ଦିଲ୍ଲୀ-ସୁଲତାନ ହୋଇଥିଲେ । ଏହିପରି ଆହୁରି ଅନେକ ଐତିହାସିକ ଘଟଣା କାରା ସହିତ ଜଡ଼ିତ ହୋଇଛି । ସାରଳା ଦାସ କାଲନଗର ବା କାରାର ନାମକୁ ମଧ୍ୟ ତାଙ୍କ ମହାଭାରତରେ ଉଲ୍ଲେଖ କରିଛନ୍ତି ।

ପାର୍ଥକୁ ଦର୍ଶନ କଲା କାଲକୂଟନଗରେ
ବିରୂପାକ୍ଷ ବିବୃଦ୍ଧ ଯେ ଦେଲେ ତା'ର ଆଗେ ।

ସଭା, ପୃ ୧୨୯

ରାଜସୂୟ ଯଜ୍ଞ ପାଇଁ ଅର୍ଜ୍ଜୁନଙ୍କ ଉତ୍ତର ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରିବା ପ୍ରସଙ୍ଗରେ କବି ଏହି କାଲକୂଟ ନଗରର ନାମ ଉଲ୍ଲେଖ କରିଛନ୍ତି । ଏଣୁ ଦିଗର ଅମେଳ ଘଟୁ ନାହିଁ; କିନ୍ତୁ କବି ଗଣ୍ଡକୀ କୂଳର ରାଜା ଲୋକେଶ୍ୱର ଜାଳନ୍ଧର ଅର୍ଜ୍ଜୁନଙ୍କୁ ଏହି ନଗରରେ ସାକ୍ଷାତ୍ କରିଥିବା କଥା କହିଥିବାରୁ ତାଙ୍କ ବର୍ଣ୍ଣିତ କାଲକୂଟ-ନଗର ଗଣ୍ଡକୀଠାରୁ ବହୁ ଦୂରବର୍ତ୍ତୀ ହୋଇପଡ଼ୁଛି । ଆଗରୁ କୁହାହୋଇଛି ଯେ, କବିଙ୍କ ଭୌଗୋଳିକ ବର୍ଣ୍ଣନା ଆଧୁନିକ ମାନଚିତ୍ର ସହିତ ମେଳ ଖାଇବା ସମ୍ଭବପର ନୁହେଁ । ଛନ୍ଦରକ୍ଷା ପାଇଁ ଓ ଅନ୍ୟାନ୍ୟ କାରଣ ହେତୁରୁ ଐତିହାସିକ ଓ ଭୌଗୋଳିକ ନାମଗୁଡ଼ିକୁ ସେ ବେଳେ ବେଳେ ଖଣ୍ଡିତ ବା ବର୍ଦ୍ଧିତ କରି ପରିବର୍ତ୍ତନ କରିଥିବା କଥା ମଧ୍ୟ ଆଗରୁ କୁହାଯାଇଛି । ଉଜ୍ଜୟିନୀକୁ ଉଜାଣକାନ୍ତି-ରୂପେ ଲେଖିବା ପରି ସେ କାଲନଗରକୁ କାଲକୂଟନଗର ରୂପେ ଲେଖିଯାଇଛନ୍ତି ।

(୫) ଯମୁନାପୁର—ବାରଣାସୀ ଠାରୁ ୩୬ ମାଇଲ ଉତ୍ତରରେ ଗୋମତୀ ନଦୀ କୂଳରେ ଅବସ୍ଥିତ ଆଧୁନିକ ଜୋନପୁର ନଗରର ଅନ୍ୟତମ ନାମ ଯମଦଗ୍ନିପୁର, ଯମନ୍‌ପୁର ବା ଯମୁନାପୁର ଥିବା ବିଷୟ ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି । କପିଳେଶ୍ୱର ଗଜପତିଙ୍କ ନାତି ପ୍ରତାପରୁଦ୍ରଦେବ ଗଜପତିଙ୍କ ଦ୍ୱାରା ରଚିତ ସରସ୍ୱତୀ-ବିଳାସମ୍ ନାମକ ସଂସ୍କୃତ ଗ୍ରନ୍ଥରେ ଯମୁନାପୁରର ଉଲ୍ଲେଖ ରହିଛି । ଏହି ଗ୍ରନ୍ଥର ଶେଷରେ ପ୍ରତାପରୁଦ୍ରଙ୍କ ନିମ୍ନଲିଖିତ ବିରୁଦାବଳୀ ଲେଖା ଅଛି—

ଇତି ଶ୍ରୀ ବୀର ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲ୍ବରଗେଶ୍ୱର ଯମୁନାପୁରାଧୀଶ୍ୱର-ହୁଶନସାହିସୁରତ୍ରାଣ-ଶରଣରକ୍ଷଣ ଶ୍ରୀ ଦୁର୍ଗାବରପୁତ୍ର ପରମପବିତ୍ର ଚରିତ୍ର ରାଜାଧିରାଜ ପରମେଶ୍ୱର ଶ୍ରୀ ପ୍ରତାପରୁଦ୍ର ମହାଦେବ ମହାରାଜ ବିରଚିତେ ସ୍ମୃତିସଂଗ୍ରହେ ସରସ୍ୱତୀବିଳାସେ ବ୍ୟବହାରକାଣ୍ଡେ ଅଷ୍ଟାଦଶ-ବିବାଦପଦନିର୍ଣ୍ଣୟୋ ନାମ ପଞ୍ଚମୋଲ୍ଲାସଃ ।

Edited by Shama Sastry
Maysore, 1927, p. 503

କପିଳେଶ୍ୱର ଗୌଡ଼, କର୍ଣ୍ଣାଟ ଓ କଲବର୍ଗ ଜୟ କରି ଯେଉଁ ଉପାଧିମାନ ଧାରଣ କରିଥିଲେ, ସେସବୁ ଉପାଧି ତାଙ୍କ ପୁତ୍ର ପୁରୁଷୋତ୍ତମ ଓ ନାତି ପ୍ରତାପରୁଦ୍ର ମଧ୍ୟ ଧାରଣ କଲେ । ଗଜପତି ଗାଦିର ଉତ୍ତରାଧିକାରୀ ରୂପେ ବର୍ତ୍ତମାନ ସୁଦ୍ଧା ପୁରୀ ରାଜାମାନେ ଏହି ଉପାଧିମାନ ଧାରଣ କରନ୍ତି, ମାତ୍ର "ଯମୁନାପୁରାଧୀଶ୍ୱର ହୁଶନସାହିସୁରତ୍ରାଣଶରଣରକ୍ଷଣ" ଅଂଶଟି ଏହି ଉପାଧିମାନଙ୍କ ମଧ୍ୟରେ ଥିବାର ପ୍ରମାଣ ଉଲ୍ଲିଖିତ ସରସ୍ୱତୀବିଳାସମ୍ ଗ୍ରନ୍ଥ ବ୍ୟତୀତ ଅନ୍ୟ କୌଣସି ଉପାଦାନରେ ଦେଖାଯାଏ ନାହିଁ । ସରସ୍ୱତୀବିଳାସର ରଚୟିତା ଥିଲେ କପିଳେଶ୍ୱରଙ୍କ ନାତି ଓ ପୁରୁଷୋତ୍ତମଙ୍କ ପୁତ୍ର । ସେ ତାଙ୍କ ନିଜ ପିତା ଓ ପିତାମହଙ୍କ ସମ୍ବନ୍ଧରେ ଯାହା ଲେଖି ଯାଇଛନ୍ତି, ଅନ୍ୟ ଉପାଦାନରେ ମିଳୁ ନ ଥିବାରୁ ତାକୁ ସମ୍ପୂର୍ଣ୍ଣ ଅଳୀକ ବୋଲି କହିବା ସମୀଚୀନ ହେବନାହିଁ । ଏଣୁ ଜୋନପୁରର ଶାର୍କି ରାଜବଂଶ ଓ ଏହି ବଂଶର ଓଡ଼ିଶା ସହିତ ସମ୍ବନ୍ଧ ବିଷୟରେ ଏଠାରେ ସାମାନ୍ୟ ଐତିହାସିକ ଆଲୋଚନା ନିତାନ୍ତ ଆବଶ୍ୟକ ହେଉଛି ।

ଫିରୋଜସାହ ଟୋଗଲକ ୧୩୫୯ ଖ୍ରୀଷ୍ଟାବ୍ଦରେ ଗୋମତୀ କୂଳରେ ଏହି ଜୋନପୁର ନଗର ସ୍ଥାପନ କରିଥିଲେ । ମୁସଲମାନ ରାଜତ୍ୱ ପୂର୍ବେ ଏହା ଗୋଟିଏ ସ୍ୱଳ୍ପବସତି ସ୍ଥାନ ଥିଲା ଓ ଏହାର ନାମ ଯମଦଗ୍ନିପୁର ବା ଯମନ୍‌ପୁର ଥିଲା । ମୁସଲମାନ ରାଜତ୍ୱର ପ୍ରାରମ୍ଭରୁ ଜୋନପୁର ଗୋଟିଏ ପ୍ରଦେଶର ରାଜଧାନୀ ରୂପେ ରହି ଆସିଥିଲା; କିନ୍ତୁ ତୈମୁରଲଙ୍ଗଙ୍କ ଭାରତ ଆକ୍ରମଣ ପରେ ଏହା ଗୋଟିଏ ସମ୍ପୂର୍ଣ୍ଣ ସ୍ୱାଧୀନ ରାଜ୍ୟରେ ପରିଣତ ହେଲା । ଏ ରାଜ୍ୟର ଶାସକ ଶାର୍କିବଂଶୀୟ ରାଜାମାନେ ଦିଲ୍ଲୀକୁ ଅଧିକାର କରି ଭାରତର ସମ୍ରାଟ ହେବା ପାଇଁ କଳ୍ପନା କରି-ଥିଲେ । ଦିଲ୍ଲୀ ସୁଲତାନ ବାହାଲୁଲ ଲୋଦି ଓ ଶାର୍କି ସୁଲତାନ ମହମ୍ମଦଶାହ ଓ ତାଙ୍କ ସାନଭାଇ ହୁସେନ୍‌ଶାହଙ୍କ ମଧ୍ୟରେ ପାଞ୍ଚଥର ଘୋର ଯୁଦ୍ଧ ସଙ୍ଘଟିତ ହୋଇଥିଲା, ମାତ୍ର ୧୪୭୯ ଖ୍ରୀଷ୍ଟାବ୍ଦରେ ହୁସେନ୍‌ଶାହ ସମ୍ପୂର୍ଣ୍ଣ ଭାବରେ ପରାଜିତ

ହୋଇ ବିହାରକୁ ପଳାଇ ଆସିଥିଲେ ଓ ସେଠାରେ ଗୋଟିଏ କ୍ଷୁଦ୍ର ରାଜ୍ୟର ରାଜାରୂପେ ଜୀବନଯାପନ କରିଥିଲେ । ଜୋନପୁର ରାଜ୍ୟ ଦିଲ୍ଲୀ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହେଲା, କିନ୍ତୁ ହୁସେନ ନିଜ ରାଜ୍ୟ ଫେରି ପାଇବାର ଆଶା ପରିତ୍ୟାଗ କରି-ନ ଥିଲେ । ଯେତେବେଳେ ସୁବିଧା ପାଉଥିଲେ ସେତେବେଳେ ସେ ଦିଲ୍ଲୀ ସମ୍ରାଟଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଲିପ୍ତ ରହୁଥିଲେ । ତାଙ୍କ ଷଡ଼ଯନ୍ତ୍ର କଥା ଜାଣିପାରି ବାହାଲୁଲ ଲୋଦିଙ୍କ ପରବର୍ତ୍ତୀ ଦିଲ୍ଲୀ ସୁଲତାନ ସିକନ୍ଦର ଲୋଦି ହୁସେନଙ୍କୁ ବିହାରରୁ ତଡ଼ିଦେଲେ । ବିହାରରୁ ବିତାଡ଼ିତ ହେବାପରେ ସେ ବଙ୍ଗ ସୁଲତାନ ଆଲାଉଦ୍ଦିନ ହୁସେନ ଶାହଙ୍କ ଆଶ୍ରୟରେ ଅବଶିଷ୍ଟ ଜୀବନଯାପନ କରିଥିଲେ ( The Delhi Sultanate ଭାରତୀୟ ବିଦ୍ୟାଭବନ, ପୃଃ ୧୮୭-୧୯୨ ) ।

୧୪୭୯ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ସୁଲତାନଙ୍କ ସହିତ ଜୋନପୁରର ହୁସେନ ଶାହଙ୍କ ଶେଷଯୁଦ୍ଧ ସଂଘଟିତ ହେବାବେଳେ ଓଡ଼ିଶାରେ ପୁରୁଷୋତ୍ତମଦେବ ରାଜତ୍ୱ କରୁଥିଲେ । ବିହାରରେ ଥିବାବେଳେ କିମ୍ବା ବଙ୍ଗରେ ଶରଣାର୍ଥୀ ରୂପେ ଜୀବନ ଯାପନ କରୁଥିବାବେଳେ ଜୋନପୁରର ପୂର୍ବତନ ସୁଲତାନ ହୁସେନଶାହ ପୁରୁ-ଷୋତ୍ତମ ଦେବଙ୍କ ଆଶ୍ରୟ ବା ସାହାଯ୍ୟ ଭିକ୍ଷା କରିଥିବା କଥା ଅସମ୍ଭବ ନୁହେଁ, ବରଂ ଅତ୍ୟନ୍ତ ସମ୍ଭବ । ରାଜନୀତି ସବୁ ଯୁଗରେ ସୁବିଧାବାଦୀର ପନ୍ଥା ଅନୁସରଣ କରି ଚାଲିଥିବାର ବହୁ ପ୍ରମାଣ ଇତିହାସରୁ ମିଳେ । ନିଜାମ ଓ ମରହଟ୍ଟାମାନଙ୍କ ମଧ୍ୟରେ ଅହି-ନକୁଳ ସମ୍ବନ୍ଧ ଥିଲା, ଅଥଚ ସୁବିଧା ପାଇଲେ ଉଭୟେ ମିଳିମିଶି ତୃତୀୟ ଶତ୍ରୁର ବିରୁଦ୍ଧରେ ଯୁଦ୍ଧ କରୁଥିଲେ । ହୁସେନ ଶାହ ଓଡ଼ିଶାରେ ଶରଣପ୍ରାର୍ଥୀ ହୋଇ ପୁରୁଷୋତ୍ତମଙ୍କ ଠାରୁ କୌଣସି ସାହାଯ୍ୟ ପାଇଥିଲେ କି ନା ତାହା କହିବା ସମ୍ଭବପର ନୁହେଁ । ଏ ଘଟଣାରେ ଯେଉଁ ସାମାନ୍ୟ ଐତିହାସିକ ସତ୍ୟ ଥିଲା, ପ୍ରଶସ୍ତିକାରମାନେ ତାକୁ ଅତିରଞ୍ଜନ କରି ପୁରୁଷୋତ୍ତମଦେବଙ୍କ ବିରୁଦା-ବଳୀରେ "ଯମୁନାପୁରାଧୀଶ୍ୱର ହୁସନସାହି ସୁରତ୍ରାଣ * ଶରଣରକ୍ଷଣ" ଅଂଶଟି ସଂଯୋଗ କରିଥିଲେ । ପୁରୁଷୋତ୍ତମଙ୍କ ପୁତ୍ର ପ୍ରତାପରୁଦ୍ର ମଧ୍ୟ ଏହି ଉପାଧିକୁ ନିଜ ଗ୍ରନ୍ଥରେ ସଗର୍ବରେ ଲେଖି ଯାଇଛନ୍ତି । ଓଡ଼ିଶାର କୌଣସି ଜଣେ ଗଜପତି ବିପଦ୍‌ବେଳେ ଗଞ୍ଜାମର କ୍ଷୁଦ୍ର ରାଜ୍ୟ ଆଠଗଡ଼କୁ ପଳାଇ ଯାଇଥିଲେ । ଏଣୁ ଏହି ରାଜ୍ୟର ରାଜାଙ୍କ ପ୍ରଶସ୍ତିକାରମାନେ ଆଠଗଡ଼କୁ ଶରଣ-ଧରଣୀ ବୋଲି ଆଖ୍ୟା ଦେଇଥିଲେ ( କହିଇ ଶ୍ରୀବାଲୁଙ୍କେଶ ଶରଣ ଧରଣୀଈଶ, କଃ ଚଃ ଚମ୍ପୂ ) । ସାମାନ୍ୟ ମୌଳିକ ସତ୍ୟ ଏହିପରି ଭାବରେ ଅତିରଞ୍ଜିତ ହେଉଥିଲା ।

---

* ସମସ୍ତ ସଂସ୍କୃତ ଗ୍ରନ୍ଥ ଓ ତାମ୍ର ଶିଳାଲେଖରେ ସୁଲତାନ ଶବ୍ଦଟି ସୁରତ୍ରାଣ ରୂପେ ଉଲ୍ଲେଖ କରାଯାଇ ଥିବାର ଦେଖାଯାଏ ।

ଉଲ୍ଲିଖିତ ଆଲୋଚନାରୁ ପ୍ରତିପାଦିତ ହେଉଛି ଯେ ଜୋନପୁରକୁ ଓଡ଼ିଶାର ଲୋକେ ଯମୁନାପୁର ବୋଲି କହୁଥିଲେ । ସାରଳା ଦାସ ତାଙ୍କ ମହାଭାରତର ବହୁ ସ୍ଥାନରେ ଏହି ଯମୁନାପୁର ବା ଯମୁନାନଗରର ନାମ ଉଲ୍ଲେଖ କରିଛନ୍ତି । ମୁସଲମାନ ଇତିହାସରେ ଲେଖାଅଛି ଯେ ଜୋନପୁରର ସୁଲତାନ ମହମ୍ମଦଶାହ ଓ ହୁସେନଶାହ ଉଭୟେ ଓଡ଼ିଶା ଆକ୍ରମଣ କରିଥିଲେ । ମହମ୍ମଦ ଶାହ କପିଳେଶ୍ୱରଙ୍କ ଓ ହୁସେନଶାହ ପୁରୁଷୋତ୍ତମଙ୍କ ସମସାମୟିକ ଥିଲେ । ମୁସଲମାନ ଐତିହାସିକମାନେ ଲେଖିଛନ୍ତି ଯେ, ଏହି ଉଭୟ ଶାର୍କି ସୁଲତାନ ଓଡ଼ିଶାରୁ କର ଆଦାୟ କରିଥିଲେ, କିନ୍ତୁ ଆଧୁନିକ ଐତିହାସିକମାନେ ଓଡ଼ିଶା ସହିତ ସଂଘର୍ଷ କଥାକୁ ଐତିହାସିକ ସତ୍ୟ ବୋଲି ମାନିଥିଲେ ହେଁ, ଓଡ଼ିଶାରୁ କର ଆଦାୟ କରିଥିବା କଥା ଟାକୁ ଅତିରଞ୍ଜନ ବୋଲି କହିଛନ୍ତି ।

ସାରଳା ଦାସ ଓଡ଼ିଶା ସହିତ ଜୋନପୁରର ସଂଘର୍ଷକୁ ସଭାପର୍ବରେ (ପୃ ୧୬୪ ୧୬୭) ଅର୍ଜୁନ ଓ ଯମୁନାପୁରର ମାହେଶ୍ୱର (ମୁହମ୍ମଦ ?) ରାଜାଙ୍କ ଯୁଦ୍ଧ ପ୍ରସଙ୍ଗରେ ବର୍ଣ୍ଣନା କରି ଶେଷରେ ଉଭୟ ଦେଶ ମଧ୍ୟରେ ସମାଧାନ ବା ସନ୍ଧି ହୋଇଥିବା କଥା ଲେଖିଯାଇଛନ୍ତି । ସଭାପର୍ବର ଏହି ଆଖ୍ୟାୟିକାଟି ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି । ଏଠାରେ ଏତିକି କହିବା ଆବଶ୍ୟକ ଯେ ସାରଳାଦାସଙ୍କ ବର୍ଣ୍ଣନା ଅଧିକ ସତ୍ୟାଶ୍ରିତ ବୋଲି ମନେ ହୁଏ । କପିଳେଶ୍ୱରଙ୍କ ରାଜତ୍ୱ କାଳରେ ଉଭୟ ରାଜ୍ୟ ମଧ୍ୟରେ ସଂଘର୍ଷ ଘଟିବା ପରେ ଉଭୟଙ୍କ ମଧ୍ୟରେ ସନ୍ଧି ହୋଇଥିଲା ; ଯେତେଦୂର ସମ୍ଭବ, ଦିଲ୍ଲୀ ସୁଲତାନ ବାହାଲୁଲ୍ ଲୋଦି ଓ ଜୋନପୁର ସୁଲତାନ ମୁହମ୍ମଦଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ଘଟିଥିଲା ସେଥିରେ ଜୋନପୁରର ସୈନ୍ୟକୁ ଓଡ଼ିଶାର ସୈନ୍ୟ ସାହାଯ୍ୟ କରିଥିଲେ । ଏ ଘଟଣାକୁ ଅତିରଞ୍ଜନ କରି କପିଳେଶ୍ୱରଙ୍କ ଦିଲ୍ଲୀ ସହିତ ସଂଘର୍ଷ ଘଟିଥିବା କଥାକୁ ପ୍ରଶସ୍ତିକାରମାନେ ବାରମ୍ବାର ଲେଖିଯାଇଛନ୍ତି । ତାମ୍ର ଶିଳାଲେଖରେ ବାରମ୍ବାର ବର୍ଣ୍ଣିତ ଓ ସାରଳା ମହାଭାରତ ଦ୍ୱାରା କେତେକାଂଶରେ ସମର୍ଥିତ କପିଳେଶ୍ୱରଙ୍କ ଦିଲ୍ଲୀ ଓ ମାଳବ (ମାଲ୍ୱା) ସଂଘର୍ଷ କଥା ଟାକୁ ଯେଉଁ ଐତିହାସିକମାନେ ଏକାବେଳକେ ଅସତ୍ୟ ବୋଲି କହୁଛନ୍ତି, ସେମାନେ ଜୋନପୁର ରାଜ୍ୟର ଦିଲ୍ଲୀ ସହିତ ଓ ବାହମନୀ ରାଜ୍ୟର ମାଲ୍ୱା ସହିତ ଯୁଦ୍ଧଘଟଣାବଳୀକୁ ଭଲଭାବରେ ଅନୁଶୀଳନ କରନ୍ତୁ । ଏହି ଅନୁଶୀଳନରୁ ଆପେ ଆପେ ପ୍ରତିପାଦିତ ହେବ ଯେ କପିଳେଶ୍ୱରଙ୍କ ରାଜତ୍ୱରେ ଓଡ଼ିଶାର ଦିଲ୍ଲୀ ଓ ମାଲ୍ୱା ସହିତ ସଂଘର୍ଷ ଜୋନପୁର ଓ ବାହମନୀ ଜରିଆରେ ସଂଘଟିତ ହୋଇଥିଲା । ପ୍ରଶସ୍ତିକାରମାନେ ଏହି ମୌଳିକ ସତ୍ୟକୁ ଅତିରଞ୍ଜନ କରିଛନ୍ତି ।

ସଭାପର୍ବର ଉଲ୍ଲିଖିତ ଆଖ୍ୟାୟିକାରେ ସାରଳା ଦାସ ଯମୁନାପୁରକୁ ବାଣୀ ବା ବାରାଣସୀର ସନ୍ନିହିତ ଅଞ୍ଚଳ ରୂପେ ବର୍ଣ୍ଣନା କରିଛନ୍ତି । ଏହା ହିଁ ଜୋନପୁରର ଭୌଗୋଳିକ ଅବସ୍ଥିତି । ଜୋନପୁର ଜିଲ୍ଲା ବାରାଣସୀର ନିକଟତମ ଜିଲ୍ଲା ଓ ଜୋନପୁର ବାରଣସୀର ନିକଟତମ ବୃହତ୍ ନଗର । ଜୋନପୁରରେ ଶାର୍କି-ସୁଲତାନମାନଙ୍କ ଦୁର୍ଗର ଭଗ୍ନାବଶେଷ, ଗୋମତୀ ନଦୀ ଉପରେ ନିର୍ମିତ ସେମାନଙ୍କ ପୋଲ ଓ ବହୁ ସୁନ୍ଦର ସୁନ୍ଦର ମସ୍‌ଜିଦ୍ ବିଦ୍ୟମାନ ଅଛି ।

(୬) ଉଦଣ୍ଡପୁର—ପାଟନା ଜିଲ୍ଲାର ବିହାର ଶରିଫ୍‌ର ପ୍ରାଚୀନ ନାମ ଥିଲା ଉଦଣ୍ଡପୁର ବା ଉଦନ୍ତପୁର । ଏହି ଉଭୟ ନାମ ପ୍ରାଚୀନ ଅଭିଲେଖମାନଙ୍କରେ ଦେଖାଯାଏ । ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ କୁତବୁଦ୍ଦିନ ଆଇବାକଙ୍କ ସେନାପତି ବଖ୍‌ତିଆର ଖିଲିଜି କର୍ମନାଶା ନଦୀ ପାର ହୋଇ ଆଧୁନିକ ଶାହାବାଦ ଜିଲ୍ଲା ଅଧିକାର କରିବା ପରେ ଉଦଣ୍ଡପୁରକୁ ଲୁଣ୍ଠନ କରି ସେଠାରେ ଥିବା ବୌଦ୍ଧ ବିହାରକୁ ଧ୍ୱଂସ କରିଥିଲେ ଓ ସେଠାରେ ଥିବା ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ହତ୍ୟା କରିଥିଲେ । ଉଦଣ୍ଡପୁର ବା ବିହାର ଶରିଫ୍‌ରୁ ସାତ ମାଇଲ ଦୂରରେ ଥିବା ବୌଦ୍ଧ ବିଶ୍ୱବିଦ୍ୟାଳୟ ନାଳନ୍ଦାରେ ମଧ୍ୟ ସେ ଅନୁରୂପ ଧ୍ୱଂସ ଚଳାଇଥିଲେ । ଏହି ଧ୍ୱଂସଲୀଳା ପରେ ଯେଉଁ ବୌଦ୍ଧ ସନ୍ନ୍ୟାସୀମାନେ ବଞ୍ଚି ରହିଥିଲେ, ସେମାନେ ପ୍ରାଣ ଭୟରେ ସେମାନଙ୍କ ପୋଥିପତ୍ର ସଙ୍ଗରେ ନେଇ ନେପାଳ ଓ ତିବ୍ବତକୁ ପଳାଇ ଯାଇ ସେଠାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ମୁସଲମାନ ରାଜତ୍ୱ ପ୍ରାରମ୍ଭ ବେଳକୁ ମଗଧର ପ୍ରଖ୍ୟାତ ପ୍ରାଚୀନ ରାଜଧାନୀ ରାଜଗୃହ (ରାଜଗିର) ଓ ପାଟଳିପୁତ୍ର (ପାଟନା) ଧ୍ୱଂସ ପ୍ରାପ୍ତ ହୋଇଯାଇଥିବାରୁ ଉଦଣ୍ଡପୁର (ବିହାର ଶରିଫ୍) ମଗଧର ପ୍ରଧାନ ରାଜନୈତିକ କେନ୍ଦ୍ର ରୂପେ ମଧ୍ୟ ବିଦ୍ୟମାନ ଥିଲା । ଏ ସ୍ଥାନରେ ବିଖ୍ୟାତ ବୌଦ୍ଧ ବିହାର ବିଦ୍ୟମାନ ଥିବାରୁ ଏହାକୁ ବିହାର ବୋଲି ମଧ୍ୟ କୁହାଯାଉଥିଲା । ପରେ ଏହି ସ୍ଥାନର ନାମାନୁସାରେ ସମଗ୍ର ମଗଧର ନାମ ବିହାର ହୋଇଗଲା । ବଖ୍‌ତିଆର ଖିଲିଜି ଉଦଣ୍ଡପୁରରେ ଯେଉଁ ଅବାଧ ଧ୍ୱଂସଲୀଳା ସୃଷ୍ଟି କରିଥିଲେ, ତାହା ହିନ୍ଦୁ ଭାରତରେ ଗୋଟିଏ ସ୍ମରଣୀୟ ଘଟଣା ହୋଇ-ଥିବାରୁ ଏହି ଘଟଣା ସହିତ ସଂଶ୍ଳିଷ୍ଟ ଉଦଣ୍ଡପୁର ଆହୁରି ବେଶୀ ବିଖ୍ୟାତ ହୋଇପଡ଼ିଥିଲା । ସାରଳା ଦାସ ଏହି ନାମଟି ବିରାଟ ପର୍ବରେ ଲେଖିଯାଇଛନ୍ତି—

ଗଙ୍ଗା ସାଗରର ପୂର୍ବ କପିଳାସ ଖଣ୍ଡ
ଲବଣ ମହାଖଣ୍ଡ ଯେ ଦଣ୍ଡ ହିଁ ଉଦଣ୍ଡ ବିରାଟ । ପୃଃ ୮୬

କବି ଏହିପରି ଭାବରେ ଉଦଣ୍ଡପୁରର ନାମ ଉଲ୍ଲେଖ କରିଛନ୍ତି । ଏହି ପଦରେ ଥିବା ଅନ୍ୟ ଭୌଗୋଳିକ ନାମମାନଙ୍କର ସଂକ୍ଷିପ୍ତ ପରିଚୟ ତଳେ ଦିଆଗଲା ।

କପିଳାସ ଖଣ୍ଡ—ଏହାର ଶୁଦ୍ଧପାଠ କପିଳଙ୍କ ଖଣ୍ଡ ହେବାର କଥା । ଗଙ୍ଗାସାଗର ସଙ୍ଗମରେ କପିଳମୁନିଙ୍କ ଆଶ୍ରମ ଥିବାରୁ ଏହାର ପୂର୍ବାଞ୍ଚଳ କପିଳଙ୍କ ଖଣ୍ଡ ବା କପିଳମୁନିଙ୍କ ଅଞ୍ଚଳ ବୋଲି ଆଖ୍ୟାତ ହେଉଥିଲା । କପିଳାସ ଓଡ଼ିଶାର ଢେଙ୍କାନାଳରେ ଅବସ୍ଥିତ । ଏଣୁ ସାରଳା ଦାସ ତାକୁ ଗଙ୍ଗାସାଗର ସଙ୍ଗମ ପାଖରେ କଦାପି ଥୋଇ ନ ଥିବେ ।

ଲବଣ ମହାଖଣ୍ଡ—କବି ବୋଧହୁଏ ସମୁଦ୍ରର ଉପକୂଳ ଅଞ୍ଚଳକୁ ଲବଣ ମହାଖଣ୍ଡ ବୋଲି ଲେଖିଛନ୍ତି ।

ଦଣ୍ଡ—ମେଦନୀପୁର ଅଞ୍ଚଳର ପ୍ରାଚୀନ ନାମଥିଲା ଦଣ୍ଡକଭୁକ୍ତି । ଗୋଟିଏ ରାଜ୍ୟର ବିଭିନ୍ନ ପ୍ରଶାସନିକ ବିଭାଗ ମଧ୍ୟରୁ ଭୁକ୍ତି ଗୋଟିଏ ବଡ଼ ବିଭାଗର ନାମ ଥିଲା ଓ ଏହାର ଆୟତନ ଆଧୁନିକ ଜିଲ୍ଲା ସଙ୍ଗରେ ପ୍ରାୟ ସମାନ ଥିଲା । ଦଣ୍ଡକଭୁକ୍ତି ସବୁ ସମୟରେ ଓଡ଼ିଶାର ଅଞ୍ଚଳ ବିଶେଷ ରୂପେ ରହିଆସିଥିଲା । ଏହି ଅଞ୍ଚଳରେ ଅବସ୍ଥିତ ଗ୍ରାମଗୁଡ଼ିକୁ ଓଡ଼ିଶାର ରାଜାମାନେ ବ୍ରାହ୍ମଣମାନଙ୍କୁ ଦାନ କରିଥିବାର ପ୍ରମାଣ ତାମ୍ରଶାସନମାନଙ୍କରୁ ମିଳୁଛି । ଓଡ଼ିଶାର ଭୌମବଂଶୀୟ ରାଣୀ ପୃଥ୍ୱୀ ମହାଦେବୀ ଦଣ୍ଡକ ଭୁକ୍ତିରେ ଅବସ୍ଥିତ ଗୋଟିଏ ଗ୍ରାମକୁ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ (Epigraphia Indica, Vol. XXIX, p. 210ff) । ଦଣ୍ଡକ ଭୁକ୍ତିରେ ଦଣ୍ଡପୁର (ଆଧୁନିକ ଦାନ୍ତନ୍ ?) ନାମକ ଗୋଟିଏ ସ୍ଥାନ ମଧ୍ୟ ଥିଲା ଓ ବୋଧହୁଏ ଏହା ଦଣ୍ଡକଭୁକ୍ତିର ରାଜଧାନୀ ଥିଲା (*) । ସାରଳା ଦାସ ଛନ୍ଦ ରକ୍ଷା କରିବାକୁ ଯାଇ ଦଣ୍ଡପୁର ଓ ଉଦଣ୍ଡପୁରକୁ ସଂକ୍ଷେପରେ "ଦଣ୍ଡ ହିଁ ଉଦଣ୍ଡ" ରୂପେ ଲେଖିଯାଇଛନ୍ତି ।

(୭) ମନ୍ଦାର—ମୁସଲମାନ ରାଜତ୍ୱ କାଳରେ ବଙ୍ଗ ଦେଶର ଯେଉଁ ସ୍ଥାନମାନ ପ୍ରସିଦ୍ଧ ଲାଭ କରିଥିଲା, ସେମାନଙ୍କ ମଧ୍ୟରେ ଗୌର (ଗୌଡ଼), ସୋନାର ଗାଓଁ, ଲକ୍ଷଣାବତୀ ଓ ମନ୍ଦାର ସର୍ବପ୍ରଧାନ ଥିଲା । ସାରଳା ଦାସ ଗୌଡ଼ ଅଞ୍ଚଳକୁ

(*) Ratnadeva II's minister is said to have threatened the ruler of Dandakabhukti and punished Dandapur which may have been its Gapital.

Mirashi—Corpus Inscriptionum Indicarum, Vol. IV, Part I, cxvii.

ବେଙ୍ଗଲ ଦେଶ ଓ ଗୌଡ଼କୁ ବେଙ୍ଗବଲୀପୁର ରୂପେ ବର୍ଣ୍ଣନା କରିଥିବା ବିଷୟ ପୂର୍ବ ପ୍ରବନ୍ଧମାନଙ୍କରେ ଆଲୋଚିତ ହୋଇଛି । ମୁଁ ଲକ୍ଷଣାବତୀର ନାମ ସାରଳା ମହାଭାରତରେ ପାଇନାହିଁ । କବି ସୁବର୍ଣ୍ଣପୁର ନାମଟିକୁ ବହୁ ସ୍ଥାନରେ ଲେଖିଛନ୍ତି । ହୁଏତ ଏହି ସୁବର୍ଣ୍ଣପୁର ସୋନାରଗାଓଁର ସଂସ୍କୃତ ରୂପ; କିନ୍ତୁ ମନ୍ଦାରି ନାମଟିକୁ ସେ ବାରମ୍ବାର ଉଲ୍ଲେଖ କରିଛନ୍ତି—

ଚିରଦେଶ ଖିରଦେଶ ମହାତ୍ରୁଣ ଦେଶ
ସିଂମୁହୂର୍ତ୍ତି ଭୋଗକଟ ମନ୍ଦାର ନରେଶ ।
ଭାନୁମତୀ ସ୍ୱୟମ୍ବର, ଆଦ୍ୟ, ପୃ ୧୧୫

ମନ୍ଦର (ମନ୍ଦାର) ଦେଶର ରାଜା ଅଟେ କାଳନେମି
ହସ୍ତିନାରେ ପ୍ରବେଶିଲ ଦଣ୍ଡଛନ୍ଦ ଘେନି ।
ଚନ୍ଦ୍ରାବତୀ ହରଣ, ମଧ୍ୟ, ପୃ. ୨୫୭

ପଶ୍ଚିମବଙ୍ଗର ହୁଗୁଳି ଜିଲ୍ଲାରେ ଆରାମବାଗ୍ ନିକଟରେ ମନ୍ଦାର ଦୁର୍ଗ ଅବସ୍ଥିତ ଥିଲି ଓ ଏହା ଆରାମବାଗ୍ ରାଜ୍ୟର ରାଜଧାନୀ ଥିଲି । ଏହି ଦୁର୍ଗରେ ପଶ୍ଚିମବଙ୍ଗର ହିନ୍ଦୁ ଓ ମୁସଲମାନ ରାଜାମାନେ ସର୍ବଦା ଜଣେ କରଦରାଜା ବା ଶାସନକର୍ତ୍ତା ନିଯୁକ୍ତ କରୁଥିଲେ । ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଅନନ୍ତବର୍ମ୍ମଣ ଚୋଡ଼ଗଙ୍ଗଦେବ (ଖ୍ରୀ: ୧୦୭୮-୧୧୫୧) ମନ୍ଦାରର ରାଜାଙ୍କୁ ତଡ଼ିଦେଇ ଏହାକୁ ସର୍ବପ୍ରଥମେ ଓଡ଼ିଶା ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ଏହାପରେ ଗଙ୍ଗରାଜା ପ୍ରଥମ ନରସିଂହଦେବ (ଲଙ୍ଗୁଳା ନରସିଂହଦେବ), ସୂର୍ଯ୍ୟବଂଶୀ କପିଳେନ୍ଦ୍ରଦେବ ଓ ପ୍ରତାପରୁଦ୍ରଦେବଙ୍କ ରାଜତ୍ୱକାଳରେ ମଧ୍ୟ ମନ୍ଦାର ଦୁର୍ଗକୁ ଅଧିକାର କରିବା ପାଇଁ ବଙ୍ଗର ସୁଲତାନମାନଙ୍କ ଏବଂ ଓଡ଼ିଶାର ଏହି ରାଜାମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ଲାଗିଥିଲି । ପ୍ରତାପରୁଦ୍ରଙ୍କ ମନ୍ତ୍ରୀ ତଥା ସେନାପତି ଗୋବିନ୍ଦ ବିଦ୍ୟାଧରଙ୍କ ଷଡ଼ଯନ୍ତ୍ର ଓ ବିଶ୍ୱାସଘାତକତା ହେତୁରୁ ମନ୍ଦାର ତଥା ପଶ୍ଚିମବଙ୍ଗର ବହୁଅଂଶ ଓଡ଼ିଶା ସାମ୍ରାଜ୍ୟରୁ ବିଚ୍ଛିନ୍ନ ହେଲି । ଇତିହାସ ପ୍ରସିଦ୍ଧ ଏ ଦୁର୍ଗର ଅଧିକାର ପାଇଁ ବଙ୍ଗର ସୁଲତାନ ନାସିରୁଦ୍ଦିନ ଓ କପିଳେଶ୍ୱରଙ୍କ ମଧ୍ୟରେ ସଂଘର୍ଷ ଲାଗିଥିଲାବେଳେ ସାରଳା ଦାସ ହୁଏତ ତାଙ୍କ ମହାଭାରତ ଲେଖୁଥିଲେ । ଏଣୁ ଏହି ଭୌଗୋଳିକ ନାମଟିକୁ ସେ ବାରମ୍ବାର ଲେଖିଯାଇଛନ୍ତି । ମାଦଳାପାଞ୍ଜିରେ ମନ୍ଦାର ଦୁର୍ଗକୁ ମନ୍ଦାରୁଣି ନାମରେ ଉଲ୍ଲେଖ କରାଯାଇଛି ।

(୮) ତୁଳସାଦେବପୁର—ପାଣ୍ଡବମାନଙ୍କର ଅନ୍ୱେଷଣ ପାଇଁ ପଠାଇଥିବା ଗୁପ୍ତଚରଙ୍କ ମୁଖରେ କବି ଏହି ନାମଟି ପ୍ରକାଶ କରିଛନ୍ତି—

ତୁଳସାଦେବପୁର ଯେ ପୁଣି ଭରତଖଣ୍ଡ
ଜମ୍ବୁରାଷ୍ଟ୍ର ଓଡ଼ରାଷ୍ଟ୍ର ସ୍ୱର୍ଣ୍ଣ ମାରତଣ୍ଡ ।

ବିରାଟ, ପୃ. ୮୭

ଏହି ଭୌଗୋଳିକ ନାମଟି ସାରଳା ମହାଭାରତ ଓ ମାଦଳାପାଞ୍ଜି ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥ ବା ଅଭିଲେଖରେ ମିଳେ ନାହିଁ । ମାଦଳାପାଞ୍ଜିରେ କପିଳେଶ୍ୱରଙ୍କ ସମ୍ବନ୍ଧରେ ଲେଖାଅଛି—"ଅଙ୍କେ ରାଜା ଗଙ୍ଗା ସ୍ନାହାନକୁ ଗଲେ । ତୁଳସାପୁର ଶାସନ ସେଠାରେ ଦାନ କଲେ (ମାଦଳାପାଞ୍ଜି, ପ୍ରାଚୀ ସମିତି, ପୃ-୪୪)" ଏଥିରୁ ଜଣାଯାଉଛି ଯେ, ତୁଳସାପୁର ଗଙ୍ଗାକୂଳରେ ଗୋଟିଏ ବ୍ରାହ୍ମଣଶାସନ (ଦେବପୁର) ଥିଲା । ମନ୍ଦାରଦୁର୍ଗ ଓ ବଙ୍ଗର ଅନ୍ୟ ଅଞ୍ଚଳମାନ ଦଖଲ କରିବା ପରେ କପିଳେଶ୍ୱର ବୋଧହୁଏ ଏହି ଶାସନକୁ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । ନୂତନ ରାଜ୍ୟ ଜୟ କରିବା ପରେ ବିଜିତରାଜ୍ୟରେ ବ୍ରାହ୍ମଣମାନଙ୍କୁ ଗ୍ରାମଦାନ କରିବା ରାଜାମାନଙ୍କ ମଧ୍ୟରେ ପ୍ରାଚୀନ ପ୍ରଥା ରୂପେ ଚଳି ଆସିଥିଲା । ଗଙ୍ଗାକୂଳରେ କପିଳେଶ୍ୱରଙ୍କ ତୁଳସାପୁର ଶାସନ ଦାନ କଥା ସାରଳା ଦାସ ହୁଏତ ଶୁଣିଥିଲେ । ତୁଳସାପୁରର ଭୌଗୋଳିକ ବା ଐତିହାସିକ ଖ୍ୟାତି ନାହିଁ । ଏହାର ଅବସ୍ଥିତି ନିର୍ଣ୍ଣୟ କରିବା ମଧ୍ୟ ସମ୍ଭବପର ନୁହେଁ ।

ଉଲ୍ଲିଖିତ ପଦରେ ଥିବା ଭରତଖଣ୍ଡ ଓ ଜମ୍ବୁରାଷ୍ଟ୍ର ହେଉଛି ଭାରତବର୍ଷର ନାମ, ଓଡ଼ରାଷ୍ଟ୍ର ଓଡ଼ିଶାର ନାମ, ସ୍ୱର୍ଣ୍ଣ ବା ସ୍ୱର୍ଣ୍ଣାଦ୍ରି ହେଉଛି ଭୁବନେଶ୍ୱରର ନାମ ଓ ମାର୍ତ୍ତଣ୍ଡ ବା ଅର୍କକ୍ଷେତ୍ର ହେଉଛି କୋଣାର୍କର ନାମ । ଛନ୍ଦର ଅନୁରୋଧରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ସାରଳା ଦାସ ଭୌଗୋଳିକନାମମାନଙ୍କୁ ସ୍ଥଳେ ସ୍ଥଳେ ସଂକ୍ଷିପ୍ତ ଭାବରେ, ସ୍ଥଳେ ସ୍ଥଳେ ବିସ୍ତୃତ ଭାବରେ ଅଥବା ଅର୍ଥାନ୍ତରରେ କିପରି ପ୍ରକାଶ କରି ଯାଇଛନ୍ତି, ତାହା ଏହି ଆଲୋଚନାରୁ ସହଜରେ ଅନୁମିତ ହେବ ।

# ଦଶମ ପରିଚ୍ଛେଦ

## ଦାକ୍ଷିଣାତ୍ୟ ଓ ଦକ୍ଷିଣାଞ୍ଚଳର ପ୍ରସିଦ୍ଧ ଭୌଗୋଳିକ ସ୍ଥାନ

ମୁସଲମାନ ଆଧିପତ୍ୟକାଳରେ ଦାକ୍ଷିଣାତ୍ୟ ଓ ଦକ୍ଷିଣାଞ୍ଚଳରେ ଖ୍ୟାତିଲାଭ କରିଥିବା ଯେଉଁ ଭୌଗୋଳିକ ନାମମାନ ସାରଳା ମହାଭାରତରେ ବର୍ଣ୍ଣିତ ଅଛି, ଏ ପ୍ରବନ୍ଧରେ ସେମାନଙ୍କ ମଧ୍ୟରୁ କେତେକର ଆଲୋଚନା କରାଯିବ । ସାରଳା ମହାଭାରତରେ ଯେତେ ଭୌଗୋଳିକ ସ୍ଥାନର ଉଲ୍ଲେଖ ଅଛି, ସେଥି ମଧ୍ୟରେ ଦକ୍ଷିଣାଞ୍ଚଳର ସ୍ଥାନମାନଙ୍କ ସଂଖ୍ୟା ସର୍ବାଧିକ । ତା'ଛଡ଼ା ସାରଳା ଦାସ ଦକ୍ଷିଣା-ଞ୍ଚଳର ସ୍ଥାନମାନଙ୍କ ମଧ୍ୟରୁ କେତେକର ବର୍ଣ୍ଣନା ଯେପରି ଭାବରେ କରିଛନ୍ତି, ସେଥିରୁ ଅନୁମିତ ହୁଏ ଯେ ସେ ନିଜେ ସେଗୁଡ଼ିକର ପ୍ରତ୍ୟକ୍ଷଦର୍ଶୀ ଥିଲେ । ଦକ୍ଷିଣା-ଞ୍ଚଳର ସ୍ଥାନମାନଙ୍କୁ ସେ ପଶ୍ଚିମ ଓ ଦକ୍ଷିଣ ଉଭୟ ଦିଗରେ ଅବସ୍ଥାପିତ କରିଛନ୍ତି । ଏହା ଭ୍ରମାତ୍ମକ ନୁହେଁ । ଦକ୍ଷିଣାଞ୍ଚଳର ବହୁସ୍ଥାନ ପ୍ରକୃତରେ ଓଡ଼ିଶାର ପଶ୍ଚିମରେ ବା ଦକ୍ଷିଣରେ ଅବସ୍ଥିତ । କବି କେଉଁ ସ୍ଥାନରୁ ବା ରାଜ୍ୟରୁ ଦିଗନିର୍ଣ୍ଣୟ କରି ଭୌଗୋଳିକ ସ୍ଥାନମାନଙ୍କର ବର୍ଣ୍ଣନା କରିଛନ୍ତି, ତାହା ଜାଣିବାର ଉପାୟ ନାହିଁ । ତେବେ ମନେହୁଏ ଯେ, ସେ କେତେବେଳେ କୁରୁପାଣ୍ଡବମାନଙ୍କ ଲୀଳାସ୍ଥଳୀ ହସ୍ତିନାପୁରରୁ (ଦିଲ୍ଲୀ ଅଞ୍ଚଳରୁ) ଓ କେତେବେଳେ ତାଙ୍କ ନିଜ ଜନ୍ମସ୍ଥାନ ଓଡ଼ିଶାରୁ ଦିଗ୍‌ନିର୍ଣ୍ଣୟ କରିଛନ୍ତି । ଏହାଦ୍ୱାରା ତାଙ୍କ ବର୍ଣ୍ଣିତ ଭୌଗୋଳିକ ସ୍ଥାନମାନଙ୍କର ଦିଗ ଓଲଟପାଲଟ ହେବା ଅନିବାର୍ଯ୍ୟ ହୋଇଛି । ସେ ତାଙ୍କ କାବ୍ୟ ଲେଖିବାରେ ଯେତେ ବେଶୀ ଅଗ୍ରସର ହେଉଥିଲେ, ହସ୍ତିନାପୁର ଅଞ୍ଚଳ ଯେ ମହାଭାରତ ଯୁଦ୍ଧର ମୂଳ ସ୍ଥାନ, ଏହି ମୌଳିକ କଥାଟାକୁ ସେତେ ବେଶୀ ଭୁଲିଯାଉଥିଲେ ବୋଲି ମନେହୁଏ । ସ୍ୱର୍ଗାରୋହଣ ପର୍ବ ଲେଖିଲାବେଳକୁ ସେ ହସ୍ତିନାପୁରକୁ ହୁଏତ ଏକାବେଳକେ ଭୁଲି ଯାଇଥିଲେ; କାରଣ ଏହି ପର୍ବରେ ସେ ପାଣ୍ଡବମାନଙ୍କୁ ଓଡ଼ିଶାର ତୀର୍ଥମାନଙ୍କରେ ବୁଲାଇ, ଏହି ଦେଶରେ ଯୁଧିଷ୍ଠିରଙ୍କୁ ହରସାହୁଙ୍କ କନ୍ୟା

ସୁହାଣୀ ସହିତ ବିବାହ କରାଇ, ଶେଷରେ ଗୟା ଓ ପ୍ରୟାଗ ରାସ୍ତାରେ ନେଇ ସେମାନଙ୍କୁ ହିମାଳୟରେ ଗ୍ରାଡ଼ିଛନ୍ତି । ସେ ମହାଭାରତ ଲେଖିବାବେଳେ କୌଣସି ମାନଚିତ୍ର ବା ଭୂଗୋଳ ପୁସ୍ତକ ବ୍ୟବହାର କରି ନ ଥିଲେ । ଏ ସମସ୍ତ କଥା ବିଚାର କଲେ ସାରଳାମହାଭାରତ-ବର୍ଣ୍ଣିତ ଭୌଗୋଳିକ ସ୍ଥାନମାନଙ୍କ ମଧ୍ୟରୁ କେତେକର ଦିଗ କାହିଁକି ଭ୍ରମାତ୍ମକ ହୋଇଛି, ସୁଧୀପାଠକମାନେ ତାହା ସହଜରେ ଉପଲବ୍ଧି କରିପାରିବେ ।

ଭାରତର ଦାକ୍ଷିଣାତ୍ୟ ଓ ଦକ୍ଷିଣାଞ୍ଚଳରେ ମୁସଲମାନମାନଙ୍କ ପ୍ରତ୍ୟକ୍ଷ ଶାସନ ବହୁ ବିଳମ୍ବରେ ପ୍ରବେଶ କରିଥିଲା । ୧୩୦୩ ଓ ୧୩୧୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆଲ୍ଲାଉଦ୍ଦିନ ଖିଲିଜି ଓ ତାଙ୍କ ସେନାପତି ମାଲିକ କାଫୁର ଦକ୍ଷିଣର ଦ୍ୱାରସମୁଦ୍ର (ମହୀଶୂର), କାକତୀୟ ରାଜ୍ୟ ଉଆରଙ୍ଗଲ (ତେଲିଙ୍ଗାନା) ଓ ତାମିଲ ରାଜ୍ୟର ରାମେଶ୍ୱର ପର୍ଯ୍ୟନ୍ତ ଗତି ଚଳାଇ ହିନ୍ଦୁ ରାଜ୍ୟମାନଙ୍କୁ ଧ୍ୱଂସ ଓ ଲୁଣ୍ଠନ କରିଥିଲେହେଁ ଦକ୍ଷିଣାଞ୍ଚଳରେ ମୁସଲମାନ ରାଜତ୍ୱ ସ୍ଥାୟୀ ବା ଦୃଢ଼ୀଭୂତ ହୋଇ ନ ଥିଲା । ୧୩୩୬ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ରାଜ୍ୟ ବିଜୟନଗର ଓ ୧୩୪୭ ଖ୍ରୀଷ୍ଟାବ୍ଦରେ ମୁସଲମାନ ରାଜ୍ୟ ବାହାମନୀ ଅବସ୍ଥାପିତ ହେବାପରେ ଏ ଅଞ୍ଚଳରେ ପରସ୍ପର-ବିରୋଧୀ ଦୁଇଟି ରାଜନୀତିକ ଓ ସାଂସ୍କୃତିକ ଶକ୍ତିର ଅଭ୍ୟୁଦୟ ଘଟିଥିଲା । ଓଡ଼ିଶାର ହିନ୍ଦୁ ରାଜ୍ୟ ମଧ୍ୟେ ମଧ୍ୟେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ହୋଇ ଓ ଦକ୍ଷିଣାଞ୍ଚଳରୁ ପୂର୍ବଭାରତୀୟ ମୁସଲମାନ ରାଜ୍ୟ ବଙ୍ଗକୁ ବିଚ୍ଛିନ୍ନ କରି ବହୁ ଆଗରୁ ରହି ଆସିଥିଲା । ଉଲ୍ଲିଖିତ ରାଜ୍ୟଦ୍ୱୟ ସ୍ଥାପିତ ହେବାପରେ ଏହି ତିନି ଶକ୍ତି ମଧ୍ୟରେ ଯେଉଁ ସଂଘର୍ଷ ଘଟିଲା, ସେହି ସଂଘର୍ଷ ସମୟରେ ହିଁ ସାରଳା ଦାସ ତାଙ୍କ ମହାଭାରତ ଲେଖୁଥିଲେ । ଏଣୁ ଏ ରାଜ୍ୟମାନଙ୍କ ଭୌଗୋଳିକ ଓ ଐତିହାସିକ ଚିତ୍ର ତାଙ୍କ ମହାଭାରତରେ ପ୍ରତିଫଳିତ ହୋଇଛି । ପାଣ୍ଡବମାନଙ୍କ ଅନ୍ୱେଷଣ ପାଇଁ ଦୁର୍ଯ୍ୟୋଧନ ଦକ୍ଷିଣଦିଗକୁ ଯେଉଁ ଚାର ପଠାଉଥିଲେ, ସେ ଦକ୍ଷିଣାଞ୍ଚଳର ଯେଉଁ ଯେଉଁ ସ୍ଥାନରେ ପାଣ୍ଡବମାନଙ୍କୁ ଖୋଜିଥିଲା, ତା'ର ବିବରଣୀ ଦେଉଛି—

କନାଉଜ ଉଦେଗିରି ପୁଣି ଚନ୍ଦ୍ରଗିରି
କାଞ୍ଚି ଚନ୍ଦ୍ରପୁର ଆଉ ଉତ୍ତମ କାବେରୀ ।
ଚୌରମଣ୍ଡଳ କୋଶଳମଣ୍ଡଳ ମଲ୍ଲିକା
ପାଣ୍ଡବନଗର କୃଷ୍ଣ ବେଣୀ ଷଡ଼ଙ୍ଗିକା ।
ଉତ୍ତଙ୍ଗମାତଙ୍ଗ ଭଦ୍ରା କୃଷ୍ଣା ସେ ସୁନନ୍ଦା
ଗୋପନ-ଭାଗୀ ବିଜୟା ଆବର ଆନନ୍ଦା ।

ଶରଭଙ୍ଗ ସୁନନ୍ଦ୍ରକ କନାଉଜ ଷେଟ
ଖିନା ଗୋମତୀ କଞ୍ଚିଲୀ ଆଦି ସର୍ବସ୍ତ୍ର ।
ନାଟ ଗୌଡ଼ଙ୍କ ଅବନ୍ତୀ ଆବର କାମାକ୍ଷୀ
ଉତ୍ତର କୁଣ୍ଡାଦେବୀ ପୁଣି ମଙ୍ଗଳାକ୍ଷୀ
—ବିରାଟ, ପୃ ୮୨ ✻

(୧) କନାଉଜ—ଦକ୍ଷିଣରେ କନାଉଜ ନାମକ କୌଣସି ସ୍ଥାନ ଥିବାର ପ୍ରମାଣ କୌଣସି ଉପାଦାନରେ ମିଳୁନାହିଁ । ହୁଏତ ଏ ନାମଟି ଏପରି ବିକୃତ ହୋଇଛି ଯେ, ଏହାର ପ୍ରକୃତ ରୂପ ସ୍ଥିର କରିବା ସମ୍ଭବପର ହେଉନାହିଁ, କିମ୍ବା ଏହା କୁଡ଼ାପାର ସଂସ୍କୃତରୂପ । କବି ସମୟ ସମୟରେ ଦ୍ରାବିଡ଼ ନାମମାନଙ୍କୁ ସଂସ୍କୃତ ନାମରେ ପରିଣତ କରିଥିବାର ପ୍ରମାଣ ପରବର୍ତ୍ତୀ ଆଲୋଚନାରୁ ମିଳିବ । କୁଡ଼ାପା ଗୋଟିଏ ବୃହତ୍ ସହର ଓ ଏହି ନାମଧେୟ ଜିଲାର ରାଜଧାନୀ ।

(୨) ଉଦେଗିରି—ଉଦୟଗିରି । ନେଲୋରଠାରୁ ୫୨ ମାଇଲ୍ ଦୂର ଉତ୍ତର-ପଶ୍ଚିମ ଦିଗରେ ଏହା ଅବସ୍ଥିତ । ଏହା ଗୋଟିଏ ପ୍ରଦେଶ, ଦୁର୍ଗ ଓ ସହରର ନାମ ଥିଲା । ଏହା ବିଜୟନଗର ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଓ ପରେ ଏହାପାଇଁ ଏହି ସାମ୍ରାଜ୍ୟ ସହିତ ଓଡ଼ିଶାର ଦୀର୍ଘ ସଂଘର୍ଷ ଲାଗିଥିଲା । ୧୪୬୨-୬୩ ଖ୍ରୀଷ୍ଟାବ୍ଦ ମଧ୍ୟରେ କପିଳେଶ୍ୱର ଗଜପତିଙ୍କ ପୁତ୍ର ହମ୍ବିରଦେବ ଉଦେଗିରି, ଚନ୍ଦ୍ରଗିରି ଓ କାଞ୍ଚି ଇତ୍ୟାଦି ଜୟ କରି ଓଡ଼ିଶା ସାମ୍ରାଜ୍ୟକୁ କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ହମ୍ବିରଙ୍କ ଗୋଟିଏ ଶିଳାଲେଖ ଅଦ୍ୟାପି ତ୍ରିଚିନାପଲ୍ଲୀ ନିକଟସ୍ଥ ଶ୍ରୀରଙ୍ଗମ୍ ମନ୍ଦିର ଗାତ୍ରରେ ବିଦ୍ୟମାନ ଅଛି । ସେ ମନ୍ଦିରରେ ଅଖଣ୍ଡ ଦୀପଦାନ କରିଥିବା କଥା ଏଥିରେ ଉଲ୍ଲେଖ ଅଛି । କପିଳେଶ୍ୱର ଗଜପତି ବିଜିତ ତାମିଲ୍‌ଭାଷୀ ଅଞ୍ଚଳମାନଙ୍କରେ ତାଙ୍କ ନାତି (ହମ୍ବିରଙ୍କ ପୁତ୍ର) କୁମାର କପିଳେଶ୍ୱର ମହାପାତ୍ରଙ୍କୁ ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିବା କଥା ଦକ୍ଷିଣ ଆର୍କଟଜିଲାର ମନ୍ନୁର ନାମକ ସ୍ଥାନରେ ପ୍ରାପ୍ତ ଶିଳାଲେଖରୁ ପ୍ରମାଣିତ ହୁଏ । ଏଥିରେ କପିଳେଶ୍ୱର ମହାପାତ୍ରଙ୍କ ମନ୍ଦିରମାନଙ୍କୁ ଦାନ ଓ ଦୁଇଟି ମନ୍ଦିର ପୁନଃନିର୍ମାଣ ପାଇଁ ଦାନର ବିଷୟ ଉଲ୍ଲେଖ ଅଛି ।

---

✻ ଏହି ପ୍ରବନ୍ଧରେ ବ୍ୟବହୃତ ସାରଳା ମହାଭାରତର ୧୯୬୬-୬୭ ମସିହାରେ କଟକର ରାଧାରମଣ ପ୍ରେସରୁ ପ୍ରକାଶିତ ଏହି ଗ୍ରନ୍ଥର ପୃଷ୍ଠାଙ୍କ ବୋଲି ଧରିବା ପାଇଁ ପାଠକମାନଙ୍କୁ ଅନୁରୋଧ ।

ଉଦୟଗିରି ରାଜ୍ୟ ଓ ଦୁର୍ଗ କପିଳେଶ୍ୱର ଗଜପତିଙ୍କ ରାଜତ୍ୱର ଶେଷ ପର୍ଯ୍ୟନ୍ତ ତାଙ୍କ ସାମ୍ରାଜ୍ୟର ଅଂଶ ରୂପେ ରହିଥିଲା । ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ଏହା ଓଡ଼ିଶାରୁ ବିଚ୍ଛିନ୍ନ ହୋଇପଡ଼ିଲା, କିନ୍ତୁ ୧୪୮୬ ଓ ୧୪୯୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେ ସାଳୁବ ନରସିଂହଙ୍କୁ ପରାସ୍ତ କରି ପୁଣି ଏହି ଦୁର୍ଗ ଅଧିକାର କରିଥିଲେ । ୧୫୧୪ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ବିଜୟନଗର ସମ୍ରାଟ କୃଷ୍ଣଦେବରାୟଙ୍କ ଆକ୍ରମଣ ଫଳରେ ଏହି ଦୁର୍ଗ ସବୁଦିନ ପାଇଁ ଓଡ଼ିଶାରୁ ବିଚ୍ଛିନ୍ନ ହେଲା (P. Mukharji—Gajapati Kings of Orissa, pp 32, 57, 78) ।

ସଭାପର୍ବର (ପୃ ୧୫୩) ଅର୍ଜୁନଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ ସାରଳା ଦାସ କିପରି ବିଜୟନଗର ସହିତ ଓଡ଼ିଶାର ସଂଘର୍ଷ କଥା ଅବତାରଣା କରିଛନ୍ତି ଓ କିପରି ଉଦୟଗିରି ଓ ଉଦୟମଣ୍ଡଳ (ରାଜ୍ୟ)ର କଥା ଉଲ୍ଲେଖ କରିଛନ୍ତି, ତାହା ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି ।

(୩) ଚନ୍ଦ୍ରଗିରି—ଆଧୁନିକ ଚିତ୍ତୁର ଜିଲ୍ଲାରେ ଅବସ୍ଥିତ ଏହି ସୁଦୃଢ଼ ଦୁର୍ଗ ସାଳୁବ ନରସିଂହଙ୍କ ପୂର୍ବପୁରୁଷର ଏହି ନାମଧେୟ ରାଜ୍ୟର ରାଜଧାନୀ ଥିଲା । ସାଳୁବ ପ୍ରଥମେ ବିଜୟନଗର ସମ୍ରାଟଙ୍କ ଶାସନକର୍ତ୍ତା ରୂପେ ନିଯୁକ୍ତ ହୋଇ ଚନ୍ଦ୍ରଗିରି ରାଜ୍ୟ ତଥା ବିଜିତ ଆନ୍ଧ୍ରଭୂଖଣ୍ଡ ଅଞ୍ଚଳର ଶାସନ କାର୍ଯ୍ୟ ଚଳାଇଥିଲେ । ବିଜୟନଗରର ମଲ୍ଲିକାର୍ଜୁନ ଓ ତାଙ୍କ ପରବର୍ତ୍ତୀ ସମ୍ରାଟ ବିରୂପାକ୍ଷ ଉଭୟେ ଅତ୍ୟନ୍ତ ଦୁର୍ବଳ ଥିଲେ । ମଲ୍ଲିକାର୍ଜୁନଙ୍କ ରାଜତ୍ୱ କାଳରେ କପିଳେଶ୍ୱର ଗଜପତି କାବେରୀନଦୀ ପର୍ଯ୍ୟନ୍ତ ଅଭିଯାନ ଚଳାଇ ବିଜୟନଗରର ବିସ୍ତୀର୍ଣ୍ଣ ଅଞ୍ଚଳ ଦଖଲ କରି ନେଇଥିବାରୁ ବିଜୟନଗରରେ ଅନ୍ତର୍ବିବାଦ ଘଟିଥିଲା ଓ ମଲ୍ଲିକାର୍ଜୁନ ତାଙ୍କ ଭାଇ ବିରୂପାକ୍ଷଙ୍କ ଦ୍ୱାରା ନିହତ ହୋଇଥିଲେ । ବିରୂପାକ୍ଷ ମଧ୍ୟ ଅତ୍ୟନ୍ତ ଅପାରଗ ରାଜା ଥିଲେ । ତାଙ୍କର ସମୟରେ ସାଳୁବ ନରସିଂହ ବିଜୟନଗର ସାମ୍ରାଜ୍ୟରେ ସର୍ବେସର୍ବା ହୋଇଉଠିଥିଲେ । ପରେ ବିରୂପାକ୍ଷଙ୍କ ପୁତ୍ର ପୌଢ଼ ଦେବରାୟଙ୍କୁ ହତ୍ୟା କରାଇ ସାଳୁବ ନିଜେ ବିଜୟନଗର ସମ୍ରାଟ ହୋଇଥିଲେ । ଓଡ଼ିଶାରେ କାଞ୍ଚି ରାଜାଙ୍କ ସହିତ ଯୁଦ୍ଧ କଥାଟା କାହିଁକି ଏତେ ବେଶୀ ପ୍ରଚଳିତ ହୋଇଥିଲା, ଏହି ସମୟର ଘଟଣାବଳୀକୁ ଅନୁଶୀଳନ କଲେ ତାହା ସହଜରେ ଜଣାଯାଏ । ପୁରୁଷୋତ୍ତମଦେବ ଯେତେବେଳେ କାଞ୍ଚିକୁ ଅଭିଯାନ କରି ଯାଇଥିଲେ, ସେତେ-ବେଳେ ସାଳୁବ ନରସିଂହ କାଞ୍ଚି, ଚନ୍ଦ୍ରଗିରି ଉଦୟଗିରି ଇତ୍ୟାଦି ଅଞ୍ଚଳର ରାଜା ତ ଥିଲେ, ତା'ଛଡ଼ା ସେତେବେଳକୁ ସେ ବିଜୟନଗର ସାମ୍ରାଜ୍ୟର ସର୍ବମୟକର୍ତ୍ତା ହୋଇ ସାରିଥିଲେ ।

ଚନ୍ଦ୍ରଗିରି ବ୍ରିଟିଶ୍ ରାଜତ୍ୱ ପୂର୍ବ ପର୍ଯ୍ୟନ୍ତ ମଧ୍ୟ କ୍ଷୁଦ୍ର ରାଜ୍ୟରୂପେ ଅବସ୍ଥିତ ଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ଚନ୍ଦ୍ରଗିରି ରାଜାଙ୍କଠାରୁ ଭୂମି କିଣି ନେଇ ମାନ୍ଦ୍ରାଜ ଦୁର୍ଗ ତଥା ନଗର ଆରମ୍ଭ କରିଥିଲେ ।

(୪) କାଞ୍ଚି—ଚିଙ୍ଗଲପୁଟ ଜିଲ୍ଲାରେ ଅବସ୍ଥିତ ଏହି ଇତିହାସ ପ୍ରସିଦ୍ଧ ନଗରୀ ଭୁବନେଶ୍ୱର ପରି ବହୁ ମନ୍ଦିରରେ ଶୋଭିତ ହୋଇ ବର୍ତ୍ତମାନ କାଞ୍ଜିଭେରମ୍ ନାମରେ ଅଭିହିତ ହେଉଛି । ମାନ୍ଦ୍ରାଜ ଠାରୁ ୪୬ ମାଇଲ ଦୂରବର୍ତ୍ତୀ ଦକ୍ଷିଣ-ପଶ୍ଚିମ ଦିଗରେ ଏହା ଅବସ୍ଥିତ । ଏହା ପଲ୍ଲବ ରାଜବଂଶର ରାଜଧାନୀ ଥିଲା ଓ ପରେ ଚୋଳମାନଙ୍କର ମଧ୍ୟ ଗୋଟିଏ ପ୍ରଧାନ ସାଂସ୍କୃତିକ କେନ୍ଦ୍ର ରୂପେ ବିଦ୍ୟମାନ ଥିଲା । ଚନ୍ଦ୍ରଗିରି ରାଜାଙ୍କ ଏହା ଦ୍ୱିତୀୟ ରାଜଧାନୀ ଥିଲା । ବର୍ତ୍ତମାନ ମଧ୍ୟ ଏହା ଗୋଟିଏ ବୃହତ୍ ସହର ।

ଉଦୟଗିରି, ଚନ୍ଦ୍ରଗିରି ଓ କାଞ୍ଚି ସାରଳା ଦାସଙ୍କ ଅତ୍ୟନ୍ତ ପ୍ରିୟ ନାମ ଥିଲା । ତାଙ୍କ ମହାଭାରତରେ ଯେତେ ବଡ଼ ବଡ଼ ବିବାହ ଉତ୍ସବର କଥା ଉଲ୍ଲେଖ ରହିଛି, କବି ସେ ସମସ୍ତରେ ଏହି ଦେଶର ରାଜାମାନଙ୍କୁ ନେଇ ପହଞ୍ଚାଇଛନ୍ତି । ବାହୁଲ୍ୟ ଭୟରେ ଉଦାହରଣ ଦିଆଯାଉନାହିଁ ।

(୫) ଚନ୍ଦ୍ରପୁର—ଚିଙ୍ଗଲପୁଟର ଏହା ସଂସ୍କୃତ ବା ଓଡ଼ିଆ ନାମ । କାଞ୍ଚି ପରେ ପରେ ଚନ୍ଦ୍ରପୁରର ଉଲ୍ଲେଖ ଥିବାରୁ ଏ ଅନୁମାନ ଅମୂଳକ ମନେ ହେବ ନାହିଁ । ସାରଳା ଦାସ ଅନେକ ଦ୍ରାବିଡ଼ ଓ ମୁସଲମାନୀ ନାମକୁ ସଂସ୍କୃତ ବା ଓଡ଼ିଆ ରୂପ ଦେଇ ସେଗୁଡ଼ିକୁ ତାଙ୍କ ମହାଭାରତରେ ଉଲ୍ଲେଖ କରିଯାଇଛନ୍ତି । ସଂସ୍କୃତ ମହାଭାରତ ଓ ପୁରାଣାଦିର ପନ୍ଥା ଅନୁସରଣ କରି ସେ ଏପରି ପରିବର୍ତ୍ତନ କରିଛନ୍ତି ।

ଚିଙ୍ଗଲପୁଟ୍ ତାମିଲନାଡ଼ୁର ଗୋଟିଏ ଜିଲ୍ଲା ଓ ତା'ର ପ୍ରଧାନ ସହରର ନାମ ।

(୬) ଉତ୍ତମକାବେରୀ—ଏହାର ଶୁଦ୍ଧପାଠ ପତ୍ତନ କାବେରୀ ହେବ । କାବେରୀକୁ ଉତ୍ତମ କହିବାର କୌଣସି କାରଣ ନାହିଁ । କାବେରୀ ମୁହାଣରେ ନାଗପତ୍ତନ (ଇଂରାଜୀ Negapattan) ନାମକ ଗୋଟିଏ ପ୍ରସିଦ୍ଧ ସହର ବିଦ୍ୟମାନ ଥିଲା ଓ ବର୍ତ୍ତମାନ ମଧ୍ୟ ଅଛି । ଚୋଳ ରାଜାମାନଙ୍କ ଅମଳରେ ଏହା ଆନ୍ତର୍ଜାତିକ ସାମୁଦ୍ରିକ ବାଣିଜ୍ୟର କେନ୍ଦ୍ରସ୍ଥଳ ହୋଇଉଠିଥିଲା । ସମୁଦ୍ର କୂଳେ କୂଳେ ଦକ୍ଷିଣରେ ଏକାଧିକ ପତ୍ତନ (ସମୁଦ୍ର ବା ନଦୀକୂଳର ନଗର) ବିଦ୍ୟମାନ ଥିଲା ଓ

ବର୍ତ୍ତମାନ ମଧ୍ୟ ଅଛୁ । ଯଥା ନାଗପତ୍ତନ, ବିଶାଖାପତ୍ତନ, ମୁଷଲୀପତ୍ତନ, କଳିଙ୍ଗ ପତ୍ତନ । କାବେରୀ ନଦୀର ମୁହାଣରେ ଯେଉଁ ପ୍ରସିଦ୍ଧ ନାଗପତ୍ତନ ଅବସ୍ଥିତ ଥିଲା, ସାରଳା ଦାସ ତାହାକୁ ହିଁ କାବେରୀ ପତ୍ତନ ନାମରେ ଉଲ୍ଲେଖ କରିଛନ୍ତି ।

(୭) ଚୌରମଣ୍ଡଳ, କୋଶଳମଣ୍ଡଳ, ମଲ୍ଲିକାମଣ୍ଡଳ—ଏହି ତିନୋଟି ଭୌଗୋଳିକ ନାମର ଆଲୋଚନା ପୂର୍ବ ପ୍ରବନ୍ଧରେ କରାଯାଇଥିଲେ ମଧ୍ୟ ଏଠାରେ ତା'ର ସାମାନ୍ୟ ପୁନରାବୃତ୍ତି ଆବଶ୍ୟକ । ସାରଳା ଦାସ ତାଙ୍କ ମହାଭାରତ ଲେଖୁଥିବାବେଳେ ଦାକ୍ଷିଣାତ୍ୟ ଓ ଦକ୍ଷିଣାଞ୍ଚଳରେ ତିନୋଟି ବୃହତ୍ ରାଜ୍ୟ ବିଦ୍ୟମାନ ଥିଲା । କବି ଉଲ୍ଲିଖିତ ତିନୋଟି ନାମ ଦ୍ୱାରା ଏହି ତିନୋଟି ରାଜ୍ୟକୁ ସୂଚାଇ ଦେଇଛନ୍ତି । ତାମିଲଭାଷୀ ଅଞ୍ଚଳର କାବେରୀ ମୁହାଣଠାରୁ ତେଲୁଗୁଭାଷୀ ଅଞ୍ଚଳର ନେଲ୍ଲୋର ପର୍ଯ୍ୟନ୍ତ ସମୁଦ୍ର ଉପକୂଳ ଅଞ୍ଚଳ ଅଦ୍ୟାପି କରମଣ୍ଡଳ ନାମରେ ବିଦିତ । ଏହି ଅଞ୍ଚଳ ପୂର୍ବେ ଚୋଳ ରାଜାମାନଙ୍କ ଦ୍ୱାରା ଅଧିକୃତ ଓ ଶାସିତ ହୋଇଥିବାରୁ ଏହାକୁ ଚୋଳମଣ୍ଡଳ କୁହାଯାଉଥିଲା । ଏହି ଚୋଳମଣ୍ଡଳ ନାମଟି କାଳକ୍ରମେ ବିଭିନ୍ନ ରୂପ ଧାରଣ କଲା, ଯଥା—ଚୋରମଣ୍ଡଳ, ଚୌରମଣ୍ଡଳ, କରମଣ୍ଡଳ, ପାଣି (କର) ମଣ୍ଡଳ । ସାରଳା ଦାସ ଏ ସମସ୍ତ ବିଭିନ୍ନ ନାମ ଉଲ୍ଲେଖ କରିଛନ୍ତି—

ବ୍ୟୂହମଣ୍ଡଳ ଆବର ଶୋଣିତ ମଣ୍ଡଳ
ଚୋଳମଣ୍ଡଳ ମେରୁମଣ୍ଡଳ ସୁଢ଼ଳ ।

—ଭାନୁମତୀ ସ୍ୱୟମ୍ବର ଆଦ୍ୟ, ପୃ. ୧୧୫

କରମଣ୍ଡଳ ରାଜ୍ୟରେ ପ୍ରବେଶ ହୋଇଲେ
ମେଢ଼ର ଭିତରେ ନେଇ କନ୍ୟାକୁ ଥୋଇଲେ ।

—ସୁରେଖା ହରଣ, ମଧ୍ୟ, ପୃ. ୨୯୮

ପାଣିମଣ୍ଡଳର ରାଜା ସେ ପଦ୍ମକେଶରୀ
ଅନେକ ସମ୍ପର୍କେ ସେହି ଆସେ ଦଣ୍ଡଧାରୀ ।

—ଉତ୍ତରାବିବାହ, ବିରାଟ, ପୃ. ୧୭୭

ଏଥିରୁ ଦେଖାଯିବ ଯେ, କବି ଦକ୍ଷିଣର ଏହି ଉପକୂଳ ଅଞ୍ଚଳକୁ ଚୌର-ମଣ୍ଡଳ ବା ଚୋରମଣ୍ଡଳ, ଚୋଳମଣ୍ଡଳ, କରମଣ୍ଡଳ ଓ ପାଣି (କର) ମଣ୍ଡଳ ନାମରେ ବର୍ଣ୍ଣନା କରିଛନ୍ତି । ସାରଳା ଦାସ ମହାଭାରତ ଲେଖୁଥିଲାବେଳେ ଏହି ଉପକୂଳ ଅଞ୍ଚଳ ଚନ୍ଦ୍ରଗିରିର ରାଜା ସାଲୁବ ନରସିଂହଙ୍କ ଅଧୀନରେ ଥିଲା । ଆଗରୁ କୁହାଯାଇଛି ଯେ ସାଲୁବ ବିଜୟନଗରର ଅଧସ୍ତନ ରାଜା ହୋଇଥିଲେ ମଧ୍ୟ ଘଟଣାଚକ୍ରରେ ଏକପ୍ରକାର ସ୍ୱାଧୀନ ହୋଇପଡ଼ିଥିଲେ ।

ପ୍ରାଚୀନ ଶାସ୍ତ୍ର ପୁରାଣରେ କେବଳ ଉତ୍ତରକୋଶଳ ଓ ଦକ୍ଷିଣକୋଶଳ ବା ମହାକୋଶଳର ନାମ ଉଲ୍ଲେଖ ରହିଛି । ଅଯୋଧ୍ୟା ଅଞ୍ଚଳର ନାମ ଥିଲା ଉତ୍ତର-କୋଶଳ ଓ ଜବଲପୁର, ବିଳାସପୁର, ସୋନପୁର, ସମ୍ବଲପୁର, ଇତ୍ୟାଦି ବିସ୍ତୀର୍ଣ୍ଣ ଅଞ୍ଚଳ ଦକ୍ଷିଣକୋଶଳ ବା ମହାକୋଶଳ ନାମରେ ଆଖ୍ୟାତ ହେଉଥିଲା; କିନ୍ତୁ ସାରଳାଦାସ ବହୁ କୋଶଳର ନାମ ଉଲ୍ଲେଖ କରିଛନ୍ତି । କେବଳ ଭାନୁମତୀ ସ୍ୱୟମ୍ବର ପ୍ରସଙ୍ଗରେ ସେ ଅଠରଟି କୋଶଳର ନାମ ଲେଖିଛନ୍ତି(ଆଦ୍ୟ, ପୃ.୧୧୬) । ଏ ସମସ୍ତ କୋଶଳର ନାମ ଅନୁଶୀଳନ କଲେ ଜଣାଯାଏ ଯେ କବି ବନଗିରିପୂର୍ଣ୍ଣ ବା ଉଚ୍ଚାବଚ୍ଚଭୂମିପୂର୍ଣ୍ଣ ଅଞ୍ଚଳମାନଙ୍କୁ ହିଁ କୋଶଳ ଆଖ୍ୟା ଦେଇଛନ୍ତି । କବି କରମଣ୍ଡଳର ସନ୍ନିହିତ ଅଞ୍ଚଳ ଦୁଇଟିର ନାମ ଦେଇଛନ୍ତି କୋଶଳମଣ୍ଡଳ ଓ ମଲ୍ଲିକାମଣ୍ଡଳ । ଏଣୁ କୋଶଳମଣ୍ଡଳକୁ ବାହାମନୀ ରାଜ୍ୟ ଓ ମଲ୍ଲିକାମଣ୍ଡଳକୁ ବିଜୟନଗର ରାଜ୍ୟ ବୋଲି ବୁଝିବାକୁ ହେବ । ବିଜୟନଗର ରାଜ୍ୟକୁ ମଲ୍ଲିକାମଣ୍ଡଳ ନାମ ଦେଇ କବି ସୂଚାଇ ଦେଇଛନ୍ତି ଯେ ଏହି ରାଜ୍ୟରେ ମଲ୍ଲିକାର୍ଜୁନ ରାଜତ୍ୱ କରୁଥିଲେ । ରାଜାମାନଙ୍କ ନାମାନୁସାରେ ଦେଶମାନଙ୍କର ନାମକରଣ କରାଯାଇ-ଥିବାର ବହୁ ପ୍ରମାଣ ସାରଳା ମହାଭାରତରେ ରହିଛି—

ପ୍ରବେଶ ହୋଇଲେ ରାଜା ଭୂମନୁମଣ୍ଡଳେ
ଦେଖିଣ ତାହାଙ୍କୁ ପୂଜା କଲେ ମହୀପାଳେ ।
—ଭାନୁମତୀ ସ୍ୱୟମ୍ବର, ଆଦ୍ୟ ପୃ. ୧୨୦

ଭାନୁମତୀଙ୍କ ପିତାଙ୍କର ନାମ ଥିଲା ଭୂମନୁ । ଏଣୁ ସାରଳାଦାସ ତାଙ୍କର ନାମାନୁସାରେ ତାଙ୍କର ରାଜ୍ୟର ନାମକୁ ଭୂମନୁମଣ୍ଡଳ ବୋଲି ଲେଖିଛନ୍ତି ।

ତହୁଁ ସହଦେବ ବୀର ଆଣ୍ଟକୁ ଚଳାଇ
କର୍ଣ୍ଣମଣ୍ଡଳ ରାଜ୍ୟରେ ପ୍ରବେଶିଲା ଯାଇ । ସଭା, ପୃ. ୨୦୬

ଦୁର୍ଯୋଧନ କର୍ଣ୍ଣଙ୍କୁ ଅଙ୍ଗଦେଶରେ (ଆଧୁନିକ ଭାଗଲପୁର-ମୁଙ୍ଗେର ଅଞ୍ଚଳରେ) ରାଜା କରିଥିଲେ; ଏଣୁ କବି ଏହି ଦେଶକୁ କର୍ଣ୍ଣମଣ୍ଡଳ ବୋଲି ବର୍ଣ୍ଣନା କରିଛନ୍ତି । ଏହିପରି ଭାବରେ ସେ ମଥୁରାକୁ କୃଷ୍ଣରାଜ୍ୟ ଓ ବଲ୍ଲାଳସେନଙ୍କ ରାଜ୍ୟକୁ (ବଙ୍ଗଦେଶକୁ) ବେଲାଳ ଦେଶ ବୋଲି ମଧ୍ୟ ଲେଖିଛନ୍ତି । କବି ପଦ୍ୟାକାରରେ ଲେଖିବାବେଳେ ମଲ୍ଲିକାର୍ଜୁନ ନାମଟିକୁ ସମ୍ପୂର୍ଣ୍ଣଭାବରେ ଲେଖି ନ ପାରି, ସଂକ୍ଷେପରେ ମଲ୍ଲିକା ବୋଲି ଲେଖିଛନ୍ତି । ଆଗରୁ କୁହାଯାଇଛି ଯେ ମଲ୍ଲିକାର୍ଜୁନ ବିଜୟନଗରରେ ରାଜତ୍ୱ କରୁଥିବାବେଳେ କପିଳେଶ୍ୱର ଗଜପତି ଏହି ସାମ୍ରାଜ୍ୟକୁ ଆକ୍ରମଣ କରି ବହୁ ଅଞ୍ଚଳ ଜୟ କରିଥିଲେ । ସାରଳାଦାସ ତାଙ୍କ ସମୟର ବିଜୟ-ନଗର ରାଜାଙ୍କ ନାମ ଏହିପରି ଭାବରେ ଲେଖି ଯାଇଛନ୍ତି ।

(୧୦) ପାଣ୍ଡବନଗର—ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ଯେ ତାମିଲ୍‌ଭାଷୀ ଦକ୍ଷିଣାଞ୍ଚଳର ବିଖ୍ୟାତ ପାଣ୍ଡ୍ୟରାଜବଂଶ ଆର୍ଯ୍ୟବଂଶୀୟ ଥିଲେ ଓ ସେମାନେ ଉତ୍ତର-ଭାରତର ମଥୁରାରୁ ଆସି ଦକ୍ଷିଣରେ ଆଧିପତ୍ୟ ବିସ୍ତାର କରିଥିଲେ (Cunningham's Ancient Geography of India edited by S. N. Mazumdar, 1924, p, 743) । ଏହି ହେତୁରୁ ପାଣ୍ଡ୍ୟମାନେ ଦକ୍ଷିଣରେ ସେମାନଙ୍କ ନବସ୍ଥାପିତ ରାଜ୍ୟର ରାଜଧାନୀକୁ ମଧ୍ୟ ମଥୁରା ନାମ ଦେଇ-ଥିଲେ । ମଥୁରାର ମୌଳିକ ରୂପ ଥିଲା ମଥୁରା; କିନ୍ତୁ ଉଚ୍ଚାରଣର ବିଭିନ୍ନତା ହେତୁରୁ ତାହା ଉତ୍ତରରେ ମଥୁରା ଓ ଦକ୍ଷିଣରେ ମଧୁରା ହୋଇଗଲା । କିମ୍ବଦନ୍ତୀ କହେ ଯେ ପାଣ୍ଡ୍ୟମାନେ ପାଣ୍ଡବବଂଶୀୟ ଥିଲେ । ପାଣ୍ଡ୍ୟମାନେ ସେମାନଙ୍କ ତାମ୍ରଶାସନାଦିରେ ମଧ୍ୟ ସ୍ୱ-ବଂଶକୁ ପାଣ୍ଡବବଂଶ ବୋଲି ଆଖ୍ୟାତ କରୁଥିଲେ(D.R.Bhandarkar's Carmichael Lectures, First Series) । ଏହି ହେତୁରୁ ସାରଳା-ଦାସ ପାଣ୍ଡ୍ୟମାନଙ୍କ ରାଜଧାନୀ ମଦୁରାକୁ ପାଣ୍ଡବନଗର ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କ ସମୟର ଇତିହାସ, କିମ୍ବଦନ୍ତୀ ଓ ଭୂଗୋଳରେ କବିଙ୍କ କିପରି ଗଭୀର ଜ୍ଞାନ ଥିଲା, ତାହା ଏହି ବିବରଣୀରୁ ସହଜରେ ଅନୁମେୟ ।

ଦକ୍ଷିଣର ସୁବିଖ୍ୟାତ ମଦୁରା ନଗରୀର ପରିଚୟ ଅନାବଶ୍ୟକ । ଏ ନଗରୀର ପ୍ରସିଦ୍ଧ ମୀନାକ୍ଷୀ ମନ୍ଦିର ଭାରତର ସର୍ବାଞ୍ଚଳରେ ବିଦିତ ।

(୧୧) କୃଷ୍ଣାବେଣୀ—କୃଷ୍ଣା, କୃଷ୍ଣାବେଣୀ ଓ କୃଷ୍ଣବେଣା—ଏ ସମସ୍ତ ଦକ୍ଷିଣର ସୁବିଦିତ ବିଖ୍ୟାତ କୃଷ୍ଣାନଦୀର ବିଭିନ୍ନ ନାମମାନ ।

(୧୨) ଷଡ଼ଙ୍ଗିକା—ଏହା ଆଡ଼୍‌ଡ଼ଙ୍କିକା ନାମର ଅଶୁଦ୍ଧ ପାଠ ବୋଲି ମନେହୁଏ । ଆଡ଼୍‌ଡ଼ଙ୍କି ଗୁଣ୍ଟୁର ଜିଲାର ଓଙ୍ଗୋଲେ ତାଲୁକରେ ଅବସ୍ଥିତ । ଏଠାରେ ଗୋଟିଏ ସୁଦୃଢ଼ ଦୁର୍ଗଥିଲା ଏବଂ ଏହାର ଅଧିକାର ପାଇଁ ଓଡ଼ିଶା-ସାମ୍ରାଜ୍ୟ ଓ ବିଜୟନଗର ସାମ୍ରାଜ୍ୟ ମଧ୍ୟରେ ସଂଘର୍ଷ ଲାଗିଥିଲା । ମୁନ୍ଦୁର ଅଭିଲେଖରୁ ଜଣାଯାଏ ଯେ କପିଳେଶ୍ୱର ଗଜପତିଙ୍କ ନାତି କୁମାର କପିଳେଶ୍ୱର ମହାପାତ୍ର ପ୍ରଥମେ କୁଣ୍ଡବିଡ଼ୁ ରାଜ୍ୟର ଶାସନକର୍ତ୍ତା ଥିଲେ; କିନ୍ତୁ ପରେ ଯେତେବେଳେ ଓଡ଼ିଶାର ସୀମା ପେନ୍ନାର ନଦୀ ପର୍ଯ୍ୟନ୍ତ ବିସ୍ତୃତ ହେଲା, ସେତେବେଳେ ସେ ସମଗ୍ର ଦକ୍ଷିଣାଞ୍ଚଳର ରାଜପ୍ରତିନିଧି (Viceroy) ରୂପେ ନିଯୁକ୍ତ ହୋଇଥିଲେ । ତାଙ୍କ ଅଧୀନରେ ଯେଉଁସବୁ ମଣ୍ଡଳ ଓ ଦୁର୍ଗ ଥିଲା, ସେ ସବୁର ତାଲିକା ଏହି ଅଭିଲେଖରେ ଅଛି ଓ ସେଥିରେ ଆଡ଼୍‌ଡ଼ଙ୍କିର ନାମ ରହିଛି (P. Mukharji—Gajapati

Kings of Orissa, P. 34 ) । କୃଷ୍ଣାନଦୀ ଗୁଣ୍ଟୁର୍ ଜିଲାରେ ପ୍ରବାହିତା ହେଉଛି । ଏହାର ପରେ ପରେ ଷଡ଼ଙ୍ଗିକାର ନାମ ଉଲ୍ଲେଖ ଥିବାରୁ ଏହା ଆଉ ଡ଼ଙ୍କିକାର ଅଶୁଦ୍ଧ ପାଠ ବୋଲି ମନେ ହେଉଛି ।

(୧୩) ଉଡ଼ଙ୍ଗ—ଏହାର ବିସ୍ତୃତ ଆଲୋଚନା ପୂର୍ବ ପ୍ରବନ୍ଧରେ କରାଯାଇଛି । ଉରଗପୁର ବା ଆଧୁନିକ ତ୍ରିଚିନାପଲ୍ଲୀ ଅଞ୍ଚଳକୁ କବି ସଂକ୍ଷେପରେ ଉଡ଼ଙ୍ଗ ବୋଲି ବର୍ଣ୍ଣନା କରିଛନ୍ତି । ରଘୁବଂଶର ଷଷ୍ଠସର୍ଗରେ ସୁନନ୍ଦା ଇନ୍ଦୁମତୀଙ୍କୁ ନେଇ ଉରଗ-ପୁର ରାଜାଙ୍କ ପାଖରେ ପହଞ୍ଚାଇଛି ଓ ତା'ର ଠିକ୍ ପରବର୍ତ୍ତୀ ଶ୍ଳୋକରେ ସେହି ରାଜାଙ୍କୁ "ପାଣ୍ଡ୍ୟୋଽୟଂ" (ଏ ପାଣ୍ଡ୍ୟରାଜା) ବୋଲି ପରିଚୟ ଦେଇଛି । ଏଣୁ ସାରଳା ଦାସ ତ୍ରିଚିନାପଲ୍ଲୀ ଅଞ୍ଚଳକୁ ଯେ ଉଡ଼ଙ୍ଗ ଦେଶ ବୋଲି ଓ ତ୍ରିଚିନାପଲ୍ଲୀ ନଗରକୁ ଯେ ଖାଲି ଉଡ଼ଙ୍ଗ ବୋଲି ଲେଖିଛନ୍ତି, ଏଥିରେ ସନ୍ଦେହ ରହେନାହିଁ । କହିବା ବାହୁଲ୍ୟ ଯେ ସାରଳାଦାସଙ୍କ ସମୟରେ ଓଡ଼ିଆ ଭାଷାର ଉଚ୍ଚାରଣକ୍ରମ ଟିକିଏ ଭିନ୍ନ ପ୍ରକାର ଥିଲି ଏବଂ ଏହି ହେତୁରୁ ଉରଗ ବା ଉରଙ୍ଗ ଶବ୍ଦଟି ଉଡ଼ଙ୍ଗରେ ପରିଣତ ହୋଇଛି । ପ୍ରସିଦ୍ଧ ଟୀକାକାର ମଲ୍ଲିନାଥ ରଘୁବଂଶର ଉଲ୍ଲିଖିତ ଶ୍ଳୋକର ବ୍ୟାଖ୍ୟା କଲାବେଳେ ଉରଗପୁରକୁ ଉତ୍ତର-ଭାରତରେ ସ୍ଥାନ ଦେଇଛନ୍ତି । ସାରଳାଦାସ ମଧ୍ୟ ଗୋଟିଏ ଦକ୍ଷିଣ ଭାରତରେ ଓ ଗୋଟିଏ ଉତ୍ତରଭାରତରେ ଉଡ଼ଙ୍ଗଦେଶର କଥା ଉଲ୍ଲେଖ କରିଛନ୍ତି । ସଭାପର୍ବରେ ଅର୍ଜ୍ଜୁନଙ୍କ ଉତ୍ତରଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରିବା ପ୍ରସଙ୍ଗରେ ସେ ଅର୍ଜ୍ଜୁନଙ୍କୁ ଯମୁନାପୁର (ଜୌନପୁର)ରୁ ଉଡ଼ଙ୍ଗଦେଶକୁ ଘେନି ଯାଇଛନ୍ତି—

ଯମୁନାପୁର ଉଚ୍ଛିନ୍ନ ପାଇଣ ସନ୍ଦେଶ,
ଉଡ଼ଙ୍ଗ ରାଜା ସାଜିଲି ରଥ ଗଜ ଅଶ୍ୱ ।
ସେ ଉଡ଼ଙ୍ଗ ଦେଶ ରାଜା ଅଟଇ ବରୁଣ
ତୁଲେ ଘେନିଛି ଚଉଦଶ ପାରିଦଣ୍ଡ ଗୁଣ ।

ସଭା, ପୃ. ୧୨୮

ସାରଳାଦାସ ଅର୍ଜ୍ଜୁନଙ୍କୁ ଉଡ଼ଙ୍ଗଦେଶରୁ ବୀରଦେଶକୁ ଘେନି ଯାଇଛନ୍ତି । ଆଧୁନିକ ବହାରର ତ୍ରିହୁତକୁ (ଚମ୍ପାରନ୍, ସାରନ୍ ଓ ମୁଜାଫରପୁର ଜିଲାକୁ) ସେ ବୀରଦେଶ ବୋଲି ବାରମ୍ବାର ବର୍ଣ୍ଣନା କରିଛନ୍ତି । ତ୍ରିହୁତ୍ (ତୀରଭୁକ୍ତି) ପ୍ରାଚୀନ ବୃଜି ବା ଲିଚ୍ଛବିମାନଙ୍କର ରାଜ୍ୟ ଥିବାରୁ ଏହାକୁ କବି ବୀରଦେଶ ବୋଲି ବର୍ଣ୍ଣନା କରିଥିବା ଖୁବ୍ ସମ୍ଭବ । କବି ବୀରଦେଶରେ ଗଣ୍ଡୁକୀନଦୀ (ଆଧୁନିକ ଗଣ୍ଡକନଦୀ) ପ୍ରବାହିତା ହେଉଥିବା ଲେଖିଥିବାରୁ ତାଙ୍କ ବୀରଦେଶ ଯେ ବୃଜିମାନଙ୍କ ଦେଶ

ଝିହୁତ୍, ଏ ବିଷୟରେ ବେଶୀ ସନ୍ଦେହ ରହେନାହିଁ; ମାତ୍ର ଉଡ଼ଙ୍ଗଦେଶର ଆଧୁନିକ ନାମ ନିର୍ଣ୍ଣୟ କରିବା ସମ୍ଭବପର ହୁଏନାହିଁ । ତାଙ୍କ ବର୍ଣ୍ଣିତ ଉତ୍ତରରେ ଉଡ଼ଙ୍ଗଦେଶ ଜୋନପୁର ଓ ଝିହୁତ୍ ମଧ୍ୟବର୍ତ୍ତୀ କୌଣସି ଅଞ୍ଚଳରେ ଅବସ୍ଥିତ ଥିଲା ।

(୧୪) ମାତଙ୍ଗ—ଏହାର ଶୁଦ୍ଧପାଠ ମତଙ୍ଗ ହେବ । ଆନ୍ଧ୍ରର କାର୍ନୁଲ-ଜିଲ୍ଲାରେ ଅବସ୍ଥିତ ବିଖ୍ୟାତ ଶୈବ ଓ ତନ୍ତ୍ରପୀଠ ଶ୍ରୀଶୈଳମର ମତଙ୍ଗ ହେଉଛି ଅନ୍ୟତମ ନାମ । ହେବଜ୍ରତନ୍ତ୍ରରେ ପ୍ରଧାନ ତନ୍ତ୍ରପୀଠମାନଙ୍କ ନାମ ନିମ୍ନୋକ୍ତମତେ ବର୍ଣ୍ଣିତ ଅଛି—

ପୀଠଂ ଜାଳନ୍ଧରଂ ଖ୍ୟାତଂ ଓଡ଼ିୟାନଂ ତଥୈବଚ ।
ପୀଠଂ ପୂର୍ଣ୍ଣଗିରି ଚୈବ କାମରୂପସ୍ତଥୈବଚ ।

—P. C. Bagchi—Studies in Tantras,
1939, p. 38

ଏଥିରୁ ଜଣାଯାଏ ଯେ ପଞ୍ଜାବର ଜଳନ୍ଧର, ଓଡ଼ିଶା, ପୂର୍ଣ୍ଣଗିରି ଓ କାମରୂପ ( ଆସାମର ଗୌହାଟୀ ଅଞ୍ଚଳ ) ଭାରତର ପ୍ରଧାନ ତନ୍ତ୍ରପୀଠ ଥିଲା । ପୂର୍ଣ୍ଣଗିରିର ଅବସ୍ଥିତି କେହି ସ୍ଥିର କରିପାରି ନାହାନ୍ତି । ଉଡ଼ିୟାନ ଯେ ଓଡ଼ିଶାର, ଏ ବିଷୟରେ ନିକଟ ଅତୀତରେ ଡକ୍ଟର ନବୀନ କୁମାର ସାହୁ ତାଙ୍କ Buddhism in Orissa ପୁସ୍ତକରେ ଯେଉଁ ସୁଦୃଢ଼ ଯୁକ୍ତି ଦେଇଛନ୍ତି, ତାହା ଅକାଟ୍ୟ ହୋଇ ରହିଛି, କିନ୍ତୁ କୁଲାଲିକାମ୍ନାୟତନ୍ତ୍ରରେ ଭାରତର ପ୍ରଧାନ ତନ୍ତ୍ରପୀଠମାନଙ୍କର ଆଉ ଗୋଟିଏ ତାଲିକା ରହିଛି । ଏହି ତାଲିକା ଅନୁସାରେ ଉଡ଼ିୟାନ, ଜାଳନ୍ଧର, ପୂର୍ଣ୍ଣଗିରି, ମତଙ୍ଗ ବା ଶ୍ରୀଶୈଳ ଓ କାମାକ୍ଷା ହେଉଛି ଭାରତର ପ୍ରଧାନ ତନ୍ତ୍ରପୀଠ (The Imperial Kanauj, ଭାରତୀୟ ବିଦ୍ୟାଭବନ, ପୃ: ୩୨୨) । ଏଥିରୁ ପ୍ରମାଣିତ ହେଉଛି ଯେ ଶ୍ରୀଶୈଳମ୍‌ର ଅନ୍ୟନାମ ଥିଲା ମତଙ୍ଗ । ସାରଳାଦାସ ମତଙ୍ଗ ନାମଟି ଉଲ୍ଲେଖ କରି ତାଙ୍କର ଗଭୀର ଶାସ୍ତ୍ରଜ୍ଞାନ ଓ ଭୌଗୋଳିକ ଜ୍ଞାନର ଅପୂର୍ବ ଦୃଷ୍ଟାନ୍ତ ରଖିଯାଇଛନ୍ତି ।

(୧୫) ଭଦ୍ରା—ଭଦ୍ରାଚଳମ୍‌କୁ କବି ସଂକ୍ଷେପରେ ଭଦ୍ରା ବୋଲି ଲେଖି-ଯାଇଛନ୍ତି । ଗୋଦାବରୀ କୂଳରେ ଅବସ୍ଥିତ ଏହି ସୁବିଦିତ ସ୍ଥାନ ବର୍ତ୍ତମାନ ଗୋଟିଏ ମଧ୍ୟମ ଧରଣର ସହର ରୂପେ ବିଦ୍ୟମାନ ଅଛି । ଏଠାରେ ପର୍ଯ୍ୟଟକମାନଙ୍କ ପାଇଁ ଗୋଟିଏ ବଙ୍ଗଳା ଅଛି ।

(୧୬) କୃଷ୍ଣା—ଏହି ନଦୀକୁ କବି କୃଷ୍ଣାବେଣୀ ନାମରେ ଥରେ ଉଲ୍ଲେଖ କରିସାରିବା ପରେ ପୁଣି ଆଉଥରେ କାହିଁକି କୃଷ୍ଣା ନାମରେ ବର୍ଣ୍ଣନା କରିଛନ୍ତି, ତାହା ସ୍ଥିର କରିବା ସମ୍ଭବପର ହେଉନାହିଁ । ହୁଏତ ଏହି କୃଷ୍ଣା ନାମଟି ଅନ୍ୟ କୌଣସି ଭୌଗୋଳିକ ନାମର ରୂପାନ୍ତର ।

(୧୭) ସୁନନ୍ଦା—ଏହି ପଦମାନଙ୍କରେ ଦକ୍ଷିଣାଞ୍ଚଳର ସମସ୍ତ ବଡ଼ ବଡ଼ ନଦୀର ନାମ ଥିଲେ ମଧ୍ୟ ଗୋଦାବରୀର ନାମ ନାହିଁ । ଆନ୍ଧ୍ର ଅଞ୍ଚଳରେ ପ୍ରବାହିତା ଗୋଦାବରୀର ଦୁଇଟି ବୃହତ୍ ଉପନଦୀର ନାମ ହେଉଛି ସିଲେରୁ ଓ ଶବରୀ । ଯେତେଦୂର ସମ୍ଭବ କବି ଏହି ଉପନଦୀ ଦୁଇଟି ମଧ୍ୟରୁ କୌଣସିଟିକୁ ସୁନନ୍ଦା ରୂପେ ବର୍ଣ୍ଣନା କରି ଗୋଦାବରୀ ନଦୀର ମଧ୍ୟ ସୂଚନା ଦେଇଛନ୍ତି ।

(୧୮) ଗୋପନଭାଗୀ—ଏହାର ସମ୍ପୂର୍ଣ୍ଣ ରୂପଟି ହେଉଛି ଗୋପନା ଭାଗୀରଥୀ ଅର୍ଥାତ୍ ପାତାଳଗଙ୍ଗା । ଏହି ପାତାଳଗଙ୍ଗା କବିଙ୍କ ଅତ୍ୟନ୍ତ ପ୍ରିୟସ୍ଥାନ ଥିଲା ବୋଲି ମନେହୁଏ । ସେ ଏହାକୁ ତାଙ୍କ ଗ୍ରନ୍ଥର ବହୁ ସ୍ଥାନରେ ଉଲ୍ଲେଖ କରିଛନ୍ତି । ବନପର୍ବରେ ସେ ପାଣ୍ଡବମାନଙ୍କୁ ଏଠାକୁ ଘେନିଯାଇ ଏହାକୁ ବର୍ଣ୍ଣନା କରିଛନ୍ତି—

ସେଠାରୁ ବିଜୟ କଲେ ଋଷିଙ୍କର ମେଳେ
ଶ୍ରୀଗିରି ପର୍ବତେ ଯାଇ ପ୍ରବେଶିଲେ ହେଳେ ।
ଦେଖିଲେ ପାତାଳଗଙ୍ଗା ତହିଁ କରି ସ୍ନାନ
ଦେଖିଲେ ଗିରିଶିଖରେ ମଲ୍ଲିକା ଅର୍ଜୁନ ।

ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଉଛି ଯେ ଶ୍ରୀଗିରିପର୍ବତ ଉପରେ ମଲ୍ଲିକାର୍ଜୁନ ମହାଦେବଙ୍କ ମନ୍ଦିର ଅଛି ଓ ତାହାର ପାଖରେ ପାତାଳଗଙ୍ଗା ବହିଯାଇଛି । ଶ୍ରୀଶୈଳମ୍‌ର ଅନତିଦୂରରେ ଶ୍ରୀଗିରିପାଡ଼୍ର ନାମକ ଅନ୍ୟ ଏକ ସ୍ଥାନ ରହିଛି, ମାତ୍ର ଏହା ବିଖ୍ୟାତ ନୁହେଁ କିମ୍ବା ଏଠାରେ ମଲ୍ଲିକାର୍ଜୁନ ମନ୍ଦିର ନାହିଁ । ସାରଳାଦାସ ସବୁ ସ୍ଥାନରେ ଶ୍ରୀଗିରିକୁ ମଲ୍ଲିକାର୍ଜୁନ ସହିତ ସଂଶ୍ଳିଷ୍ଟ କରିଥିବାରୁ ମୁଁ ତାଙ୍କ ବର୍ଣ୍ଣିତ ଶ୍ରୀଗିରିକୁ ଶ୍ରୀଶୈଳମ୍ ସହିତ ଚିହ୍ନିତ କରିଛି । ଶ୍ରୀଶୈଳମ୍ ଗୋଟିଏ ବିଖ୍ୟାତ ସ୍ଥାନ ଓ ଏହା କୃଷ୍ଣାନଦୀ କୂଳରେ ଅବସ୍ଥିତ । କୃଷ୍ଣା ଏଠାରେ ଗଭୀର ଓ ଗିରିସଙ୍କୁଳ ହୋଇ ଗମ୍ଭୀର ମୂର୍ତ୍ତି ଧାରଣ କରିଛି । ସାରଳା ଦାସ ବୋଧହୁଏ ଏହାର ପ୍ରତ୍ୟକ୍ଷଦର୍ଶୀ ଥିଲେ । ଏଣୁ ପ୍ରକୃତିର ଗମ୍ଭୀର ସମାବେଶରେ ଏଠାରେ ପାତାଳଗଙ୍ଗା ନାମରେ ବହିତା କୃଷ୍ଣା ତାଙ୍କ କବିଜନୋଚିତ ମନକୁ ଖୁବ୍ ଆକର୍ଷଣ

କରିଥିଲି । ତା' ନ ହେଲେ ପାତାଳଗଙ୍ଗା ବିଖ୍ୟାତ ସର୍ବଭାରତୀୟ ତୀର୍ଥ ନୁହେଁ, କିମ୍ବା ମଲ୍ଲିକାର୍ଜ୍ଜୁନ ମନ୍ଦିର ଖୁବ୍ ବିଖ୍ୟାତ ମନ୍ଦିର ନୁହେଁ । ଅବଶ୍ୟ ଏହା ସ୍ଥାନୀୟ ତୀର୍ଥ ରୂପେ ସ୍ମରଣାତୀତ କାଳରୁ ରହି ଆସିଛି । ଶକାବ୍ଦ ୧୩୦୦ (ଖ୍ରୀ. ୧୩୭୮)ରେ ପ୍ରଦତ୍ତ ଗୋଟିଏ ତାମ୍ର ଶାସନରେ ବର୍ଣ୍ଣିତ ଅଛି ଯେ କୁଣ୍ଡବିଡ଼ୁର ରେଡ଼ି ରାଜା ଅନ୍ନବେମ ପାତାଳଗଙ୍ଗାରେ ସୋପାନଶ୍ରେଣୀ ନିର୍ମାଣ କରିଥିଲେ—

ସୋପାନାନି ବିଧାୟ ବେମନୃପତିଃ
ପାତାଳ ଗଙ୍ଗାପଦେ ।
ସ୍ତମ୍ଭତ୍ୱଂ ନିଜ-ଧର୍ମଶାସନବିଧେଃ
ଶ୍ରୀଶୈଳମେବାନୟତ୍ ॥

ବେମରାଜା ପାତାଳଗଙ୍ଗାରେ ସୋପାନ ଶ୍ରେଣୀ ନିର୍ମାଣ କରି ଶ୍ରୀଶୈଳକୁ ତାଙ୍କ ନିଜଧର୍ମର ସ୍ତମ୍ଭ ରୂପେ ପରିଣତ କରିଥିଲେ (Epigraphia Indica, Vol. III, P. 61) ।

ରାଜା ଅନ୍ନବେମ ୧୩୭୮ ଖ୍ରୀଷ୍ଟାବ୍ଦରେ ପାତାଳଗଙ୍ଗାରେ ସୋପାନଶ୍ରେଣୀ ନିର୍ମାଣ କରିଥିଲେ ଓ କପିଳେଶ୍ୱର ଗଜପତି ୧୪୪୮ ଖ୍ରୀଷ୍ଟାବ୍ଦ ବେଳକୁ କୁଣ୍ଡବିଡ଼ୁ ଓ ରାଜମହେନ୍ଦ୍ରୀର ରେଡ଼ିରାଜ୍ୟ ଦଖଲ କରିଥିଲେ । ଏଣୁ ଅନ୍ନବେମଙ୍କ ସୋପାନ-ଶ୍ରେଣୀ ସେ ପର୍ଯ୍ୟନ୍ତ ରହିଥିବ । କପିଳେଶ୍ୱର ରେଡ଼ିରାଜ୍ୟକୁ ଧ୍ୱଂସ କରିବା ପରେ ବିଣୁକୋଣ୍ଡା, ବେଲମକୋଣ୍ଡା, କେତବର୍ମନ୍ ଅଡ୍‌ଡଙ୍କି, କୁଣ୍ଡବିଡ଼ୁ ଇତ୍ୟାଦି ଦୁର୍ଗ ଅଧିକାର କରିଥିଲେ । ଏହାଛଡ଼ା ନାଗାର୍ଜ୍ଜୁନ କୋଣ୍ଡାରେ ମଧ୍ୟ ସେ ଗୋଟିଏ ଦୁର୍ଗ ନିର୍ମାଣ କରିଥିଲେ । ତାହା ଗଜପତି ଦୁର୍ଗ ନାମରେ ବିଦିତ ହୋଇଆସୁଥିଲା, ମାତ୍ର ନାଗାର୍ଜ୍ଜୁନ କୋଣ୍ଡା ଠାରେ କୃଷ୍ଣାନଦୀରେ ବନ୍ଧ ନିର୍ମିତ ହେବା ପରେ ତାହା ନାଗାର୍ଜ୍ଜୁନ ସାଗରରେ ଜଳମଗ୍ନ ହୋଇଯାଇଛି । ଶ୍ରୀଶୈଳମ୍‌ର ମଲ୍ଲିକାର୍ଜ୍ଜୁନ ମନ୍ଦିର ପର୍ବତ ଉପରେ ନିର୍ମିତ ହୋଇଥିବାରୁ ନାଗାର୍ଜ୍ଜୁନ କୋଣ୍ଡା ଠାରୁ ଦୂର ହେଲେ ମଧ୍ୟ ତାହା ଗଜପତି ଦୁର୍ଗରୁ ଦେଖାଯାଉଥିଲା ।

(୧୯) ବିଜୟା—ଏହାର ସମ୍ପୂର୍ଣ୍ଣ ରୂପ ହେଉଛି ବିଜୟାବାଡ଼ା । ବିଜୟବାଡ଼ା ବର୍ତ୍ତମାନ ବେଜ୍‌ୱାଡ଼ା ନାମରେ ଖ୍ୟାତ ହୋଇ ଗୋଟିଏ ପ୍ରଧାନ ସହର ଓ ରେଲ ଜଙ୍କସନ ରୂପେ ବିଦ୍ୟମାନ ଅଛି ।

(୨୦—୨୪)—ଆନନ୍ଦା, ଶରଭଙ୍ଗ, ସୁନନ୍ଦ୍ରକ, କନାଉଜ, ଖେଟ—ଏ ସମସ୍ତ ସ୍ଥାନକୁ ଚିହ୍ନିତ କରିବା ସମ୍ଭବପର ହେଉ ନାହିଁ । ଦାର୍ଣ୍ଡିବୃତ୍ତିକୁ ଚଉଦ

ଅକ୍ଷରରେ ପରିଣତ କଲାବେଳେ ଶବ୍ଦଗୁଡ଼ିକୁ ଖାଲି ବିକୃତ କରାଯାଇନାହିଁ, ସେମାନଙ୍କୁ ସ୍ଥାନଚ୍ୟୁତ ମଧ୍ୟ କରାଯାଇଛି । ତା'ଛଡ଼ା କବି ଦ୍ରାବିଡ଼ ନାମଗୁଡ଼ିକୁ ସବୁ ସମୟରେ ସଂସ୍କୃତ ବା ଓଡ଼ିଆ ରୂପରେ ପ୍ରକାଶ କରିଛନ୍ତି । ହୁଏତ ଏହି ନାମମାନ ଦ୍ରାବିଡ଼ ନାମମାନଙ୍କର ସଂସ୍କୃତ ବା ଓଡ଼ିଆ ରୂପ, ମାତ୍ର ସେମାନଙ୍କ ଅବସ୍ଥିତି ଯଥାଯଥ ଭାବରେ ସ୍ଥିର କରିବା ସମ୍ଭବପର ହେଉନାହିଁ ।

(୨୫—୨୭) ଖିନା, ଗୋମନ୍ତି, କଙ୍କଲୀ—ଏହି ତିନୋଟି ଭୌଗୋଳିକ ନାମର ଆଲୋଚନା କରିବା ପୂର୍ବରୁ ବିଜୟନଗରର ଇତିହାସର ଗୋଟାଏ ସାମାନ୍ୟ ଅଂଶ ଆଲୋଚନା କରିବା ନିତାନ୍ତ ଆବଶ୍ୟକ ହେଉଛି । କପିଳେଶ୍ୱର ଗଜପତି ୧୪୬୭ କିମ୍ବା ୧୪୭୦ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁ ପରେ ପରେ ତାଙ୍କ ପୁତ୍ର ହମ୍ବିରଦେବ ଓ ପୁରୁଷୋତ୍ତମଦେବଙ୍କ ମଧ୍ୟରେ ସିଂହାସନ ପାଇଁ ଘୋର ବିବାଦ ଲାଗିଲା । କପିଳେଶ୍ୱର ଦାକ୍ଷିଣାତ୍ୟର ବାହାମନି ମୁସଲମାନ ରାଜ୍ୟରୁ ତେଲିଙ୍ଗାନା ଅଞ୍ଚଳ ବଳପୂର୍ବକ ଅଧିକାର କରିନେଇଥିଲେ । ଏଣୁ ସେ ବଞ୍ଚିଥିବା ପର୍ଯ୍ୟନ୍ତ ବାହାମନିର ସୁଲତାନମାନେ ଓଡ଼ିଶା ପ୍ରତି ସଭୟ ଓ ସତର୍କ ରହୁଥିଲେ, ମାତ୍ର କପିଳେଶ୍ୱରଙ୍କ ମୃତ୍ୟୁ ପରେ ଓଡ଼ିଶାରେ ଯେଉଁ ଗୃହଯୁଦ୍ଧ ଲାଗିଲା, ତାହା ବାହାମନି ସୁଲତାନଙ୍କୁ ପରରାଜ୍ୟ ଆକ୍ରମଣ କରିବା ପାଇଁ ସୁବର୍ଣ୍ଣ ସୁଯୋଗ ଦେଇ-ଥିଲା । ଏହି ସମୟରେ ତୃତୀୟ ମହମ୍ମଦଶାହ ବିଜୟନଗର ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଓ ଆଧୁନିକ ବମ୍ବେଠାରୁ ସମୁଦ୍ର କୂଳେ କୂଳେ ଗୋଆ ପର୍ଯ୍ୟନ୍ତ ବିସ୍ତୃତ କୋଙ୍କନ ରାଜ୍ୟରେ ଅବସ୍ଥିତ ଖେଲନା ଦୁର୍ଗକୁ ଆକ୍ରମଣ କରିବା ପାଇଁ ସୁଦକ୍ଷ ମହମ୍ମଦ ଗାବାନଙ୍କୁ ପଠାଇଥିଲେ । ଗାବାନ୍ ଏହି ଦୁର୍ଗକୁ ଦୀର୍ଘ ଦୁଇବର୍ଷ ଅବରୋଧ କରିବା ପରେ ଦୁର୍ଗାଧିପତି ଶଙ୍କରଦେଓ ଆତ୍ମସମର୍ପଣ କରିଥିଲେ ଏବଂ ଖେଲନା ଓ ଗୋଆ ସହିତ କୋଙ୍କନ୍ ରାଜ୍ୟ ବାହାମନି ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଗୋଆ ବନ୍ଦର ଆନ୍ତର୍ଜାତିକ ସାମୁଦ୍ରିକ ବାଣିଜ୍ୟର କେନ୍ଦ୍ରସ୍ଥଳ ଥିବାରୁ ବାଣିଜ୍ୟ ଶୁଳ୍କରୁ ବିଜୟନଗର ସାମ୍ରାଜ୍ୟ ଯଥେଷ୍ଟ ଆୟ କରୁଥିଲା । ଏହି ହେତୁରୁ ବିଜୟନଗର ରାଜାମାନେ ଏହି ଅଞ୍ଚଳକୁ ପୁନର୍ଦଖଲ କରିବା ପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ, ମାତ୍ର ସେମାନଙ୍କ ଚେଷ୍ଟା ବିଫଳ ହୋଇଥିଲା (The Delhi Sultanate, ଭାରତୀୟ ବିଦ୍ୟାଭବନ, ପୃ. ୨୧୭-୨୧୮) ।

ଖେଲନା, ଗୋଆ ଓ କୋଙ୍କନ୍‌କୁ ସାରଳାଦାସ ଏଠାରେ ଖିନା ଗୋମନ୍ତି ଓ କଙ୍କଲୀ ନାମରେ ଲେଖି ଯାଇଛନ୍ତି । ଆଗରୁ କୁହାଯାଇଛି ଯେ, କବିଙ୍କ ସମୟରେ ଓଡ଼ିଆମାନେ ସ୍ୱକୀୟ ରୀତିରେ ଭାରତର ବିଭିନ୍ନ ଅଞ୍ଚଳକୁ ବିଭିନ୍ନ ନାମ ଦେଇଥିଲେ । ଏଠାରେ ଗୋମନ୍ତି ଗୋଟିଏ ନଦୀର ନାମ ନୁହେଁ, କାରଣ କବି

ଏହାକୁ ସ୍ପଷ୍ଟ ଭାବରେ "ରାଷ୍ଟ୍ର" ଆଖ୍ୟା ଦେଇଛନ୍ତି । ସମସାମୟିକ ଘଟନାମାନଙ୍କୁ ସାରଳାଦାସ କପରି ଉତ୍କର୍ଣ୍ଣ ହୋଇ ଶୁଣୁଥିଲେ ଓ ଜାଣୁଥିଲେ, ତାହାର ଯେଉଁ ବହୁ ପ୍ରମାଣ ତାଙ୍କ ମହାଭାରତରେ ଅଛି, ସେଥିମଧ୍ୟରୁ ଆଲୋଚ୍ୟ ନାମଗୁଡ଼ିକ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରମାଣ ।

(୨୮) ଲାଟ—ଏହାର ଶୁଦ୍ଧ ପାଠ ଲଟ ହେବ । ଆଧୁନିକ ଗୁଜରାଟର ଅଂଶବିଶେଷ ଲଟ ନାମରେ ଅଭିହିତ ହେଉଥିଲା । ବେଳେବେଳେ ସମଗ୍ର ଗୁଜରାଟକୁ ମଧ୍ୟ ଲଟ କୁହାଯାଉଥିଲା ।

(୨୯) ଚୈଡ଼ଙ୍ଗ—ପୂର୍ବ ପ୍ରବନ୍ଧରେ କୁହାଯାଇଛି ଯେ, ଗୋଦାବରୀଠାରୁ ଗଞ୍ଜାମ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରୁ ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଅନନ୍ତବର୍ମଣ ଚୋଡ଼ଗଙ୍ଗଦେବ ଆସିଥିବାରୁ ସାରଳାଦାସ ତାଙ୍କର ନାମାନୁସାରେ ଏ ଅଞ୍ଚଳକୁ ଚୁଡ଼ଙ୍ଗ ଦେଶ ବା ଚୈଡ଼ଙ୍ଗ ଦେଶ ନାମରେ ଅଭିହିତ କରିଯାଇଛନ୍ତି ।

(୩୦) ଅବନ୍ତୀ—ମାଳବ ଦେଶର ପଶ୍ଚିମାଞ୍ଚଳ ଅବନ୍ତୀ ନାମରେ ଅଭିହିତ ହେଉଥିଲା ଓ ଏହାର ରାଜଧାନୀ ଥିଲା ଉଜ୍ଜୟିନୀ ।

(୩୧) କାମାକ୍ଷୀ—ଅର୍ଜ୍ଜୁନଙ୍କ ଯମାଗୋଷ୍ଠ ସହିତ ଅମରଚୂଡ଼ ପର୍ବତରେ ଯେଉଁ ଯୁଦ୍ଧ ହୋଇଥିଲା, ସେଥିରେ ଅର୍ଜ୍ଜୁନଙ୍କ ବହୁ ସୈନ୍ୟ ମରିଥିଲେ । ପରେ ସେ କାମାକ୍ଷୀଙ୍କୁ ସ୍ତୁତି କରିବାରୁ ତାଙ୍କର ମୃତ-ସୈନ୍ୟମାନେ ଜୀବିତ ହୋଇ ଉଠିଲେ । କବି ଏକଥା ସଭାପର୍ବରେ (ପୃ. ୧୬୩-୬୪) ବର୍ଣ୍ଣନା କରିଛନ୍ତି । ପୂର୍ବ ପ୍ରବନ୍ଧରେ ପ୍ରଦର୍ଶିତ ହୋଇଛି ଯେ, ତେଲଙ୍ଗାନାର ନାଲଗୋଣ୍ଡା ଜିଲାରେ ଅବସ୍ଥିତ ଦେବର-କୋଣ୍ଡା ଦୁର୍ଗକୁ ହିଁ ସାରଳାଦାସ ଅର୍ଥାନ୍ତରରେ ଅମରଚୂଡ଼ ପର୍ବତ ବୋଲି ଲେଖି ଯାଇଛନ୍ତି । କାମାକ୍ଷୀଙ୍କ ମନ୍ଦିର ଏହାରି ପାଖରେ ଅବସ୍ଥିତ ଥିବା ଖୁବ୍ ସମ୍ଭବ । ଏଣୁ ମନେହୁଏ ଯେ, କାମାକ୍ଷୀଙ୍କ ଅଞ୍ଚଳରେ ଥିବା ଦେବରକୋଣ୍ଡାକୁ ହିଁ କବି କାମାକ୍ଷୀ ବୋଲି ଲେଖିଛନ୍ତି । ଏହି ନାମ ପରେ କବି ଯେଉଁ ଭୌଗୋଳିକ ନାମମାନ ଉଲ୍ଲେଖ କରିଛନ୍ତି, ସେମାନଙ୍କ ଆଲୋଚନାରୁ ମଧ୍ୟ ଏହି ଅନୁମାନ ସ୍ପଷ୍ଟ ହେବ ।

(୩୨) ତରତର—ଏହା ଗୋଟିଏ ବିକୃତ ନାମ ବୋଲି ଜଣାପଡ଼ୁଛି; କିନ୍ତୁ ଏହାର ପ୍ରକୃତ ରୂପ କଅଣ ହେବ, ତାହା ସ୍ଥିର କରିବା ସମ୍ଭବପର ହେଉନାହିଁ ।

(୩୩) କୁଣ୍ଡୀବେଦୀ—ଏହା ସୁବିଖ୍ୟାତ କୋଣ୍ଡବିଡ଼ୁ ଦୁର୍ଗର ଓଡ଼ିଆ ନାମ । କବି ଅନ୍ୟତ୍ର ଏହାକୁ ଖାଲି ବେଦୀ ନାମରେ ମଧ୍ୟ ଉଲ୍ଲେଖ କରିଛନ୍ତି ।

ବେଦୀ ଦେଶର ନୃପତି ଅଟେ କୁଶକେତୁ
ପଞ୍ଚଦଶ ଲକ୍ଷ ସୈନ୍ୟ ଉଭାଇଛୁ କେତୁ ।

ଦ୍ରୌପଦୀ ସ୍ୱୟମ୍ବର, ଆଦ୍ୟ-ପୃ-୨୫୭

ପୂର୍ବ ପ୍ରବନ୍ଧରେ ପ୍ରଦର୍ଶିତ ହୋଇଛି ଯେ, ସାରଳାଦାସ କୋଣ୍ଡବିଡ଼ୁକୁ କୁଣ୍ଡୀନଗର ନାମରେ ମଧ୍ୟ ବର୍ଣ୍ଣନା କରିଛନ୍ତି । ମୁଁ ସାରଳାଦାସଙ୍କ କୁଣ୍ଡୀନଗରକୁ କୋଡ଼ବିଡ଼ୁ ସହିତ ଚିହ୍ନିତ କରିଥିବାରୁ ଜଣେ ବିଶିଷ୍ଟ ସାହିତ୍ୟିକ ମୋତେ ସମାଲୋଚନା କରିଥିଲେ, କିନ୍ତୁ ସାରଳାଦାସ ଏହି ନାମଟିକୁ ଯେଉଁ ଭୌଗୋଳିକ ନାମ ସହିତ ଉଲ୍ଲେଖ କରିଛନ୍ତି, ତାହା ଯଦି ଅନୁଧ୍ୟାନ କରିଥାନ୍ତେ, ତେବେ ସେ ମୋର ଆଲୋଚନାକୁ ସତ୍ୟାଶ୍ରିତ ବୋଲି ମାନିଥାନ୍ତେ । ଭାନୁମତୀ ସ୍ୱୟମ୍ବରରେ କବି ଲେଖିଛନ୍ତି—

କୁଣ୍ଡୀନଗର ମାହେନ୍ଦ୍ରନଗର ଆବର
ନିଳ ଅନଳ ଦେଶ ଯେ ପୁଣି ହିଁ ମନ୍ଦାର ।

ଆଦ୍ୟ, ପୃ-୧୧୬

ଏଥିରୁ ଅନୁମିତ ହୁଏ ଯେ କୁଣ୍ଡୀନଗର ବା କୋଣ୍ଡବିଡ଼ୁର ନାମ ଲେଖିବା ପରେ ପରେ ମାହେନ୍ଦ୍ରନଗର ବା ଆଧୁନିକ ରାଜମାହେନ୍ଦ୍ରୀର ନାମ କବିଙ୍କର ମନେ ପଡ଼ିଯାଇଛି । ଏଣୁ ସେ ଉଭୟ ସ୍ଥାନର ନାମକୁ ଏକ ସଙ୍ଗରେ ଉଲ୍ଲେଖ କରିଛନ୍ତି । ଯେଉଁ ରେଡ଼ିରାଜ୍ୟକୁ କପିଳେଶ୍ୱର ଗଜପତି ଜୟ କରିଥିଲେ, ତାହା କୃଷ୍ଣା ଓ ଗୋଦାବରୀର ଉର୍ବର ଅବବାହିକାରେ ଅବସ୍ଥିତ ଥିବାରୁ ଅତ୍ୟନ୍ତ ଧନଶାଳୀ ଓ ଶକ୍ତିଶାଳୀ ଥିଲା । ଏହାର ରାଜଧାନୀ ଥିଲା କୋଣ୍ଡବିଡ଼ୁ ଓ ଏହାର ଦ୍ୱିତୀୟ ରାଜଧାନୀ ଥିଲା ମାହେନ୍ଦ୍ରନଗର ବା ଆଧୁନିକ ରାଜମାହେନ୍ଦ୍ରୀ ।

କୋଣ୍ଡବିଡ଼ୁ ଗୁଣ୍ଟୁର ଜିଲାର ନରସରାଓ ପେଟା ତାଲୁକରେ ଗୁଣ୍ଟୁରଠାରୁ ୧୩ମାଇଲ୍ ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ । ୧୪୪୮ ଖ୍ରୀଷ୍ଟାବ୍ଦ ବେଳକୁ କପିଳେଶ୍ୱର ଗଜପତି ରେଡ଼ିରାଜ୍ୟର ଏହି ରାଜଧାନୀକୁ ବିଜୟନଗର ରାଜାଙ୍କ ଠାରୁ ଜୟ କରି ତାଙ୍କ ଦକ୍ଷିଣାଞ୍ଚଳ ସାମ୍ରାଜ୍ୟର ଆରମ୍ଭ କରିଥିଲେ । କୋଣ୍ଡବିଡ଼ୁରେ ଥିବାବେଳେ ସେ ବେଲମମାନଙ୍କ ସାହାଯ୍ୟରେ ତେଲଙ୍ଗାନାର ନାଲଗୋଣ୍ଡା ଜିଲାରେ ଅବସ୍ଥିତ ବିଖ୍ୟାତ ଦେବରକୋଣ୍ଡା ଦୁର୍ଗକୁ ଅଧିକାର କରିଥିଲେ । ସାରଳା ଦାସ ଦେବରକୋଣ୍ଡା ଯୁଦ୍ଧକୁ କିପରି ପୌରାଣିକ ରୀତିରେ ଲେଖି-ଯାଇଛନ୍ତି, ତାହା ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି । କୋଣ୍ଡବିଡ଼ୁରେ ପ୍ରଥମେ

କପିଳେଶ୍ୱର ଗଜପତିଙ୍କ ନାତି (ହମ୍ବିରଙ୍କ ପୁତ୍ର) କୁମାର କପିଳେଶ୍ୱର ମହାପାତ୍ର ଶାସନକର୍ତ୍ତା ହୋଇଥିଲେ; କିନ୍ତୁ ଗଜପତିଙ୍କ ମୃତ୍ୟୁ ପରେ ଯେତେବେଳେ ସିଂହାସନ ପାଇଁ ତାଙ୍କ ପୁତ୍ର ହମ୍ବିର ଓ ପୁରୁଷୋତ୍ତମଦେବଙ୍କ ମଧ୍ୟରେ ଗୃହ-ଯୁଦ୍ଧ ଚାଲିଲା, ସେତେବେଳେ ନିଜେ ହମ୍ବିରଦେବ ମଧ୍ୟ ବାହାମନୀ ସୁଲତାନ୍ ତୃତୀୟ ମହମ୍ମଦଙ୍କ ଅଧୀନରେ କୋଣ୍ଡବିଡ଼ୁର ଶାସନକର୍ତ୍ତା ହୋଇଥିଲେ । ପୁରୁଷୋତ୍ତମଙ୍କ ସହିତ ହମ୍ବିରଙ୍କ ଶତ୍ରୁତା ଥିଲେ ମଧ୍ୟ, ଏଠାରେ ଶାସନକର୍ତ୍ତା ଥିବାବେଳେ ଓଡ଼ିଶା ଆକ୍ରମଣ ପାଇଁ ବାହାମନି ସୁଲତାନ ସଜବାଜ ହେଉଥିବା କଥା ଜାଣିବା ମାତ୍ରେ ସେ ପୁରୁଷୋତ୍ତମଙ୍କ ପାଖକୁ ଗୁପ୍ତ ଭାବରେ ସମ୍ବାଦ ପଠାଇଥିଲେ । ବାହାମନି ସୁଲତାନ ଏଥିରେ କ୍ରୁଦ୍ଧ ହୋଇ ତାଙ୍କୁ କୋଣ୍ଡବିଡ଼ୁରୁ ତଡ଼ି ଦେଇଥିଲେ । ଏହାପରେ ଶତମୁଖରେ ବିଜୟୀ ବୀର ହମ୍ବିରଙ୍କ ଦଶା କଅଣ ହେଲା, ତାହାର କୌଣସି ସନ୍ଧାନ ଇତିହାସରୁ ମିଳେନାହିଁ ।

କୋଣ୍ଡବିଡ଼ୁରୁ ଗଜପତି ସାମ୍ରାଜ୍ୟର ଆରମ୍ଭ ହୋଇଥିଲା ଓ ସେହିଠାରେ ତା'ର ପତନ ମଧ୍ୟ ଘଟିଥିଲା । ପ୍ରତାପରୁଦ୍ରଦେବଙ୍କ ରାଜତ୍ୱରେ ବିଜୟନଗର ସମ୍ରାଟ କୃଷ୍ଣଦେବ ରାୟଙ୍କ ସୈନ୍ୟମାନେ ୧୫୧୪ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକୃତ ନେଲ୍ଲୋର ଜିଲାର ଉଦୟଗିରି ଦୁର୍ଗ ଅଧିକାର କରିବା ପରେ ଅଡ଼ଙ୍କି, ବିଣ୍ଡିକୋଣ୍ଡା, ବେଲମକୋଣ୍ଡା, ନାଗାର୍ଜ୍ଜୁନକୋଣ୍ଡା, କେତବର୍ମନ, ତଙ୍ଗେଦ ଇତ୍ୟାଦି ଦୁର୍ଗରୁ ଓଡ଼ିଆ ସୈନ୍ୟମାନଙ୍କୁ କ୍ରମାଗତ ଭାବରେ ତଡ଼ି ଦେଇଥିଲେ । ବିତାଡ଼ିତ ହେବା ପରେ ଓଡ଼ିଆ ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ କୋଣ୍ଡବିଡ଼ରେ ସମବେତ ହୋଇ ଦୁର୍ଗଦ୍ୱାର ରୁଦ୍ଧ କରି ରହିଲେ । ଏହି ଦୁର୍ଗ ଅତ୍ୟନ୍ତ ସୁଦୃଢ଼ ଥିଲା । ଏଣୁ ସ୍ୱୟଂ କୃଷ୍ଣଦେବରାୟ ଏହାକୁ ପରିଦର୍ଶନ କରି ଦୁର୍ଗର ଚାରିପଟରେ କାଷ୍ଠମଞ୍ଚ ନିର୍ମାଣ କରାଇ ତାହାର ଉପରୁ ଦୁର୍ଗ ଭିତରକୁ ଶର ନିକ୍ଷେପ କରିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଇଥିଲେ । ତାହା ହିଁ ହେଲା ଓ ମାସ ମାସ ଧରି ସାଲୁବତିମ୍ମଙ୍କ ସେନାପତିତ୍ୱରେ ଏହି ଦୁର୍ଗର ଅବରୋଧ ଚାଲିଲା, ମାତ୍ର ଅବରୁଦ୍ଧ ଓଡ଼ିଆସେନା ଆତ୍ମସମର୍ପଣ କଲାନାହିଁ । ଅବଶେଷରେ ଦୁର୍ଗଟି ନିସ୍ତବ୍ଧ ଜଣାଗଲାରୁ ବିଜୟନଗର ସୈନ୍ୟମାନେ ଦୁର୍ଗଦ୍ୱାର ଭାଙ୍ଗି ଦେଖିଲେ ଯେ ଦୁର୍ଗାଙ୍ଗନରେ ବହୁ ସଂଖ୍ୟକ ମୃତଦେହ ପଡ଼ିଛି । ମୃତଦେହମାନଙ୍କରେ ଆଘାତର କୌଣସି ଚିହ୍ନ ନ ଥିବାରୁ ସମସ୍ତେ ଜାଣିଲେ ଯେ ଅନାହାରରେ, ବିଶେଷତଃ ଜଳାଭାବରେ ଓଡ଼ିଆ ସୈନ୍ୟମାନେ ପ୍ରାଣତ୍ୟାଗ କରିଛନ୍ତି । କୋଣ୍ଡବିଡ଼ୁର ଅବରୁଦ୍ଧ ଓଡ଼ିଆ ସୈନ୍ୟମାନଙ୍କ ସେନାପତି ଥିଲେ ପ୍ରତାପରୁଦ୍ରଦେବଙ୍କ ଜ୍ୟେଷ୍ଠପୁତ୍ର ବୀରଭଦ୍ର । ସେ ବନ୍ଦୀ ରୂପେ ବିଜୟନଗରକୁ ପ୍ରେରିତ ହେଲେ ( Further Sources of

Vijayanagara History Vol I. pp.203-205) । କୃଷ୍ଣଦେବ ରାୟ ତାଙ୍କ ବୀରତ୍ୱରେ ମୁଗ୍ଧ ହୋଇ ତାଙ୍କୁ ପ୍ରଥମେ ମହୀଶୂରର ମଲେବେନ୍ନୂର ସୀମାରେ ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ, ମାତ୍ର ବିଜୟନଗରର ପାରିଷଦ-ବର୍ଗଙ୍କ ଷଡ଼ଯନ୍ତ୍ରର ଶିକାର ହୋଇ ସେ ପରେ କୃଷ୍ଣଦେବ ରାୟଙ୍କ ବିରାଗଭାଜନ ହେଲେ । ଏଣୁ ଜଣେ ସାମାନ୍ୟ ସୈନିକ ସହିତ ତରବାରି ଯୁଦ୍ଧରେ ପ୍ରବୃତ୍ତ ହେବାପାଇଁ ରାୟ ତାଙ୍କୁ ଆଦେଶ ଦେଲେ । ବୀରଭଦ୍ର ଜଣେ ପ୍ରଖ୍ୟାତ ରାଜାଙ୍କ ପୁତ୍ର ହୋଇଥିବାରୁ ଜଣେ ସାମାନ୍ୟ ସୈନିକ ସହିତ ଯୁଦ୍ଧରେ ପ୍ରବୃତ୍ତ ହେବାର ଆଦେଶକୁ ଅପମାନଜନକ ମନେକଲେ ଓ ଏହି ହେତୁରୁ ସ୍ୱ ତରବାରିରେ ଆତ୍ମହତ୍ୟା କଲେ ।

କୋଣ୍ଡବିଡ଼ୁ ସହିତ ଏହିପରି ଓଡ଼ିଶାର ଉତ୍ଥାନ-ପତନର କାହାଣୀ ଜଡ଼ିତ ହୋଇ ରହିଛି । ସାରଳା ଦାସ ଏହାର ଅଭ୍ୟୁଦୟ ସମୟର କଥା ଜାଣିଥିଲେ, ମାତ୍ର ପତନ ବେଳକୁ ଜୀବିତ ନ ଥିଲେ । ଆଧୁନିକ ଓଡ଼ିଶାର ଲୋକେ କୋଣ୍ଡବିଡ଼ୁ ସହିତ ସଂଶ୍ଳିଷ୍ଟ ବୀରତ୍ୱ-କାହାଣୀ କଥା ଦୂରେ ଥାଉ, ଏହାର ନାମ ପର୍ଯ୍ୟନ୍ତ ଜାଣନ୍ତି ନାହିଁ କହିଲେ ଚଳେ । ମନଗଢ଼ା ବା ଜାଲ୍ ଉପାଦାନ ସାହାଯ୍ୟରେ ଗବେଷଣା ଚଳାଇବାର ଓ ମନଗଢ଼ା ଗଳ୍ପରେ ଐତିହାସିକ ନାଟକ ଓ ଉପନ୍ୟାସ ଲେଖିବାର ସହଜପନ୍ଥା ଅନୁସୃତ ଓ ଆଦୃତ ହେବାପରେ କାହାରି କଷ୍ଟ ସ୍ୱୀକାର କରିବାର ଆବଶ୍ୟକତା ରହୁନାହିଁ । ତା' ନ ହେଲେ କୋଣ୍ଡବିଡ଼ୁରେ ଓଡ଼ିଆମାନଙ୍କର ବୀରତ୍ୱ କାହାଣୀ ଯେ କୌଣସି ସଭ୍ୟ ଜାତିର ଆଦରର ଧନ ହୋଇଥାନ୍ତା ଓ କୋଣ୍ଡବିଡ଼ ତୀର୍ଥ-କ୍ଷେତ୍ର ହୋଇଥାନ୍ତା ।

(୩୪) ମଙ୍ଗଳାକ୍ଷୀ—ଏହାର ଶୁଦ୍ଧପାଠ ମଙ୍ଗଳାକ୍ଷୀ ହେବ । ପଦଟିର ଉପର ଧାଡ଼ିର ଶେଷରେ "କାମାକ୍ଷୀ" ଥିବାରୁ ପଦ ପକାଇବା ପାଇଁ ଏହାକୁ ମଙ୍ଗଳାକ୍ଷୀ କରାଯାଇଛି, ନଚେତ୍ ବ୍ୟାକରଣ ଅନୁସାରେ ଏହା ମଙ୍ଗଳାକ୍ଷ୍ୟ (ମଙ୍ଗଳ ନାମକ) ହେବାର କଥା । ମଙ୍ଗଳ ହେଉଛି ମଙ୍ଗଳଗିରିର ସଂକ୍ଷିପ୍ତ ରୂପ । ଏହା ଗୁଣ୍ଟୁର ଓ ବେଜ୍ୱାଡ଼ାର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ ଓ ବର୍ତ୍ତମାନ ଗୋଟିଏ ମଧ୍ୟମ ଧରଣର ସହର । ମଙ୍ଗଳଗିରିରେ ପ୍ରାପ୍ତ ଗୋଟିଏ ଶିଳାଲେଖରେ କୋଣ୍ଡ-ବିଡ଼ୁରେ ଓଡ଼ିଆ ସୈନ୍ୟମାନେ ଜଳାଭାବରେ ପ୍ରାଣତ୍ୟାଗ କରିଥିବା କଥା ଲେଖା-ଅଛି (Further sources of Vijaynagara History, Vol I. pp-203-205) । କୋଣ୍ଡବିଡ଼ୁରେ ଓଡ଼ିଆ ସୈନ୍ୟମାନେ ଅବରୁଦ୍ଧ ହୋଇ ଜଳାଭାବରେ ଯେଉଁ ସମୟରେ ପ୍ରାଣତ୍ୟାଗ କରୁଥିଲେ, ଏହା ସେହି ସମୟର ଲେଖା । ଏଥିରୁ ପ୍ରତିପାଦିତ ହୁଏ ଯେ ବିଜୟନଗରର ସୈନ୍ୟମାନେ ଏ ସମୟରେ

ମଙ୍ଗଲଗିରି ଦଖଲ କରି ସାରିଥିଲେ । କୋଣ୍ଡବିଡ଼ୁଠାରୁ ମଙ୍ଗଲଗିରି ବେଶୀଦୂର ନୁହେଁ । ଏହି ଶିଳାଲେଖରେ ବର୍ଣ୍ଣିତ ଅଛି ଯେ କୋଣ୍ଡବିଡ଼ୁରେ ସାଳୁବଢିମ୍ମ ଓଡ଼ିଆ ସୈନ୍ୟମାନଙ୍କୁ ଅବରୋଧ କରି ସେମାନଙ୍କୁ ଏପରି ଅବସ୍ଥାକୁ ଆଣିଥିଲେ ଯେ ସେମାନେ ଘାସ, ପତ୍ର, ଫୁଲ ଓ ଆକାଶର ଭ୍ରମମାନ ମେଘମାଳାରେ ଜଳ ଖୋଜି ଖୋଜି ପ୍ରାଣତ୍ୟାଗ କରୁଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଗୁପ୍ତ ଭାବରେ ପଳାଇ ଆସି ଆକାଶରେ ଓ ସମୁଦ୍ରରେ ଜଳ ଖୋଜୁଥିଲେ । ଶେଷ କଥାଟି ଆପେ ଆପେ ମିଥ୍ୟା ବୋଲି ପ୍ରତିପାଦିତ ହେଉଛି । କାରଣ, ଯଦି କେତେକ ସୈନ୍ୟ ଗୁପ୍ତ ଭାବରେ ଦୁର୍ଗରୁ ପଳାଇଥିଲେ, ତେବେ ସେମାନେ ଆକାଶରେ ଓ ସମୁଦ୍ରରେ ଜଳ ଖୋଜୁଥିଲେ କାହିଁକି ? ଦୁର୍ଗରୁ ବାହାରି ଆସିବା ସଙ୍ଗେ ସଙ୍ଗେ ତ ସେମାନଙ୍କୁ ଜଳ ସହଜଲଭ୍ୟ ହେବାର କଥା । କୋଣ୍ଡବିଡ଼ୁରେ ଓଡ଼ିଆ ସୈନ୍ୟମାନେ ପ୍ରକୃତରେ ଜଳାଭାବରେ ପ୍ରାଣତ୍ୟାଗ କଲେ ମଧ୍ୟ ଆତ୍ମସମର୍ପଣ କରିନଥିଲେ । ଏପରି ଦେଶପ୍ରୀତି ଓ ବୀରତ୍ୱ ପୃଥିବୀର ଇତିହାସରେ ବିରଳ ।

କେବଳ ପାଞ୍ଚୋଟି ପଦରେ ସାରଳା ଦାସ ଦକ୍ଷିଣାଞ୍ଚଳର ଯେଉଁ ବ୍ୟାପକ ଭୌଗୋଳିକ ଚିତ୍ର ଦେଇଛନ୍ତି, ତାହା ଅତୁଳନୀୟ । ଏହାଛଡ଼ା ସେ ପଶ୍ଚିମ ଦିଗର ଗୃରମୁଖରେ ମଧ୍ୟ ଦକ୍ଷିଣାଞ୍ଚଳର ଅନେକ ଭୌଗୋଳିକ ନାମ ପ୍ରକାଶ କରିଛନ୍ତି । ସେ ସମସ୍ତଙ୍କୁ ଚିହ୍ନିତ କରିବା ମୋ ପକ୍ଷରେ ସମ୍ଭବପର ହୋଇନଥିବାରୁ ସେମାନଙ୍କ ମଧ୍ୟରୁ କେତୋଟିର ପରିଚୟ ନିମ୍ନରେ ଦିଆଯାଉଛି ।

ରେତି ମେଦୁ ମର୍ଦ୍ଦନାଦି ଗୃରିନଗ୍ରେ ବୁଲି
ବେଲାଉର ବେଲାନଗ୍ର ଗଲୁଁ ବେଲାବଳୀ ।
ସୁରବର ପାଟଣା ଯେ ନଗ୍ର ମୌଳାବତୀ
ହିରଣ୍ୟପୁର ଗଣ୍ଡକ୍ରୀ ନଦୀ ଯେ ସୁମତୀ ।                ବିରାଟ ପୃ. ୮୭

(୧) ବେଲାଉର—ଯେତେଦୂର ସମ୍ଭବ ଏହା ବେଲଗାଁର ଓଡ଼ିଆ ନାମ । ମହୀଶୂରର ବେଲଗାଁ ଜିଲ୍ଲାର ମୁଖ୍ୟ ସହର ହେଉଛି ହସପେଟ୍ ଓ ଏହି ସହରର ନଅ ମାଇଲ ଉତ୍ତର ପୂର୍ବରେ ବିଜୟନଗରର ଧ୍ୱଂସାବଶେଷ ବର୍ତ୍ତମାନ ହାମ୍ପି ନାମରେ ଅଭିହିତ ହେଉଛି । ହାମ୍ପି ନିକଟବର୍ତ୍ତୀ କମଳାପୁରମରେ ବିଦ୍ୟୁତ ଶକ୍ତିର କେନ୍ଦ୍ର କରାଯାଇଛି ଓ ହସ୍ପେଟଠାରୁ ୩ ମାଇଲ ଦୂରରେ ତୁଙ୍ଗଭଦ୍ରା ଉପରେ ବନ୍ଧ ପକାଇ ତୁଙ୍ଗଭଦ୍ରା ଜଳଭଣ୍ଡାର ସୃଷ୍ଟି କରାଯାଇଛି ।

(୨) ବେଲାନଗ—ଏହା ନିଶ୍ଚୟ ଆଧୁନିକ ବେଲୁର୍ । ଏହା ମହୀଶୂରର ହାସାନ ଜିଲ୍ଲାରେ ଅବସ୍ଥିତ ଏବଂ ଏଠାରେ ହୟ୍‌ଶଳ ଶୈଳୀର ଶ୍ରେଷ୍ଠ ନିଦର୍ଶନ ପ୍ରସିଦ୍ଧ କେଶବ ମନ୍ଦିର ଅଦ୍ୟାପି ବିଦ୍ୟମାନ । ଏହା ବେଲାପୁରୀ ନାମରେ ବିଖ୍ୟାତ ହୋଇଥିଲା ଓ ବେଲାପୁରୀ କେଶବ ମାହାତ୍ମ୍ୟ ନାମରେ ଗୋଟିଏ ସଂସ୍କୃତ ଗ୍ରନ୍ଥ ମଧ୍ୟ ରଚିତ ହୋଇଥିଲା । ଏହି ଗ୍ରନ୍ଥରେ କେଶବ ମନ୍ଦିରର ଓ ତତ୍‌ସଂଲଗ୍ନ ବିଷ୍ଣୁ-ସମୁଦ୍ର ପୁଷ୍କରଣୀର ମାହାତ୍ମ୍ୟ କୀର୍ତ୍ତିତ ହୋଇଛି (Archaeological Survey of Mysore, Annual Report. 1939, p. 101) ।

(୩) ବେଲ୍ଲବଲୀ—ଏହାର ସମ୍ପୂର୍ଣ୍ଣ ନାମଟି ହେଉଛି ବେଲ୍ଲବଲୀପୁର । ଆଲାଉଦ୍ଦିନ ଖିଲ୍‌ଜି ୧୩୧୧ ଖ୍ରୀଷ୍ଟାବ୍ଦରେ ଯେତେବେଳେ ମହୀଶୂର ଅଞ୍ଚଳ ଜୟ କଲେ, ସେତେବେଳେ ଏଠାରେ ହୟ୍‌ଶଳ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ଏବଂ ଏମାନଙ୍କ ରାଜଧାନୀ ଥିଲା ଦ୍ୱାରସମୁଦ୍ର । ଏ ବଂଶର ଏକାଧିକ ରାଜାଙ୍କ ନାମ ଥିଲା ବଲ୍ଲାଳ । ମାଲିକ୍ କାଫୁରଙ୍କ ସହିତ ଯାହାଙ୍କର ଯୁଦ୍ଧ ହୋଇଥିଲା, ସେ ଥିଲେ ତୃତୀୟ ବଲ୍ଲାଳ । ସାରଳା ଦାସ ଉତ୍ତର ଭାରତର କଥା ଲେଖିବାବେଳେ ବଲ୍ଲାଳ ସେନଙ୍କ ଦେଶ (ବଙ୍ଗଦେଶ)କୁ ବେଲାଳ ଦେଶ ବୋଲି ଓ ତା'ର ରାଜଧାନୀକୁ ବେଲ୍ଲବଲୀପୁର ବୋଲି ଲେଖିଛନ୍ତି ଏବଂ ଦକ୍ଷିଣ-ଭାରତର କଥା ଲେଖିବାବେଳେ ସେ ମହୀଶୂରକୁ ବେଳେବେଳେ ବେଲାଳଦେଶ ବୋଲି ଓ ତା'ର ରାଜଧାନୀକୁ ବେଲ୍ଲବଲୀପୁର ବୋଲି କହିଛନ୍ତି । ଏଣୁ ଏଠାରେ ବେଲ୍ଲବଲୀପୁରକୁ ଦ୍ୱାରସମୁଦ୍ର ବୋଲି ବୁଝିବାକୁ ହେବ । ଦ୍ୱାରସମୁଦ୍ରର ଆଧୁନିକ ନାମ ହେଉଛି ହାଲେବିଡ଼୍ । ଏହା କାନାଡ଼ୀ ଶବ୍ଦ ଓ ଏହାର ଅର୍ଥ ହେଉଛି ପୁରୁଣା ରାଜଧାନୀ । ଏହା ହାସାନ ଜିଲ୍ଲାରେ ଅବସ୍ଥିତ ଏବଂ ଏଠାରେ ମଧ୍ୟ ପ୍ରାଚୀନକୀର୍ତ୍ତି ରହିଛି ।

(୪) ସୁରବର ପାଟଣା—ଶ୍ରୀରଙ୍ଗପତ୍ତନକୁ ହିଁ କବି ସୁରବର ପାଟଣା ରୂପେ ଲେଖି ଯାଇଛନ୍ତି । ସୁରବର ହେଉଛନ୍ତି ବିଷ୍ଣୁ ବା ଶ୍ରୀରଙ୍ଗ, ସଂସ୍କୃତ ପତ୍ତନ ଶବ୍ଦ ଓଡ଼ିଆରେ ପାଟଣା ହୋଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଦକ୍ଷିଣରେ ଦୁଇଟି ଶ୍ରୀରଙ୍ଗପତ୍ତନ ଅଛି । ଗୋଟିଏ ମହୀଶୂର ନଗର ନିକଟରେ ଓ ଅନ୍ୟଟି ତ୍ରିଚିନାପଲ୍ଲୀ ନଗର ନିକଟରେ ଅବସ୍ଥିତ । ଉଭୟ କାବେରୀ ନଦୀର ଚଡ଼ା ବା ଦ୍ୱୀପରେ ଅବସ୍ଥିତ ଏବଂ ଉଭୟରେ ଶେଷଶାୟୀ ବିଷ୍ଣୁଙ୍କ ମନ୍ଦିର ରହିଛି । ତ୍ରିଚିନାପଲ୍ଲୀ ନିକଟର ଶ୍ରୀରଙ୍ଗମ୍‌ରେ ଯେଉଁ ଶେଷଶାୟୀ ବା ପଦ୍ମନାଭ ମନ୍ଦିର ଅଛି, ସାରଳା ଦାସ ତାକୁ ପଦ୍ମନାଭ ପର୍ବତ ରୂପେ ବର୍ଣ୍ଣନା କରିଥିବା କଥା ପୂର୍ବ ପ୍ରବନ୍ଧରେ ଆଲୋଚିତ ହୋଇଛି । ଏଠାରେ ମହୀଶୂରର ସ୍ଥାନମାନଙ୍କ ସହିତ

ସୁରବରପାଟଣାର ଉଲ୍ଲେଖ କରାଯାଇଥିବାରୁ ଏହାକୁ ମହୀଶୂର ନିକଟର ଶ୍ରୀରଙ୍ଗପତ୍ତନ ବୋଲି ହିଁ ବୁଝିବାକୁ ହେବ । ସାରଳା ଦାସ ଦୁଇଟିଯାକ ଶ୍ରୀରଙ୍ଗପତ୍ତନର ନାମ ଓ ଅବସ୍ଥିତି ଜାଣିଥିଲେ ।

(୮) ମୌଳାବତୀ ନଗ୍ର—ଯେତେଦୂର ସମ୍ଭବ ଏହା ମହୀଶୂର ନଗରର ନାମ, କିନ୍ତୁ ମହୀଶୂରକୁ ମୌଳାବତୀ କୁହାଯାଉଥିବାର ପ୍ରମାଣ ମୁଁ କୌଣସି ଉପାଦାନରୁ ପାଇନାହିଁ । ସାରଳା ଦାସଙ୍କ ସମୟର ଓଡ଼ିଆମାନେ ହୁଏତ ମହୀଶୂରକୁ ଏହି ନାମରେ ଆଖ୍ୟାତ କରୁଥିଲେ ।

ପଶ୍ଚିମ ଉପକୂଳର ସ୍ଥାନମାନ ବର୍ଣ୍ଣନା କଲାବେଳେ କବି ଆଉ କେତେକ ଦକ୍ଷିଣାଞ୍ଚଳର ନାମ ମଧ୍ୟ ଲେଖିଛନ୍ତି । ସେମାନଙ୍କ ମଧ୍ୟରୁ ନିମ୍ନୋକ୍ତ ତିନୋଟି ନାମ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ବୃନ୍ଦାହୋଳ ଭୃରୁପର ଅବନ୍ତ୍ୟାଦିପୁରୀ
ସମସ୍ତ ଦେଖିଲୁଁ ନାଥ ତନ୍ନତନ୍ନ କରି । ବିରାଟ, ପୃ. ୮୮

(୯) ବୃନ୍ଦାହୋଳ—ଏହା ତାମିଲ୍ ବୀରଧୂଲର ଓଡ଼ିଆ ରୂପ । ୧୩୧୧ ଖ୍ରୀଷ୍ଟାବ୍ଦରେ ମାଲିକ କାଫରର ପାଣ୍ଡ୍ୟରାଜ୍ୟ ଆକ୍ରମଣ କଲାବେଳେ ଏହା ପାଣ୍ଡ୍ୟମାନଙ୍କ ରାଜଧାନୀ ଥିଲା । ଏହା ତ୍ରିଚିନାପଲ୍ଲୀ ନିକଟରେ ଅବସ୍ଥିତ ଥିଲା ବୋଲି ପଣ୍ଡିତମାନେ ସ୍ଥିର କରିଛନ୍ତି (The Delhi Sultanate, ଭାରତୀୟ ବିଦ୍ୟାଭବନ, ପୃ. ୩୫, ୩୭, ୫୧) । ସାରଳା ଦାସ ପାଣ୍ଡ୍ୟମାନଙ୍କ ସମ୍ବନ୍ଧରେ ବହୁ କଥା ଜାଣିଥିଲେ । ସେ ପାଣ୍ଡ୍ୟମାନଙ୍କ ପୁରାତନ ରାଜଧାନୀ ମଦୁରାକୁ ପାଣ୍ଡବନଗର ବୋଲି ବର୍ଣ୍ଣନା କରିଥିବା କଥା ଆଗରୁ ଆଲୋଚନା କରାଯାଇଛି । ପରେ ପ୍ରଦର୍ଶିତ ହେବ ଯେ ମୁସଲମାନ୍ ରାଜତ୍ୱକାଳର କେତେକ ପାଣ୍ଡ୍ୟରାଜାଙ୍କ ନାମ ମଧ୍ୟ ସେ ଜାଣିଥିଲେ ।

(୨) ଭୃରୁପର—ଭୃଗୁପୁରୀର ଏହା ନିତାନ୍ତ ବିକୃତ ରୂପ । ଲେଖନକାର କିମ୍ବା ମୁଦ୍ରାକରଙ୍କ ପ୍ରମାଦ ହେତୁରୁ ଏହି ଭୌଗୋଳିକ ନାମଟିର ଏପରି ବିକୃତି ଘଟିଛି । ଭୃଗୁପୁରୀ ବା ଭୃଗୁକଚ୍ଛ ଗୁଜରାଟର ଗୋଟିଏ ପ୍ରଧାନ ବନ୍ଦର ରୂପେ ଯୁଗେ ଯୁଗେ ରହିଆସିଛି । ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀର ଗ୍ରୀକ୍ ଭୌଗୋଳିକ ଟଲେମୀ ଏହାକୁ ବାରିଗାଜା ନାମରେ ତାଙ୍କ ଭୂଗୋଳରେ ଲେଖିଯାଇଛନ୍ତି । କାଳକ୍ରମେ ଭୃଗୁକଚ୍ଛ ଭରୋଚ୍ ରୂପେ ଉଚ୍ଚାରିତ ହେଲା (Cunningham's Ancient Geography of India, edited by S. N. Mazumdar, 1924, pp, 371-72) । ପରେ ଇଂରେଜମାନଙ୍କ ଅମଳରେ ଏହା ବ୍ରୋଚ୍‌ରେ ପରିଣତ ହେଲା । ବ୍ରୋଚ୍ ବର୍ତ୍ତମାନ ମଧ୍ୟ ଗୋଟିଏ ସୁବିଖ୍ୟାତ ସହର ଓ ବାଣିଜ୍ୟ ସ୍ଥଳ । ଏହାର ଆଖପାଖ ଅଞ୍ଚଳ ମଧ୍ୟ ବ୍ରୋଚ୍ ଜିଲ୍ଲା ନାମରେ ଖ୍ୟାତ ।

ଟ୍ରୋଟ୍‌ରେ ଅଳ୍ପଦିନ ତଳେ ପ୍ରବଳ ଭୂମିକମ୍ପ ହୋଇଥିବାରୁ ସର୍ବଜନବିଦିତ ହୋଇପଡ଼ିଛି ।

(୩) ଅବନ୍ତୀପୂଣ୍ଡ—ପ୍ରାଚୀନ ମାଳବ ତିନୋଟି ଭାଗରେ ବିଭକ୍ତ ହୋଇଥିଲା ଯଥା—ଦଶାର୍ଣ୍ଣ, ଅବନ୍ତୀ ଓ ଦିଶପୁର ଏବଂ ଏମାନଙ୍କ ରାଜଧାନୀ ଯଥାକ୍ରମେ ବିଦିଶା, ଉଜ୍ଜୟିନୀ ଓ ମାନ୍ଦାସୋର ଥିଲା । ମାତ୍ର ସମସ୍ତ ସମୟରେ ଅବନ୍ତୀ ମାଳବର ସର୍ବାଞ୍ଚଳ ଅଧିକାର କରିଥିଲା । ବୁଦ୍ଧଙ୍କ ସମୟରେ ଷୋଡ଼ଶ ମହାଜନପଦ ବା ରାଜ୍ୟ ମଧ୍ୟରେ ଅବନ୍ତୀ ଗୋଟିଏ ପ୍ରଧାନ ରାଜ୍ୟ ଥିଲା । ମହାକବି କାଳିଦାସଙ୍କର ଏହା ଅତ୍ୟନ୍ତ ପ୍ରିୟ ଅଞ୍ଚଳ ଥିଲା ଓ ଏହି ଅଞ୍ଚଳର କ୍ଷୁଦ୍ର କ୍ଷୁଦ୍ର ନଦୀମାନଙ୍କ ନାମ ମଧ୍ୟ ସେ ଲେଖିଯାଇଛନ୍ତି । ସେ ମେଘଦୂତରେ ଅବନ୍ତୀର ନାମ ଉଲ୍ଲେଖ କରିଛନ୍ତି—

ପ୍ରାପ୍ୟାବନ୍ତୀମୁଦୟନକଥାକୋବିଦଗ୍ରାମବୃଦ୍ଧାନ୍ ।

ଯେଉଁ ଉଦୟନ କଥାକୁ ଅବନ୍ତୀର ଗ୍ରାମବୃଦ୍ଧମାନେ ଜାଣିଥିଲେ, ପାଠକ-ମାନଙ୍କ କୌତୂହଳ ନିବାରଣ ପାଇଁ ତାହା ସଂକ୍ଷେପତଃ ନିମ୍ନରେ ଦିଆଗଲା ।

ବୁଦ୍ଧଙ୍କ ସମୟରେ ବତ୍ସଦେଶ (ଏଲାହାବାଦ୍ ଅଞ୍ଚଳ)ର ରାଜା ଉଦୟନ ଓ ଅବନ୍ତୀ ଦେଶର ରାଜା ଚଣ୍ଡପ୍ରଦ୍ୟୋତଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଉଥିଲା । ଥରେ ଉଦୟନ ଯୁଦ୍ଧରେ ହାରିଯାଇ ବନ୍ଦୀ ରୂପେ ଅବନ୍ତୀର ରାଜଧାନୀ ଉଜ୍ଜୟିନୀକୁ ଆନୀତ ହେଲେ । ସେଠାରେ ପ୍ରଦ୍ୟୋତଙ୍କ ରୂପସୀ କନ୍ୟା ବାସବଦତ୍ତା ତାଙ୍କଠାରୁ ହସ୍ତୀବିଦ୍ୟା ଶିକ୍ଷା କରୁଥିବାବେଳେ ଉଭୟେ ଉଭୟଙ୍କ ପ୍ରେମରେ ପଡ଼ିଲେ ଏବଂ ହସ୍ତୀପୃଷ୍ଠରେ ଗୋପନରେ ପଳାୟନ କରିବାକୁ ସ୍ଥିର କଲେ । ତାହା ହିଁ ହେଲା; ମାତ୍ର ପ୍ରଦ୍ୟୋତ ସେମାନଙ୍କ ପଳାୟନ କଥା ଜାଣିବା ମାତ୍ରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ସେମାନଙ୍କୁ ବାନ୍ଧି ଆଣିବାପାଇଁ ସୈନ୍ୟମାନଙ୍କୁ ପଠାଇଦେଲେ । ଏପରି ଯେ ଘଟିବ ବୁଦ୍ଧିମତୀ ବାସବଦତ୍ତା ଏହା ଆଗରୁ ଅନୁମାନ କରିଥିଲେ ଓ ପ୍ରତିକାର-ସ୍ୱରୂପ ସଙ୍ଗରେ କେତେଗୁଡ଼ିଏ ସ୍ୱର୍ଣ୍ଣମୁଦ୍ରା ଥଳି ନେଇ ଯାଇଥିଲେ । ସୈନ୍ୟମାନେ ସେମାନଙ୍କ ନିକଟରେ ପହଞ୍ଚିବା ମାତ୍ରେ ସେ ହସ୍ତୀପୃଷ୍ଠରୁ ସ୍ୱର୍ଣ୍ଣମୁଦ୍ରା ବିଞ୍ଚିବାକୁ ଲାଗିଲେ । ସୈନ୍ୟମାନେ ଏହି ମୁଦ୍ରା ଗୋଟାଇବାରେ ବ୍ୟସ୍ତ ଥିବାବେଳେ ଉଦୟନ ଓ ବାସବଦତ୍ତା ବତ୍ସରାଜ୍ୟର ସୀମାରେ ପହଞ୍ଚି ଯାଇଥିଲେ । ପ୍ରଦ୍ୟୋତ ଆଉ କଅଣ କରନ୍ତେ ? ଶେଷରେ କନ୍ୟାଟିକୁ ଉଦୟନଙ୍କୁ ବିବାହ ଦେଲେ ।

ଏହାହିଁ ଉଦୟନ କଥା । ଏହା ଏକାଧିକ ସଂସ୍କୃତ ନାଟକର କଥାବସ୍ତୁ ହୋଇଛି । ଖ୍ରୀଷ୍ଟାବ୍ଦ ପଞ୍ଚମ ଶତାବ୍ଦୀର କବି କାଳିଦାସ ଏ କଥାକୁ ଅବନ୍ତୀର ଗ୍ରାମ ବୃଦ୍ଧମାନେ ଜାଣିଥିଲେ ବୋଲି ଲେଖିଛନ୍ତି, କିନ୍ତୁ ଏହାର ବହୁ ପୂର୍ବରୁ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମଧ୍ୟ ଓଡ଼ିଶାର ଲୋକେ ଏ ଗଳ୍ପକୁ ଜାଣିଥିଲେ । ଏହାର

ପ୍ରମାଣ ଭୁବନେଶ୍ୱର ନିକଟ ଉଦୟଗିରିର ଗଣେଶ ଗୁମ୍ଫାରେ ରହିଛି । ଏ ଗୁମ୍ଫାର ବାହାର କାନ୍ଥରେ ଖୋଦିତ ଗୋଟିଏ ଚକ୍ରରେ ଗୋଟିଏ ହସ୍ତୀରେ ଜଣେ ପୁରୁଷ ଓ ଜଣେ ସ୍ତ୍ରୀ ବସିଛନ୍ତି । ସ୍ତ୍ରୀଟି ଥଳିରୁ ମୁଦ୍ରାମାନ ବାଣ୍ଟୁଛି ଓ ଅନୁଧାବନ କରୁଥିବା ଢାଲ ତରବାରିଧାରୀ ସୈନ୍ୟମାନେ ସେହି ମୁଦ୍ରାମାନଙ୍କୁ ଗୋଟାଇବାରେ ବ୍ୟସ୍ତ ଅଛନ୍ତି ।

ପୂର୍ବ ପ୍ରବନ୍ଧମାନଙ୍କରେ ସାରଳା ଦାସଙ୍କ ବର୍ଣ୍ଣିତ ଦକ୍ଷିଣାଞ୍ଚଳର ବହୁ ଭୌଗୋଳିକ ନାମର ଆଲୋଚନା କରାଯାଇଛି । ଏଠାରେ ପୁନରାବୃତ୍ତି ଅନାବଶ୍ୟକ । କବି ଦକ୍ଷିଣାଞ୍ଚଳର ଭୂଗୋଳ ଯେତେ ପରିମାଣରେ ଜାଣିଥିଲେ, ତାଙ୍କ ପରେ ଓଡ଼ିଶାର ଅନ୍ୟ କେହି ସେତେ ପରିମାଣରେ ତାହା ଜାଣିଛନ୍ତି ବୋଲି ମନେହୁଏ ନାହିଁ । ସେ ଭୌଗୋଳିକ ସ୍ଥାନମାନଙ୍କର ମୁସଲମାନୀ ନାମଗୁଡ଼ିକ ତାଙ୍କ ଗ୍ରନ୍ଥରେ ସ୍ଥାନ ଦେଇନାହାନ୍ତି । ଯଦିବା କେବେ କଦାଚିତ ସେ ସେଥିମଧ୍ୟରୁ କୌଣସି ନାମକୁ ଉଲ୍ଲେଖ କରିଛନ୍ତି, ତେବେ ତାକୁ ପରିବର୍ତ୍ତିତ ଆକାରରେ ପ୍ରକାଶ କରିଛନ୍ତି । କପିଳେଶ୍ୱର ଗଜପତି ୧୪୬୧ ଖ୍ରୀଷ୍ଟାବ୍ଦରେ ବାହାମନି ରାଜ୍ୟର ରାଜଧାନୀକୁ ଅଭିଯାନ ଚଳାଇବା ପରେ କଲବର୍ଗେଶ୍ୱର ଉପାଧି ଧାରଣ କରିଥିଲେ । ବାହାମନି ରାଜ୍ୟର ପୁରାତନ ରାଜଧାନୀର ନାମ ଥିଲା ଗୁଲ୍‌ବର୍ଗ । ଏହିଥିରୁ ହିଁ ଓଡ଼ିଆରେ କଲବର୍ଗ ନାମଟିର ସୃଷ୍ଟି ହୋଇଥିଲା । ସାରଳା ଦାସ କଲବର୍ଗ ନାମଟିକୁ ଆହୁରି ଟିକିଏ ବଦଳାଇ ଦେଇ କାଳବର କରିଛନ୍ତି ଏବଂ ଭୀମ ଶିବପୁରରେ ରାଜା ହୋଇଥିବାବେଳେ ତାଙ୍କୁ ଥଟ୍ଟାରେ କାଳବର-ଚକ୍ରବର୍ତ୍ତୀ ବୋଲି ବର୍ଣ୍ଣନା କରିଛନ୍ତି—

ବସ୍ତୁକର ପଣ୍ଡା ଏହି ରାଜ୍ୟେ ମହାମନ୍ତ୍ରୀ
ଭୀମସେନ କାଳବର ନାମେ ଚକ୍ରବର୍ତ୍ତୀ ।
× × ×
ଆହେ ଦେବ କାଳବର ବୀର ଚକ୍ରବର୍ତ୍ତୀ
ପଶ୍ଚିମ ସୋମରାଷ୍ଟ୍ରର ବିପ୍ର ଆସିଛନ୍ତି ।

ଅଳ୍ପ ଅଧିକାର ପାଇ ଯଦି କେହି ବଡ଼ିମା ଦେଖାଏ, ତେବେ ଲୋକେ କହନ୍ତି ଯେ, ସେ ଦିଲ୍ଲୀର ବାଦ୍‌ସାହା ହୋଇଗଲାଣି । ଭୀମ କ୍ଷୁଦ୍ର ରାଜ୍ୟ ଶିବପୁରରେ ରାଜା ହୋଇ ସେହିପରି ବଡ଼ିମା ଦେଖାଇବାରୁ ସାରଳା ଦାସ ତାଙ୍କୁ କାଳବର ଚକ୍ରବର୍ତ୍ତୀ (ବାହାମନୀ ସୁଲତାନ୍ ଅଥବା କଲବର୍ଗଜୟୀ କପିଳେଶ୍ୱର ଗଜପତି) ସଙ୍ଗେ ତୁଳନା କରି ଥଟ୍ଟା କରିଛନ୍ତି ।

———

# ଏକାଦଶ ପରିଚ୍ଛେଦ

## ମୁସଲମାନ ରାଜତ୍ୱ କାଳର କେତେକ ଐତିହାସିକ ତଥ୍ୟ

କବିଙ୍କ ଜନ୍ମ ପୂର୍ବେ ମୁସଲ୍‌ମାନ୍ ରାଜତ୍ୱ କାଳରେ ଦୁଇଟି ଯୁଗାନ୍ତକାରୀ ଘଟନା ଘଟିଯାଇଥିଲା । ପ୍ରଥମ ଘଟନାଟି ହେଉଛି ଦ୍ୱାଦଶ ଶତାବ୍ଦୀର ଶେଷ ଦଶନ୍ଧିରେ ମହମ୍ମଦ ଘୋରୀଙ୍କ ଭାରତ ଆକ୍ରମଣ ଓ ଉତ୍ତର ଭାରତର ମୁସଲମାନ ସାମ୍ରାଜ୍ୟ ସଂସ୍ଥାପନ । ଦ୍ୱିତୀୟ ଘଟନାଟି ହେଉଛି ଖ୍ରୀ: ୧୨୯୮ରୁ ଖ୍ରୀ: ୧୩୧୩ ମଧ୍ୟରେ ଆଲ୍ଲାଉଦ୍ଦିନ ଖିଲ୍‌ଜୀଙ୍କ ଦ୍ୱାରା ଗୁଜୁରାଟ, ଦାକ୍ଷିଣାତ୍ୟ (Deccan) ଓ ଦକ୍ଷିଣକୁ ମୁସଲ୍‌ମାନ ସାମ୍ରାଜ୍ୟର ସଂପ୍ରସାରଣ । ପ୍ରଥମ ଘଟନାଟି କବିଙ୍କ ସମୟ ଠାରୁ ବେଶୀ ଦୂରବର୍ତ୍ତୀ; ଏଣୁ ତତ୍‌ସହିତ ସଂଶ୍ଳିଷ୍ଟ କିମ୍ବଦନ୍ତୀ ମୂଳକ ଇତିହାସ ଅସ୍ପଷ୍ଟ ହୋଇ ସାରିଥିଲା । ଦ୍ୱିତୀୟ ଘଟନାଟି ଅପେକ୍ଷାକୃତ କମ ପ୍ରାଚୀନ; ଏଣୁ ତତ୍‌ସହିତ ସଂଶ୍ଳିଷ୍ଟ କିମ୍ବଦନ୍ତୀ ମୂଳକ ଇତିହାସ କବିଙ୍କ ସମୟରେ ବେଶୀ ଭାବରେ ପ୍ରଚଳିତ ଥିଲା । କହିବା ବାହୁଲ୍ୟ ଯେ ପ୍ରାଚୀନ କାଳରେ ଓଡ଼ିଶାରେ କାହିଁକି, ଭାରତରେ ମଧ୍ୟ ଇତିହାସ ଲେଖିବା ପ୍ରଥା ପ୍ରଚଳିତ ନ ଥିଲା । କିମ୍ବଦନ୍ତୀ ମୂଳକ ଇତିହାସ ଯେ ଭିନ୍ନ ରୂପ ଧାରଣ କରେ, ଏ କଥା କହିବା ମଧ୍ୟ ଅନାବଶ୍ୟକ । ସାରଳା ମହାଭାରତର ସଭାପର୍ବରେ ଥିବା ରାଜସୂୟ ଯଜ୍ଞ ପାଇଁ ପାଣ୍ଡବମାନଙ୍କ ଦିଗ୍‌ବିଜୟ ସମ୍ବନ୍ଧୀୟ ଆଖ୍ୟାୟିକାମାନ ସମ୍ପୂର୍ଣ୍ଣ ଅଭିନବ । ସଂସ୍କୃତ ସଭାପର୍ବ ସହିତ ଏ ଆଖ୍ୟାୟିକାମାନଙ୍କର କୌଣସି ପ୍ରକାର ମେଳ ନାହିଁ । ଏହି ଆଖ୍ୟାୟିକାମାନଙ୍କ ମଧ୍ୟରେ ହିଁ ସାରଳା ଦାସ ତାଙ୍କ ସମୟର କିମ୍ବଦନ୍ତୀମୂଳକ ଇତିହାସ ବେଶୀ ଭାବରେ ଲେଖି ଯାଇଛନ୍ତି । ପୂର୍ବ ପ୍ରବନ୍ଧମାନଙ୍କରେ ଏହି ଆଖ୍ୟାୟିକାମାନଙ୍କ ମଧ୍ୟରୁ କେତେକର ଆଲୋଚନା କରାଯାଇଛି । ଏଠାରେ ଆଲ୍ଲାଉଦ୍ଦିନ୍ ଖିଲ୍‌ଜୀଙ୍କ ଅଥବା ତାଙ୍କ ସେନାପତି ମାଲିକ୍ କାଫୁରଙ୍କ ସଙ୍ଗରେ ଯେଉଁ ଯେଉଁ ରାଜାମାନଙ୍କ ଯୁଦ୍ଧ ହୋଇଥିଲା, ସେମାନଙ୍କ ବିଷୟ କିପରି ସଭାପର୍ବରେ ଉଲ୍ଲେଖ କରାଯାଇଛି, ତାହା ଏ ଆଲୋଚନାରୁ ସହଜରେ ଜଣାପଡ଼ିବ ।

(୧) ଆଖ୍ୟାୟିକା—କର୍ଣ୍ଣକେଶରୀ ଓ ରାମଚନ୍ଦ୍ର ରାଜାଙ୍କୁ ନିମନ୍ତ୍ରଣ । ସଭା, ପୃ-୯୧-୯୪

(କ) ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ, କର୍ଣ୍ଣକେଶରୀ ହେଉଛନ୍ତି ପଶ୍ଚିମଦିଗର କନ୍ୟକା ଦେଶର ରାଜା । ଦେଶରେ ମଳୟ ବସନ୍ତ ପର୍ବତ ଅଛି । ରାଜସୂୟ ଯଜ୍ଞ ପାଇଁ ରାଜାମାନଙ୍କୁ ନିମନ୍ତ୍ରଣ କରି କରି ଭୀମ ସସୈନ୍ୟ ଏ ଦେଶରେ ପ୍ରବେଶ କରିବାରୁ କର୍ଣ୍ଣକେଶରୀଙ୍କ ସହିତ ତାଙ୍କର ଯୁଦ୍ଧ ହେଲା; କିନ୍ତୁ ପରେ ରାଜା ଭୀମଙ୍କ ବଶ୍ୟତା ସ୍ୱୀକାର କରି ନିମନ୍ତ୍ରଣ ଗ୍ରହଣ କଲେ ।

ଆଲ୍ଲାଉଦ୍ଦିନ୍ ଖିଲଜୀ ଗୁଜୁରାଟର ସୋଲଙ୍କି ବା ବାଘେଲ ବଂଶର ରାଜା ତୃତୀୟ କର୍ଣ୍ଣଦେବଙ୍କୁ ପରାସ୍ତ କରି ଗୁଜୁରାଟ ଅଧିକାର କରିଥିଲେ ଓ ଗୁଜରାଟର ରାଣୀ କମଳାଦେବୀଙ୍କୁ ତାଙ୍କ ଅନ୍ତଃପୁରବାସିନୀ କରିଥିଲେ । ମୁସଲମାନ୍ ଇତିହାସରେ ଏ ରାଜାଙ୍କ ନାମ ରାଯ୍ କରନ୍ ବୋଲି ଲେଖା ଅଛି; କିନ୍ତୁ ହିନ୍ଦୁମାନଙ୍କ ତାମ୍ର-ଶିଳାଲେଖରୁ ନିଶ୍ଚିତ ଭାବରେ ଜଣାଯାଇଛି ଯେ ଏହାଙ୍କ ନାମ ଥିଲା କର୍ଣ୍ଣଦେବ । ଏହି କର୍ଣ୍ଣଦେବଙ୍କୁ ସାରଳା ଦାସ କର୍ଣ୍ଣକେଶରୀ ନାମରେ ଉଲ୍ଲେଖ କରିଛନ୍ତି । କବି ଯେଉଁଠାରୁ ଯାହା ଆଣିଛନ୍ତି, ତାକୁ ଟିକିଏ ବଦଳାଇ ତାଙ୍କ ଗ୍ରନ୍ଥରେ ସ୍ଥାନ ଦେଇଛନ୍ତି । କର୍ଣ୍ଣକେଶରୀଙ୍କ ରାଜ୍ୟ ପଶ୍ଚିମ ଦିଗରେ ଅବସ୍ଥିତ ଥିଲା ବୋଲି କବିଙ୍କ ବର୍ଣ୍ଣନାରେ ଯାହା ଅଛି, ତାହା ସତ୍ୟ; କାରଣ ଗୁଜରାଟ ପଶ୍ଚିମ ଦିଗରେ ଅବସ୍ଥିତ । କିନ୍ତୁ ଗୁଜରାଟର ଅନ୍ୟତମ ନାମ କନ୍ୟକା ଥିବାର ପ୍ରମାଣ କୌଣସି ଉପାଦାନରେ ମିଳେନାହିଁ । କନ୍ୟାକୁମାରୀ ଯେଉଁ ଅଞ୍ଚଳରେ ଅବସ୍ଥିତ ତାକୁ କନ୍ୟକା ଦେଶ ବୋଲି କୁହାଯାଇପାରେ । ଏହି ଅଞ୍ଚଳରେ କବିବର୍ଣ୍ଣିତ ମଳୟବସନ୍ତ ବା ମଳୟ ପର୍ବତ ମଧ୍ୟ ଅବସ୍ଥିତ ଅଛି । କର୍ଣ୍ଣଦେବଙ୍କ ରାଜ୍ୟର ନାମ ସମ୍ବନ୍ଧରେ ସାରଳା ଦାସ ଯାହା ଶୁଣିଥିଲେ, ତାହା କେତେକାଂଶରେ ଭ୍ରମାତ୍ମକ ବୋଲି ଜଣାପଡ଼ୁଛି ।

(ଖ) ଭୀମ କର୍ଣ୍ଣକେଶରୀଙ୍କ ରାଜ୍ୟରୁ ଯେଉଁ ରାଜ୍ୟକୁ ଗଲେ ତା'ର ନାମ ଥିଲା କର୍ଣ୍ଣାଟ ଓ ସେ ରାଜ୍ୟର ରାଜାଙ୍କ ନାମ ଥିଲା ରାମଚନ୍ଦ୍ର । ଏ ରାଜା ଅତ୍ୟନ୍ତ ଧନଶାଳୀ ଥିଲେ । ରାଜା ରାମଚନ୍ଦ୍ର ଥରେ ଜରାପୁରରେ ବନ୍ଦୀ ହୋଇ ରହିଥିବା କଥା ଭୀମଙ୍କ ଠାରେ ପ୍ରକାଶ କରିଥିଲେ । ରାଜା ଭୀମଙ୍କ ସଙ୍ଗେ ଯୁଦ୍ଧ ନ କରି ରାଜସୂୟ ଯଜ୍ଞକୁ ଯିବା ପାଇଁ ଅଙ୍ଗୀକାର କଲେ ।

କାରାରେ ଶାସନକର୍ତ୍ତା ଥିବାବେଳେ ଆଲ୍ଲାଉଦ୍ଦିନ ଖିଲଜୀ ଚନ୍ଦେରୀ ଓ ଏଲିଚପୁର ମଧ୍ୟଦେଇ ହଠାତ୍ ଦେବଗିରି ରାଜ୍ୟ ଆକ୍ରମଣ କରି ଯାଦବବଂଶୀୟ ରାଜା

ରାମଚନ୍ଦ୍ରଙ୍କୁ ପରାସ୍ତ କରିଥିଲେ । ଦେବଗିରିରୁ ସେ ଯେଉଁ ବିପୁଳ ଧନରତ୍ନ ପାଇଥିଲେ, ତାହାର ସାହାଯ୍ୟରେ ହିଁ ସେ ଦିଲ୍ଲୀର ମୁଖ୍ୟ ଅମାତ୍ୟମାନଙ୍କୁ ସନ୍ତୁଷ୍ଟ କରି ଅବାଧରେ ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ । ରାଜା ରାମଚନ୍ଦ୍ର ପରେ ସ୍ୱାଧୀନତା ଫେରି ପାଇବା ପାଇଁ ଚେଷ୍ଟା କରିଥିଲେ । ଏହା ଜାଣିପାରି ଆଲ୍ଲାଉଦ୍ଦିନ ୧୩୦୭ ଖ୍ରୀଷ୍ଟାବ୍ଦରେ ତାଙ୍କ ସେନାପତି ମାଲିକ କାଫୁରଙ୍କୁ ଦେବଗିରିକୁ ପଠାଇ ଥିଲେ । କାଫୁର ରାମଚନ୍ଦ୍ରଙ୍କୁ ସମ୍ପୂର୍ଣ୍ଣ ରୂପେ ପରାଜିତ କରି ତାଙ୍କୁ ବନ୍ଦୀ କରି ଦିଲ୍ଲୀକୁ ଘେନି ଆସିଥିଲେ । ରାମଚନ୍ଦ୍ର ଦିଲ୍ଲୀରେ ଛ'ମାସ ରହିବା ପରେ ଆଲ୍ଲାଉଦ୍ଦିନ୍ ଖିଲ୍‌ଜିଙ୍କ ସମ୍ପୂର୍ଣ୍ଣ ବଶ୍ୟତା ସ୍ୱୀକାର କରି ତାଙ୍କ କରଦ ରାଜା ରୂପେ ରହିବା ପାଇଁ ଅଙ୍ଗୀକାର କରିବାରୁ ତାଙ୍କୁ ମୁକ୍ତ ଦିଆଯାଇଥିଲା ।

ଏ ଆଖ୍ୟାୟିକାରେ କେତୋଟି ନିର୍ଦ୍ଦିଷ୍ଟ ଐତିହାସିକ କଥା ରହିଛି । ରାଜା ରାମଚନ୍ଦ୍ର ଅତ୍ୟନ୍ତ ଧନଶାଳୀ ଥିବା କଥା ଓ ସେ ଜଗିପୁରରେ ( କଳିଯୁଗର ଜରାସନ୍ଧ ଆଲ୍ଲାଉଦ୍ଦିନ ଖିଲ୍‌ଜିଙ୍କ ଘରେ ) ବନ୍ଦୀ ଥିବା ଐତିହାସିକ ସତ୍ୟ ଉପରେ ପ୍ରତିଷ୍ଠିତ; କିନ୍ତୁ ରାମଚନ୍ଦ୍ର ଯେଉଁ ରାଜ୍ୟରେ ରାଜତ୍ୱ କରୁଥିଲେ ତାହାର ନାମ କର୍ଣ୍ଣାଟ ନ ଥିଲା । ଯାଦବ ରାଜ୍ୟ ସେଉଣ ରାଜ୍ୟ ବା ଦେବଗିରି ରାଜ୍ୟ ନାମରେ ଅଭିହିତ ହେଉଥିଲା । ଯେଉଁ ଅଞ୍ଚଳରେ ବର୍ତ୍ତମାନ କାନାଡ଼ୀ ଭାଷା ପ୍ରଚଳିତ ଅଛି, ସେହି ମହୀଶୂର ଅଞ୍ଚଳ ହିଁ କର୍ଣ୍ଣାଟ ନାମରେ ଅଭିହିତ ହେଉଥିଲା । କର୍ଣ୍ଣାଟର କେତେକ ଅଞ୍ଚଳ ଯାଦବ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ସେଥିପାଇଁ ହୁଏତ କବି ତାକୁ କର୍ଣ୍ଣାଟ ନାମରେ ଅଭିହିତ କରିଛନ୍ତି । ଓଡ଼ିଶାରେ ତଥା ଭାରତରେ କର୍ଣ୍ଣାଟ ନାମଟି ବ୍ୟାପକ ଅର୍ଥରେ ବ୍ୟବହୃତ ହୋଇ ସମୟ ସମୟରେ ସମଗ୍ର ଦକ୍ଷିଣାଞ୍ଚଳକୁ ସୂଚାଉଥିଲା । ଗଜପତି କପିଳେଶ୍ୱର ବିଜୟନଗର ସାମ୍ରାଜ୍ୟର ବହୁ ତେଲୁଗୁଭାଷୀ ଓ ତାମିଲ୍‌ଭାଷୀ ଅଞ୍ଚଳ ଜୟ କରିଥିଲେ ହେଁ ମହୀଶୂରର (କର୍ଣ୍ଣାଟର) କୌଣସି କାନାଡ଼ୀଭାଷୀ ଅଞ୍ଚଳ ଦଖଲ କରି ନ ଥିଲେ । ଅଥଚ ସେ ନବକୋଟି କର୍ଣ୍ଣାଟ-କଲବର୍ଗେଶ୍ୱର ଉପାଧି ଧାରଣ କରିଥିଲେ । ଏଣୁ ଜଣାଯାଏ ଯେ କର୍ଣ୍ଣାଟ କହିଲେ ଓଡ଼ିଶାର ଲୋକେ ସମଗ୍ର ଦକ୍ଷିଣାଞ୍ଚଳକୁ ବୁଝୁଥିଲେ । ଆଜିକାଲି ସୁଦ୍ଧା ଓଡ଼ିଶା ତଥା ଭାରତରେ କର୍ଣ୍ଣାଟକ ସଙ୍ଗୀତ କହିଲେ ସମଗ୍ର ଦକ୍ଷିଣାଞ୍ଚଳର ସଙ୍ଗୀତକୁ ବୁଝାଏ ।

(୨) ଆଖ୍ୟାୟିକା—ଶିବରାଜା ଓ ଅମ୍ବର ରାଜାଙ୍କୁ ନିମନ୍ତ୍ରଣ, ସଭା, ପୃ-୧୦୦-୧୦୨ ।

(କ) ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ ଭୀମ ରାଜାମାନଙ୍କୁ ନିମନ୍ତ୍ରଣ କରି କରି ମହାରାଷ୍ଟ୍ର ଦେଶରେ ଯାଇ ପହଞ୍ଚିଥିଲେ । ଏ ଦେଶର ରାଜାଙ୍କ ନାମ ଥିଲା

ଶିବ । ସେ ବିନା ଯୁଦ୍ଧରେ ରାଜସୂୟ ଯଜ୍ଞରେ ଯୋଗ ଦେବା ପାଇଁ ସ୍ୱୀକୃତ ହେଲେ ।

ଯାଦବ ରାଜା ରାମଚନ୍ଦ୍ରଙ୍କ ପୁତ୍ରଙ୍କ ନାମ ଥିଲା ଶଙ୍କର ବା ସିଙ୍ଘନ । ଯାଦବମାନେ ମହାରାଷ୍ଟ୍ରୀୟ ଥିଲେ । ପ୍ରାଚୀନ ଯାଦବରାଜ୍ୟର ବହୁ ଅଞ୍ଚଳ ବର୍ତ୍ତମାନ ମହାରାଷ୍ଟ୍ର ରାଜ୍ୟର ଅନ୍ତର୍ଗତ ହୋଇଛି ଓ ମହାରାଷ୍ଟ୍ରର ଏହି ଅଞ୍ଚଳ ମରହଟ୍ଟାୱାଡ଼ା ନାମରେ ଅଭିହିତ ହେଉଛି । ଯାଦବ ରାଜ୍ୟର ରାଜଧାନୀ ଦେବଗିରି (ଦୌଲତାବାଦ) ମହାରାଷ୍ଟ୍ରର ଔରଙ୍ଗାବାଦ୍ ଜିଲାରେ ଅବସ୍ଥିତ । ଏସବୁ କଥା ଅନୁଧ୍ୟାନ କଲେ ମନେହୁଏ ଯେ ସାରଳାଦାସ ଏଠାରେ ଶଙ୍କର ବା ସିଙ୍ଘନ ନାମଟିକୁ ଶିବରେ ପରିଣତ କରିଛନ୍ତି । କବି ବ୍ୟକ୍ତିବାଚକ ଓ ସ୍ଥାନବାଚକ ବହୁ ଶବ୍ଦକୁ ରୂପାନ୍ତରିତ ଭାବରେ ପ୍ରକାଶ କରିଥିବାର ବହୁ ଉଦାହରଣ ପୂର୍ବ ପ୍ରବନ୍ଧମାନଙ୍କରେ ଦିଆଯାଇଛି । ଶଙ୍କର (ସିଙ୍ଘନ) ଦେବ ଜଣେ ସ୍ୱାଧୀନତାକାମୀ ବୀରପୁରୁଷ ଥିଲେ । ଆଲାଉଦ୍ଦିନ ଖିଲ୍‌ଜୀ ଯେତେବେଳେ ପ୍ରଥମଥର ପାଇଁ ଦେବଗିରି ଆକ୍ରମଣ କଲେ, ସେତେବେଳେ ସେ ରାଜଧାନୀରେ ନ ଥିଲେ । ତାଙ୍କ ଅନୁପସ୍ଥିତିରେ ତାଙ୍କ ପିତା ଆଲ୍ଲାଉଦ୍ଦିନଙ୍କ ସହିତ ସନ୍ଧି କରିଥିଲେ, ମାତ୍ର ଶଙ୍କରଦେବ ରାଜଧାନୀକୁ ଫେରିବା ପରେ ଏ ସନ୍ଧିକୁ ନ ମାନି ଆକ୍ରମଣକାରୀଙ୍କ ସଙ୍ଗରେ ଯୁଦ୍ଧ କରିଥିଲେ । ଏ ଯୁଦ୍ଧରେ ମଧ୍ୟ ଯାଦବ-ସୈନ୍ୟମାନେ ପରାଜିତ ହୋଇଯିବାରୁ ଯାଦବରାଜ୍ୟ ବେଶୀ କ୍ଷତିଗ୍ରସ୍ତ ହୋଇଥିଲା । ଶଙ୍କରଦେବ ରାଜା ହେବା ପରେ ଦିଲ୍ଲୀ ସମ୍ରାଟଙ୍କ ପ୍ରାପ୍ୟ କର ବନ୍ଦ କରିଦେଇ ନିଜ ରାଜ୍ୟର ସ୍ୱାଧୀନତା ଘୋଷଣା କରିଥିଲେ । ଅବଶ୍ୟ ଏହାର ଫଳ ଭଲ ହୋଇ ନ ଥିଲା । ଆଲ୍ଲାଉଦ୍ଦିନ ଶଙ୍କରଦେବଙ୍କୁ ପରାସ୍ତ କରି ସମଗ୍ର ଯାଦବ ରାଜ୍ୟକୁ ଦିଲ୍ଲୀ-ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ନେଇଥିଲେ । ଏହିପରି ଭାବରେ ପ୍ରକାଣ୍ଡ ଯାଦବରାଜ୍ୟର ଅସ୍ତିତ୍ୱ ଲୋପ ପାଇଥିଲେ ହେଁ ଶଙ୍କରଦେବ ଯେ ସ୍ୱାଧୀନତା ସଂଗ୍ରାମର ଜଣେ ପ୍ରଧାନ ବୀରପୁରୁଷ ଥିଲେ, ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ ।

(ଖ) ଏହି ଆଖ୍ୟାୟିକାର ଦ୍ୱିତୀୟାର୍ଦ୍ଧରେ ବର୍ଣ୍ଣିତ ହୋଇଛି ଯେ ଶିବରାଜାଙ୍କୁ ନିମନ୍ତ୍ରଣ ଦେବା ପରେ ଭୀମ ଅମ୍ବର ରାଜାଙ୍କୁ ନିମନ୍ତ୍ରଣ ଦେଲେ । ଅମ୍ବର ରାଜାଙ୍କ ରାଜ୍ୟର ନାମ ଅମ୍ବୁଦେଶ ବୋଲି କୁହାଯାଇଛି । ଏ ରାଜା ବିନାଯୁଦ୍ଧରେ ନିମନ୍ତ୍ରଣ ଗ୍ରହଣ କଲେ ।

୧୩୦୩ ଖ୍ରୀଷ୍ଟାବ୍ଦରେ ଆଲାଉଦ୍ଦିନ ଖିଲ୍‌ଜୀ ମେବାଡ଼ର ରାଜଧାନୀ ଚିତୋର ଆକ୍ରମଣ କରିଥିଲେ । ଏହି ସମୟରେ ମେବାଡ଼ର ରାଜା ଥିଲେ ରତନସିଂହ । ଏହାଙ୍କ

ରାଣୀ ପଦ୍ମିନୀଙ୍କୁ ପାଇବା ଆଶାରେ ଆଲାଉଦ୍ଦିନ ଚିତୋର ଆକ୍ରମଣ କରିଥିଲେ ବୋଲି ଯେଉଁ ଗଳ୍ପ ପ୍ରଚଳିତ ଅଛି, ତାହା ଆଧୁନିକ ଐତିହାସିକମାନଙ୍କ ମଧ୍ୟରୁ କେତେକ ଗ୍ରହଣ କରନ୍ତି ଓ କେତେକ କରନ୍ତି ନାହିଁ । ବିଷୟଟି ବିବାଦାସ୍ପଦ ହୋଇ-ରହିଛି । ଯେ ଯାହାହେଉ, ଆଲ୍ଲାଉଦ୍ଦିନ କେବଳ ନାରୀଲୋଭରେ ନୁହେଁ, ରାଜ୍ୟ-ଲୋଭରେ ମଧ୍ୟ ଚିତୋର ଆକ୍ରମଣ କରିଥିଲେ । ଏ ଯୁଦ୍ଧରେ ରାଜପୁତମାନେ ଅସୀମ ବୀରତ୍ୱ ଦେଖାଇ ଅକାତରେ ପ୍ରାଣପାତ କରିଥିଲେ । ଯୁଦ୍ଧ ଚାଲିଥିବାବେଳେ ରାଜପୁତମାନେ ରତନସିଂହଙ୍କୁ ଅପାରଗ ଦେଖି ତାଙ୍କୁ ଗାଦିଚ୍ୟୁତ କରିଥିଲେ ଓ ତାଙ୍କ ଜାଗାରେ ଶିଶୋଦୀୟ ବଂଶର ଲକ୍ଷ୍ମଣ ସିଂହଙ୍କୁ ରାଜା କରିଥିଲେ । ଲକ୍ଷ୍ମଣ ସିଂହ ଯୁଦ୍ଧଭୂମିରେ ନିଜର ସାତଜଣ ପୁତ୍ର ସହ ପ୍ରାଣବଳି ଦେଲେ । ଅଜୟ ସିଂହ ନାମକ କେବଳ ଗୋଟିଏ ମାତ୍ର ପୁତ୍ର ପଳାଇଯାଇ ଅରାବଳୀ ପର୍ବତମାଳାରେ ଲୁଚି ରହିଲେ । ଏହାଙ୍କ ଭାଇଙ୍କ ପୁଅ ହେଉଛନ୍ତି ହମ୍ମିର । ସେ ଆରାବଳୀ ପର୍ବତମାଳାକୁ କେନ୍ଦ୍ର କରି କ୍ରମାଗତ ଭାବରେ ଏପରି ମୁକ୍ତି-ସଂଗ୍ରାମ ଚଳାଇଲେ ଯେ ମେବାଡ଼କୁ ଦିଲ୍ଲୀ ସାମ୍ରାଜ୍ୟ ମଧ୍ୟରେ ରଖିବା ପାଇଁ ଦିଲ୍ଲୀ ସୁଲତାନମାନଙ୍କ ସମସ୍ତ ଚେଷ୍ଟା ବିଫଳ ହୋଇଥିଲା ! ମହମ୍ମଦ ଟୋଗଲକ୍‌ଙ୍କ ରାଜତ୍ୱ ବେଳକୁ ଚିତୋର ସମେତ ମେବାଡ଼ ସମ୍ପୂର୍ଣ୍ଣ ସ୍ୱାଧୀନ ହେଲା । ବସ୍ତୁତଃ ରାଣା ହମ୍ମିର ରାଣା ପ୍ରତାପ ସିଂଙ୍କ ପରି ଜଣେ ଅଦ୍ଭୁତକର୍ମା ବୀରପୁରୁଷ ଥିଲେ । ତାଙ୍କ ସମ୍ବନ୍ଧରେ ବହୁ ବୀରଗାଥା ପ୍ରଚଳିତ ଥିଲା । ସେଥିମଧ୍ୟରୁ କେତେକ ଟଡ୍ ସାହେବଙ୍କ Annals of Rajputana ଗ୍ରନ୍ଥରେ ପ୍ରକାଶିତ ହୋଇଛି । ଏହି ହମ୍ମିର ରାଜାଙ୍କୁ ହିଁ ସାରଳା ଦାସ ଅମ୍ବରରାଜା ରୂପେ ଲେଖିଯାଇଛନ୍ତି । ମୌଳିକ ସାରଳା ମହାଭାରତରେ ଏହି ନାମଟି ଅମ୍ବରରୂପେ ଥିଲା କମ୍ବା ପରେ ଏହି ରୂପ ଧାରଣ କରିଛି, ତାହା କହିବା ସମ୍ଭବପର ନୁହେଁ । ତେବେ ଅନୁମିତ ହୁଏ ଯେ ମୂଳଗ୍ରନ୍ଥରେ ଏହାର ରୂପ ଅମ୍ବିର ରାଜ ବା ହମ୍ବିରରାଜ ଥିଲା । ପରବର୍ତ୍ତୀ କାଳର ବହୁ ଲେଖନକାର, ଅନୁଲେଖକ ଓ ମୁଦ୍ରାକରଙ୍କ ଭ୍ରମ ହେତୁରୁ ଏହା ଅମ୍ବରରାଜରେ ପରିଣତ ହୋଇଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଆଫଗାନିସ୍ତାନର ରାଜାଙ୍କ ଉପାଧିକ ନାମ ହେଉଛି ଅମିର । ଆଫଗାନିସ୍ତାନର ରାଜା ମାହମୁଦ ସତରଥର ଭାରତ ଆକ୍ରମଣ କରିବା ପରେ ଅମିର ନାମଟି ଭାରତରେ ସୁପରିଚିତ ହୋଇଥିଲା, ମାତ୍ର ଉତ୍ତର ଭାରତରେ ଏହାର ଆକାର ହମ୍ମିର ହୋଇଯାଇଥିଲା । ଏହା ଶୌର୍ଯ୍ୟ ଓ ସାହସ ସୂଚକ ନାମ ବୋଲି ବିବେଚିତ ହୋଇଥିବାରୁ ଏକାଧିକ ଭାରତୀୟ ରାଜା ଓ ରାଜପୁତ୍ର ଏହି ନାମ ଧାରଣ କରିଥିଲେ । ଓଡ଼ିଆରେ ଏହି ନାମଟି ହମ୍ବିର ରୂପେ ଉଚ୍ଚାରିତ ହେଉଥିଲା । ସ୍ୱୟଂ ଗଜପତି କପିଳେଶ୍ୱର ତାଙ୍କ ବୀରପୁତ୍ରଙ୍କୁ ( ଜ୍ୟେଷ୍ଠପୁତ୍ରଙ୍କୁ ? ) ହମ୍ବିର ନାମ ଦେଇଥିଲେ ।

(ଗ) ଆଖ୍ୟାୟିକା—ଗଣପତି ଓ ରୁଦ୍ରଦେବ ରାଜାଙ୍କୁ ନିମନ୍ତ୍ରଣ, ସଭା, ପୃ. ୧୦୭-୧୧୧ ।

(କ) ଭୀମ ରାଜସୂୟ ଯଜ୍ଞ ପାଇଁ ରାଜାମାନଙ୍କୁ ନିମନ୍ତ୍ରଣ କରି କରି ନିର୍ଝର ଦେଶରେ ଯାଇ ପହଞ୍ଚିଲେ । ସେ ଦେଶ ରାଜାଙ୍କ ନାମ ଥିଲା ଗଣପତି । ଗଣପତି ବିନା ଯୁଦ୍ଧରେ ନିମନ୍ତ୍ରଣ ଗ୍ରହଣ କଲେ ।

ସାରଳା ମହାଭାରତର ଅନ୍ତତଃ ଦଶଟି ସ୍ଥାନରେ ବର୍ଣ୍ଣିତ ହୋଇଛି ଯେ, ନିର୍ଝର ଦେଶର ରାଜା ହେଉଛନ୍ତି ଗଣପତି । ତେଲଙ୍ଗନାରେ ଯେଉଁ କାକତୀୟ ରାଜବଂଶ ରାଜତ୍ୱ କରୁଥିଲେ, ସେ ବଂଶର ସର୍ବଶ୍ରେଷ୍ଠ ରାଜାଙ୍କ ନାମ ଥିଲା ଗଣପତି । ସେ ୧୧୯୮ ଖ୍ରୀଷ୍ଟାବ୍ଦରେ ରାଜତ୍ୱ ଆରମ୍ଭ କରି ନିଜ ରାଜତ୍ୱକାଳ ମଧ୍ୟରେ କାକତୀୟ ରାଜ୍ୟକୁ ପୂର୍ବ ଗୋଦାବରୀ ଜିଲ୍ଲା ଠାରୁ କାଞ୍ଚି ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଓଡ଼ିଶାର ପ୍ରଖ୍ୟାତ ଗଙ୍ଗରାଜା ପ୍ରଥମ ନରସିଂହ ବା ଲଙ୍ଗୁଳା ନରସିଂହ ଦେବଙ୍କ ସହିତ ଗଣପତିଙ୍କ ସଂଘର୍ଷ ଲାଗିଥିବା କଥା ଲିଙ୍ଗରାଜ ମନ୍ଦିରର ଗୋଟିଏ ଶିଳାଲେଖରୁ ଜଣାଯାଏ । (Orissa Historical Research Journal, vol I, No, 4 1953, p 303) । ଏଥିରୁ ଅନୁମିତ ହୁଏ ଯେ ଗଣପତିଙ୍କ ନାମ ଓଡ଼ିଶାର କିମ୍ବଦନ୍ତୀରେ ପ୍ରଚଳିତ ଥିଲା । ସାରଳା ଦାସ ତାହା ହିଁ ଲେଖିଯାଇଛନ୍ତି । କାକତୀୟ ରାଜ୍ୟ ନିର୍ଝର ଦେଶ ନାମରେ ଅଭିହିତ ହେଉଥିବାର ପ୍ରମାଣ ମୁଁ କୌଣସି ଉପାଦାନରେ ପାଇନାହିଁ, ମାତ୍ର ପରବର୍ତ୍ତୀ ଆଲୋଚନାରୁ ଦେଖାଯିବ ଯେ କବି କାକତୀୟ ରାଜ୍ୟକୁ ହିଁ ନିର୍ଝର ଦେଶ ବୋଲି କହିଛନ୍ତି ।

(ଖ) ଭୀମ ନିର୍ଝର ଦେଶରୁ କାର୍ତ୍ତିକପୁରକୁ ଗଲେ । ଏହା ନିର୍ଝରଗିରିର ସନ୍ନିକଟ । ଏ ସ୍ଥାନ ବା ରାଜ୍ୟର ରାଜା ଥିଲେ ରୁଦ୍ରଦେବ । ସେ କାର୍ତ୍ତିକଙ୍କ ନିର୍ଦ୍ଦେଶରେ ଯୁଦ୍ଧ ନ କରି ନିମନ୍ତ୍ରଣ ଗ୍ରହଣ କଲେ ।

କାକତୀୟମାନଙ୍କ ପ୍ରଥମ ରାଜଧାନୀର ନାମ ଥିଲା କାକତୀପୁର । ପୌରାଣିକ ସାରଳା ଦାସ ଏହି କାକତୀପୁରକୁ କାର୍ତ୍ତିକପୁରରେ ପରିଣତ କରିଛନ୍ତି । ପରେ କାକତୀୟମାନଙ୍କ ରାଜଧାନୀ ହୋଇଥିଲା ଉଆରଙ୍ଗଲ ବା ଏକଶିଳାନଗରୀ । ଆଖ୍ୟାୟିକା ଅନୁସାରେ କାର୍ତ୍ତିକପୁରର ରାଜାଙ୍କ ନାମ ଥିଲା ରୁଦ୍ରଦେବ । କାକତୀୟ ରାଜବଂଶର ଏକାଧିକ ରାଜା ରୁଦ୍ରଦେବ ନାମ ଧାରଣ କରିଥିଲେ । ଗଣପତିଙ୍କ ଜଣେ ପୂର୍ବ-ପୁରୁଷର ନାମ ଥିଲା ରୁଦ୍ରଦେବ । ଗଣପତିଙ୍କ ପୁତ୍ର ନ ଥିବାରୁ ତାଙ୍କ କନ୍ୟା ରୁଦ୍ରାମ୍ବା ମଧ୍ୟ ରୁଦ୍ରଦେବ ନାମ ବହନ କରି ରାଜତ୍ୱ କରିଥିଲେ । ୧୩୧୦ ଖ୍ରୀଷ୍ଟାବ୍ଦରେ

ଆଲ୍ଲାଉଦ୍ଦିନ ଖିଲ୍‌ଜୀଙ୍କ ସେନାପତି ମାଲିକ୍ କାଫୁର୍ ଯେଉଁ କାକତୀୟ ରାଜାଙ୍କ ସଙ୍ଗେ ଯୁଦ୍ଧ କରିଥିଲେ, ତାଙ୍କ ନାମ ଥିଲା ପ୍ରତାପରୁଦ୍ରଦେବ । ଏଣୁ କବି ରୁଦ୍ରନାମଧେୟ ଏହି ତିନିଜଣଙ୍କ ଭିତରୁ ଜଣକୁ ରୁଦ୍ରଦେବ ବୋଲି ଲେଖି ଯାଇଛନ୍ତି । ଏ ଆଖ୍ୟାୟିକା-ମାନଙ୍କରେ ଆଲ୍ଲାଉଦ୍ଦିନଙ୍କ ସାମ୍ରାଜ୍ୟବିସ୍ତାର ସମୟର ରାଜାମାନଙ୍କ ନାମମାନ ବେଶୀ ଭାବରେ ବ୍ୟବହୃତ ହୋଇଥିବାରୁ କବି ବର୍ଣ୍ଣିତ ରୁଦ୍ରଦେବଙ୍କୁ ପ୍ରତାପରୁଦ୍ରଦେବ ବୋଲି ଧରିବା ହିଁ ବେଶୀ ସମୀଚୀନ ହେବ ।

(୪) ଆଖ୍ୟାୟିକା—ନକୁଳଙ୍କ ଦଣ୍ଡପାନୃପତି ଓ ସୁବଳଗିରିରେ ଗୋରେଖ ସହିତ ଭେଟ ।

ସଭା, ପୃ. ୧୯୭-୨୦୧ ।

ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ ନକୁଳ ରାଜସୂୟ ଯଜ୍ଞ ପାଇଁ ଦକ୍ଷିଣ ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରି କରି ଦଣ୍ଡପା ରାଜ୍ୟରେ ପ୍ରବେଶ କଲେ । "ସେତୁବନ୍ଧ ସୁବଳସ୍ଥା" ଏହି ଦଣ୍ଡପା ରାଜାଙ୍କ ଅଧିକାରରେ ଥିଲା । ଏ ରାଜ୍ୟର ରାଜା ଶଙ୍ଖଜିତ ନକୁଳଙ୍କ ସଙ୍ଗେ ଯୁଦ୍ଧ କଲେ, କିନ୍ତୁ ହାରିଯାଇ ପରେ ତାଙ୍କ ନିମନ୍ତ୍ରଣ ଗ୍ରହଣ କଲେ । ନକୁଳ ଦଣ୍ଡପାରୁ "ସେତୁବନ୍ଧ ରାମେଶ୍ୱର"କୁ ଗଲେ ଏବଂ ରାମଘାଟରେ ସ୍ନାନ କରି ହନୁମାନଙ୍କ ପାଷାଣ-ରୂପ ଦେଖିବା ପରେ ଶିବଲିଙ୍ଗକୁ ଦର୍ଶନ କଲେ । ଏଠାରୁ କଦଳୀବନକୁ ଯାଇ ଗୋରେଖନାଥଙ୍କୁ ଭେଟିଲେ ଓ ତାଙ୍କ ଠାରୁ ଚିନ୍ତନ-ବିଦ୍ୟା ପାଇଲେ ।

ଏ ଆଖ୍ୟାୟିକାରେ ସାରଳାଦାସ ଯେଉଁ ଅଞ୍ଚଳର କଥା ଲେଖିଛନ୍ତି, ସେହି ଅଞ୍ଚଳକୁ ଚିହ୍ନିବା ପାଇଁ କୌଣସି ଅସୁବିଧା ହୁଏ ନାହିଁ, କାରଣ ଏ ଅଞ୍ଚଳରେ ସେତୁବନ୍ଧ, ସୁବଳସ୍ଥା ଓ ରାମେଶ୍ୱର ଥିଲା ବୋଲି ସ୍ପଷ୍ଟ ଭାବରେ କୁହାଯାଇଛି । କେବଳ ଦଣ୍ଡପା ନାମଟି ଟିକିଏ ଗୋଳମାଳରେ ପକାଏ । ଏ ଅଞ୍ଚଳରେ ଦଣ୍ଡପା ନାମରେ କୌଣସି ସ୍ଥାନ ନାହିଁ, କିନ୍ତୁ ରାମେଶ୍ୱରର ଅତି ନିକଟରେ ମଣ୍ଡପମ ନାମରେ ଗୋଟିଏ ସହର ଅଛି । ମଣ୍ଡପମ୍‌ରୁ ରେଲ୍‌ଲାଇନ ରାମେଶ୍ୱର ଓ ଧନୁ-ଷ୍କୋଡ଼ିକୁ ଯାଇଛି । ଏଣୁ ଏଠାରେ ଦଣ୍ଡପା ହେଉଛି ମଣ୍ଡପ ବା ମଣ୍ଡପାର ଅଶୁଦ୍ଧ ପାଠ । ଲେଖନକାର କିମ୍ବା ମୁଦ୍ରାକରଙ୍କ ଭ୍ରମ ହେତୁରୁ ମ ସ୍ଥାନରେ ଦ ହୋଇଯାଇଛି ।

ଆଖ୍ୟାୟିକାଟିରେ ଦଣ୍ଡପା (ମଣ୍ଡପା)ର ରାଜା ଶଙ୍ଖଜିତଙ୍କ ଦୀର୍ଘ ବଂଶାବଳୀ ଦିଆହୋଇଛି । ଏଥିରେ କାଳ୍ପନିକ, ପୌରାଣିକ ଓ ଐତିହାସିକ ନାମମାନ ମିଶାମିଶି ହୋଇ ରହିଛି । ଏହା ମଧ୍ୟରେ ଥିବା କୁଳମକର, ମନ୍ମଥ ଓ ଶଙ୍ଖଜିତ

ନାମଗୁଡ଼ିକ ଆଲ୍ଲାଉଦ୍ଦିନ ଖିଲ୍‌ଜିଙ୍କ ସମୟର ପାଣ୍ଡ୍ୟରାଜାମାନଙ୍କ ବିକୃତ ଓ ଅର୍ଥାନ୍ତର ରୂପ ବୋଲି ଜଣାଯାଏ । ଇତିହାସରେ ବର୍ଣ୍ଣିତ ଅଛି ଯେ ପାଣ୍ଡ୍ୟରାଜା ମାରବର୍ମ୍ମନ କୁଳଶେଖରଙ୍କ ସୁନ୍ଦର ପାଣ୍ଡ୍ୟ ଓ ବୀରପାଣ୍ଡ୍ୟ ନାମକ ଦୁଇଟି ପୁତ୍ର ଥିଲେ । ବୀରପାଣ୍ଡ୍ୟ ରକ୍ଷିତା ସ୍ତ୍ରୀର ପୁତ୍ର ହୋଇଥିଲେ ହେଁ ତାଙ୍କୁ ଉପଯୁକ୍ତ ମନେ କରି ତାଙ୍କୁ ହିଁ ସିଂହାସନ ଦେବା ପାଇଁ ମନସ୍ଥ କଲେ । ଏଥିରେ ସୁନ୍ଦର ପାଣ୍ଡ୍ୟ ଅତ୍ୟନ୍ତ କ୍ରୁଦ୍ଧ ହୋଇ ନିଜ ପିତାଙ୍କୁ ହତ୍ୟା କଲେ । ଏହାପରେ ଦୁଇ ଭାଇଙ୍କ ମଧ୍ୟରେ ଗୃହଯୁଦ୍ଧ ଲାଗିଲା ଏବଂ ଗୃହଯୁଦ୍ଧର ସୁଯୋଗ ନେଇ ମାଲିକ୍ କାଫୁର ପାଣ୍ଡ୍ୟ ରାଜ୍ୟ ଆକ୍ରମଣ କରି ରାମେଶ୍ୱର ପର୍ଯ୍ୟନ୍ତ ଲୁଣ୍ଠନ କଲେ ଓ ବହୁ ଧନରତ୍ନ ନେଇ ଆସିଲେ । ଆଖ୍ୟାୟିକା ବର୍ଣ୍ଣିତ କୁଳମକର, ମନ୍ମଥ ଓ ଶତ୍ରୁଜିତ ନାମଗୁଡ଼ିକ କୁଳଶେଖର, ମାରବର୍ମ୍ମନ ଓ ବୀରପାଣ୍ଡ୍ୟ ନାମର ବିକୃତ ଓ ଅର୍ଥାନ୍ତରିତ ନାମ ବୋଲି ପ୍ରତିପାଦିତ ହୁଏ ।

(୧) ଠାରୁ (୪) ପର୍ଯ୍ୟନ୍ତ ହୋଇଥିବା ଆଲୋଚନାରୁ ସହଜରେ ଅନୁମିତ ହେବ ଯେ ସାରଳାଦାସ ଆଲ୍ଲାଉଦ୍ଦିନ ଖିଲ୍‌ଜିଙ୍କ ସାମ୍ରାଜ୍ୟ ବିସ୍ତାର ସମ୍ବନ୍ଧୀୟ ବହୁ କଥା ଜାଣିଥିଲେ । ଗୁଜରାଟର ସୋଲାଙ୍କି ରାଜା କର୍ଣ୍ଣଦେବ, ଦେବଗିରିରୁ ଯାଦବ ରାଜା ରାମଚନ୍ଦ୍ରଦେବ ଓ ଶଙ୍କରଦେବ, ମେବାଡ଼ର ଶିଶୋଦୀୟ ରାଜା ହମିରଦେବ, ତେଲିଙ୍ଗନାର କାକତୀୟ ରାଜା ପ୍ରତାପରୁଦ୍ରଦେବ ଓ ଦକ୍ଷିଣର ପାଣ୍ଡ୍ୟରାଜା ବୀରପାଣ୍ଡ୍ୟ (ଶତ୍ରୁଜିତ)ଙ୍କୁ କବି ପାଣ୍ଡବମାନଙ୍କ ହାତରେ ନିମନ୍ତ୍ରଣ ଦିଆଯାଇଛି । ଐତିହାସିକ ମାନେ, ଏପରି କି ସ୍କୁଲ କଲେଜର ଛାତ୍ରମାନେ ମଧ୍ୟ ଜାଣନ୍ତି ଯେ ଏହି ରାଜାମାନେ ସ୍ୱାଧୀନତା ରକ୍ଷା ପାଇଁ ଆଲ୍ଲାଉଦ୍ଦିନଙ୍କ ସଙ୍ଗରେ ଯୁଦ୍ଧ କରିଥିଲେ । କବିଙ୍କ ଚକ୍ଷୁରେ ଏମାନେ ସମସ୍ତେ ଥିଲେ ସ୍ୱାଧୀନତା ସଂଗ୍ରାମର ବୀର; ଏଣୁ ଏମାନେ ନିମନ୍ତ୍ରଣ ପାଇବାର ଯୋଗ୍ୟ । ମହୀଶୂରର ହୟ୍‌ଶଳ ରାଜା ବୀର ବଲ୍ଲାଳଙ୍କୁ ସେ ନିମନ୍ତ୍ରଣ ଦିଆଇ ନାହାନ୍ତି । ହୁଏତ ଏହାର କାରଣ ଏହି ଯେ ସେ ନିଜ ରାଜ୍ୟରକ୍ଷା ପାଇଁ ଆଦୌ ଯୁଦ୍ଧ କରି ନ ଥିଲେ । ୧୩୧୦ ଖ୍ରୀଷ୍ଟାବ୍ଦରେ ମାଲିକ କାଫୁର ହୟ୍‌ଶଳ ରାଜ୍ୟର ରାଜଧାନୀ ଦ୍ୱାର ସମୁଦ୍ର ନିକଟରେ ପହୁଞ୍ଚିବା ମାତ୍ରେ ବୀର ବଲ୍ଲାଳ କାହାରି ଉପଦେଶ ନ ମାନି ବିନା ଯୁଦ୍ଧରେ ତାଙ୍କର ସମସ୍ତ ଧନରତ୍ନ ଓ ହାତୀଘୋଡ଼ା କାଫୁରଙ୍କ ଠାରେ ସମର୍ପଣ କରି କର ଦେବାକୁ ସ୍ୱୀକାର କରିଥିଲେ । ଏଣୁ ପରବର୍ତ୍ତୀ ବୀର-ଗାଥାରେ ସେ ସ୍ଥାନ ପାଇ ନ ଥିଲେ ।

ସାରଳାଦାସ ଏ ସମସ୍ତ ଐତିହାସିକ ନାମ ଓ ଘଟନା କେଉଁଠାରୁ ପାଇଲେ, ତାହା ସ୍ଥିର କରିବା ସମ୍ଭବପର ହୁଏ ନାହିଁ, କିନ୍ତୁ ସେ ଜଣେ ଗାଉଁଲି

କଵ ଥିଲେ ଓ କେବଳ ଗାଁରେ ବସି ତାଙ୍କ ମହାଭାରତ ଲେଖୁଥିଲେ ବୋଲି ଯଦି କେହି ସିଦ୍ଧାନ୍ତ କରନ୍ତି, ତେବେ ସେପରି ସିଦ୍ଧାନ୍ତ ନିତାନ୍ତ ଭ୍ରମାତ୍ମକ ହେବ ।

ଭାରତରେ ମୁସଲମାନ ସାମ୍ରାଜ୍ୟ ପ୍ରାରମ୍ଭ ହେଉଛି ଅନ୍ୟ ଏକ ଯୁଗାନ୍ତକାରୀ ଘଟଣା । ସାରଳା ଦାସ ଏହି ଘଟଣା ସହିତ ସଂଶ୍ଲିଷ୍ଟ କିମ୍ବଦନ୍ତୀମୂଳକ ଇତିହାସ ମଧ୍ୟ କିପରି ପ୍ରକାଶ କରିଛନ୍ତି, ତାହା ବର୍ତ୍ତମାନ ଆଲୋଚନା କରାଯାଉ ।

(୧) ଯେଉଁ ପୃଥ୍ୱୀରାଜ ଚୌହାନ୍ ମହମ୍ମଦ ଘୋରୀଙ୍କ ସଙ୍ଗେ ଯୁଦ୍ଧ କରି ପ୍ରାଣବଳି ଦେଇଥିଲେ, ସାରଳା ଦାସଙ୍କ ସମୟର କିମ୍ବଦନ୍ତୀ ତାଙ୍କୁ କଦାପି ଭୁଲି-ନ ଥିବ, କିନ୍ତୁ କବି ସିଧା-ସଳଖ ଭାବରେ ତାଙ୍କ ନାମ ଉଲ୍ଲେଖ ନ କରି ତାଙ୍କୁ ଅଙ୍ଗାରପନ୍ନଗ ବୋଲି ଲେଖିଥିବାର ଅନୁମାନ କରାଯାଏ । ସଭାପର୍ବରେ (ପୃ. ୧୩୩-୧୪୦) "ବର୍ଣ୍ଣୀନକ ରାଜା, ବନ୍ତୁକର ପଣ୍ଡା, ବେଦଶ୍ରବଣ ପଣ୍ଡା, ଅଙ୍ଗାରପନ୍ନଗ ଓ ଦ୍ରୁପଦ ରାଜାଙ୍କୁ ନିମନ୍ତ୍ରଣ" ଶୀର୍ଷକ ଗୋଟିଏ ଆଖ୍ୟାୟିକା ଅଛି । ଏଥିରେ ଥିବା ସମସ୍ତ ରାଜା ଓ ରାଜ୍ୟର ବିଷୟ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଅଙ୍ଗାରପନ୍ନଗ ଓ ତାଙ୍କ ରାଜ୍ୟ ବିଷୟରେ କିଛି ମାତ୍ର ଲେଖା ନାହିଁ । ଏଣୁ ଅନୁମିତ ହୁଏ ଯେ, ଛାପାବହିରେ ଏହି ଅଂଶଟି ଭ୍ରମବଶତଃ ଛାଡ଼ିଦିଆଯାଇଛି । ୧୯୫୬-୫୭ରେ ରାଧାରମଣ ପ୍ରେସରୁ ପ୍ରକାଶିତ ପୁସ୍ତକ ବ୍ୟତୀତ ମୋ ପାଖରେ ସାରଳା-ମହାଭାରତର କୌଣସି ପୋଥି ବା ଅନ୍ୟ କୌଣସି ପୋଥି ବା ଅନ୍ୟ କୌଣସି ଛାପା ପୁସ୍ତକ ନ ଥିବାରୁ ଏହି ପରିତ୍ୟକ୍ତ ଅଂଶଟି ସମ୍ବନ୍ଧରେ ବର୍ତ୍ତମାନ କିଛି କହିବା ସମ୍ଭବପର ହେଉନାହିଁ ।

(୨) ଆଖ୍ୟାୟିକା—ଶବରୀ ନାରାୟଣଙ୍କୁ ନିମନ୍ତ୍ରଣ, ସଭା, ପୃ. ୧୧୧—୧୧୪ ।

ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ, ଭୀମ ପଶ୍ଚିମଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରି କରି କନୌଜ ଦେଶରେ ଯାଇ ପହଞ୍ଚିବାବେଳେ ଏ ଦେଶର ରାଜା ଶବରୀନାରାୟଣ ଜଳକ୍ରୀଡ଼ାରେ ରତ ଥିଲେ । ତାଙ୍କ ସୈନ୍ୟମାନଙ୍କ ସହିତ ଭୀମଙ୍କର ଯୁଦ୍ଧ ହେଲା, ମାତ୍ର ସେମାନେ ହାରିଯିବାରୁ ସ୍ୱୟଂ ଶବରୀନାରାୟଣ ଯୁଦ୍ଧ କରିବାକୁ ଆସିଲେ । ଜୟସେନନାମକ ସାରଥି ତାଙ୍କ ରଥ ବାହୁଥିଲା । ରାଜା ହାରିଯାଇ ଭୀମଙ୍କ ନିମନ୍ତ୍ରଣ ଗ୍ରହଣ କଲେ ।

କନୌଜର ଗହଡ଼ବାଳବଂଶୀୟ ରାଜା ଜୟଚନ୍ଦ୍ର ପୃଥ୍ୱୀରାଜ ଚୌହାନଙ୍କ ପରମ ଶତ୍ରୁ ଥିଲେ । ସେ ମହମ୍ମଦ ଘୋରୀଙ୍କୁ ଭାରତକୁ ଡାକି ଆଣିଥିଲେ । ପରେ

ମହମ୍ମଦ ଘୋରୀଙ୍କ ଦ୍ୱାରା ସେ ପରାସ୍ତ ଓ ନିହତ ହୋଇଥିଲେ । ଏ ସମସ୍ତ ଇତିହାସ କଥା ସର୍ବଜନବିଦିତ, ମାତ୍ର ଶବରୀନାରାୟଣ ନାମରେ କୌଣସି ରାଜା କନୌଜର ରାଜତ୍ୱ କରିଥିବା କଥା କୌଣସି ଉପାଦାନରୁ ମିଳେ ନାହିଁ । ଜୟଚନ୍ଦ୍ର ଦେଶ-ଦ୍ରୋହୀ ଥିଲେ । ହୁଏତ କବି ସେଥିପାଇଁ ଏଠାରେ ତାଙ୍କୁ ରାଜା ରୂପେ ବର୍ଣ୍ଣନା ନ କରି ସାରଥୀ ରୂପେ ବର୍ଣ୍ଣନା କରିଛନ୍ତି । ଜୟସେନ ନାମଟି ଜୟଚନ୍ଦ୍ରର ରୂପାନ୍ତରିତ ନାମ ବୋଲି ମନେହୁଏ ।

(୩) ଆଖ୍ୟାୟିକା—ମଙ୍ଗଳସେନ ରାଜା ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ, ସଭା, ପୃ. ୧୨୧-୨୩ ।

ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ ଅର୍ଜ୍ଜୁନ ଉତ୍ତର ଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରି କରି କର୍ଣ୍ଣାଟ ଦେଶରେ ପହଞ୍ଚିଲେ । ଏ ଦେଶର ରାଜା ମଙ୍ଗଳସେନ ପ୍ରଥମେ ଯୁଦ୍ଧ କଲେ, ମାତ୍ର ହାରିଯାଇ ଅର୍ଜ୍ଜୁନଙ୍କ ନିମନ୍ତ୍ରଣ ଗ୍ରହଣ କଲେ ।

ଉତ୍ତର-ଭାରତରେ କର୍ଣ୍ଣାଟ ନାମରେ କୌଣସି ରାଜ୍ୟ ନାହିଁ । ଆଖ୍ୟାୟିକା ଅନୁସାରେ ଅର୍ଜ୍ଜୁନ ବଙ୍ଗଦେଶରୁ ଆସି କର୍ଣ୍ଣାଟ ଦେଶରେ ପ୍ରବେଶ କଲେ । ଏଣୁ ଏଠାରେ କବିବର୍ଣ୍ଣିତ କର୍ଣ୍ଣାଟଦେଶକୁ ବଙ୍ଗଦେଶ ବା ତାହାର ଅଂଶବିଶେଷ ବୋଲି ବୁଝିବାକୁ ହେବ । ତାମ୍ର ଶିଳାଲେଖରୁ ପ୍ରମାଣ ମିଳେ ଯେ ବଙ୍ଗର ପ୍ରଖ୍ୟାତ ସେନ-ରାଜବଂଶ ଦକ୍ଷିଣର କର୍ଣ୍ଣାଟ ଦେଶରୁ ବଙ୍ଗକୁ ଆସିଥିଲେ । ସାରଳା ଦାସଙ୍କ ଦେଶ-ମାନଙ୍କ ନାମକରଣ ବହୁ ସମୟରେ ସାଙ୍କେତିକ ହୋଇଛି । ସେମାନଙ୍କ ଶାସିତ ଅଞ୍ଚଳକୁ ସେ ଏଠାରେ କର୍ଣ୍ଣାଟ ଦେଶ ବୋଲି ବର୍ଣ୍ଣନା କରିଥିବା ଅତ୍ୟନ୍ତ ସମ୍ଭବ । ଅନ୍ୟଥା ବଙ୍ଗଦେଶରେ ବା ତା'ପାଖରେ କର୍ଣ୍ଣାଟ ଦେଶର ଅବସ୍ଥିତି ଅସମ୍ଭବ ହୋଇପଡୁଛି । ଏଠାରେ ମଙ୍ଗଳସେନ ନାମଟି ମଧ୍ୟ ଅର୍ଥାନ୍ତରିତ ନାମ । ଲକ୍ଷ୍ମଣ ଅର୍ଥ ହେଉଛି ମଙ୍ଗଳ ଚିହ୍ନଯୁକ୍ତ ବ୍ୟକ୍ତି । ଏଣୁ କବିବର୍ଣ୍ଣିତ ମଙ୍ଗଳସେନ ନାମଟି ଲକ୍ଷ୍ମଣ ସେନଙ୍କ ଅର୍ଥାନ୍ତରିତ ନାମ ବୋଲି ଜଣାପଡୁଛି । ବଖ୍‌ତିଆର୍ ଖିଲିଜିଙ୍କ ନେତୃତ୍ୱରେ ମୁସଲମାନମାନେ ବଙ୍ଗଦେଶ ଅଧିକାର କଲାବେଳେ ବଙ୍ଗରେ ସେନବଂଶୀୟ ରାଜା ଲକ୍ଷ୍ମଣସେନ ରାଜତ୍ୱ କରୁଥିବା କଥା ସର୍ବଜନବିଦିତ ।

(୪) ଆଖ୍ୟାୟିକା—କେଶବ ରାଜା, ଶକୁନି ଓ ସହଦେବ କଥୋପକଥନ ଇତ୍ୟାଦି, ସଭା, ପୃ. ୨୦୯-୨୨୦ ।

ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ ସହଦେବ ପୂର୍ବଦିଗର ରାଜାମାନଙ୍କୁ ନିମନ୍ତ୍ରଣ କରି କରି ମାଳେନ୍ଦ୍ରୀ ଦେଶରୁ ଯାଇ ହସ୍ତୀକାଳ ନଗରେ ପହଞ୍ଚିଲେ ।

ଏ ନଗର ମଧୁମାତଙ୍ଗ ଦେଶର ନିକଟବର୍ତ୍ତୀ ଥିଲା । ଏ ନଗର ବା ଦେଶର ରାଜା କେଶବସେନ ବିନା ଯୁଦ୍ଧରେ ସହଦେବଙ୍କ ନିମନ୍ତ୍ରଣ ଗ୍ରହଣ କଲେ ।

ସେନବଂଶର ଶେଷ ବିଖ୍ୟାତରାଜା ଲକ୍ଷ୍ମଣ ସେନ ୧୨୦୫ ଖ୍ରୀଷ୍ଟାବ୍ଦ ବେଳକୁ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ରାଜଧାନୀ ନଦିଆ ତଥା ପଶ୍ଚିମ ଓ ଉତ୍ତରବଙ୍ଗ ମୁସଲ୍‌ମାନମାନଙ୍କ ଅଧିକୃତ ହେବା ପରେ ସେ ପୂର୍ବବଙ୍ଗରେ ଥିବା ବିକ୍ରମପୁରକୁ ତାଙ୍କ ରାଜଧାନୀ ଉଠାଇ ନେଇଥିଲେ । ଏହି ବିକ୍ରମପୁରରେ ତାଙ୍କ ଜ୍ୟେଷ୍ଠପୁତ୍ର ବିଶ୍ୱରୂପସେନ ଓ ତାଙ୍କ କନିଷ୍ଠପୁତ୍ର କେଶବସେନ ରାଜତ୍ୱ କରୁଥିବା-ବେଳେ ଉଭୟେ ମୁସଲମାନ ଆକ୍ରମଣକୁ ବ୍ୟାହତ କରିଥିଲେ । କିନ୍ତୁ ୧୨୪୫ କିମ୍ବା ୧୨୬୦ ଖ୍ରୀଷ୍ଟାବ୍ଦ ବେଳକୁ ପୂର୍ବବଙ୍ଗରୁ ମଧ୍ୟ ସେନବଂଶର ରାଜତ୍ୱ ଲୋପ ପାଇଥିଲା । ଲକ୍ଷ୍ମଣ ସେନଙ୍କ ବଂଶଧରମାନେ ଯେତେବେଳେ ବିକ୍ରମପୁରରେ ରାଜତ୍ୱ କରୁଥିଲେ, ସେତେବେଳେ ବ୍ରହ୍ମପୁତ୍ରନଦୀର ପୂର୍ବାଞ୍ଚଳରେ ଆଉ ଗୋଟିଏ ରାଜବଂଶ ରାଜତ୍ୱ କରୁଥିବାର ପ୍ରମାଣ ମିଳେ । ମୈନାବତୀ ପର୍ବତରୁ ପ୍ରାପ୍ତ ଗୋଟିଏ ଶିଳାଲେଖରୁ ଜଣାଯାଏ ଯେ, ଏ ଅଞ୍ଚଳରେ ହରିକାଲଦେବ ରଣବଙ୍କମଲ୍ଲ ନାମକ ଜଣେ ରାଜା ୧୨୧୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ତାଙ୍କ ରାଜଧାନୀର ନାମ ଥିଲା ପଟିକେରା । ମଧୁମଥନ ନାମକ ଆଉ ଜଣେ ରାଜା ପଟିକେରା ରାଜବଂଶର କରଦରାଜା ରୂପେ ଏହି ଅଞ୍ଚଳରେ ରାଜତ୍ୱ କରୁଥିବାର ଐତିହାସିକ ପ୍ରମାଣ ମଧ୍ୟ ମିଳେ । ( The Struggle for Empire, ଭାରତୀୟ ବିଦ୍ୟାଭବନ, ପୃ. ୪୦-୪୧) ।

ସାରଳାଦାସ ବଙ୍ଗଦେଶର ଯେଉଁ କେତୋଟି ଐତିହାସିକ ଓ ଭୌଗୋଳିକ ନାମ ଜାଣିଥିଲେ, ସେଗୁଡ଼ିକୁ ସେ ଏହି ଆଖ୍ୟାୟିକାରେ ବ୍ୟବହାର କରି ଯାଇଛନ୍ତି । ଉତ୍ତରବଙ୍ଗର ପ୍ରାଚୀନ ନାମ ଥିଲା ବାରେନ୍ଦ୍ରୀ, କିନ୍ତୁ କବି ତାକୁ ନୀଳେନ୍ଦ୍ରୀରେ ପରିଣତ କରିଛନ୍ତି । ଲକ୍ଷ୍ମଣସେନଙ୍କ ପୁତ୍ରଙ୍କ ନାମ ଥିଲା କେଶବ ସେନ । କବି ଏହି ନାମକୁ ଅବିକୃତ ଭାବରେ ପ୍ରକାଶ କରି ଯାଇଛନ୍ତି । ହରିକାଳ ଦେବଙ୍କ ରାଜଧାନୀକୁ କବି ହରିକାଳନଗର ବୋଲି ଲେଖିଥିବାର ଅନୁମାନ କରାଯାଏ; କିନ୍ତୁ ଲେଖନକାର ବା ମୁଦ୍ରାକରଙ୍କ ପ୍ରମାଦ ହେତୁରୁ ତାହା ହସ୍ତୀକାଳନଗରେ ପରିଣତ ହୋଇଛି । ପଟିକେରା ବା ହରିକାଳନଗର ପାର୍ଶ୍ୱବର୍ତ୍ତୀ ଯେଉଁ ଅଞ୍ଚଳରେ ମଧୁମଥନ ରାଜା ରାଜତ୍ୱ କରୁଥିଲେ, ତାହା ମଧୁମାତଙ୍ଗ ଦେଶ ବୋଲି ବର୍ଣ୍ଣିତ ହୋଇଛି । ହୁଏତ ଏହାର ମୌଳିକ ରୂପ ଥିଲା ମଧୁମଥନ ଦେଶ ।

ସାରଳା ଦାସ ବଙ୍ଗର କିମ୍ବଦନ୍ତୀମୂଳକ ଇତିହାସ ଅନେକାଂଶରେ ଜାଣିଥିଲେ । ସେ ପାଲ ବଂଶର ରାଜା ଧର୍ମପାଳଙ୍କ ନାମ ଉଲ୍ଲେଖ କରିଥିବା କଥା ଆଗରୁ କୁହାଯାଇଛି । କବି ସେନବଂଶର ବଲ୍ଲାଳସେନ (ବେଲ୍ଲାଳସେନ), ଲକ୍ଷ୍ମଣ ସେନ (ମଙ୍ଗଳ ସେନ) ଓ କେଶବ ସେନଙ୍କ ନାମ ଉଲ୍ଲେଖ କରିଛନ୍ତି । ବଙ୍ଗର କ୍ଷୁଦ୍ର ରାଜବଂଶର ରାଜାମାନଙ୍କ ମଧ୍ୟରୁ ହରିକାଳଦେବ ଓ ମଧୁମଥନ-ଦେବଙ୍କ ନାମ ତାଙ୍କ ଗ୍ରନ୍ଥରେ ପ୍ରକାରାନ୍ତରେ ସ୍ଥାନ ପାଇଛି । ପାଲବଂଶ ପରେ ଦଶମ ଶତାବ୍ଦୀର ଶେଷ ଭାଗରେ ଯେଉଁ ଚନ୍ଦ୍ରବଂଶ ପୂର୍ବ ଓ ଦକ୍ଷିଣ-ବଙ୍ଗରେ ରାଜତ୍ୱ କରିଥିଲେ (The Age of Imperial Kanauj, ଭାରତୀୟ ବିଦ୍ୟାଭବନ, ପୃ. ୫୪), ସେହି ବଂଶରେ ଜ୍ଞାନଚନ୍ଦ୍ର ଓ କୁଳଚନ୍ଦ୍ର ନାମକ ଦୁଇଜଣ ରାଜା ଥିବା କଥା ମଧ୍ୟ କବି ଲେଖି ଯାଇଛନ୍ତି । ଏ ଚନ୍ଦ୍ରବଂଶକୁ ସେ କୌସ୍ତୁଭବଂଶ ବୋଲି ଆଖ୍ୟାତ କରିଛନ୍ତି । ଏ ବଂଶର ରାଜଧାନୀ ଗଙ୍ଗାସାଗର-ସଙ୍ଗମ ନିକଟବର୍ତ୍ତୀ ଜ୍ଞାନପୁରରେ ଥିବାର ସୂଚନା ତାଙ୍କ ଗ୍ରନ୍ଥରୁ ମିଳେ (ସଭା, ପୃ. ୨୧୮) ।

ଏ ସମସ୍ତ କଥା ପ୍ରଣିଧାନ କଲେ ମାନିବାକୁ ହୁଏ ଯେ ବହୁ ପଣ୍ଡିତଙ୍କ ବହୁ ବର୍ଷର ଗବେଷଣା ଫଳରେ ବଙ୍ଗର ଯେଉଁ କେତୋଟି ପ୍ରାଚୀନ ରାଜବଂଶର ନାମ ଜଣାଯାଇଛି, ସାରଳା ଦାସ ସେ ସମସ୍ତ ରାଜବଂଶର ନାମ ତାଙ୍କ ସମୟର ପ୍ରଚଳିତ କିମ୍ବଦନ୍ତୀରୁ ପାଇଥିଲେ । ଏହି କିମ୍ବଦନ୍ତୀମୂଳକ ଇତିହାସ ଲିଖିତ ଆକାରରେ ଥିଲା, କିମ୍ବା ଦନ୍ତକଥା ରୂପେ ପ୍ରଚଳିତ ଥିଲା, ତାହା ସ୍ଥିର କରିବା ସହଜ ହେଉନାହିଁ । ସେନବଂଶର ଗୋଟିଏ ଶାଖାବଂଶ ମିଥିଳାରେ ରାଜତ୍ୱ କରୁଥିଲେ । ସାରଳାଦାସଙ୍କୁ ଏ କଥା ମଧ୍ୟ ଜଣା ଥିଲା ।

"ତହୁଁ ସହଦେବ ଆଟ ଚଳାଇ ହରଷେ
ପ୍ରବେଶ ହୋଇଲା ଯାଇ ମିଥିଳାର ଦେଶେ ।
ନନ୍ଦସେନ ବୋଲି କରି ତହିଁ ଅଛେ ରାଜା
ସହଦେବ ବଳେ ଜାଣି କଲା ପାଦପୂଜା ।"

(ସଭା, ପୃ-୨୦୬)

ମିଥିଳାର କର୍ଣ୍ଣାଟ ରାଜବଂଶର ପ୍ରଥମରାଜାଙ୍କ ନାମ ଥିଲା ନାନ୍ୟଦେବ (The Struggle for Empire p, 47) । ଏହି ନାନ୍ୟଦେବ ହିଁ ଉଲ୍ଲିଖିତ ପଦରେ ନନ୍ଦସେନ ଆକାର ଧାରଣ କରିଛନ୍ତି । କବିଙ୍କ ମୌଳିକ ଲେଖାରେ ନାନ୍ୟସେନ ଥିଲା, କିମ୍ବା ନନ୍ଦସେନ ଥିଲା, ତାହା କହିବା ସମ୍ଭବପର

ହେଉନାହିଁ; କିନ୍ତୁ ତାଙ୍କ ଲେଖାରୁ ଜଣାଯାଉଛି ଯେ ମିଥିଳାର ତଥାକଥିତ କର୍ଣ୍ଣାଟବଂଶ ପ୍ରକୃତରେ ସେନବଂଶର ଶାଖା ଥିଲା । ଏ ବିଷୟଟି ଏପର୍ଯ୍ୟନ୍ତ ପଣ୍ଡିତ-ମାନଙ୍କ ମଧ୍ୟରେ ବିବାଦାସ୍ପଦ ହୋଇ ରହିଛି ।

(୫) ସାରଳା ମହାଭାରତରେ ବହୁ ମୁସଲମାନ ରାଜାଙ୍କ ନାମର ଉଲ୍ଲେଖ ରହିଛି, କିନ୍ତୁ କବି ସେଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତନ କରି ହିନ୍ଦୁ-ନାମରେ ପରିଣତ କରିଛନ୍ତି । ଏପରି ଭାବରେ ପରିବର୍ତ୍ତିତ ବହୁ ନାମ ମୋର ଦୃଷ୍ଟିଗୋଚର ହୋଇଛି; କିନ୍ତୁ ଅନେକଙ୍କ ପକ୍ଷରେ ବିଶ୍ୱାସଯୋଗ୍ୟ ଓ ଗ୍ରହଣ-ଯୋଗ୍ୟ ନ ହେବାର ଆଶଙ୍କା ଥିବାରୁ, ମୁଁ ସେସବୁ ନାମର ଆଲୋଚନାରୁ କ୍ଷାନ୍ତ ହେଉଛି । ପାଠକମାନଙ୍କ କୌତୂହଳ ନିବାରଣ ପାଇଁ କେବଳ ଗୋଟିଏ ଉଦାହରଣ ଦିଆଯାଉଛି ।

ଇତିହାସରୁ ଜଣାଯାଏ ଯେ ମହମ୍ମଦ ଘୋରୀଙ୍କ ମୃତ୍ୟୁ ପରେ କୁତବୁଦ୍ଦିନ ଆଇବାକ୍ ଦିଲ୍ଲୀ ସିଂହାସନ ଆରୋହଣ କରି ୧୨୦୬ରୁ ୧୨୧୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଘୋରୀଙ୍କ କ୍ରୀତଦାସ ଥିବାରୁ ତାଙ୍କ ଦ୍ୱାରା ସ୍ଥାପିତ ରାଜବଂଶ ଦାସବଂଶ-ନାମରେ ଆଖ୍ୟାତ ହୋଇଥିଲା । କୁତବୁଦ୍ଦିନ୍ ନିଜ କନ୍ୟାଙ୍କୁ ଇଲ୍‌ତୁତ୍‌-ମିସ୍ (ଆଲଟାମସ୍)ଙ୍କୁ ବିବାହ ଦେଇଥିଲେ । କୁତବୁଦ୍ଦିନଙ୍କ ପରେ ଇଲ୍‌ତୁତ୍‌ମିସ୍ ଦିଲ୍ଲୀର ସୁଲତାନ ହେଲେ । ତାଙ୍କ ରାଜତ୍ୱର ପ୍ରଥମ ଭାଗର ପ୍ରଧାନ ଘଟଣା ହେଉଛି ଚେଙ୍ଗିସ୍ ଖାଁଙ୍କ ନେତୃତ୍ୱରେ ମୋଗଲମାନଙ୍କ ଭାରତର ସୀମାନ୍ତ ଆକ୍ରମଣ । ଚେଙ୍ଗିସ୍ ଖାଁ ଖିବାର ଯୁବରାଜ ଜଲାଲ୍‌ଉଦ୍ଦିନଙ୍କୁ ଗୋଡ଼ାଇ ଗୋଡ଼ାଇ ତାଙ୍କ ପ୍ରବଳ ମୋଗଲବାହିନୀ ସହିତ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ଉପସ୍ଥିତ ହୋଇଥିଲେ । ଇଲ୍‌ତୁତ୍‌ମିସ୍ ବଡ଼ ଚତୁରତା ଓ ରାଜନୀତିକ ବିଚକ୍ଷଣତା ସହିତ ଜଲାଲ୍‌ଉଦ୍ଦିନଙ୍କୁ ଆଶ୍ରୟ ନ ଦେଇ ଭାରତକୁ ମୋଗଲ ଆକ୍ରମଣରୁ ରକ୍ଷା କରିଥିଲେ । କୁତବୁଦ୍ଦିନ ଓ ଇଲ୍‌ତୁତମିସ୍ ଉଭୟେ ତୁରସ୍କ (ତୁର୍କୀ) ଦେଶର ଲୋକ ଥିଲେ ।

ସାରଳା ଦାସ ଏହି ଇତିହାସକୁ କିପରି ପୁରାଣ ଆକାରରେ ଲେଖିଯାଇଛନ୍ତି ତାହା ଦେଖନ୍ତୁ ।

ଆଖ୍ୟାୟିକା—ନଳଙ୍କ ଅଯୋଧ୍ୟା ପ୍ରବେଶ ଓ ବାହୁକ ସାରଥି ନାମ ଧାରଣ, ବନ, ପୃ. ୨୫୭-୫୮ ।

ଅଷ୍ଟବକ୍ର ଋଷି କାହିଁକି ବିରୂପ ହୋଇଥିଲେ, ସେ କଥା ସେ ନଳରାଜାଙ୍କୁ କହୁଛନ୍ତି—

ଅଷ୍ଟବକ୍ର ବୋଲେ ତୁମ୍ଭେ ଶୁଣ ଆଦ୍ୟକଥା
ଅନୁସାର ବୋଲି ସତ୍ୟଯୁଗର ବାରତା ।
ସେ ଯୁଗର ବିଷ୍ଣୁ ଅବତାର ନୀଳାମ୍ବର
ଶୁଦ୍ଧ ସ୍ଫଟିକ ପରାୟେ ଶରୀର ତାଙ୍କର ।
କରଞ୍ଜକ ନାମେ ଏକ ଇନ୍ଦ୍ର ଯେ ଦେବତା
ଅଇରାବତ ନାମରେ ଏକ ପୁଷ୍ପଦନ୍ତା ।
ତତଙ୍ଗ ଦେଶର ରାଜା ନାମ ଇନ୍ଦ୍ର ସିଂହ
ବଡ଼ ପ୍ରତାପୀ ଅଟଇ ସେହି ମହାବାହ ।
ବ୍ୟଙ୍ଗସି ନାମରେ ଦୈତ୍ୟରାଜ ଉପସ୍ଥିତ
ଶୂରବନ୍ତ ପଣେ ସେହୁ ବଡ଼ାଇ ଶକତ ।
ଦୁହିତାକୁ ଘେନଣ ସେ ଦାସ ଯେ ରାଜନ
ଇନ୍ଦ୍ରସିଂହ ନୃପତିକୁ କରିଲ ପ୍ରଦାନ ।

ବନ, ପୃ. ୨୫୫

ଏଠାରେ କରଞ୍ଜକ ହେଉଛନ୍ତି କୁତବୁଦ୍ଦିନ, ଇନ୍ଦ୍ରସିଂହ ଇଲତୁତ୍‌ମିସ୍, ତତଙ୍ଗ ଦେଶ ହେଉଛି ତୁରସ୍କ ଦେଶ, ଦୈତ୍ୟରାଜ ବ୍ୟଙ୍ଗସି ହେଉଛନ୍ତି ପ୍ରବଳ ପ୍ରତାପୀ ଚେଙ୍ଗିସ ଖାଁ ଓ ଦାସରାଜନ ହେଉଛନ୍ତି କୁତବୁଦ୍ଦିନ୍ । ଦୈତ୍ୟରାଜ ବ୍ୟଙ୍ଗସି ( ଚେଙ୍ଗିସ ଖାଁ ) ଭାରତରେ ଉପସ୍ଥିତ ହୋଇଥିବା କଥା ଓ ଦାସରାଜନ ( କୁତବୁଦ୍ଦିନ୍ ) ଇନ୍ଦ୍ର ସିଂହଙ୍କୁ (ଇଲତୁତ୍‌ମିସ୍‌ଙ୍କୁ) କନ୍ୟା ପ୍ରଦାନ କରିଥିବା କଥା ଇତିହାସ ପ୍ରସିଦ୍ଧ ।

ସାରଳାଦାସ ମୁସଲମାନୀ ନାମଗୁଡ଼ିକୁ ବଦଳାଇ ଦେଇ ଏହିପରି ଆହୁରି ଅନେକ ଐତିହାସିକ ନାମ ଓ ଘଟନାକୁ ପୌରାଣିକ ଭିତରେ ଲେଖି ଯାଇଛନ୍ତି ।

କବିଙ୍କ ନିଜ ସମୟର ଯେଉଁ ରାଜା ଓ ରାଜବଂଶମାନଙ୍କ ନାମ ସାରଳା ମହାଭାରତରେ ଅଛି, ବର୍ତ୍ତମାନ ତାହାହିଁ ଆଲୋଚନା କରାଯାଉ ।

(୧) ସାରଳା ମହାଭାରତରୁ ଯେଉଁ ଐତିହାସିକ ଚିତ୍ର ମିଳୁଛି, ସେଥିରୁ ନିଃସନ୍ଦେହରେ ପ୍ରମାଣିତ ହୁଏ ଯେ ଏହି ଗ୍ରନ୍ଥ କପିଳେଶ୍ୱରଦେବଙ୍କ (ଖ୍ରୀ. ୧୪୩୫-୧୪୬୭) ରାଜତ୍ୱରେ ଆରମ୍ଭ ହୋଇ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ

(ଖ୍ରୀ: ୧୪୬୭-୧୪୯୭) ରାଜତ୍ୱରେ ଶେଷ ହୋଇଥିଲା । ସାରଳା ଦାସ ସିଧାସଳଖ ଭାବରେ ଗଜପତି କପିଳେଶ୍ୱରଙ୍କ ନାମ ଆଦ୍ୟପର୍ବରେ ଉଲ୍ଲେଖ କରିଥିବା ବିଷୟ ଆଗରୁ ଆଲୋଚନା କରାଯାଇଛି । ଏଠାରେ ତାହାର ପୁନରାବୃତ୍ତି ଅନାବଶ୍ୟକ । କବି ପୁରୁଷୋତ୍ତମଦେବଙ୍କ ନାମ ମଧ୍ୟ ପ୍ରଚ୍ଛନ୍ନ ଭାବରେ ଲେଖିଯାଇଛନ୍ତି । ମହାଭାରତ ଯୁଦ୍ଧରେ ଯୋଗ ଦେବାପାଇଁ ଯେଉଁ ଯେଉଁ ରାଜା ଆସିଥିଲେ, ସେମାନଙ୍କ ନାମ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି—

ଓଡ଼ିଶା ଦେଶର ରାଜା ନାମ ନରବଳି
ନବକ୍ଷୌଣୀ ବଳେ ଗଲା ହସ୍ତିନାକୁ ଚଳି ।

ଉଦ୍‌ଯୋଗ, ପୃ: ୮୭

ସଂସ୍କୃତ ମହାଭାରତରେ କଳିଙ୍ଗ ନାମଟି ଥିଲେ ମଧ୍ୟ ଓଡ଼ିଶା ନାମଟି ନାହିଁ । ମାତ୍ର ସାରଳା ଦାସ ତାଙ୍କ ସମୟରେ ପ୍ରଚଳିତ ତାଙ୍କ ପ୍ରିୟ ଜନ୍ମଭୂମିର ଓଡ଼ିଶା ନାମଟିକୁ ଭୁଲିଯାଆନ୍ତେ କପରି ? ଏଣୁ ସେ ଓଡ଼ିଶା ନାମଟିକୁ ଉଲ୍ଲେଖ କରିଛନ୍ତି । ଓଡ଼ିଶା ନାମଟି ଲେଖିବା ପରେ ତାଙ୍କ ସମୟର ଓଡ଼ିଶା ରାଜା ପୁରୁଷୋତ୍ତମଙ୍କ ନାମ ତାଙ୍କ ମନରେ ପଡ଼ିଯାଇଛି; କିନ୍ତୁ ଛନ୍ଦର ଅନୁରୋଧରେ ହେଉ ବା ଇଚ୍ଛାକୃତ ଭାବରେ ହେଉ ସେ ପୁରୁଷୋତ୍ତମ ନାମଟିକୁ ଅର୍ଥାନ୍ତରରେ ନରବଳି ବୋଲି ଲେଖିଯାଇଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଉଲ୍ଲିଖିତ ପଦରେ ଥିବା ନରବଳିର ଶୁଦ୍ଧପାଠ ନରବଳୀ ହେବ, କାରଣ ନରବଳି ନାମଟି କୌଣସି ରାଜାର ନାମ ରୂପେ ଗୃହୀତ ହୋଇ ନ ପାରେ । ଲେଖନକାରମାନେ ପୋଥି ଲେଖିବାବେଳେ ଇ, ଈ, ଉ, ଊ, ଜ ଯ, ଶ ଷ ସ ଓ ଖ୍ୟ କ୍ଷ ମଧ୍ୟରେ କୌଣସି ପ୍ରଭେଦ ରଖୁ ନ ଥିଲେ । ଏହି ହେତୁରୁ ମୌଳିକ ଲେଖାର ନରବଳୀ ନାମଟି ପୋଥିରେ ନରବଳିରେ ପରିଣତ ହୋଇଥିଲା । ଛାପାବହିରେ ତାହା ନିର୍ବିଘ୍ନରେ ସେହି ଆକାରରେ ଛାପା ହୋଇଯାଇଅଛି ।

(୨) ସାରଳା ଦାସ ତାଙ୍କ ସମସାମୟିକ ବିଜୟନଗର ରାଜା ମଲ୍ଲିକାର୍ଜ୍ଜୁନଙ୍କ ନାମ ସିଧାସଳଖ ଭାବରେ ଓ ଅର୍ଥାନ୍ତରରେ ଏକାଧିକ ଥର ଲେଖିଥିବା କଥା ଆଗରୁ ଆଲୋଚନା କରାଯାଇଛି । କବି ବିଜୟନଗର ସାମ୍ରାଜ୍ୟକୁ ମଲ୍ଲିକାମଣ୍ଡଳ ନାମରେ ଉଲ୍ଲେଖ କରିଥିବା ବିଷୟ ମଧ୍ୟ ପୂର୍ବରୁ କୁହାଯାଇଛି । ମଲ୍ଲିକାର୍ଜ୍ଜୁନ ୧୪୪୭ରୁ ୧୪୬୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମଲ୍ଲିକାର୍ଜ୍ଜୁନଙ୍କୁ ତାଙ୍କ ଖୁଡ଼ୁତା ପୁଅ ଭାଇ ବିରୁପାକ୍ଷ ହତ୍ୟା କରି ୧୪୬୫ରୁ ୧୪୮୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜା

ହୋଇଥିଲେ । ସାରଳା ଦାସ ବିରୂପାକ୍ଷଙ୍କ ନାମ ଏକାଧିକ ଥର ଉଲ୍ଲେଖ କରିଛନ୍ତି । କବି ଗୋଟିଏ ସ୍ଥାନରେ ତାଙ୍କ ନାମକୁ ପ୍ରିଧାସଳାଖ ଭାବରେ ଲେଖିଛନ୍ତି—

ଅନ୍ଧକ ବଂଶର ରାଜା ନାମ ବିରୂପାକ୍ଷ
ତାହାଙ୍କ ଖଟନ୍ତି ତୁଲେ କ୍ଷତ୍ରୀ ନବଲକ୍ଷ ।

ଆଦ୍ୟ, ପୃଃ ୪୪

ପାଣ୍ଡୁଙ୍କୁ ସେବା କରୁଥିବା ରାଜାମାନଙ୍କ ନାମ ବର୍ଣ୍ଣନା କରିବାକୁ ଯାଇ କବି ବିରୂପାକ୍ଷଙ୍କ ନାମ ଲେଖିଛନ୍ତି । ଆମ୍ଭେମାନେ ଆଗରୁ କହିଛୁଁ ଯେ ସାରଳା ଦାସ ଆନ୍ଧ୍ରମାନଙ୍କୁ ଅନ୍ଧକ ବଂଶ ବୋଲି ଆଖ୍ୟାତ କରିଛନ୍ତି । ବିରୂପାକ୍ଷ ବିଜୟନଗରର ଆନ୍ଧ୍ରବଂଶୀୟ (ସଙ୍ଗମ ବଂଶୀୟ) ରାଜାମାନଙ୍କ ମଧ୍ୟରେ ସର୍ବଶେଷ ରାଜା ଥିଲେ । ବିରୂପାକ୍ଷଙ୍କୁ ହତ୍ୟା କରାଇ ସାଲୁବ ନରସିଂହ ବିଜୟନଗରରେ ଯେଉଁ ନବ ରାଜବଂଶ ସ୍ଥାପନ କଲେ, ତାହାର ନାମ ସାଲୁବ ବଂଶ ହୋଇଥିଲା । ※

※ ଏ ପରିଚ୍ଛେଦରେ ଆଲୋଚିତ ସମସ୍ତ ଐତିହାସିକ ନାମ ଓ ଘଟନା ଭାରତୀୟ ବିଦ୍ୟାଭବନରୁ ପ୍ରକାଶିତ The Age of Imperial Kanauj, The Struggle for Empire ଏବଂ The Delhi Sultanate ପୁସ୍ତକମାନଙ୍କରୁ ସଂଗୃହୀତ ହୋଇଛି ।

———

# ଦ୍ୱାଦଶ ପରିଚ୍ଛେଦ

## ମୁସଲମାନ୍ ରାଜତ୍ୱକାଳର ଆଉ କେତୋଟି ଐତିହାସିକ ଚିତ୍ର

ସାରଳା ମହାଭାରତର ଯେଉଁ ଆଖ୍ୟାୟିକାମାନଙ୍କରେ ଐତିହାସିକ ଚିତ୍ର ପ୍ରତିଫଳିତ ହୋଇଛି, ସେମାନଙ୍କ ମଧ୍ୟରୁ କେତୋଟିର ଆଲୋଚନା ଏଠାରେ କରାଯିବ । ଏପରି ଆଖ୍ୟାୟିକାମାନଙ୍କ ମଧ୍ୟରୁ କେତେକର ଆଲୋଚନା ଆଗରୁ କରାଯାଇଛି; ଏଠାରେ ସେମାନଙ୍କ ପୁନରାବୃତ୍ତି ଅନାବଶ୍ୟକ । ସାରଳା ଦାସଙ୍କ ସମୟର ଓଡ଼ିଶା ତଥା ଭାରତର ଇତିହାସ ସମ୍ବନ୍ଧରେ ଆଜି ପର୍ଯ୍ୟନ୍ତ ଯାହା ଜଣାଯାଇଛି, ତାହା ଅତି ସାମାନ୍ୟ । ଏହି ସାମାନ୍ୟ ଜ୍ଞାନ ବଳରେ ହିଁ ତାଙ୍କ ବର୍ଣ୍ଣିତ ଆଖ୍ୟାୟିକାମାନଙ୍କ ଐତିହାସିକ ବିଶ୍ଳେଷଣ କରାଯାଉଛି । ଯଦି କବିଙ୍କ ସମୟର ଇତିହାସ ଆମ୍ଭମାନଙ୍କୁ ସମ୍ପୂର୍ଣ୍ଣ ରୂପେ ଜଣାଥାନ୍ତା, ତେବେ ତାଙ୍କ ମହାଭାରତରୁ ବହୁ ଐତିହାସିକ ତଥ୍ୟ ମିଳିପାରିଥାନ୍ତା । ତାଙ୍କ ସମୟର ଇତିହାସ ଅବଧି ଅସ୍ପଷ୍ଟ ଥିବାରୁ ତାଙ୍କ ଲେଖାରୁ ଅଧିକ ଐତିହାସିକ ତଥ୍ୟ ମିଳିବାର ସମ୍ଭାବନା ରହୁନାହିଁ । ସାରଳା ମହାଭାରତର ମଧ୍ୟପର୍ବ, ସଭାପର୍ବ, ଓ ବନପର୍ବର ବହୁ ଆଖ୍ୟାୟିକା ସଂସ୍କୃତ ମହାଭାରତରେ ନାହିଁ । ହୁଏତ ଏଗୁଡ଼ିକ ମଧ୍ୟରୁ ଅନେକ ସମସାମୟିକ ଘଟନା ବା ତତ୍କାଳୀନ କିମ୍ବଦନ୍ତୀ ମୂଳକ ଇତିହାସର ଅବଲମ୍ବନରେ ଲିଖିତ, ମାତ୍ର ସେ ସମୟର ଇତିହାସ ଅଦ୍ୟାପି ଅସ୍ପଷ୍ଟ ଥିବାରୁ ସେଗୁଡ଼ିକ ବିଶ୍ଳେଷଣ କରିବା ସମ୍ଭବପର ହେଉନାହିଁ । ଆଖ୍ୟାୟିକାମାନଙ୍କ ମଧ୍ୟରେ ଇତସ୍ତତଃ ବିକ୍ଷିପ୍ତ ହୋଇ ରହିଥିବା ଐତିହାସିକ ଓ ଭୌଗୋଳିକ ଉପାଦାନଗୁଡ଼ିକୁ ହିଁ ଆଲୋଚନା କରାଯାଉଛି ।

(୧) ଆଖ୍ୟାୟିକା ମୁଦ୍‌ଗଲ ଋଷି ସଗର ରାଜା ହୋଇ ଜନ୍ମ ଓ ସଗରଙ୍କ ଷାଠିଏ ହଜାର ପୁତ୍ର କପିଳ ଋଷିଙ୍କ କ୍ରୋଧାନଳରେ ଦହନ ।

ବନ, ପୃଃ ୧୩୬–୧୪୪

ଏହି ଆଖ୍ୟାୟିକାର "ମୁଦ୍‌ଗଲ ଋଷି ସଗରରାଜା ହୋଇ ଜନ୍ମ" ବୃତ୍ତାନ୍ତଟି ମୂଳ ସଂସ୍କୃତରେ ନାହିଁ । ମୂଳ ସଂସ୍କୃତରେ "ଦାନଧର୍ମାନୁପ୍ରାଣିତ ମୌଦ୍‌ଗଲ ଚରିତ" ରହିଛି (ଶ୍ରୀ ଭାରତଦର୍ପଣ, ସାହିତ୍ୟ ଏକାଡେମୀ, ପୃ. ୮୮), ମାତ୍ର ସାରଳାଦାସଙ୍କ ମୁଦ୍‌ଗଲ ପଣ୍ଡା ଚରିତ ସହିତ ଏହାର କୌଣସି ସମ୍ପର୍କ ବା ସାମଞ୍ଜସ୍ୟ ନାହିଁ । ମୁଦ୍‌ଗଲପଣ୍ଡା ଚରିତ ସଂକ୍ଷେପତଃ ଏହି ଯେ, ଉତ୍କଳ-ଦେଶ-ନିବାସୀ ପକ୍ଷଭୋଜୀ ବ୍ରାହ୍ମଣ ମୁଦ୍‌ଗଲପଣ୍ଡା ବାରଣସୀକୁ ତୀର୍ଥ କରିବାକୁ ଯାଉଥିଲେ, ମାତ୍ର ବାଟରେ ଜଳଶୂନ୍ୟ ଅରଣ୍ୟ ମଧ୍ୟରେ ଗୋଟିଏ ଦିବ୍ୟ ସୁନ୍ଦର ଗୃହରେ ହିରଣ୍ୟକେଶୀ ନାମ୍ନୀ ଜଣେ ଅପୂର୍ବ ସୁନ୍ଦରୀ ବେଶ୍ୟାର ପାଲରେ ପଡ଼ିଲେ ଓ ପକ୍ଷଭୋଜନ ଛାଡ଼ି ତାହାର ଉଚ୍ଛିଷ୍ଟ ଖାଇଲେ । ତିନି ବର୍ଷ ପରେ ମୁଦ୍‌ଗଲ ପଣ୍ଡାଙ୍କ ମୃତ୍ୟୁ ଘଟିବାରୁ ଯମରାଜା ଆଦେଶ ଦେଲେ—

"ଯମ ବୋଇଲା ବ୍ରାହ୍ମଣ ଜନ୍ମୁ ଏହିକ୍ଷଣି
କାଛସୁର ହୋଇବ ଏ ଜନ୍ମିଲେ ଧରଣୀ ।
ଦୂତକୁ ବୋଇଲା ତହୁଁ କାଳ ଦଣ୍ଡଧର
ପଣ୍ଡାକୁ ଜାତ କରାଅ ଶୃଗାଳୀ ଗର୍ଭର ।
ଶୃଗାଳ ହୋଇଣ ଜନ୍ମୁ ଏ ମର୍ତ୍ତ୍ୟ ଭୁବନ
ଗୋମାଂସ ଭକ୍ଷଣ କରୁ ଏହି ପ୍ରତିଦିନ !"

ଏହା ହିଁ ମୁଦ୍‌ଗଲ ପଣ୍ଡା ଚରିତ । ଏହା ନିଶ୍ଚୟ ସାରଳାଦାସଙ୍କ କଳ୍ପନା-ପ୍ରସୂତ; କିନ୍ତୁ ଏଥିରେ ଇତିହାସର ଛାୟା ପଡ଼ିଛି । ଫେରିସ୍ତାଙ୍କ ଲିଖିତ ବାହାମନି ରାଜ୍ୟ-ଇତିହାସର ଛାୟା ଏଥିରେ କିପରି ପଡ଼ିଛି, ତାହା ଦେଖନ୍ତୁ । ଫେରିସ୍ତା ଯାହା ଲେଖିଛନ୍ତି ତାହା ସ୍ଥୂଳତଃ ଏହି—

୧୪୦୬ ଖ୍ରୀଷ୍ଟାବ୍ଦରେ ବିଜୟନଗରର ସମ୍ରାଟ ଦ୍ୱିତୀୟ ହରିହରଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଦ୍ୱିତୀୟ ବୁକ୍‌କାରାୟ ସିଂହାସନ ଲଭ କଲେ । ମୁଦ୍‌ଗଲର ଜଣେ ସୁବର୍ଣ୍ଣ ବଣିକର ପାର୍ଥଲ ନାମ୍ନୀ ଅପୂର୍ବ ସୁନ୍ଦରୀ କନ୍ୟାର ରୂପ ବର୍ଣ୍ଣନା ତା'ର ବ୍ରାହ୍ମଣ ଗୃହ-ଶିକ୍ଷକଙ୍କଠାରୁ ଶୁଣି ବୁକ୍‌କାରାୟ ସେହି ସୁନ୍ଦରୀ କନ୍ୟାକୁ ବିବାହ କରିବା ପାଇଁ ମନସ୍ଥ କଲେ ଓ ପ୍ରସ୍ତାବ ପଠାଇଲେ । ମାତ୍ର ସୁବର୍ଣ୍ଣବଣିକର କନ୍ୟା ସ୍ୱ ପିତାମାତାଙ୍କୁ ଛାଡ଼ି ସୁଦୂର ରାଜଭବନରେ ଜୀବନଯାପନ କରିବାକୁ ଅନିଚ୍ଛା ପ୍ରକାଶ କଲା । ଏଥିରେ ବୁକ୍‌କାରାୟ କ୍ରୁଦ୍ଧ ହୋଇ ପର୍ଥାଲକୁ ଧରି ଆଣିବା ପାଇଁ ପାଞ୍ଚହଜାର ଘୋଟକ-ସୈନ୍ୟ ପଠାଇ ଦେଲେ । ସୈନ୍ୟମାନଙ୍କ ଆସିବା ଖବର

ଘୁର୍ଣ୍ଣି ପର୍ଥାଲ୍ ଓ ତା’ର ପିତାମାତା ମୁଦ୍‌ଗଲ ଗ୍ରୁହ ପଳାଇଲେ । ମୁଦ୍‌ଗଲ ମାହାମନ ରାଜ୍ୟର ଆଧୁନିକ ରାଇଚୁର୍ ଜିଲ୍ଲାରେ ଅବସ୍ଥିତ । ଏଣୁ ବାହାମନି ସୁଲତାନ୍ ଫିରୋଜଶାହ୍ ଏହି ଘଟଣାକୁ ଆଳ କରି ବିଜୟନଗର ଆକ୍ରମଣ କଲେ । ଉଭୟ ପକ୍ଷରୁ ଘୋର ଯୁଦ୍ଧ ଚାଲିଲା, ମାତ୍ର ଶେଷରେ ବିଜୟନଗର ସମ୍ପୂର୍ଣ୍ଣ ପରାଜିତ ହୋଇ ଆତ୍ମସମର୍ପଣ କଲା । ବୁକ୍‌କାରାୟ ବହୁ ଧନରତ୍ନ ସହ ସ୍ୱବଂଶୀୟ ଜଣେ କନ୍ୟାକୁ ଫିରୋଜଶାହଙ୍କୁ ପ୍ରଦାନ କରିବା ପାଇଁ ବାଧ୍ୟ ହେଲେ । ଫିରୋଜଙ୍କ ପୁତ୍ର ହାସାନ୍ ଖାଁ ସୁବର୍ଣ୍ଣ ବଣିକର କନ୍ୟା ପର୍ଥାଲ୍‌କୁ ବିବାହ କଲେ (Cambridge History of India, Vol. III, pp 391-92; V. D, Mahajan Muslim Rule in India, pp. 246-247) ।

ମୁଦ୍‌ଗଲ ଗୋଟିଏ ସ୍ଥାନର ନାମ; କିନ୍ତୁ ସାରଳା ଦାସ ତାକୁ ଜଣେ ବ୍ୟକ୍ତିର ନାମରେ ପରିଣତ କରିଛନ୍ତି । ବସ୍ତୁତଃ ତାଙ୍କ ଗଳ୍ପର ମୁଦ୍‌ଗଲ ପଣ୍ଡା ହେଉଛନ୍ତି ବାହାମନି ସୁଲତାନ୍‌ଙ୍କ ପୁତ୍ର ହାସାନ୍ ଖାଁ । ତାଙ୍କୁ ହିଁ କବି ପକ୍ଷଭୋଜୀ ବୋଲି ବର୍ଣ୍ଣନା କରିଛନ୍ତି । ହିନ୍ଦୁମାନଙ୍କ ମଧ୍ୟରେ ପକ୍ଷଭୋଜନ ବ୍ରତ ପ୍ରଚଳିତ ଥିବାର ପ୍ରମାଣ କୌଣସି ଶାସ୍ତ୍ର ପୁରାଣରେ ନାହିଁ, କିମ୍ବା ଆଧୁନିକ ଯୁଗରେ ସେପରି ବ୍ରତ ପ୍ରଚଳିତ ନାହିଁ; କିନ୍ତୁ ମୁସଲମାନମାନେ ରମ୍‌ଜାନ୍ ମାସରେ ଦିନରେ ଥରେ ମାତ୍ର ଭୋଜନ କରନ୍ତି । ଏଣୁ ମାସକ ମଧ୍ୟରେ ପନ୍ଦର ଦିନ ବା ଏକପକ୍ଷ ମାତ୍ର ଭୋଜନ କରିଥାନ୍ତି । ସୁବର୍ଣ୍ଣ-ବଣିକ ବା ହିରଣ୍ୟବଣିକର କନ୍ୟାକୁ କବି ହିରଣ୍ୟକେଶୀ ନାମ ଦେଇଛନ୍ତି । ସାରଳା ଦାସଙ୍କ ଅଦ୍ଭୁତ କଳ୍ପନା ଓ ସ୍ମୃତିଶକ୍ତି ଥିଲା । ସେ ଯେଉଁଠାରେ ଯାହା ପାଇଛନ୍ତି, ତାକୁ ଘେନି ଆସି କେତେବେଳେ ଅବିକୃତ ବା କେତେବେଳେ ରୂପାନ୍ତରିତ ଆକାରରେ ତାଙ୍କ କାବ୍ୟରେ ଯୋଡ଼ି ଦେଇଛନ୍ତି ।

(୬) ଆଖ୍ୟାୟିକା—ସଚଳା ହରଣ, ବନ,

ପୃ. ୧୭୬-୧୯୯

ଏ ଆଖ୍ୟାୟିକାଟି ସଂସ୍କୃତ ମହାଭାରତରେ ନାହିଁ କିମ୍ବା ଶ୍ରୀକୃଷ୍ଣଙ୍କ ମହିଷୀ ଜାମ୍ବବତୀ ଗର୍ଭରୁ ଜାତ ସଚଳା ନାମ୍ନୀ କନ୍ୟା ଥିବାର ପ୍ରମାଣ କୌଣସି ଶାସ୍ତ୍ର ପୁରାଣରେ ନାହିଁ । ଏଣୁ ଏହା ସାରଳା ଦାସଙ୍କ ସମ୍ପୂର୍ଣ୍ଣ ନିଜସ୍ୱ । ଏହା ବର୍ଣ୍ଣନା-ବହୁଳତା ହେତୁରୁ ଅତ୍ୟନ୍ତ ଦୀର୍ଘ ହୋଇଥିଲେ ମଧ୍ୟ ଏହାର କଥାବସ୍ତୁକୁ ଅଳ୍ପ କଥାରେ କୁହାଯାଇପାରେ । ଇନ୍ଦ୍ରଙ୍କ ପୁତ୍ର ଚନ୍ଦ୍ରସେନ ଗନ୍ଧର୍ବ ପାନ ଖାଇ ଗୀତ ଗାଉଥିବା ବେଳେ ପାନପିକ ଆସି ବ୍ରହ୍ମାଙ୍କ ଦେହରେ ପଡ଼ିବାରୁ ବ୍ରହ୍ମା ତାଙ୍କୁ ଶୂକର

ହେବା ପାଇଁ ଅଭିଶାପ ଦେଲେ । ଚନ୍ଦ୍ରସେନ ଶୂକର ରୂପରେ କାଳିନ୍ଦୀ ବା ଯମୁନା କୂଳରେ ଚରୁଥିବା ବେଳେ ମ୍ଳେଚ୍ଛଦେଶର ମଙ୍ଗଳସେନ ରାଜାଙ୍କ ଶରରେ ପ୍ରାଣ ହରାଇଲା । ସେ ଶାପମୁକ୍ତ ହୋଇ ପୁଣି ସ୍ୱର୍ଗକୁ ଫେରୁଥିବା ବେଳେ କୃଷ୍ଣଙ୍କ ମହର୍ଷୀ ଜାମ୍ବବତୀଙ୍କ କନ୍ୟା ସଚଳା ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ଉଭୟେ ପ୍ରେମାସକ୍ତ ହେଲେ । ଚନ୍ଦ୍ରସେନ ସଚଳାକୁ ରଥରେ ବସାଇ ସ୍ୱର୍ଗକୁ ନେଇଗଲେ । ଏ ସମ୍ବାଦ ପାଇ କୃଷ୍ଣ ଓ ବଳରାମ ଅତ୍ୟନ୍ତ କ୍ରୁଦ୍ଧ ହୋଇ ସ୍ୱର୍ଗରୁ ସଚଳାକୁ ଫେରାଇ ଆଣିବା ପାଇଁ ସାତ୍ୱିକଙ୍କୁ ପଠାଇଲେ, ମାତ୍ର ଇନ୍ଦ୍ର ଶିବଙ୍କ ପ୍ରରୋଚନାରେ ସଚଳା କନ୍ୟାକୁ ଫେରାଇ ଦେବା ପାଇଁ ଅସମ୍ମତ ହେଲେ । ଫଳରେ ଏକ ପକ୍ଷରେ ଇନ୍ଦ୍ର ଓ ଶିବ ଏବଂ ଅନ୍ୟ ପକ୍ଷରେ କୃଷ୍ଣ ଓ ବଳରାମ ଯୁଦ୍ଧ ପାଇଁ ଉଦ୍ୟତ ହେଲେ । ଉଭୟ ପକ୍ଷ ପାଣ୍ଡବମାନଙ୍କ ସାହାଯ୍ୟ ଲୋଡ଼ିଲେ, ମାତ୍ର ପାଣ୍ଡବମାନେ ଶେଷରେ ଶ୍ରୀକୃଷ୍ଣଙ୍କ ପକ୍ଷରେ ରହିଲେ । ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ଇନ୍ଦ୍ର ହାରଯିବାରୁ ଯୁଧିଷ୍ଠିର ଓ ନାରଦଙ୍କ ମଧ୍ୟସ୍ଥତାରେ ସମାଧାନ ହେଲା । ସଚଳା କନ୍ୟାକୁ ମର୍ତ୍ତ୍ୟପୁରକୁ ଅଣାଗଲା ଓ ଶ୍ରୀକୃଷ୍ଣ ତାକୁ ବିଧିବଦ୍ଧ ଭାବରେ ଚନ୍ଦ୍ରସେନଙ୍କୁ ବିବାହ ଦେଲେ ।

ମୁସଲମାନ ରାଜତ୍ୱକାଳର ଦେବଳାହରଣ ଐତିହାସିକ ପ୍ରସଙ୍ଗକୁ ସାରଳା ଦାସ ଏଠାରେ ପୁରାଣାକାରରେ ସଚଳାହରଣ ଆଖ୍ୟାୟିକାରେ ପରିଣତ କରିଛନ୍ତି । ବାଗଳାନ (ବାଗ୍‌ଲାନ)ର ଆଲୋଚନା ପ୍ରସଙ୍ଗରେ ଦେବଳ ହରଣ ଐତିହାସିକ ଘଟନାମାନ ପୂର୍ବରୁ କୁହାଯାଇଛି । ତଥାପି ଏଠାରେ ସାମାନ୍ୟ ପୁନରାବୃତ୍ତି ଆବଶ୍ୟକ । ଆଲାଉଦ୍ଦିନ ଖିଲିଜୀଙ୍କ ଗୁଜରାଟ ଆକ୍ରମଣ ଫଳରେ ଗୁଜରାଟର ରାଜା କର୍ଣ୍ଣଦେବ ନିଜ ରାଜ୍ୟ ତଥା ନିଜ ରାଣୀ କମଳାଦେବୀଙ୍କୁ ହରାଇ ନିଜ କନ୍ୟା ଦେବଳା ସହିତ ଦେବଗିରି ରାଜ୍ୟ ଅନ୍ତର୍ଗତ ଆଧୁନିକ ନାସିକ ଜିଲ୍ଲା ସ୍ଥିତ କ୍ଷୁଦ୍ର ବାଗ୍‌ଲନ ରାଜ୍ୟକୁ ପଳାଇ ଆସି ସେଠାରେ କିଛିଦିନ ରାଜତ୍ୱ କରିଥିଲେ; କିନ୍ତୁ ସେଠାରେ ମଧ୍ୟ ଶାନ୍ତିରେ ରହିପାରି ନ ଥିଲେ । ଗୁଜରାଟ ଜୟ ପରେ ଆଲାଉଦ୍ଦିନ ଗୁଜରାଟର ରାଣୀ କମଳାଦେବୀଙ୍କୁ ନିଜ ଅନ୍ତଃପୁରବାସିନୀ କରିଥିଲେ । କମଳା ନିଜକନ୍ୟା ଦେବଳାକୁ ଦେଖିବାକୁ ଇଚ୍ଛାପ୍ରକାଶ କରିବାରୁ ଦେବଳାକୁ ଧରି-ଆଣିବା ପାଇଁ ଆଲାଉଦ୍ଦିନ ସୈନ୍ୟମାନଙ୍କୁ ଆଦେଶ ଦେଲେ । ସେତେବେଳକୁ ଦେବଗିରିର ଯୁବରାଜ ଶଙ୍କରଦେବଙ୍କ ସହିତ ଦେବଳାର ବିବାହ ହେବା ପାଇଁ ନିର୍ବନ୍ଧ ହୋଇସାରିଥିଲା । ଏଣୁ ଦିଲ୍ଲୀରୁ ସୈନ୍ୟ ଆସୁଥିବା ଖବର ପାଇବା ମାତ୍ରେ କର୍ଣ୍ଣଦେବ ଅଙ୍ଗରକ୍ଷୀମାନଙ୍କ ସହିତ ଦେବଳାକୁ ଦେବଗିରିକୁ ପଠାଇଦେଲେ, କିନ୍ତୁ ବାଟରେ ଏଲୋରା ଗୁମ୍ଫାମାନଙ୍କ ନିକଟରେ ମୁସଲମାନ ସୈନ୍ୟମାନେ ଦେବଳାକୁ ଧରିନେଇ ଦିଲ୍ଲୀ ନେଇ ଯାଇଥିଲେ । ସେଠାରେ ଆଲାଉଦ୍ଦିନଙ୍କ ଜ୍ୟେଷ୍ଠ ପୁତ୍ର

ଖିଜର ଖାଁଙ୍କ ସହିତ ଦେବଳାର ବିବାହ ହୋଇଥିଲା ।" (The Struggle for Empire, ଭାରତୀୟ ବିଦ୍ୟାଭବନ; ପୃ. ୮୧, ୧୯୫, The Delhi Sultanate, ଭାରତୀୟ-ବିଦ୍ୟାଭବନ, ପୃ. ୩୧-୩୨) ।

ଏହି ଐତିହାସିକ ଘଟନାବଳୀ ସାରଳା ଦାସଙ୍କ "ସଚଳା ହରଣ"ରେ ପ୍ରତିଫଳିତ ହୋଇଛି । ଦ୍ୱାରକା ଗୁଜରାଟରେ ଅବସ୍ଥିତ । ଏଣୁ କବି ଗୁଜରାଟ ତଥା ଦ୍ୱାରକାର ରାଜା କର୍ଣ୍ଣଦେବଙ୍କୁ ଶ୍ରୀକୃଷ୍ଣ ରୂପେ ଓ ତାଙ୍କ ପତ୍ନୀ କମଳାଦେବୀଙ୍କୁ ଜାମ୍ବବତୀ ରୂପେ ବର୍ଣ୍ଣନା କରିଛନ୍ତି । ଦେବଗିରିର ରାଜପୁତ୍ର ଶଙ୍କରଦେବ ଓ ଆଲ୍ଲାଉଦ୍ଦିନ ଖିଲିଜୀ ସାରଳା ଦାସଙ୍କ ଆଖ୍ୟାୟିକାରେ ଯଥାକ୍ରମେ ଶିବ ଓ ଇନ୍ଦ୍ରର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ଇନ୍ଦ୍ରଙ୍କ ପୁତ୍ର ଚନ୍ଦ୍ରସେନ ହେଉଛନ୍ତି ଖିଜର୍ ଖାଁ । ମ୍ଳେଚ୍ଛ ଦେଶରେ ରାଜା ମଙ୍ଗଳସେନ ହେଉଛନ୍ତି ସ୍ୱୟଂ ଆଲାଉଦ୍ଦିନ । କାଳିନ୍ଦୀ ବା ଯମୁନା କୂଳରେ ଅର୍ଥାତ୍ ଦିଲ୍ଲୀରେ ତାଙ୍କର ଔରସରେ ଖିଜର ଖାଁ ଜନ୍ମଗ୍ରହଣ କରିଥିଲେ । କବି ଏହି ଘଟଣାକୁ ପୌରାଣିକ ଶୈଳୀରେ ଲେଖିଛନ୍ତି ଯେ ମଙ୍ଗଳସେନ (ଆଲ୍ଲାଉଦ୍ଦିନ୍) କାଳିନ୍ଦୀ କୂଳରେ ଶୂକରକୁ ତୀରବିଦ୍ଧ କରିବା ପରେ ଚନ୍ଦ୍ରସେନ ଶାପ-ମୁକ୍ତ ହୋଇଥିଲେ । ଦେବଳାଦେବୀ ଚରିତ୍ର ସମ୍ବନ୍ଧରେ ବିଖ୍ୟାତ କବି ମାଲିକଖୁସ୍ରୁ "ଆଶିକ୍" ନାମକ ଖଣ୍ଡିଏ ସୁନ୍ଦର କାବ୍ୟ ଲେଖିଛନ୍ତି । ସେଥିରେ ସେ ଦେବଳା ଓ ଖିଜର୍ ଖାଁ ମଧ୍ୟରେ ପ୍ରଥମ ସାକ୍ଷାତ୍ ପରେ ଉଭୟ ଉଭୟଙ୍କ ପ୍ରତି ପ୍ରେମାସକ୍ତିର ଦୀର୍ଘ କବିତ୍ୱପୂର୍ଣ୍ଣ ବର୍ଣ୍ଣନା ଦେଇଛନ୍ତି । ଦେବଳା-ହରଣ ସମ୍ବନ୍ଧୀୟ ଯେଉଁ ଘଟନାବଳୀ କିମ୍ବଦନ୍ତୀ ଆକାରରେ ଚଳି ଆସିଥିଲା, ଆମର କବି ସେଇଥିରୁ ହିଁ ମାଳମସଲା ସଂଗ୍ରହ କରି ତାଙ୍କର "ସଚଳା ହରଣ"କୁ ପୌରାଣିକ ଶୈଳୀରେ ଲେଖିଯାଇଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆଲ୍ଲାଉଦ୍ଦିନ ଖିଲିଜୀ ଓ ସାରଳା ଦାସଙ୍କ ମଧ୍ୟରେ ସମୟର ବ୍ୟବଧାନ ପ୍ରାୟ ଏକଶତ ବର୍ଷ । କବିଙ୍କ ସମୟରେ ଯେଉଁ ଆକାରରେ "ଦେବଳାହରଣ" ପ୍ରଚଳିତ ଥିଲା, ସେଇଥିରୁ ହିଁ ସେ ଉପାଦାନ ସଂଗ୍ରହ କରି "ସଚଳା-ହରଣ" ଲେଖିଯାଇଛନ୍ତି ।

ସାରଳା ମହାଭାରତ ଅନୁଶୀଳନ କଲେ ଜଣାଯାଏ ଯେ, ସାରଳା ଦାସ ଆଲ୍ଲାଉଦ୍ଦିନ୍ ଖିଲିଜୀଙ୍କ ରାଜତ୍ୱକାଳର ବହୁ ଘଟନା ଜାଣିଥିଲେ । ରାଜ୍ୟରକ୍ଷା ପାଇଁ ଆଲ୍ଲାଉଦ୍ଦିନଙ୍କ ସହିତ ଯେଉଁ ହିନ୍ଦୁ ରାଜାମାନେ ଯୁଦ୍ଧ କରିଥିଲେ, ସଭାପର୍ବରେ ସେ ସମସ୍ତ ରାଜାଙ୍କ ନାମର ଉଲ୍ଲେଖ ରହିଛି ଓ ସେଥିମଧ୍ୟରେ ଟୁଜରାଟର ରାଜା କର୍ଣ୍ଣଦେବଙ୍କ ନାମ ମଧ୍ୟ ଅଛି । କର୍ଣ୍ଣଦେବ ରାଜ୍ୟ ହରାଇ ଯେଉଁ କ୍ଷୁଦ୍ର ରାଜ୍ୟ ବାଗଲନ୍‌କୁ ପଳାଇ ଆସିଲେ, ବିରାଟ ପର୍ବରେ ସେହି ବାଗଲାନ୍, ବା ବାଗଲାନର

ନାମ ଉଲ୍ଲେଖ ରହିଛି । ଏସବୁ ବିଷୟ ପୂର୍ବରୁ ଆଲୋଚନା କରାଯାଇଛି । ଏଠାରେ ପୁନରାବୃତ୍ତି ଅନାବଶ୍ୟକ; କିନ୍ତୁ ଏ ସବୁ ବିଷୟ ଅନୁଧ୍ୟାନ କଲେ ସ୍ପଷ୍ଟ ଜଣାଯାଏ ଯେ କବି ଆଲ୍ଲାଉଦ୍ଦିନ୍ ଖିଲିଜୀଙ୍କ ରାଜତ୍ୱକାଳରେ ଘଟିଥିବା ଦେବଳାହରଣ ବୃତ୍ତାନ୍ତଟି ନିଶ୍ଚୟ ଜାଣିଥିଲେ ଓ ଏହି ବୃତ୍ତାନ୍ତ ଅବଲମ୍ବନରେ ହିଁ ସେ ପୌରାଣିକ ଶୈଳୀରେ ସରଳା ହରଣ ବୃତ୍ତାନ୍ତଟି ଲେଖିଯାଇଛନ୍ତି ।

(୩) ଆଖ୍ୟାୟିକା—ସୁରେଖାହରଣ ମଧ୍ୟ, ପୃ୨୮୯-୩୦୮ । ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ସୁରେଖାହରଣର ସଂକ୍ଷିପ୍ତ ବିବରଣୀ ଦେବା ପରେ ଲେଖିଛନ୍ତି "ବୋଧହୁଏ ଏଗୁଡ଼ିକ କଳ୍ପକଳ୍ପତରୁ କଳ୍ପନା-ପ୍ରସୂତ-ଫଳ, ପରନ୍ତୁ ଆମ୍ଭର ପରିଦୃଷ୍ଟ ଦୁଇଖଣ୍ଡି ତାଳପତ୍ର ପୁସ୍ତକରେ ଏ କଥାଗୁଡ଼ିକର ଆଭାସ ସୁଦ୍ଧା ଦେଖାଯାଇ ନ ଥିବାରୁ ମନେକରୁଁ, ଅନ୍ୟ କେହି କବିମ୍ମନ୍ୟମାନ ମହାତ୍ମାମାନେ ନିଜ ମୃଷା-କଳ୍ପନା ବିଚିତ୍ରତାକୁ ସାରଳା ଦାସଙ୍କ କଳ୍ପନାରେ ମିଶାଇ ଦେଇଥିବେ : ତଥାପି ଲେଖା ଓ ଭାଷାରେ ତାଦୃଶ କିଛି ପ୍ରଭେଦ ରହି ନ ଥିବାରୁ ସାରଳା ଦାସ କବି ଯେ ନିଶ୍ଚେ ଏସବୁ ଲେଖିନାହାନ୍ତି, ଏହା ସତ୍ୟ ବୋଲି କହି ନ ପାରୁ (ଶ୍ରୀଭାରତ-ଦର୍ପଣ, ସାଃ ଏଃ ପୃଃ ୬୦) ।"

ମୂଳ ସଂସ୍କୃତରେ ଅନୁକ୍ତ ସାରଳା ମହାଭାରତର ଆଖ୍ୟାୟିକାଗୁଡ଼ିକ ସାରଳା ଦାସଙ୍କ ନିଜସ୍ୱ କିମ୍ବା ପରବର୍ତ୍ତୀ କାଳରେ ପ୍ରକ୍ଷିପ୍ତ, ଏହା ସ୍ଥିର କରିବା ପାଇଁ ଭାଷା, ଇତିହାସ, ଭୂଗୋଳର ନିକଷରେ ସେଗୁଡ଼ିକୁ କଷି ନେବାକୁ ପଡ଼ିବ; କିନ୍ତୁ କୌଣସି ତାଳପତ୍ର ପୋଥିରେ କୌଣସି ଆଖ୍ୟାୟିକା ନ ଥିବାରୁ ତାକୁ ପ୍ରକ୍ଷିପ୍ତ ବା ଅମୌଳିକ ବୋଲି କୁହାଯାଇ ପାରିବ ନାହିଁ । କେତେକ ପୋଥିରେ କେତେକ ମୌଳିକ ଆଖ୍ୟାୟିକାକୁ ବାଦ୍ କରାଯାଇଥିବା ଅସମ୍ଭବ ନୁହେଁ । ମୋଟ କଥା, ତାଳପତ୍ର ପୋଥି ବା ଛାପାପୁସ୍ତକକୁ ଅଭ୍ରାନ୍ତ ବୋଲି ଧରିନେବା ନିତାନ୍ତ ଅଯୌକ୍ତିକ ହେବ । ଛାପାପୁସ୍ତକଗୁଡ଼ିକ ଶୂନ୍ୟରୁ ଆସି ନାହିଁ, ସେଗୁଡ଼ିକ ମଧ୍ୟ ପ୍ରାଚୀନତର ତାଳପତ୍ର ପୋଥିରୁ ଆସିଛି । ଏଣୁ ବର୍ତ୍ତମାନ ମିଳୁଥିବା ତାଳପତ୍ର ପୋଥିମାନଙ୍କ ପ୍ରତି ଅତିଭକ୍ତି ନିତାନ୍ତ ଭ୍ରମାତ୍ମକ ହେବ । ତାଳପତ୍ର ପୋଥି ହେଉ ବା ଛାପାପୁସ୍ତକ ହେଉ, ସେଥିରେ ଥିବା ଅଭିନବ ଆଖ୍ୟାୟିକାଗୁଡ଼ିକୁ ଭାଷା, ଇତିହାସ ଓ ଭୂଗୋଳରୁ ପ୍ରାପ୍ତ ଜ୍ଞାନ ଦ୍ୱାରା ସମ୍ୟକ୍ ପରୀକ୍ଷା କରିବା ପରେ ହିଁ ସେଗୁଡ଼ିକୁ ମୌଳିକ ବା ପ୍ରକ୍ଷିପ୍ତ ବୋଲି ସ୍ଥିର କରିବାକୁ ପଡ଼ିବ । ଭାଷାବିତ୍ ପଣ୍ଡିତ ନନ୍ଦ ଲେଖିଛନ୍ତି ଯେ, ଭାଷା ଦୃଷ୍ଟିରୁ ଦେଖିବାକୁ ଗଲେ "ସୁରେଖା-ହରଣ" ଅମୌଳିକ ବୋଲି ମନେ ହେଉନାହିଁ । ଏ ଆଖ୍ୟାୟିକାଟିକୁ ଐତିହାସିକ ଓ ଭୌଗୋଳିକ

ଦୃଷ୍ଟିରୁ ଦେଖିଲେ ମଧ୍ୟ ଠିକ୍ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ପଡ଼େ । ଏଥିରେ ଯେଉଁ ଐତିହାସିକ ତଥ୍ୟ ପ୍ରତିଫଳିତ ହୋଇଛି, ତାହା ସାରଳା ଦାସଙ୍କ ସମସାମୟିକ ଐତିହାସିକ ତଥ୍ୟ । ଏଥିରେ ଯେଉଁ ଭୌଗୋଳିକ ତଥ୍ୟ ଅଛି, ତାହା ପରବର୍ତ୍ତୀ ଅନୁଲେଖକମାନଙ୍କ ଲେଖନୀରୁ ପ୍ରସୂତ ହେବା ସମ୍ଭବପର ନୁହେଁ । ଏଣୁ ସୁରେଖା-ହରଣ ନିଶ୍ଚୟ ସାରଳା ଦାସଙ୍କ ମୌଳିକ ଲେଖା ।

ଆଖ୍ୟାୟିକାଟି ସୁଦୀର୍ଘ ହେଲେ ହେଁ ତା'ର କଥା-ବସ୍ତୁକୁ ଅଳ୍ପ କଥାରେ କୁହାଯାଇପାରେ । ସୁରେଖାର ପିତାଙ୍କ ନାମ ଓ ବାସସ୍ଥାନ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

କୂର୍ମପର୍ବତ ବୋଲିଣ ଏକ ଗିରିବରେ
ସୁର୍ ନଦୀ ବୋଲି ନଦୀ ବହେ ଏକଧାରେ ।
ତହିଁର ପଶ୍ଚିମଦିଗେ ନଗରେକ ଅଛଇ
କରମଣ୍ଡଳ ବୋଲିଣ ତା'ର ନାମ ହୋଇ ।
ତହିଁର ନରେନ୍ଦ୍ର କୃତ ଶେଖର ଅଟଇ
ମନ୍ତ୍ରୀର ନାମ ତାହାର ବିରୂପାକ୍ଷ ହୋଇ ।
ନୀଳଶେଖର ନାମରେ ତା'ହାର କୁମର
ହାତୀ ରଥୀ ପଦାତି ଯେ ଅଛଇ ଅପାର ।
କନ୍ୟା ତାହାର ସୁରେଖା ନାମେ ଏକ ବାଳୀ
ଅନେକ ଯତ୍ନେ ପାଳଇ ତାକୁ ଦଣ୍ଡଧାରୀ ।

ମଧ୍ୟ, ପୃ. ୨୮୯

କନ୍ୟା ଯୁବତୀ ହେବାରୁ କୃତଶେଖର ଗୋଟିଏ ମେଢ଼ ତୋଳାଇ ତାହାର ଭିତରେ କନ୍ୟାକୁ ରଖାଇଲେ । ତା'ପରେ ନାରଦଙ୍କ କୌଶଳ ହେତୁରୁ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ସହିତ କୁମାରୀ ସୁରେଖାର ସେହି ମେଢ଼ ଭିତରେ ମିଳନ ଘଟିଲା । ମିଳନର ପରଦିନ ଉଭୟେ ରଥ ଚଢ଼ି ଦ୍ୱାରକାଭିମୁଖରେ ଯାଉଥିବାବେଳେ କୃତଶେଖର କନ୍ୟା-ଅପହରଣର ସମ୍ବାଦ ପାଇ ପ୍ରଦ୍ୟୁମ୍ନଙ୍କୁ ବନ୍ଦୀ କରାଇଲେ । ଏହାପରେ ପ୍ରଦ୍ୟୁମ୍ନ ବନ୍ଦୀ ହୋଇଥିବା ନାରଦ ମୁଖରୁ ଶୁଣି କୃଷ୍ଣ-ବଳରାମ ସସୈନ୍ୟ କରମଣ୍ଡଳ ରାଜ୍ୟରେ ପ୍ରବେଶ କଲେ । କୃତଶେଖର ନୀଳଶେଖରଙ୍କ ଅନୁରୋଧ-କ୍ରମେ ପ୍ରଦ୍ୟୁମ୍ନଙ୍କ ବନ୍ଧନମୋଚନ କଲେ ଓ ଶେଷରେ ସୁରେଖାକୁ ତାଙ୍କୁ ହିଁ ବିବାହ ଦେଲେ ।

ଓଡ଼ିଶାରେ କାଞ୍ଚି-କାବେରୀ ନାମରେ ଯେଉଁ କିମ୍ବଦନ୍ତୀ ପ୍ରଚଳିତ ହେଲା, ତାହାର ମୂଳ କଥା ଏହି ସୁରେଖା ହରଣରେ ରହିଛି । ଶ୍ରୀକୂର୍ମ ମନ୍ଦିର ଶ୍ରୀକାକୋଲର ମାତ୍ର ଦଶମାଇଲ ଦୂରରେ ଅବସ୍ଥିତ । ଏହା ହିଁ କବିବର୍ଣ୍ଣିତ କୂର୍ମ-ପର୍ବତ ଶ୍ରୀକୂର୍ମର

ଅନତିଦୂରରେ ନାଗାବଳୀ ନଦୀ ବଂଶଧାରାରେ ମିଶିଛି । ଏହା ହିଁ କବିବର୍ଣ୍ଣିତ ସୁର-ନଦୀ । ଏହାର ପଶ୍ଚିମ ଦିଗରେ "କରମଣ୍ଡଳ ବୋଲିଣ" ଯେଉଁ "ନଗେକ" ଅଛି, ତାହା କାଞ୍ଚି ଛଡ଼ା ଅନ୍ୟ କୌଣସି ସ୍ଥାନ ନୁହେଁ । ନେଲ୍ଲୋରଠାରୁ କୁମ୍ଭକୋଣମ୍ ପର୍ଯ୍ୟନ୍ତ ବିସ୍ତୃତ ଉପକୂଳ ଅଞ୍ଚଳ ଅଦ୍ୟାପି କରମଣ୍ଡଳ ନାମରେ ବିଦିତ । ଆଗରୁ କୁହାଯାଇଛି ଯେ ସାଲୁବ ନରସିଂହ ଏହି ଅଞ୍ଚଳରେ ବିଜୟନଗର ସମ୍ରାଟଙ୍କ ଅଧୀନ ରାଜା ରୂପେ ଅବସ୍ଥାପିତ ହୋଇଥିଲେ ହେଁ, ଘଟନାଚକ୍ରରେ ମଲ୍ଲିକାର୍ଜୁନ (ଖ୍ରୀ: ୧୪୪୬-୧୪୬୫) ଓ ବିରୂପାକ୍ଷଙ୍କ (ଖ୍ରୀ: ୧୪୬୫-୧୪୭୫) ରାଜତ୍ୱକାଳରେ ସେ ବିଜୟନଗର ସାମ୍ରାଜ୍ୟର ସର୍ବେସର୍ବା ହୋଇପଡ଼ିଥିଲେ । ସାଲୁବଙ୍କ ପ୍ରଥମ ରାଜଧାନୀ ଥିଲା ଚନ୍ଦ୍ରଗିରି ଓ ଦ୍ୱିତୀୟ ରାଜଧାନୀ ଥିଲା କାଞ୍ଚି ବା ଆଧୁନିକ କାଞ୍ଚିଭେରମ୍ । ବିରୂପାକ୍ଷଙ୍କ ପୁତ୍ର ପ୍ରୌଢ଼ଦେବରାୟଙ୍କୁ ହତ୍ୟା କରାଇ ସାଲୁବ ନରସିଂହ ଶେଷରେ ବିଜୟନଗରର ସମ୍ରାଟ ହୋଇଥିଲେ । ଏଠାରେ କବିବର୍ଣ୍ଣିତ କୃତଶେଖର ହେଉଛନ୍ତି ସାଲୁବ ନରସିଂହ । ବିଜୟନଗରର ସମ୍ରାଟ ବିରୂପାକ୍ଷଙ୍କ ନାମଟି ଆଖ୍ୟାୟିକାରେ ଅପ୍ରଚ୍ଛନ୍ନ ଓ ଅବିକୃତ ଭାବରେ ସ୍ଥାନ ପାଇଥିଲେ ହେଁ କବି ବିରୂପାକ୍ଷଙ୍କୁ ସାଲୁବ ନରସିଂହଙ୍କ ମନ୍ତ୍ରୀ ରୂପେ ଉପସ୍ଥାପିତ କରିଛନ୍ତି । ଏହା ବ୍ୟଙ୍ଗ ହୋଇପାରେ କିମ୍ବା ସମସାମୟିକ ଘଟନାମାନଙ୍କୁ ଅବିକୃତ ଭାବରେ ପ୍ରକାଶ ନ କରିବାର ପ୍ରୟାସ ହୋଇପାରେ । ଆଖ୍ୟାୟିକାଟିର ପ୍ରଦ୍ୟୁମ୍ନ ହେଉଛନ୍ତି ଜଗନ୍ନାଥ (ଶ୍ରୀକୃଷ୍ଣ)ଙ୍କ ଚଳନ୍ତି ପ୍ରତିମା କପିଳେଶ୍ୱର ଗଜପତିଙ୍କ ପୁତ୍ର ପୁରୁଷୋତ୍ତମ ।

ସାରଳାଦାସ ତାଙ୍କ ମହାଭାରତରେ ସାଲୁବ ନରସିଂହଙ୍କୁ ଏକାଧିକ ଛଦ୍ମ ନାମରେ ଉଲ୍ଲେଖ କରିଛନ୍ତି । କବି ସଭାପର୍ବରେ ଅର୍ଜୁନଙ୍କ ଦିଗ୍ବିଜୟ-ପ୍ରସଙ୍ଗରେ ତାଙ୍କୁ ସାଲୁ ନାମରେ ବାରମ୍ବାର ବର୍ଣ୍ଣନା କରିଥିବା ବିଷୟ ଆଗରୁ ଆଲୋଚିତ ହୋଇଛି । ଏହା ଛଡ଼ା କବି ତାଙ୍କୁ କୃତଶେଖର, କୃତକେଶୀ, କୃତକେଶରୀ ଓ ମହାକେଶରୀ ନାମରେ ବାରମ୍ବାର ଉଲ୍ଲେଖ କରିଛନ୍ତି । ନାମଗୁଡ଼ିକ ଛଦ୍ମନାମ ହେଲେ ହେଁ ଅନେକ ସମୟରେ ଅର୍ଥପୂର୍ଣ୍ଣ ହୋଇଛି । କୃତକେଶରୀ ଅର୍ଥ ହେଉଛି—ସତ୍ୟ-ଯୁଗର ସିଂହ; ଅର୍ଥାତ୍ ନରସିଂହ, କାରଣ ନରସିଂହ ସତ୍ୟଯୁଗରେ ଅବତାର ହୋଇଥିଲେ । ସେହିପରି ମହାକେଶରୀର ଅର୍ଥ ହେଉଛି—ନରକେଶରୀ ବା ନରସିଂହ । ଅଶ୍ୱମେଧ ପର୍ବରେ ସାରଳାଦାସ ମହାକେଶରୀଙ୍କୁ ସ୍ପଷ୍ଟ ଭାବରେ ପାଣିମଣ୍ଡଳ (କରମଣ୍ଡଳ) ଓ କାଞ୍ଚିର ରାଜା ବୋଲି ବର୍ଣ୍ଣନା କରିଛନ୍ତି—

କଳିଙ୍ଗ ଦେଶେ କଳିଙ୍ଗସେନ ଯେ ନୃପତି
ତାହାକୁ ବରଣ ଦେଇ ବାସବ-ସନ୍ତତି ।
ମ୍ଳେଚ୍ଛ୍ଖାର ମଣ୍ଡଳେ ଯାଇଁ ମିଳେ ଅଶ୍ୱ ଯେନ
ପାଣିମଣ୍ଡଳ ଯେ କାଞ୍ଚିନଗ୍ର ଏହି ତିନ ।

ଅଶ୍ୱମେଧ, ପୃ-୨୬-୨୭

ଆଗରୁ କୁହାଯାଇଛି ଯେ, ସାରଳା ଦାସ ମୁସଲମାନ ରାଜ୍ୟମାନଙ୍କୁ ତୈଳଖାରମଣ୍ଡଳ (ଅଶ୍ୱବଳେଶ୍ୱରମାନଙ୍କ ରାଜ୍ୟ) ରୂପେ ବାରମ୍ବାର ଲେଖିଯାଇଛନ୍ତି । ଏଣୁ ଏଠାରେ ତୈଳଖାରମଣ୍ଡଳ ହେଉଛି ବାହମନ ରାଜ୍ୟ । ବାହମନ ସଲଗ୍ନ ପାଣିମଣ୍ଡଳ ଅର୍ଥାତ୍ କରମଣ୍ଡଳ ତଥା କାଞ୍ଚିନଗର ରାଜା ଥିଲେ ମହାକେଶରୀ (ନରସିଂହ) । ସେ ଯଜ୍ଞଅଶ୍ୱକୁ ନ ଛାଡ଼ିବାରୁ ଅର୍ଜୁନ ତାଙ୍କୁ ପରାସ୍ତ କରି ତାଙ୍କ ଶିରଚ୍ଛେଦନ କରିବାକୁ ଉଦ୍ୟତ ହେଉଥିଲେ, ମାତ୍ର କୁବଳୟା ଅଶ୍ୱର ଅନୁରୋଧରେ ତାଙ୍କ ପ୍ରାଣରକ୍ଷା କରି ତାଙ୍କୁ ବନ୍ଦୀ ରୂପେ ନେଇଗଲେ । ପୂର୍ବରୁ ସୂଚନା ଦିଆଯାଇଛି ଯେ ସାରଳା ଦାସ ଓଡ଼ିଶାର ଶତ୍ରୁସ୍ଥାନୀୟ ରାଜାମାନଙ୍କୁ ପାଣ୍ଡବମାନଙ୍କ ହାତରେ ମରାଇଛନ୍ତି କିମ୍ବା ବନ୍ଧନ କରାଇଛନ୍ତି । ସାଲୁବ ନରସିଂହ (ମହାକେଶରୀ) ଓଡ଼ିଶାର ଶତ୍ରୁ ଥିଲେ; ଏଣୁ ସେ ଅର୍ଜୁନ ହାତରେ ବନ୍ଦୀ ହୋଇଥିଲେ ।

ସୁରେଖା ହରଣ ଆଖ୍ୟାୟିକାଟିକୁ ଏହିପରି ବିଭିନ୍ନ ଦିଗରୁ ଆଲୋଚନା କଲେ ଦେଖାଯାଉଛି ଯେ, ଏଥିରେ କପିଳେଶ୍ୱର, ତାଙ୍କ ପୁତ୍ର ପୁରୁଷୋତ୍ତମ, କାଞ୍ଚିରାଜା ସାଲୁବ ନରସିଂହ ଓ ବିଜୟନଗର ସମ୍ରାଟ ବିରୂପାକ୍ଷ ବିଭିନ୍ନ ଭୂମିକାରେ ବିଦ୍ୟମାନ ଅଛନ୍ତି । କାଞ୍ଚି-କାବେରୀ କିମ୍ବଦନ୍ତୀର ପଦ୍ମିନୀ ବା ପଦ୍ମାବତୀ ଏ ଆଖ୍ୟାୟିକାରେ ସୁରେଖା ନାମ ଧାରଣ କରିଛନ୍ତି । କାଞ୍ଚି-କାବେରୀ କିମ୍ବଦନ୍ତୀର ଐତିହାସିକତା ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ରୂପେ ସ୍ୱୀକୃତ ହୋଇପାରିନାହିଁ; କିନ୍ତୁ ଐତିହାସିକମାନେ ମୋଟାମୋଟି ଭାବରେ ମାନିଛନ୍ତି ଯେ, କପିଳେଶ୍ୱର ଗଜପତିଙ୍କ ପୁତ୍ର ପୁରୁଷୋତ୍ତମଦେବ ସାଲୁବ ନରସିଂହଙ୍କ କନ୍ୟାକୁ ବିବାହ କରିଥିଲେ, (Mahtab—History of Orissa Part I, p-321) । ପୁରୁଷୋତ୍ତମଙ୍କ ପୁତ୍ର ପ୍ରତାପରୁଦ୍ର ତାଙ୍କ ସରସ୍ୱତୀ ବିଳାସ ଗ୍ରନ୍ଥରେ ତାଙ୍କ ମାତାଙ୍କ ନାମ ରୂପାମ୍ବିକା ବୋଲି ଲେଖିଛନ୍ତି । ହୁଏତ ଏହି ରୂପାମ୍ବିକା ସାରଳା ମହାଭାରତରେ ସୁରେଖା ଓ କାଞ୍ଚି କାବେରୀ କିମ୍ବଦନ୍ତୀରେ ପଦ୍ମାବତୀ ନାମ ଧାରଣ କରିଛନ୍ତି । ସାରଳା ଦାସଙ୍କ ସୁରେଖା-ହରଣ କଳ୍ପନାବହୁଳ ଓ କାଞ୍ଚି-କାବେରୀ କିମ୍ବଦନ୍ତୀ ମଧ୍ୟ କଳ୍ପନା ବହୁଳ । ଏଣୁ ଏଥିମଧ୍ୟରୁ ଗୋଟିକର ସାହାଯ୍ୟରେ ଅନ୍ୟଟିର ଐତିହାସିକତା ପ୍ରମାଣ କରିବା ସମ୍ଭବପର ନୁହେଁ । ଜଣେ ଅନ୍ଧ ଅନ୍ୟଜଣେ ଅନ୍ଧକୁ ପଥ ଦେଖାଇ ନ ପାରେ; କିନ୍ତୁ ଆମ୍ଭେମାନେ ଅଧ୍ୟାପକ ପ୍ରଭାତ କୁମାର ମୁଖାର୍ଜିଙ୍କ ସହିତ ଏକମତ ଯେ, ପୁରୁଷୋତ୍ତମଦେବଙ୍କ ଯୌବନ-କାଳରେ ହିଁ ତାଙ୍କର ସାଲୁବ ନରସିଂହଙ୍କ କନ୍ୟା ସହିତ ବିବାହ ହୋଇଥିଲା, (Gajapati Kings of Orissa, pp. 60-63) । ସୁରେଖା ହରଣ ଆଖ୍ୟାୟିକାରୁ ମଧ୍ୟ ଏହା ହିଁ ସୂଚିତ ହେଉଛି ।

ଅପରୂପ ଘଟଣାମାନଙ୍କ ସମାବେଶରେ ସଂଘଟିତ ରାଜପୁରୁଷମାନଙ୍କ ବିବାହ ପ୍ରସଂଗ ଲୋକସମାଜରେ ବହୁଦିନ ପ୍ରଚଳିତ ରହେ ଓ ସେଇଥିରୁ ହିଁ କବି ଓ ନାଟ୍ୟକାରମାନେ ଉପାଦାନ ସଂଗ୍ରହ କରି ସେମାନଙ୍କ କାବ୍ୟନାଟକାଦି ଲେଖିଥାନ୍ତି । ଏପରି କାବ୍ୟ-ନାଟକାଦିକୁ ଇତିହାସ ବୋଲି କୁହା ନ ଗଲେ ମଧ୍ୟ ଏ ଗୁଡ଼ିକରେ ଯେ ଐତିହାସିକ ନାମ ଓ ଘଟନାମାନ ସଂଶ୍ଳିଷ୍ଟ ହୋଇଥାଏ, ଏହା ଅସ୍ୱୀକାର କରାଯାଇ ନ ପାରେ । ସାରଳା ଦାସଙ୍କ ଉଲ୍ଲିଖିତ ଆଖ୍ୟାୟିକା ତିନୋଟିରେ ସେହିପରି ଐତିହାସିକ ନାମ ଓ ଘଟନାମାନ ସଂଶ୍ଳିଷ୍ଟ ହୋଇ ରହିଛି । ସାରଳା ମହାଭାରତର ଆହୁରି ଅନେକ ଆଖ୍ୟାୟିକା ଅଛି, ଯେଉଁଥିରେ କି ଏହିପରି ଐତିହାସିକ ନାମ ଓ ଘଟନାମାନ ସଂଶ୍ଳିଷ୍ଟ ହୋଇ ରହିଛି, ମାତ୍ର "ସାରଳା ସାହିତ୍ୟର ଐତିହାସିକ ତଥ୍ୟ" ସମ୍ବନ୍ଧୀୟ ଆଲୋଚନା ସୁଦୀର୍ଘ ହୋଇସାରିଲାଣି; ଆଉ ଅଧିକ ଦୀର୍ଘ କରିବା ସମୀଚୀନ ମନେ ହେଉନାହିଁ ।



# ଏକୋନବିଂଶ ପରିଚ୍ଛେଦ

## ସଭାପର୍ବର ଭୌଗୋଳିକ ଚିତ୍ର

ଏହି ପରିଚ୍ଛେଦରେ ସାରଳା ମହାଭାରତର ସଭାପର୍ବର ଐତିହାସିକ ଓ ଭୌଗୋଳିକ ଚିତ୍ର ଆଲୋଚନା କରାଯିବ । ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ଲେଖିଛନ୍ତି—"ମୂଳରେ ପଞ୍ଚବିଂଶାଧ୍ୟାୟ ପ୍ରାରମ୍ଭରୁ ଦ୍ୱାତ୍ରିଂଶ ଶେଷ ପର୍ଯ୍ୟନ୍ତ ୨୧୮ ଶ୍ଳୋକରେ ମାତ୍ର ଦିଗ୍‌ବିଜୟ ପର୍ବ ସମାପ୍ତ । ଏହାକୁ ସାରଳା ଦାସ କବି ନାନାବିଧ ଅବାନ୍ତର କଥାମାନଙ୍କରେ ସୁବିସ୍ତୃତ କରିଛନ୍ତି (ଶ୍ରୀ ଭାରତ ଦର୍ପଣ, ସାହିତ୍ୟ ଏକାଡେମୀ, ପୃ-୬୭)" । ପୁନଶ୍ଚ "ସାରଳା ଦାସ କବିଙ୍କର କଳ୍ପନାଶକ୍ତିର ଚୂଡ଼ାନ୍ତ ମହିମା ଏତଦାପେକ୍ଷା ସଭାପର୍ବରେ ବିଦ୍ୟମାନ । ଭୀମାଦି ଚତୁଷ୍ଟୟ ଚତୁର୍ଦ୍ଦିଗରୁ ଯଥାର୍ଥ ନିମନ୍ତ୍ରିତ ରାଜାମାନଙ୍କୁ ଆଣିଲେ । ଏତିକି କଥାମାତ୍ର ମୂଳରୁ ସ୍ଥୂଳ ସାରାଂଶ ନେଇ ନାମଧାମାଦି କଳ୍ପନାରେ ସଙ୍ଗତ ଭାବରେ ଅନେକଗୁଡ଼ିଏ ପାଠ ଅନର୍ଗଳ ଲେଖି ଯାଇଛନ୍ତି (ପୃ. ୬୦) ।" ଏ ସବୁ ଉକ୍ତିରୁ ସହଜରେ ଜଣାଯିବ ଯେ ସଂସ୍କୃତ ସଭାପର୍ବ ସହିତ ସାରଳା ମହାଭାରତ ସଭାପର୍ବର ପ୍ରାୟ ସମ୍ପର୍କ ନାହିଁ; କିନ୍ତୁ ସାରଳାଦାସଙ୍କ ସଭାପର୍ବକୁ ଅବାନ୍ତର କହିବା ଅତ୍ୟନ୍ତ ଅସମୀଚୀନ ହେବ । ତାଙ୍କୁ ତାଙ୍କ ସମୟର ଯେତେ ଐତିହାସିକ ଓ ଭୌଗୋଳିକ ବିବରଣ ଜଣା ଥିଲା, ସେସବୁକୁ ସେ ଏହି ପର୍ବର ଦିଗ୍‌ବିଜୟ ବୃତ୍ତାନ୍ତମାନଙ୍କରେ ସନ୍ନିବେଶ କରିବା ପାଇଁ ଚେଷ୍ଟା କରିଛନ୍ତି । ଏଣୁ ଭାରତୀୟ ପ୍ରାଚୀନ ସାହିତ୍ୟର ଏହା ଏକ ଅଦ୍ୱିତୀୟ ମୌଳିକ ରଚନା । ଅବଶ୍ୟ ଏସବୁ ଲେଖିବାବେଳେ କବିଙ୍କ କଳ୍ପନା ଅବାଧରେ ଗତି କରିଛି । ଏହି ଆଧୁନିକ କ୍ରିନ-ବିଜ୍ଞାନ ଯୁଗର ପୁସ୍ତକମାନଙ୍କରେ ଯେଉଁ ଐତିହାସିକ ଓ ଭୌଗୋଳିକ ବିବରଣମାନ ଅଛି, ସାରଳାଦାସଙ୍କ ଦିଗ୍‌ବିଜୟ ବୃତ୍ତାନ୍ତମାନଙ୍କରୁ ଠିକ୍ ସେହିପରି ବିବରଣମାନ ଖୋଜିବା ପ୍ରାରମ୍ଭିକ ଭ୍ରମ ହେବ ।

ରାଜସୂୟ ଯଜ୍ଞ ପାଇଁ ପାଣ୍ଡବମାନଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ ସାରଳାଦାସ ଲେଖିଛନ୍ତି ଯେ ଭୀମ ପଶ୍ଚିମକୁ, ଅର୍ଜ୍ଜୁନ ଉତ୍ତରକୁ, ନକୁଳ ଦକ୍ଷିଣକୁ ଓ ସହଦେବ ପୂର୍ବକୁ ରାଜାମାନଙ୍କ ନିମନ୍ତ୍ରଣାର୍ଥେ ଯାଇଥିଲେ । ଆମ୍ଭେମାନେ ଆଗରୁ କହିଛୁଁ ଯେ କବି କେତେବେଳେ କୁରୁପାଣ୍ଡବମାନଙ୍କ ଲୀଳାସ୍ଥଳି ହସ୍ତିନାରୁ (ଦିଲ୍ଲୀ ଅଞ୍ଚଳରୁ) ଓ

କେତେବେଳେ ତାଙ୍କ ଜନ୍ମଭୂମି ଓଡ଼ିଶାରୁ ଦିଗ୍‌ନିର୍ଣ୍ଣୟ କରିଥିବାରୁ ତାଙ୍କ ବର୍ଣ୍ଣିତ ଦେଶ ଓ ସ୍ଥାନମାନଙ୍କ ଦିଗ କେତେକ ସ୍ଥଳରେ ଭ୍ରମାତ୍ମକ ହୋଇଛି । ସାରଳାଦାସଙ୍କ ସମୟରେ ମାନଚିତ୍ର ଥିବାର ପ୍ରମାଣ ମିଳୁନାହିଁ । ଯଦିବା ମାନଚିତ୍ର ଥିଲା ବୋଲି ଧରାଯାଏ, ତେବେ ସୁଦ୍ଧା ମାନିବାକୁ ହେବ ଯେ ଆଜିକାଲିର ମାନଚିତ୍ର ପରି ସେଗୁଡ଼ିକ ଅଭ୍ରାନ୍ତ ନ ଥିଲା ! କାରଣ ଯେଉଁ ଯନ୍ତ୍ରଗୁଡ଼ିକ ସାହାଯ୍ୟରେ ଆଜିକାଲି ଅଭ୍ରାନ୍ତ ମାନଚିତ୍ର ତିଆରି ହେଉଛି, ସେତେବେଳେ ସେଗୁଡ଼ିକ ଉଦ୍ଭାବିତ ହୋଇ ନ ଥିଲା । ସ୍ଥଳେ ସ୍ଥଳେ ଦିଗଭ୍ରାନ୍ତ ସତ୍ତ୍ୱେ ସାରଳା ଦାସଙ୍କ ସମ୍ପର୍କରୁ ଯେଉଁ ଭୌଗୋଳିକ ତଥା ଐତିହାସିକ ଚିତ୍ର ମିଳେ, ତାହା ଅତୁଳନୀୟ । ୧୯୬୭ ମସିହାରେ ରାଧାରମଣ ପ୍ରେସରୁ ପ୍ରକାଶିତ ସାରଳା ମହାଭାରତରେ ପ୍ରଦତ୍ତ ପ୍ରତ୍ୟେକ ପାଣ୍ଡବଙ୍କ ଦିଗ୍‌ବିଜୟ ପ୍ରସଙ୍ଗକୁ ପୃଥକ୍ ପୃଥକ୍ ଭାବରେ କ୍ରମାନ୍ୱୟରେ ଆଲୋଚନା କରାଯାଉଛି । ଆମ୍ଭେମାନେ ଆଗରୁ ଏକାଧିକ ଥର କହିଛୁ ଯେ ସାରଳାଦାସ ବହୁ ନାମକୁ ରୂପାନ୍ତରିତ ଆକାରରେ ପ୍ରକାଶ କରିଛନ୍ତି । ପାଣ୍ଡବମାନଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ ମଧ୍ୟ ତାହା ହିଁ ଘଟିଛି ।

(କ) ଭୀମଙ୍କ ପଶ୍ଚିମଦିଗର ଦିଗ୍‌ବିଜୟ ବୃତ୍ତାନ୍ତ, ସଭା, ପୃ-୫୧-୧୧୪ ।

ଭୀମ ପଶ୍ଚିମଦିଗର ରାଜାମାନଙ୍କ ନିମନ୍ତ୍ରଣାର୍ଥେ ନିମ୍ନଲିଖିତ ଦେଶ ଓ ସ୍ଥାନମାନଙ୍କୁ କ୍ରମାନ୍ୱୟରେ ଯାଇଥିଲେ ।

୧ । ପଶ୍ଚିମ ସୋମନାଥ ଓ ଶିବ-ସମୁଦ୍ର । ଭୀମ ଏହିଠାରୁ ଯାତ୍ରା ଆରମ୍ଭ କରିଥିଲେ । ଏହା ଆନ୍ଧ୍ରଦେଶର ଶ୍ରୀକାକୋଲ ଜିଲ୍ଲାସ୍ଥ ମୁଖଲିଙ୍ଗମ୍ । ଏଠାରେ ଗଙ୍ଗ ରାଜତ୍ୱ କାଳରେ ନିର୍ମିତ ସୋମେଶ୍ୱର ମନ୍ଦିର ଅଛି ଓ ମୁଖଲିଙ୍ଗେଶ୍ୱର ମନ୍ଦିର ନିକଟରେ ଶିବସାଗର ପୁଷ୍କରିଣୀ ଅଛି । ଦକ୍ଷିଣର କୋଇମ୍ବାଟୁର ଜିଲ୍ଲାର କଲେଗାଲ ନିକଟରେ ମଧ୍ୟ ଗୋଟିଏ ଶିବ-ସମୁଦ୍ର ଅଛି ଓ ତା' ପାଖରେ ସୋମେଶ୍ୱର ସ୍ୱାମୀଙ୍କ ମନ୍ଦିର ମଧ୍ୟ ବିଦ୍ୟମାନ ଅଛି (Epigraphia Indica, Vol. VII. P. 18) । ଏଣୁ ସାରଳା ଦାସ ମୁଖଲିଙ୍ଗମ୍‌ର ସୋମେଶ୍ୱରଙ୍କୁ ପଶ୍ଚିମ ସୋମନାଥ ବୋଲି ଲେଖିଛନ୍ତି ।

୨ । ମାନସାନନ୍ଦ—ନନ୍ଦପୁର । ଏହା ପ୍ରାଚୀନ ଜୟପୁର ଷ୍ଟେଟର ଶିଳାହାର ରାଜାମାନଙ୍କ ରାଜଧାନୀ ଥିଲା । ଏଠାରେ ଅଦ୍ୟାପି ବହୁ ପ୍ରାଚୀନ କୀର୍ତ୍ତି ବିଦ୍ୟମାନ ଅଛି (B. Singh Deo—Nandapur Part I) । କବିଙ୍କ ବିଷ୍ଣୁପ୍ରସାଦ ନଦୀ ହୁଏତ ବଂଶଧାରା, ମାତ୍ର ନନ୍ଦପୁର ସିଲେରୁ ନଦୀ ନିକଟରେ ଅବସ୍ଥିତ, ବଂଶଧାରା କୂଳରେ ନୁହେଁ ।

୩ । କରଣ-ପର୍ବତ—କୂର୍ମ-ପର୍ବତ । ଏଠାରେ ଶ୍ରୀ କୂର୍ମ ମନ୍ଦିର ଅଛି ଓ ଏହି ମନ୍ଦିର ଗାତ୍ରରେ ଓଡ଼ିଶାର ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ରାଜତ୍ୱ କାଳର ବହୁ ଶିଳାଲେଖ ଅଦ୍ୟାପି ବିଦ୍ୟମାନ ଅଛି । ଏହା ଶ୍ରୀକାକୋଲ୍ଠାରୁ ପ୍ରାୟ ୧୦ ମାଇଲ୍ ଦୂରରେ ଅବସ୍ଥିତ । ଏହାର ନିକଟବର୍ତ୍ତୀ ସ୍ଥାନମାନ ହେଉଛି ବଂଶଧାରା ମୁହାଣରେ ଅବସ୍ଥିତ କଳିଙ୍ଗପତ୍ତନମ୍, ଶାର୍ଲୀ-ହ୍ରୋଣ୍ଡ୍ରମ ଓ ଗଜପତି-ନଗର । ଶେଷୋକ୍ତ ନଗରଟି ଓଡ଼ିଶାର କୌଣସି ଗଜପତିଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ।

୪ । ମନୋହର ଦେଶ—ମୋହନ ଦେଶ । ମହାଭାରତ ଯୁଗରେ ଶ୍ରୀକାକୋଲ୍ ଓ ଗୋଦାବରୀ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ମୋହନ ଦେଶ ନାମରେ ଅଭିହିତ ହେଉଥିଲା (N. L. De—Geograpical Dictionary, P. 247 । ※

୫ । କୃଷ୍ଣୀନଗର—କୋଣ୍ଡବଡ଼ୁ । କବି ଏହାକୁ କୃଷ୍ଣାବେଣୀ, ବେଣୀ ଓ କୃଷ୍ଣୀନଗର ନାମରେ ଉଲ୍ଲେଖ କରିଥିବା କଥା ଆଗରୁ ଆଲୋଚନା କରାଯାଇଛି । କୋଣ୍ଡବଡ଼ୁ ଗୁଣ୍ଟୁରଠାରୁ ୧୩ ମାଇଲ ଦୂରରେ ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ ।

୬ । ପଦ୍ମଦଳ ପଦ୍ମପୁର । ଏହା ପୂର୍ବତନ ସାରଙ୍ଗ ଗଡ଼ରେ ଅବସ୍ଥିତ ।

୭ । ହିରଣ୍ୟନଗର—ସୁବର୍ଣ୍ଣପୁର । ମହାନଦୀ କୂଳରେ ଅବସ୍ଥିତ ଆଧୁନିକ ସୋନପୁର ।

୮ । ଚେଦୀଦେଶ—ବୁନ୍ଦେଲଖଣ୍ଡ (G.D., p. 48), ମାତ୍ର ବ୍ୟାପକ ଅର୍ଥରେ ଏହା ଆଧୁନିକ ମଧ୍ୟପ୍ରଦେଶର ସମଗ୍ର ପୂର୍ବାଞ୍ଚଳକୁ ବୁଝାଉଥିଲା ।

୯ । ନୈଋତ ଦେଶ ବା ନୈଋଖାର ଦେଶ—ଆମ୍ଭେମାନେ ଆଗରୁ କହିଛୁଁ ଯେ ସାରଳା ଦାସ ମୁସଲମାନ ରାଜ୍ୟକୁ କମ୍ବା ଯେଉଁ ଅଞ୍ଚଳରେ ଉତ୍ତମ ଅଶ୍ୱ ମିଳୁଥିଲେ ସେହି ଅଞ୍ଚଳକୁ ନୈଋଖାର ଦେଶ ବୋଲି ବର୍ଣ୍ଣନା କରିଛନ୍ତି । ଚେଦୀ ବା ବୁନ୍ଦେଲଖଣ୍ଡର ଆଖପାଖ ଅଞ୍ଚଳରେ ଉତ୍ତମ ଅଶ୍ୱ ମିଳୁଥିବା କଥା ଆଗରୁ ଆଲୋଚନା କରାଯାଇଛି ।

୧୦ । ମଗଧଦେଶ—ଆଧୁନିକ ପାଟନା ଓ ଗୟାଜିଲ୍ଲା ହିଁ ପ୍ରଥମେ ମଗଧ ନାମରେ ଅଭିହିତ ହେଉଥିଲା, ମାତ୍ର ପରେ ଛୋଟନାଗପୁର ଡିଭିଜନ ବ୍ୟତୀତ ସମଗ୍ର

※ ଏହି ପରିଚ୍ଛେଦରେ ନନ୍ଦଲାଲ ଦେଙ୍କ କୃତ Geographical Dictionaryକୁ ସଂକ୍ଷେପରେ G.D. ରୂପେ ଉଲ୍ଲେଖ କରାଯାଇଛି ।

ବିହାର ଅଞ୍ଚଳ ମଗଧ ନାମରେ ଅଭିହିତ ହେଲା । ମଗଧର ପ୍ରାଚୀନତମ ରାଜଧାନୀ ଥିଲା ରାଜଗୃହ ବା ଗିରିବ୍ରଜ । ବର୍ତ୍ତମାନ ଏହା ରାଜଗିର୍ ନାମରେ ବିଦିତ । ଏହିଠାରେ ଜରାସନ୍ଧଙ୍କ ରାଜଧାନୀ ଥିଲା । ଭୀମ ଜରାସନ୍ଧଙ୍କ ପୁତ୍ର ସହଦେବଙ୍କୁ ନିମନ୍ତ୍ରଣ ଦେଇଥିଲେ ।

୧୧ । ମରୁତଦେଶ—ଏ ଦେଶର ପରିଚୟ ଦେବା ସମ୍ଭବପର ହେଉ-ନାହିଁ । କବିଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଏଠାରେ କୌଣସ ପର୍ବତ ଅଛି । କୌଣସି ପର୍ବତକୁ ଯଦି କୈମୁର ପର୍ବତ ବୋଲି ଧରାଯାଏ, ତେବେ ମରୁତ ଦେଶକୁ କୈମୁର ଅଞ୍ଚଳ ବୋଲି ଧରାଯିବ ।

୧୨ । ଉଜାଣି-କାନ୍ତ—ଆମ୍ଭେମାନେ ଆଗରୁ କହିଛୁଁ ଯେ କବି ଉଜ୍ଜୟିନୀକୁ ଉଜାଣ, ଉଜାଣି, ଉଜାଣକାନ୍ତ, ଉଜାଣି-କାନ୍ତ ଇତ୍ୟାଦି ଆକାରରେ ଉଲ୍ଲେଖ କରିଛନ୍ତି । ପ୍ରାଚୀନ ଭାରତରେ ଏକାଧିକ ଉଜ୍ଜୟିନୀ ଥିଲା । ଏଥିମଧ୍ୟରୁ ପ୍ରାଚୀନ ମାଳବର ରାଜଧାନୀ ଉଜ୍ଜୟିନୀ ନଗରୀ ସର୍ବଜନବିଦିତ । ମାତ୍ର ଉତ୍ତରପ୍ରଦେଶସ୍ଥ ମୋରାଦାବାଦର ଉତ୍ତରକୁ କାଶୀପୁର ନିକଟରେ ଉଜ୍ଜୟିନୀ ନାମକ ଗୋଟିଏ ପ୍ରାଚୀନ ଦୁର୍ଗ ଅଦ୍ୟାପି ବିଦ୍ୟମାନ ଅଛି । କାନିଂହାମ୍ ଏହାକୁ ବ୍ରହ୍ମପୁରର ରାଜଧାନୀ ରୋବିଷାଣ ସହିତ ଚିହ୍ନଟ କରିଛନ୍ତି (Cunningham's Ancient Geography of India, edited by S. N. Mazumdar, p. 409) । ସାରଳା ଦାସ ଏଠାରେ ଏହି କାଶୀପୁର ନିକଟସ୍ଥ ଉଜ୍ଜୟିନୀକୁ ହିଁ ଉଜାଣି-କାନ୍ତ ବୋଲି ଲେଖିଛନ୍ତି ।

୧୩ । କାଶୀ-ହରଉଦ୍ୟାନ—ହରଦ୍ୱାର । ଏହି ତୀର୍ଥ ସମ୍ବନ୍ଧରେ ଦୁଇଟି କିମ୍ବଦନ୍ତୀ ପ୍ରଚଳିତ ଅଛି । କେହିକେହି କହନ୍ତି ଯେ ଏଠାରେ ଗଙ୍ଗା ଶିବଙ୍କ ମସ୍ତକରେ ଅବତରଣ କରିଥିଲେ ଓ କେହି କେହି କହନ୍ତି ଯେ ଏଠାରେ ଗଙ୍ଗା ବିଷ୍ଣୁଙ୍କ ପାଦରୁ ବାହାରିଥିଲେ । ପୂର୍ବୋକ୍ତଟି ଶୈବମତ ଓ ଶେଷୋକ୍ତଟି ବୈଷ୍ଣବ-ମତ ଏବଂ ଏହି ମତାନୁଯାୟୀ ସ୍ଥାନଟିର ନାମ ହରଦ୍ୱାର ବା ହରିଦ୍ୱାର ହୋଇଛି । ହରଦ୍ୱାରର ଗଙ୍ଗାକୂଳରେ ବର୍ତ୍ତମାନ ଯେଉଁ ଆଧୁନିକ ମନ୍ଦିରଟି ଅଛି, ତାହା 'ହରିକ ପୟୁର' ମନ୍ଦିର ନାମରେ ଆଖ୍ୟାତ । ସାରଳା ଦାସ ହରଦ୍ୱାରର କଥା ଭଲ ଭାବରେ ଜାଣିଥିଲେ । ହରଦ୍ୱାରର ପ୍ରାଚୀନ ଅଂଶ କନଖଳ ନାମରେ ଅଭିହିତ ଓ ଏହିଠାରେ ଦକ୍ଷପ୍ରଜାପତିଙ୍କ ପ୍ରାଚୀନ ମନ୍ଦିର ବିଦ୍ୟମାନ ଅଛି । କବି ଅନ୍ୟତ୍ର କନଖଳର ନାମ ମଧ୍ୟ ଉଲ୍ଲେଖ କରିଛନ୍ତି—

ସୁବଳସ୍ଥା ନଗର ଯେ ବିଡ଼ାଳ ନଗର
କନଖଳ ନଗର ଯେ ମେଖଳ ନଗର ।

ଭାନୁମତୀ ସ୍ୱୟମ୍ବର, ଆଦ୍ୟ, ପୃ-୧୧୬

ଏଠାରେ ସୁବଳୟା ନଗର ହେଉଛି ରାମେଶ୍ୱର, ବିଡ଼ାଳ ନଗର (ବିରାଳ ନଗର) ହେଉଛି ନାଗପୁର (ବିରାଳର ଅର୍ଥ ନାଗ) ଓ କନଖଲ ନଗର ହେଉଛି ହରଦ୍ୱାର । ମେଖଳ ନଗରକୁ ଚିହ୍ନଟ କରିବା ସମ୍ଭବପର ହେଉନାହିଁ ।

୧୪ । ଉଦ୍ଧଢ଼ଦେଶ—ଉଦ୍ର । ଗଡ଼ବାଲ୍ ଅଞ୍ଚଳ ଉଦ୍ର ବା ଉଦ୍ଧଢ଼ ନାମରେ ଅଭିହିତ ହେଉଥିଲା । ଏହି ଅଞ୍ଚଳରେ ଉଦ୍ର ନାମରେ ଗୋଟିଏ ଦେଶୀୟ ରାଜ୍ୟ ଥିଲା, ବର୍ତ୍ତମାନ ତାହା ଉତ୍ତର ପ୍ରଦେଶରେ ମିଶିଯାଇଛି । ସାରଳାଦାସ ଲେଖିଛନ୍ତି ଯେ ଏହି ଅଞ୍ଚଳରେ ପଞ୍ଚଧାରା ନଦୀ ପଞ୍ଚସଙ୍ଗ ପର୍ବତରୁ ବହି ଆସୁଅଛି । ପ୍ରକୃତରେ ଏହି ଅଞ୍ଚଳରେ ହରଦ୍ୱାରର ପଶ୍ଚିମରେ ଥିବା ପର୍ବତମାନଙ୍କ ମଧ୍ୟରେ ପଞ୍ଚତୀର୍ଥ ବିଦ୍ୟମାନ ଅଛି । ଏ ତୀର୍ଥଗୁଡ଼ିକର ନାମ ହେଉଛି ଅମୃତକୁଣ୍ଡ, ତପ୍ତକୁଣ୍ଡ, ସୀତାକୁଣ୍ଡ, ରାମକୁଣ୍ଡ ଓ ସୂର୍ଯ୍ୟକୁଣ୍ଡ (G. D., p. 147) । ଏହି ଗଡ଼ବାଲ୍ ବା ଉଦ୍ରରେ କେଦାରନାଥ ଓ କେଦାରନାଥ ଶୃଙ୍ଗ (୨୨୭୭୦ ଫୁଟ) ଅବସ୍ଥିତ ଓ କେଦାରନାଥର ପୂର୍ବକୁ ବଦ୍ରୀନାଥ ବିଦ୍ୟମାନ ଅଛି ।

ଭୀମ ଉଦ୍ଧଢ଼ରୁ ବିରାଟରାଜାଙ୍କ ପାଖକୁ ପତ୍ର ଲେଖିଥିଲେ ।

୧୫ । ସୁରାମଣ୍ଡଳ ବା ପଶ୍ଚିମ ସୋମରାଷ୍ଟ୍ର—ଦିଲ୍ଲୀ-ମିରଟ ଅଞ୍ଚଳ । କବି ଏଠାରେ ଉଦ୍ର, ଗଡ଼ବାଲ୍ ପରେ ପଶ୍ଚିମ ସୋମରାଷ୍ଟ୍ରର ନାମ ଉଲ୍ଲେଖ କରିଥିବାରୁ ଜଣାପଡ଼ୁଛି ଯେ ସେ ଏହି ନାମ ଦିଲ୍ଲୀ ମିରଟ ଅଞ୍ଚଳକୁ ଦେଇଛନ୍ତି । ଦିଲ୍ଲୀ ଅଞ୍ଚଳରେ ସୋମବଂଶୀ କୌରବମାନଙ୍କ ରାଜଧାନୀ ହସ୍ତିନାପୁର ବିଦ୍ୟମାନ ଥିଲା । ଏଣୁ କବି ଏହି ଅଞ୍ଚଳକୁ ପଶ୍ଚିମ ସୋମରାଷ୍ଟ୍ର ନାମ ଦେଇଛନ୍ତି ।

୧୬ । କୌଶିକନଗର—କାନ୍ୟକୁବ୍ଜ ବା ଆଧୁନିକ କନଉଜ । ଗହଡ଼ବାଲ୍ ରାଜବଂଶର ତାମ୍ର ଶାସନମାନଙ୍କରେ ଉଲ୍ଲେଖ ରହିଛି ଯେ, ଏହି ବଂଶର ପ୍ରଥମ ରାଜା ଚନ୍ଦ୍ରଦେବ କାଶି (ବାରାଣସୀ) କୁଶିକ (କାନ୍ୟକୁବ୍ଜ), ଉତ୍ତର କୋଶଳ (ଅଯୋଧ୍ୟା) ଓ ଇନ୍ଦ୍ରସ୍ଥାନର (ଦିଲ୍ଲୀ ଅଞ୍ଚଳର) ତୀର୍ଥସ୍ଥାନମାନଙ୍କୁ ରକ୍ଷା କରିଥିଲେ H. C. Ray—The Dynastic History of North India, Vol. I, Fn. 4, p. 504, p. 508 । ଏଣୁ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ ଯେ କାନ୍ୟକୁବ୍ଜର ଅପର ନାମ ଥିଲା କୁଶିକ ବା କୌଶିକ । ବିଶ୍ୱାମିତ୍ରଙ୍କ ଅନ୍ୟତମ ନାମ ଥିଲା କୌଶିକ ଓ ତାଙ୍କ ପିତାଙ୍କ ନାମ ଥିଲା ଗାଧି । ଏଣୁ କାନ୍ୟକୁବ୍ଜର ଅନ୍ୟ ନାମ ଥିଲା ଗାଧିପୁର (The Struggle for the Empire, ଭାରତୀୟ ବିଦ୍ୟାଭବନ, ପୃ. ୫୦ । ସାରଳା ଦାସ ବିରାଟ ପର୍ବରେ ପାଣ୍ଡବମାନଙ୍କ

ଅନ୍ୱେଷଣ ପ୍ରସଙ୍ଗରେ ପଣ୍ଡିତମଦନଗର ସୂତ୍ରମୁଖରେ ଏହି ଗାଧିପୁର ନାମଟି ମଧ୍ୟ ଉଲ୍ଲେଖ କରିଛନ୍ତି—

ରୂପିବଟ ବାଷ୍ଟାବଟ ହଟ ଯେ ଗୋଧିକା
ମଙ୍ଗଳା ଯେ ମାଙ୍ଗଳିକପୁର ସୁଗନ୍ଧିକା ।

ବର୍ତ୍ତ, ପୃ. ୮୮

ଏଠାରେ ଗୋଧିକାର ଶୁଦ୍ଧପାଠ ଗାଧିକା (ଗାଧିପୁର) ହେବ । ରୂପିବଟ ଓ ବାଷ୍ଟାବଟ ପ୍ରୟାଗରେ ଅବସ୍ଥିତ । ଅନ୍ୟ ସ୍ଥାନଗୁଡ଼ିକୁ ଚିହ୍ନଟ କରିବା ସମ୍ଭବପର ହେଉ ନାହିଁ ।

୧୭ । ଡାହାଳ ଦେଶ—ଏହା ସମ୍ବନ୍ଧରେ ଆମ୍ଭେମାନେ ଆଗରୁ ଆଲୋଚନା କରିଛୁ । ଚେଦୀ ଓ ଡାହାଳ ଉଭୟ ନାମ ଏକ ଅଞ୍ଚଳ ପ୍ରତି ପ୍ରଯୁଜ୍ୟ ହେଉଥିଲେ ହେଁ ବେଳେବେଳେ ଡାହାଳ ଦେଶ ଚେଦୀର ଅଂଶବିଶେଷ ରୂପେ ପରିଗଣିତ ହେଉଥିଲା । ଏ ପ୍ରସଙ୍ଗରେ କବିବର୍ଣ୍ଣିତ ଅଶ୍ୱପୂର୍ଣ୍ଣ ମନୋହର ବନକୁ ଆଧୁନିକ ମହୋବା ସହିତ ଚିହ୍ନିତ କରାଯାଇପାରେ । ମହୋବା ଉତ୍ତରପ୍ରଦେଶର ହମିରପୁର ଜିଲ୍ଲାରେ ଅବସ୍ଥିତ । ଏହା ଚନ୍ଦେଲ ରାଜ୍ୟ ଯାଯାକାଭୁକ୍ତିର ରାଜଧାନୀ ଥିଲା ଓ ଏହାର ସଂସ୍କୃତ ନାମ ଥିଲା ମହୋତ୍ସବ ନଗର ।

୧୮ । ବେଲ୍ଲାଳ ଦେଶ—ବେଲ୍ଲାଳ ଦେଶ ଓ ବେଲ୍ଲବଲୀପୁର ସମ୍ବନ୍ଧରେ ମଧ୍ୟ ଆଗରୁ ଆଲୋଚନା କରାଯାଇଛି । ବଙ୍ଗଦେଶର ରାଜା ବଲ୍ଲାଳ ସେନଙ୍କ ନାମାନୁସାରେ ସାରଳା ଦାସ କେତେବେଳେ ସମଗ୍ର ବଙ୍ଗଦେଶକୁ ଓ କେତେ-ବେଳେ ଏହାର ଅଂଶବିଶେଷକୁ ବେଲ୍ଲାଳ ଦେଶ ବୋଲି ବର୍ଣ୍ଣନା କରିଛନ୍ତି ।

୧୯ । କୋଶଳଦେଶ—ଜବଲପୁର, ରାୟପୁର, ସୋନପୁର, ସମ୍ବଲପୁର ପ୍ରଭୃତି ଅଞ୍ଚଳ ପୂର୍ବକାଳରେ ଦକ୍ଷିଣ କୋଶଳ ବା ମହାକୋଶଳ ନାମରେ ଅଭିହିତ ହେଉଥିଲା । ଏ ଆଖ୍ୟାୟିକାରେ ବର୍ଣ୍ଣିତ କଣୟୂରାଜା ବା କର୍ଣ୍ଣରାଜାଙ୍କ ସମ୍ବନ୍ଧରେ ଆଗରୁ ଆଲୋଚନା କରାଯାଇଛି ।

୨୦ । ୨୫ । କନ୍ୟାକାଦେଶ, କର୍ଣ୍ଣାଟଦେଶ, ମହାରାଷ୍ଟ୍ର, ଅମ୍ବୁ, ନର୍ଦ୍ଦର, କାର୍ତ୍ତିକପୁରର ରାଜାଗଣ କର୍ଣ୍ଣକେଶରୀ, ରାମଚନ୍ଦ୍ର, ଶିବ, ଅମ୍ବର, ଗଣପତି ଓ ରୁଦ୍ରଦେବଙ୍କ ସମ୍ବନ୍ଧରେ ଆଗରୁ ଆଲୋଚନା କରାଯାଇଛି ଓ ଏମାନଙ୍କୁ ଯଥାକ୍ରମେ ଗୁଜରାଟର କର୍ଣ୍ଣଦେବ, ଦେବଗିରିର ରାମଚନ୍ଦ୍ର ଓ ଶଙ୍କର ଦେବ, ମେବାଡ଼ର

ହମ୍ଭୀରଦେବ ଏବଂ ତେଲଙ୍ଗାନାର ଗଣପତି ଓ ରୁଦ୍ରଦେବଙ୍କ ସହିତ ଚିହ୍ନିତ କରାଯାଇଛି । ଗଣପତିଙ୍କ ବ୍ୟତୀତ ଏ ସମସ୍ତ ରାଜା ଆଲ୍ଲାଉଦ୍ଦିନ ଖିଲିଜୀଙ୍କ ସଙ୍ଗରେ ଯୁଦ୍ଧ କରିଥିଲେ ।

୨୬ । କନୌଜର ହିନ୍ଦୁରାଜା ଶବଗିନାରାୟଣଙ୍କ ବିଷୟ ମଧ୍ୟ ଆଲୋଚିତ ହୋଇଛି ।

୨୭ । କର୍ଣ୍ଣାର ଦେଶ—ବିଜୟ ନଗର ସାମ୍ରାଜ୍ୟ । କର୍ଣ୍ଣାର ଦେଶର ପୁଣ୍ଡ୍ରରାଜ ବାସୁଦେବଙ୍କ ସହିତ ଭୀମଙ୍କ ଯୁଦ୍ଧ ସମ୍ବନ୍ଧୀୟ ବିସ୍ତୃତ ଆଲୋଚନା ପୂର୍ବ ପ୍ରବନ୍ଧରେ ଦିଆଯାଇଥିବାରୁ ଏଠାରେ ପୁନରାବୃତ୍ତି ଅନାବଶ୍ୟକ ।

୨୮ । ବିଷ୍ଣୁବାତ ବନ—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ ।

୨୯ । କାଉଁରିଦେଶ—ଆସାମର ଗୌହାଟି ଅଞ୍ଚଳ କାମାକ୍ଷା, କାମରୂପ ଓ କାଉଁରିଦେଶ ନାମରେ ସୁପରିଚିତ ହୋଇଥିଲା । ଗୌହାଟିରେ ବର୍ତ୍ତମାନ ସୁଦ୍ଧା ନୀଳାଚଳରେ କାମାକ୍ଷା ମନ୍ଦିର ବିଦ୍ୟମାନ ଅଛି । ଆଲୋଚ୍ୟ ଆଖ୍ୟାୟିକାଟିରେ କବି କାମାକ୍ଷାଦେବୀ କଥା ଉଲ୍ଲେଖ କରି ଭୀମ ତାଙ୍କୁ ନିମନ୍ତ୍ରଣ ଦେଇଥିବା ବିଷୟ ଲେଖିଥିବାରୁ ତାଙ୍କ ବର୍ଣ୍ଣିତ କାଉଁରିଦେଶ ଯେ ଆସାମ ବା ଆସାମର ଗୌହାଟି ଅଞ୍ଚଳ; ଏ ସମ୍ବନ୍ଧରେ ସନ୍ଦେହ ରହୁନାହିଁ, ମାତ୍ର ଆସାମକୁ ପଶ୍ଚିମ ଦିଗରେ ସ୍ଥାନ ଦେବା ବିସ୍ମୟକର ।

(ଖ) ଅର୍ଜୁନଙ୍କ ଉତ୍ତର ଦିଗର ଦିଗ୍‌ବିଜୟ ବୃତ୍ତାନ୍ତ, ସଭା, ପୃଃ ୧୧୬-୧୭୦ ।

ଅର୍ଜୁନ ଉତ୍ତର ଦିଗର ରାଜାମାନଙ୍କ ନିମନ୍ତ୍ରଣାର୍ଥେ ନିମ୍ନଲିଖିତ ଦେଶ ଓ ସ୍ଥାନମାନଙ୍କ କ୍ରମାନ୍ୱୟରେ ଯାଇଥିଲେ ।

୧ । ତ୍ରିଗର୍ତ୍ତ ଅର୍ଜୁନ ଏହିଠାରୁ ଯାତ୍ରା ଆରମ୍ଭ କରିଥିଲେ । ଏଠାରେ ତ୍ରିଗର୍ତ୍ତ ରାଜା ତାଙ୍କୁ ଜଣାଇଲେ ଯେ, ସେ କୀଚକଙ୍କ ଦ୍ୱାରା ରାଜ୍ୟଚ୍ୟୁତ ହୋଇ ପଳାତକ ହୋଇଛନ୍ତି । ତ୍ରିଗର୍ତ୍ତ ଜଣେ ରାଜା ଓ ଗୋଟିଏ ଦେଶ ଉଭୟର ନାମ । ପୂର୍ବପଞ୍ଜାବର ଯେଉଁ ଅଞ୍ଚଳରେ ରାବୀ (ଇରାବତୀ), ବିଆସ୍ (ବିପାଶା) ଓ ସାଟ୍‌ଲେଜ୍ (ଶତଦ୍ରୁ) ପ୍ରବାହିତା ହେଉଛନ୍ତି, ସେହି ତ୍ରିନଦୀର ଅବବାହିକାକୁ ତ୍ରିଗର୍ତ୍ତ କୁହାଯାଉଥିଲା । ଏ ଅଞ୍ଚଳର ପ୍ରଧାନ ନଗର ଥିଲା ଜାଳନ୍ଧର ବା ଆଧୁନିକ ଜଳନ୍ଧର (Cunningham's Ancient Geography of India, edited by S. N. Mazumdar, p. 683) ।

୨ । ପ୍ରାଞ୍ଜଳ—ପଞ୍ଜାବ । ପଞ୍ଜାବ କହିଲେ ପଞ୍ଚନଦୀର ସମଗ୍ର ଅଞ୍ଚଳଟିକୁ ବୁଝାଉଥିଲା । ଆଖ୍ୟାୟିକାଟିରେ ବର୍ଣ୍ଣିତ ଅଛି ଯେ ଏ ଦେଶର ରାଜାଥିଲେ ଗୋପାଳ । ଗଜନୀର ମହମୁଦ୍‌ଙ୍କ ସଙ୍ଗେ ପଞ୍ଜାବର ରାଜା ଜୟପାଳ, ଆନନ୍ଦପାଳ ଓ ତ୍ରିଲୋଚନପାଳ ଯୁଦ୍ଧ କରିଥିଲେ । ହୁଏତ ଏହି ପାଳରାଜାମାନଙ୍କ ନାମ କିମ୍ବଦନ୍ତୀରେ ପ୍ରଚଳିତ ଥିଲା । ସାରଳା ଦାସ ଏମାନଙ୍କ ନାମ ସ୍ମରଣ କରି ନ ପାରି ପାଳଯୁକ୍ତ ନାମଟିଏ ଲେଖିଯାଇଛନ୍ତି ।

୩ । ମାଳବଦେଶ—ଆଧୁନିକ ସମଗ୍ର ମାଲ୍ୱା ଅଞ୍ଚଳ ହିଁ ମାଳବ ନାମରେ ଆଖ୍ୟାତ ହେଉଥିଲା; କିନ୍ତୁ ଏହାର ବିଭିନ୍ନ ଅଞ୍ଚଳର ନାମ ଥିଲା ଦଶାର୍ଣ୍ଣ, ଅବନ୍ତୀ ଓ ଦଶପୁର । ସାରଳା ଦାସ ବିଭିନ୍ନ ଆଖ୍ୟାୟିକାରେ ଏହି ବିଭିନ୍ନ ଅଞ୍ଚଳର ବର୍ଣ୍ଣନା କରିଛନ୍ତି ।

୪ । ଜମ୍ବୁକବନ—ଜମ୍ବୁମାର୍ଗ । ରାଜସ୍ଥାନର ପୁଷ୍କର ହ୍ରଦ ଓ ଆବୁପର୍ବତର ମଧ୍ୟବର୍ତ୍ତୀ ଅଞ୍ଚଳ ଜମ୍ବୁମାର୍ଗ ନାମରେ ଆଖ୍ୟାତ ହେଉଥିଲା, (G. D., p. 80) । ସାରଳା ଦାସ ଏହି ଜମ୍ବୁମାର୍ଗକୁ ହିଁ ଜମ୍ବୁକବନ ବୋଲି ଲେଖିଛନ୍ତି ।

୫ । ଏରଡ଼ଙ୍ଗ—ଏହାର ପ୍ରକୃତ ରୂପ ଏରଣ୍ଡକ ହେବାର କଥା । ପଦ୍ମପୁରାଣର ପ୍ରମାଣରୁ ଜଣାଯାଏ ଯେ, ଏରଣ୍ଡୀ ନଦୀ ବରୋଦା ଅଞ୍ଚଳରେ ପ୍ରବାହିତା । ଏହାର ଆଧୁନିକ ନାମ ହେଉଛି ଉର୍ସି (G. D., p. 8) । ଏହା ହିଁ କବିବର୍ଣ୍ଣିତ ଏରଡ଼ଙ୍ଗ ଦେଶ ।

୬ । ବଙ୍ଗଦେଶ—ଆଧୁନିକ ବଙ୍ଗଦେଶର ପୂର୍ବାଞ୍ଚଳ ହିଁ ବଙ୍ଗଦେଶ ନାମରେ ଅଭିହିତ ହେଉଥିଲା । ବର୍ତ୍ତମାନ ଏହା ବଙ୍ଗଳା ଦେଶ ହୋଇଛି ।

୭ । କର୍ଣ୍ଣାଟ—କର୍ଣ୍ଣାଟ ଓ ଏହାର ରାଜା ମଙ୍ଗଳସେନଙ୍କ ସମ୍ବନ୍ଧରେ ଆଗରୁ ଆଲୋଚନା କରାଯାଇଛି ।

୮ । କାଶୀ—କାଶୀ-ବାରାଣସୀ । ଏଠାରେ କବିବର୍ଣ୍ଣିତ ଗଙ୍ଗାର ମଣିକର୍ଣ୍ଣିକା ଘାଟ ଅଦ୍ୟାପି ବିଦ୍ୟମାନ ଅଛି ।

୯ । ଯମୁନାପୁର—ଜୋନପୁର । ଏହା ସମ୍ବନ୍ଧରେ ପୂର୍ବରୁ ଏକାଧିକ ଥର ଆଲୋଚନା କରାଯାଇଛି ।

୧୦ । ଉଡ଼ଙ୍ଗଦେଶ—ଉରଗପୁର । ଗୋଟିଏ ଉତ୍ତରରେ ଓ ଗୋଟିଏ ଦକ୍ଷିଣରେ ଉରଗ ଦେଶ ଅବସ୍ଥିତ ଥିଲା । ସାରଳା ଦାସ ଉଭୟ ଉଡ଼ଙ୍ଗର ଉଲ୍ଲେଖ

କରିଛନ୍ତି । ତାଙ୍କ ବର୍ଣ୍ଣିତ ଦକ୍ଷିଣର ଉଡ଼ଙ୍ଗ ଯେ, ତ୍ରିଚିନାପଲ୍ଲି ଅଞ୍ଚଳ, ଏ ବିଷୟ ପୂର୍ବ ପ୍ରବନ୍ଧମାନଙ୍କରେ ଆଲୋଚିତ ହୋଇଛି । ତାଙ୍କ ବର୍ଣ୍ଣିତ ଉତ୍ତରର ଉଡ଼ଙ୍ଗକୁ ଚିହ୍ନିତ କରିବା ସହଜ ହୁଏ ନାହିଁ । ଯେତେଦୂର ସମ୍ଭବ ଏହା ଜୌନପୁରର ସନ୍ନିହିତ ଅଞ୍ଚଳ ଥିଲା ।

୧୧ । ଗୀରଦେଶ—ବୃଜି ବା ଲିଚ୍ଛବିମାନଙ୍କ ଦେଶ ଅର୍ଥାତ୍ ବିହାରର ତ୍ରିହୂତ (ତୀରଭୁକ୍ତି) ଅଞ୍ଚଳ । ଆଧୁନିକ ଚମ୍ପାରନ, ସାରନ୍ ଓ ମୁଜାଫର୍‌ପୁର ଅଞ୍ଚଳରେ ବୃଜି ବା ଲିଚ୍ଛବିମାନେ ବୁଦ୍ଧଙ୍କ ସମୟରେ ଗୋଟିଏ ପ୍ରଜାତନ୍ତ୍ର (Republic) ରାଜ୍ୟ ସ୍ଥାପନ କରିଥିଲେ । ଏହି ଅଞ୍ଚଳରେ ଗଣ୍ଡକୀ ନଦୀ ପ୍ରବାହିତ ହେଉଛି । କବି ଗୀରଦେଶ ପ୍ରସଙ୍ଗରେ ଏହି ଗଣ୍ଡକୀ ନଦୀର ନାମ ଉଲ୍ଲେଖ କରିଛନ୍ତି ।

୧୨ । ଭଙ୍ଗଦେଶ—ଦ୍ୱାରଭଙ୍ଗା । ଏହା ପ୍ରାଚୀନ ମିଥିଳାର ଅଂଶବିଶେଷ ଥିଲା ।

୧୩ । ଭୂପାଳ—ଆଧୁନିକ ଭୋପାଳ । ଏହା ମାଳବଦେଶର ପୂର୍ବାଞ୍ଚଳ ।

୧୪ । ଉଜାଣକାନ୍ତି—ଉଜ୍ଜୟିନୀ । ଏହା ପ୍ରାଚୀନ ଅବନ୍ତୀର (ପଶ୍ଚିମ ମାଳବର) ରାଜଧାନୀ ଥିଲା । ବର୍ତ୍ତମାନ ମଧ୍ୟ ଏହା ଏକ ସୁବିଖ୍ୟାତ ନଗରୀ ।

୧୫ । ସୁବର୍ଣ୍ଣପୁର—ସୋନ୍‌କଚ୍ଛ । ଏହା ଉଜ୍ଜୟିନୀଠାରୁ ପ୍ରାୟ ୪୦ ମାଇଲ୍ ଦୂରରେ ପୂର୍ବତନ ଭୋପାଳ ଷ୍ଟେଟ୍‌ରେ ଅବସ୍ଥିତ ।

୧୬ । ଶିବପୁର—ଶିଓପୁର । ଭୋପାଳର ସନ୍ନିହିତ ଅଞ୍ଚଳରେ ଶିଓପୁର ଜିଲା ଓ ସହର ଅବସ୍ଥିତ ।

୧୭ । ଏକଚକ୍ରା—ଚକର ନଗର । ଉତ୍ତର ପ୍ରଦେଶର ଇଟାବା ସହରଠାରୁ ଏହା ୧୬ ମାଇଲ୍ ଦୂରରେ ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ (G.D., p.59) ।

୧୮ । ପାଞ୍ଚାଳ—ଆଧୁନିକ ଉତ୍ତରପ୍ରଦେଶର ଉତ୍ତର ପଶ୍ଚିମାଞ୍ଚଳ । ମହାଭାରତ ଯୁଗରେ ଏହା ଦ୍ରୁପଦଙ୍କ ରାଜ୍ୟ ଥିଲା । ଐତିହାସିକ ଯୁଗରେ ପାଞ୍ଚାଳଦେଶ ଉତ୍ତର ଓ ଦକ୍ଷିଣ ପାଞ୍ଚାଳରେ ବିଭକ୍ତ ହୋଇଥିଲା ଏବଂ କାମ୍ପିଲ୍ଲ ଓ ଅହିଚ୍ଛତ୍ର ଯଥାକ୍ରମେ ଏମାନଙ୍କ ରାଜଧାନୀ ଥିଲା (Cunningham's Ancient Geography of India; edited by S. N. Mazumdar, P-704) । ସାରଳାଦାସ ଲେଖିଛନ୍ତି ଯେ, ଅର୍ଜୁନ ପାଞ୍ଚାଳକୁ ଯାଇ ରୁଦ୍ରବେ

କୂଳର ଗୌଡ଼ଗିରରେ ଅବସ୍ଥାନ କରିଥିଲେ । ଏଠାରେ ରୁଦ୍ରବେଣୀ ହେଉଛି ରୁଦ୍ରଗଙ୍ଗା ଓ ଗୌଡ଼ଗିରି ହେଉଛି ଗଙ୍ଗୋତ୍ରୀ । ଗଡ଼ବାଲର କେଦାରନାଥ ନିକଟସ୍ଥ ଗଙ୍ଗୋତ୍ରୀରୁ ଗଙ୍ଗା ବାହାରିଛି ବୋଲି ହିନ୍ଦୁମାନେ ବିଶ୍ୱାସ କରୁଥିଲେ, କିନ୍ତୁ ଆଜିକାଲି ଜଣାଯାଇଛି ଯେ, ଗଙ୍ଗୋତ୍ରୀଠାରୁ ବହୁଦୂର ଉତ୍ତରରୁ ଗଙ୍ଗା ବାହାରିଛି (G. D., P. 62-63) ।

୧୧-୧୩ । ଆମରକୁଣ୍ଡ ପର୍ବତ (ଦେବରକୋଣ୍ଡା) ଶାଳୁରରାଜ୍ୟ, ଭୈରବବନ, ଉଦୟମଣ୍ଡଳ ଓ ବିଜୟନଗରର ଆଲୋଚନା ଆଗରୁ କରାଯାଇଛି ।

୧୪ । ସୌରାଷ୍ଟ୍ର—ଗୁଜରାଟର କାଥିଆବାଡ଼ । ସୌରାଷ୍ଟ୍ରରୁ ଅପଭ୍ରଷ୍ଟ ହୋଇ ସୁରାଟ୍ ନାମଟି ବର୍ତ୍ତମାନ ଗୁଜରାଟର ଅଂଶବିଶେଷରେ ସଂଶ୍ଳିଷ୍ଟ ହୋଇଛି ।

୧୫ । ଅସ୍କନ୍ଧବନ—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ ।

୧୬ । କଲପରାଜ୍ୟ—ଏହାର ଶୁଦ୍ଧପାଠ କଲପିରାଜ୍ୟ ହେବ । କଲ୍ପି ସମ୍ବନ୍ଧରେ ଦୀର୍ଘ ଆଲୋଚନା ଆଗରୁ କରାଯାଇଛି ।

୧୭ । ରୁଦ୍ରପୁର—ଗୋରଖପୁର ନିକଟରେ ଅବସ୍ଥିତ ଏହା ଏକ ପ୍ରସିଦ୍ଧ ସ୍ଥାନ । ଏଠାରେ ଅଦ୍ୟାପି ପ୍ରାଚୀନ କୀର୍ତ୍ତିର ଭଗ୍ନାବଶେଷ ଅଛି (Cuningham's A. G. I. P. 496) ।

୧୮ । ମାଲଚନ୍ଦପୁର—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ ।

୧୯ । ସିନ୍ଧୁ-ମନ୍ଦାର—ପଶ୍ଚିମବଙ୍ଗ । ଏଠାରେ ସିନ୍ଧୁ ଅଛି ଓ ହୁଗୁଳିଜିଲାର ଆରାମବାଗ ନିକଟରେ ମନ୍ଦାରଦୁର୍ଗ ମଧ୍ୟ ଅଛି । ଏଠାରେ କବିବର୍ଣ୍ଣିତ ତ୍ରିବେଣୀ ମଧ୍ୟ ଅଛି । ଏ ଦେଶର ରାଜା କାଳୁଘଣ୍ଟ ବଙ୍ଗ ସୁଲତାନ୍ ଜଲାଲୁଦ୍ଦିନ୍‌ଙ୍କ ଛଦ୍ମନାମ ବୋଲି ମନେହୁଏ । ଜଲାଲ୍‌ଉଦ୍ଦିନ୍ ବ୍ରାହ୍ମଣରାଜା ଗଣେଶଙ୍କ ପୁତ୍ର ଥିଲେ ଓ ଏହାଙ୍କ ନାମ ଥିଲି ଯଦୁ, ମାତ୍ର ମୁସଲ୍‌ମାନ୍ ହେବା ପରେ ଜଲାଲ୍‌ଉଦ୍ଦିନ୍ ନାମ ବହନ କରିଥିଲେ (The Delhi Sultanate, ଭାରତୀୟ ବିଦ୍ୟାଭବନ, ପୃ ୨୦୬-୨୦୭) । ଏଣୁ କବି ତାଙ୍କୁ କାଳୁଘଣ୍ଟ ବା ବ୍ରାହ୍ମଣବୀର ପରଶୁରାମ ରୂପେ ବର୍ଣ୍ଣନା କରିଛନ୍ତି । ଜଲାଲ୍‌ଉଦ୍ଦିନ୍ ଖ୍ରୀ. ୧୪୧୫ରୁ ଖ୍ରୀ. ୧୪୩୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

୩୦-୩୧ । ଗୃରୁମଣ୍ଡଳ ଓ କାଲାଞ୍ଜନ ଦେଶ—ଏମାନଙ୍କ ପରିଚୟ ଦିଆଯାଇ ପାରୁନାହିଁ ।

୩୨ । ଲକ୍ଷ୍ମୀପୁର—ଆସାମର ବ୍ରହ୍ମପୁତ୍ର କୂଳରେ ଅବସ୍ଥିତ ଲକ୍ଷୀପୁର ବା ଲକ୍ଷ୍ମୀପୁର ତ୍ରୟୋଦଶ ଶତାବ୍ଦୀରେ କ୍ଷୁଦ୍ରିଆନାମକ ଗୋଟିଏ ଉପଜାତିର ରାଜ୍ୟର ରାଜଧାନୀ ହୋଇଥିଲା (The Delhi Sultanate, P. 387)

୩୩ । ନେପାଳ—ସୁବିଖ୍ୟାତ ନେପାଳ ରାଜ୍ୟ । ଏଠାରେ ବିଖ୍ୟାତ ପଶୁପତି ମନ୍ଦିର ଅଛି । ସାରଳାଦାସ ପଶୁପତିଙ୍କ ନାମ ମଧ୍ୟ ଉଲ୍ଲେଖ କରିଛନ୍ତି ।

୩୪ । ରଣସ୍ତମ୍ଭପୁର—ରନ୍ଥମ୍ଭୋର । ରାଜସ୍ଥାନର ଜୟପୁର ଅଞ୍ଚଳରେ ଏହି ସୁଦୃଢ଼ ଦୁର୍ଗ ଅବସ୍ଥିତ ଥିଲା । ରଣସ୍ତମ୍ଭପୁର ସମ୍ବନ୍ଧରେ ଆଗରୁ ଆଲୋଚନା କରାଯାଇଛି ।

୩୫ । ହେମଗିରି କେଦାରଭୁବନ ଗଡ଼ୱାଲ୍‌ର ସୁବିଖ୍ୟାତ କେଦାରନାଥ ଅଞ୍ଚଳ । ଏଠାରେ ଶୈତ୍ୟ ହେତୁରୁ ସୈନ୍ୟମାନେ ଚାଲି ନ ପାରିବାରୁ ଅର୍ଜୁନ ଅଗ୍ନି-ଶର ପ୍ରୟୋଗ କରିଥିଲେ ।

(ଗ) ନକୁଳଙ୍କ ଦକ୍ଷିଣଦିଗର ଦିଗବିଜୟ, ସଭା ପୃ-୯୮୨-୨୦୧ ।

ନକୁଳ ରାଜସୂୟ ଯଜ୍ଞ ପାଇଁ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଯେଉଁ ଯେଉଁ ଦେଶ ବା ସ୍ଥାନମାନଙ୍କୁ ଯାଇଥିଲେ, କ୍ରମାନ୍ୱୟରେ ସେଗୁଡ଼ିକର ପରିଚୟ ନିମ୍ନରେ ଦିଆଯାଉଛି ।

୧ । ଗନ୍ଧମଳୟ ପର୍ବତ—ମଳୟ ପର୍ବତ । କନ୍ୟାକୁମାରୀର ଆଖପାଖ ଅଞ୍ଚଳରେ ମଳୟ ପର୍ବତ ଅବସ୍ଥିତ । ବର୍ତ୍ତମାନ ଇଂରାଜୀରେ ଏହାର ନାମ କାର୍ଡ଼ାମୋମ୍ ହିଲ୍‌ସ (Cardamom Hills) ହୋଇଛି । ନକୁଳ ତାଙ୍କର ଦକ୍ଷିଣଦିଗର ଯାତ୍ରା ଏହିଠାରୁ ଆରମ୍ଭ କରିଥିଲେ ।

୨ । କଳିଙ୍ଗ ଦେଶ—କଳିଙ୍ଗ ଦେଶ ବ୍ୟାପକ ଅର୍ଥରେ ଗୋଟାଏ ବିଶାଳ ଅଞ୍ଚଳକୁ ସୂଚାଉଥିଲେ ହେଁ କବିଙ୍କ ସମୟରେ ସଙ୍କୀର୍ଣ୍ଣ ଅର୍ଥରେ ଏହା କଳିଙ୍ଗନଗର (ମୁଖଲିଙ୍ଗମ୍) ଓ କଳିଙ୍ଗପତ୍ତନ ଯେଉଁ ଅଞ୍ଚଳରେ ଅବସ୍ଥିତ ସେହି ଆଧୁନିକ ଶ୍ରୀକାକୋଲ ଓ ବିଶାଖାପାଟନା ଜିଲାକୁ ହିଁ ବୁଝାଉଥିଲା ଓ ଏହି ଅଞ୍ଚଳର ପ୍ରଶାସନିକ

ନାମ କଳିଙ୍ଗ ଦଣ୍ଡପାଟ ହୋଇଥିଲା । ଏହି ଅଞ୍ଚଳର ସିଂହାଚଳରେ ନୃସିଂହନାଥ ମନ୍ଦିର ବିଦ୍ୟମାନ ଅଛି । ସାରଳା ଦାସ ଲେଖିଛନ୍ତି ଯେ, କଳିଙ୍ଗର ରାଜା ନୃସିଂହଙ୍କ ଆଜ୍ଞାରେ ନକୁଳଙ୍କ ସହ ଯୁଦ୍ଧ କଲେ ନାହିଁ ।

୩ । ନିକେଶ୍ୱର ରାଜାଙ୍କ ଦେଶ । ଏଠାରେ କାଶୀକୁଣ୍ଡ ଓ ନିର୍ମଳନାଥ ମହାଦେବଙ୍କ ମନ୍ଦିର ଅଛି । ମନେହୁଏ ଯେ ଏହା ସାରଳା ଦାସଙ୍କ ସମୟରେ କୌଣସି ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା ।

୪ । ଚୁଡ଼ଙ୍ଗ ଦେଶ—ଆମ୍ଭେମାନେ ଆଗରୁ କହିଛୁ ଯେ, ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଅନନ୍ତବର୍ମଣ ଚୋଡ଼ଗଙ୍ଗ ଯେଉଁ ଅଞ୍ଚଳରୁ ଆସିଥିଲେ, ସାରଳା ଦାସ ତାକୁ ହିଁ ଚୁଡ଼ଙ୍ଗଦେଶ ବୋଲି ବର୍ଣ୍ଣନା କରିଛନ୍ତି ।

୫ । ଦ୍ୱିଜନଗ୍ର—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ । ଏହା ସାରଳାଦାସଙ୍କ ସମୟର କୌଣସି କ୍ଷୁଦ୍ର ରାଜ୍ୟ ଥିଲା ବୋଲି ମନେହୁଏ ।

୬-୭ । ପଦ୍ମନାଭ ପର୍ବତ ଓ ରୁଦ୍ରଗିରି—ଶ୍ରୀରଙ୍ଗମ୍‌ର ବିଷ୍ଣୁମନ୍ଦିର ଓ ତାଞ୍ଜୋରର ରାଜରାଜେଶ୍ୱର ଶିବମନ୍ଦିର । ଉଭୟ ବିଷୟ ଆଗରୁ ଆଲୋଚନା କରାଯାଇଛି । ଏଠାରେ ଖାଲି ଏହା ହିଁ ଉଲ୍ଲେଖଯୋଗ୍ୟ ଯେ, ଶ୍ରୀରଙ୍ଗମ୍‌ର ବିଖ୍ୟାତ ଶେଷଶାୟୀ (ପଦ୍ମନାଭ) ବିଷ୍ଣୁମନ୍ଦିର ଓ ତାଞ୍ଜୋରର ପ୍ରଖ୍ୟାତ ରାଜରାଜେଶ୍ୱର ଶିବମନ୍ଦିରକୁ ପର୍ବତ ବୋଲି ବର୍ଣ୍ଣନା କରିବାରେ ସାରଳାଦାସ ଚିରାଚରିତ ପ୍ରଥା ହିଁ ଅବଲମ୍ବନ କରିଛନ୍ତି । ପୁରୀର ଜଗନ୍ନାଥ ମନ୍ଦିର ଯେଉଁଠାରେ ଅଛି, ତାହା ନୀଳାଚଳ ଓ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଯେଉଁଠାରେ ଅଛି ତାହା ସ୍ୱର୍ଣ୍ଣାଚଳ ବା ସ୍ୱର୍ଣ୍ଣାଦ୍ରି ନାମରେ ବହୁ ପ୍ରାଚୀନ କାଳରୁ ଆଖ୍ୟାତ ହୋଇ ଆସିଛି; ଅଥଚ ଉଭୟ ସ୍ଥାନରେ ପର୍ବତର କୌଣସି ଚିହ୍ନବର୍ତ୍ତି ନାହିଁ । ସେହିପରି କବି ଶ୍ରୀରଙ୍ଗମ୍ ଓ ତାଞ୍ଜୋରର ମନ୍ଦିରମାନଙ୍କୁ ପର୍ବତ ବୋଲି ବର୍ଣ୍ଣନା କରିଛନ୍ତି, ମାତ୍ର ଉଭୟ ସ୍ଥାନରେ ପର୍ବତର ଚିହ୍ନବର୍ତ୍ତି ନାହିଁ ।

୮-୧୩ । କାବେରୀରାଜ୍ୟ, ଶ୍ରୀଗିରିପର୍ବତ, କାଞ୍ଚିନଗ୍ର, ବିଜୟନଗ୍ର, ଗୋପନ-ସ୍ୱର୍ଗୀ (ପାତାଳଗଙ୍ଗା) । ଏମାନଙ୍କ ପରିଚୟ ପୂର୍ବରୁ ଦିଆଯାଇଛି ।

୧୪ । ଇଚ୍ଛାପୁର—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ । କବିଙ୍କ ବର୍ଣ୍ଣନାରୁ ଜଣାଯାଉଛି ଯେ, ଏହା କରବୀରପୁର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଥିଲା ।

୧୫ । କରଣ୍ଟରପୁର—ଏହାକୁ ବିଜୟନଗର ସାମ୍ରାଜ୍ୟ ସହିତ ଚିହ୍ନିତ କରି ଆଗରୁ ଦୀର୍ଘ ଆଲୋଚନା କରାଯାଇଛି ।

୧୬-୨୦ । ଦଣ୍ଡକା, ଶ୍ୟାମଦୀର୍ଘନଗର, ରାମେଶ୍ୱର-ସେତୁବନ୍ଧ, ସୁବେଳ ଗିରି କଦଳୀବନ । ଏମାନଙ୍କ ବିଷୟ ମଧ୍ୟ ଆଗରୁ ଆଲୋଚିତ ହୋଇଛି, ମାତ୍ର ଏମାନଙ୍କ ମଧ୍ୟରୁ ଶ୍ୟାମଦୀର୍ଘ ଓ କଦଳୀବନକୁ ଚିହ୍ନିତ କରାଯାଇପାରିନାହିଁ । ହୁଏତ ଏଗୁଡ଼ିକ ସିଂହଳ ଓ କାଞ୍ଚୀର ରୂପାନ୍ତରିତ ନାମ ।

(ଘ) ସହଦେବଙ୍କ ପୂର୍ବଦିଗର ଦିଗ୍‌ବିଜୟ, ସଭା, ପୃ-୨୦୧-୨୨୦ ।

ସହଦେବ ରାଜସୂୟ ଯଜ୍ଞ ପାଇଁ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଯେଉଁ ଯେଉଁ ଦେଶ ବା ସ୍ଥାନମାନଙ୍କୁ ଯାଇଥିଲେ, ସେଗୁଡ଼ିକର ପରିଚୟ ନିମ୍ନରେ ଦିଆଯାଉଛି ।

୧ । ମସ୍ୱାନ୍ଧ୍ରଦେଶ—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ ।

୨ । ସିନ୍ଧୁଦେଶ—ସୁବିଦିତ ସିନ୍ଧୁଦେଶରେ ମହାଭାରତ ଯୁଦ୍ଧବେଳେ ଜୟଦ୍ରଥ ରାଜା ଥିଲେ । ସାରଳା ଦାସ ସିନ୍ଧୁଦେଶ ପ୍ରସଙ୍ଗରେ ଜୟଦ୍ରଥଙ୍କ ନାମ ଉଲ୍ଲେଖ କରିଥିବାରୁ ଏହାର ପରିଚୟ ଦେବାରେ ଅସୁବିଧା ଘଟୁନାହିଁ । ମାତ୍ର ଏ ଦେଶ ପଶ୍ଚିମରେ ଅବସ୍ଥିତ ଥିବା ସ୍ଥଳେ କବି ଏହାକୁ ପୂର୍ବଦିଗର ଦେଶମାନଙ୍କ ସହିତ ବର୍ଣ୍ଣନା କରିଥିବା ବଡ଼ ବିସ୍ମୟକର ।

୩-୫ । ବିରକାଚନ୍ଦ, ଚନ୍ଦ୍ରଚୂଡ଼, ବୃନ୍ଦାଅର୍କ—ଏ ଦେଶଗୁଡ଼ିକୁ ଚିହ୍ନିତ କରାଯାଇପାରି ନାହିଁ ।

୬ । ଦୁନ୍ଦବନଗ—ରାଜସ୍ଥାନର ଜୟପୁର ନିକଟସ୍ଥ ଅମ୍ବର ସହରର ପ୍ରାଚୀନ ନାମ ଥିଲା ଦୁନ୍ଦବନଗର (G. D, p. 57) ।

୭ । ମଧୁବନ—ଏହା ସମ୍ବନ୍ଧରେ ଆଗରୁ ଆଲୋଚନା କରାଯାଇଛି । ଏହା ବର୍ତ୍ତମାନ ମହାନ୍ ନାମରେ ପରିଚିତ ଓ ମଥୁରାଠାରୁ ୧୩ ମାଇଲ ଦୂରରେ (Cunningham's Report, Vol XX, p. 41) ।

୮ । ଭୋଜସେନଦେଶ—ଭୋଜଦେଶ— । ପ୍ରାଚୀନ ଭାରତରେ ଦୁଇଟି ଭୋଜଦେଶ ଥିଲା ଏବଂ ଏମାନଙ୍କ ମଧ୍ୟରୁ ଗୋଟିଏ କୁନ୍ତିଭୋଜ ଓ ଅନ୍ୟଟି ଭୋଜକଟ

ନାମରେ ଅଭିହିତ ହେଉଥିଲା । କୁନ୍ତଭୋଜ ହେଉଛି ଆଧୁନିକ ବିଦର୍ଭ ବା ବେରାର ; ପାଣ୍ଡୁଙ୍କ ପ୍ରଥମାପତ୍ନୀ ଏହି ଦେଶରୁ ଆସିଥିବାରୁ ତାହାଙ୍କ ନାମ କୁନ୍ତୀ ହୋଇଥିଲା । ବିହାରର ଆଧୁନିକ ସାହାବାଦ୍ ଜିଲ୍ଲା ଓ ବାରାଣସୀ ପର୍ଯ୍ୟନ୍ତ ତତ୍‌ସନ୍ନିହିତ ଅଞ୍ଚଳ ଭୋଜକଟ ନାମରେ ଆଖ୍ୟାତ ହେଉଥିଲା । ଭୋଜପୁର ଡାମରାଓଁ ନିକଟରେ ବର୍ତ୍ତମାନ ସୁଦ୍ଧା ଅବସ୍ଥିତ । ଏହି ଅଞ୍ଚଳର ଭାଷାକୁ ଭୋଜପୁରୀ କୁହାଯାଏ । ସାରଳା ଦାସ ଭୋଜସେନ ଦେଶର ରାଜାଙ୍କ ନାମ କୋନ୍ତଭୋଜ ବୋଲି ଲେଖିଥିବାରୁ ଏହି ଦେଶକୁ ବେରାର ସହିତ ଚିହ୍ନିତ କରିବା ହିଁ ସମୀଚୀନ ହେବ ।

୯ । କର୍ଣ୍ଣମଣ୍ଡଳ—ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ଅଙ୍ଗଦେଶରେ ରାଜା କରିଥିଲେ । ଏଣୁ ସାରଳା ଦାସ ଅଙ୍ଗଦେଶକୁ କର୍ଣ୍ଣମଣ୍ଡଳ ଆଖ୍ୟା ଦେଇଛନ୍ତି । ବିହାରର ଆଧୁନିକ ଭାଗଲପୁର-ମୁଙ୍ଗେର ଅଞ୍ଚଳ ପ୍ରାଚୀନ କାଳରେ ଅଙ୍ଗଦେଶ ନାମରେ ଅଭିହିତ ହେଉଥିଲା ।

୧୦ । ମିଥିଳାଦେଶ—ବିହାରର ଦ୍ୱାରଭଙ୍ଗା ଅଞ୍ଚଳ ମିଥିଳା ନାମରେ ଅଭିହିତ ହେଉଥିଲା । ଏଠାରେ ବର୍ତ୍ତମାନ ମଧ୍ୟ ମୈଥିଳୀଭାଷା ପ୍ରଚଳିତ ଅଛି । ଏ ଦେଶର ରାଜା ନନ୍ଦସେନଙ୍କୁ ଐତିହାସିକ ରାଜା ନାନ୍ୟସେନଙ୍କ ସହିତ ଆଗରୁ ଚିହ୍ନିତ କରାଯାଇଛି ।

୧୧ । ମାଳେନ୍ଦ୍ରୀଦେଶ—ବରେନ୍ଦ୍ରୀଦେଶ । ଅବିଭକ୍ତ ବଙ୍ଗର ରାଜସାହି, ବୋଗ୍ରା, ଦିନାଜ୍‌ପୁର ଇତ୍ୟାଦି ଉତ୍ତରାଞ୍ଚଳ ପୂର୍ବେ ବରେନ୍ଦ୍ର ବା ବରେନ୍ଦ୍ରୀ ନାମରେ ଅଭିହିତ ହେଉଥିଲା । ସାରଳା ଦାସ ଏହି ବରେନ୍ଦ୍ରୀକୁ ହିଁ ପରିବର୍ତ୍ତନ କରି ମାଳେନ୍ଦ୍ରୀ କରିଛନ୍ତି । ଆଧୁନିକ ଯୁଗରେ ମଧ୍ୟ ବରେନ୍ଦ୍ର ବା ବାରେନ୍ଦ୍ର ନାମଟି ଉତ୍ତର ବଙ୍ଗର ନାମ ରୂପେ ବ୍ୟବହୃତ ହୋଇଛି, ଯଥା : ରାଜସାହୀର ବାରେନ୍ଦ୍ର ରିସର୍ଚ୍ଚ ସୋସାଇଟି ।

୧୨-୧୩ । ହରିକାଳନଗ୍ର ଓ ମଧୁମାତଙ୍ଗଦେଶ—ଏମାନଙ୍କ ସମ୍ବନ୍ଧରେ ଆଗରୁ ଆଲୋଚନା କରାଯାଇଛି । ପୂର୍ବବଙ୍ଗର ପ୍ରାଚୀନ ରାଜା ହରିକାଳଦେବ ରଣବଙ୍କ ଓ ମଧୁମଥନ ଦେବଙ୍କ ନାମାନୁସାରେ ସାରଳା ଦାସ ଏହି ଦୁଇଟି ଅଞ୍ଚଳର ନାମକରଣ କରିଛନ୍ତି ।

୧୪ । ଗାନ୍ଧାରଦେଶ—ପଶ୍ଚିମ-ପଞ୍ଜାବ (ଯାହାକି ବର୍ତ୍ତମାନ ପାକିସ୍ତାନର ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ରୂପେ ବିଦିତ) ଓ ଆଫଗାନିସ୍ତାନରେ ପ୍ରବାହିତା କାବୁଲନଦୀର ନିମ୍ନ ଅବବାହିକା ହିଁ ପ୍ରାଚୀନ କାଳରେ ଗାନ୍ଧାରଦେଶ ନାମରେ ଆଖ୍ୟାତ ହେଉଥିଲା । ଧୃତରାଷ୍ଟ୍ରଙ୍କ ପତ୍ନୀ ଏହି ଦେଶରୁ ଆସିଥିବାରୁ ତାଙ୍କୁ ଗାନ୍ଧାରୀ

ବୁଝାଯାଉଥିଲା । କବି ସହଦେବଙ୍କ ହାତରେ ଏହି ଦେଶର ରାଜା ଗାନ୍ଧାରୀଙ୍କ ଭ୍ରାତା ଶକୁନିଙ୍କୁ ନିମନ୍ତ୍ରଣ ଦିଆଇଛନ୍ତି, କିନ୍ତୁ ଗାନ୍ଧାରକୁ କିପରି ପୂର୍ବଦିଗରେ ସ୍ଥାନ ଦେଇଛନ୍ତି, ତାହା ବୁଝିହେଉ ନାହିଁ ।

୧୫-୧୭ । ମଗଧ ଦେଶ, ବିକଗିରି—ଏମାନଙ୍କ ଚିହ୍ନଟ କରିବା ସମ୍ଭବପର ହେଉନାହିଁ ।

୧୭ । ଚଉପୁରନଗ—ଚମ୍ପାନଗର ବା ଚମ୍ପାପୁର । ଏହା ଅଙ୍ଗଦେଶର (ଆଧୁନିକ ଭାଗଲପୁର-ମୁଙ୍ଗେର ଅଞ୍ଚଳର) ରାଜଧାନୀ ଥିଲା । ଏହାର ଅନ୍ୟନାମ ଥିଲା ମାଳିନୀ (G.D., pp-43-44) । କବି ଲେଖିଛନ୍ତି ଯେ, ଏ ଦେଶରେ ଚଣ୍ଡକର୍ଣ୍ଣୀ ନଦୀ ପ୍ରବାହିତ ହେଉଛି । କୋଶୀ ନାମଟି ଅନୁଲେଖକମାନଙ୍କ ଦୋଷରୁ ବା ମୁଦ୍ରା-ଦୋଷରୁ କର୍ଣ୍ଣୀରେ ପରିଣତ ହୋଇଛି ! କୋଶୀନଦୀ ବର୍ତ୍ତମାନ ମଧ୍ୟ ଭାଗଲପୁର ଅଞ୍ଚଳରେ ପ୍ରବାହିତ ହେଉଛି । ବୋଧହୁଏ ସାରଳାଦାସ ଜାଣିଥିଲେ ଯେ, କୋଶୀନଦୀରେ ବହୁତ ବନ୍ୟା ହୁଏ । ଏହି ହେତୁରୁ ତାକୁ ଚଣ୍ଡକୋଶୀ ବୋଲି ଲେଖିଛନ୍ତି ।

୧୮ । ଅଲେଖସ୍ଥାନ—ଏହାର ପରିଚୟ ଦେବା ସମ୍ଭବପର ହେଉନାହିଁ ।

୧୯ । ମନୋହର ଦେଶ—ଓଡ଼ିଶାକୁ ହିଁ କବି ମନୋହର ଦେଶ ବୋଲି ବର୍ଣ୍ଣନା କରିଛନ୍ତି । ସେ ଏ ଦେଶର ତ୍ରିପୁରେଶ୍ୱର ରାଜା କପିଳାସବାସୀଙ୍କୁ ପୂଜା କରୁଥିବା କଥା ଲେଖିଥିବାରୁ ତାଙ୍କ ବର୍ଣ୍ଣିତ ମନୋହରଦେଶ ଯେ ଓଡ଼ିଶା ଏହା ପ୍ରମାଣିତ ହେଉଛି; କାରଣ କପିଳାସ ଓଡ଼ିଶାରେ ହିଁ ଅବସ୍ଥିତ । ଏହାଛଡ଼ା ମନୋହର ଦେଶର ଯେଉଁ ଯେଉଁ ସ୍ଥାନକୁ ଯାଇ ସହଦେବ ନିମନ୍ତ୍ରଣ ଦେଲେ, ସେହି ସେହି ସ୍ଥାନମାନଙ୍କ ନାମ ମାନଙ୍କରୁ ନିଶ୍ଚିତ ରୂପେ ପ୍ରମାଣିତ ହେଉଛି ଯେ, କବିବର୍ଣ୍ଣିତ ମନୋହର ଦେଶ ହେଉଛି ଓଡ଼ିଶା । ସାରଳା ଦାସ ଓଡ଼ିଶାକୁ ମନୋହର ବା ସୁନ୍ଦର ଦେଶ ବୋଲି ବର୍ଣ୍ଣନା କରି ତାଙ୍କର ସ୍ୱଦେଶ ପ୍ରୀତିର ପରିଚୟ ଦେଇଛନ୍ତି ।

୨୦-୨୪ । ଯମନିକତୀର୍ଥ, ଅର୍କତୀର୍ଥ, ଏକାମ୍ରତୀର୍ଥ, ମହ୍ଲାର, ଚନ୍ଦୋସୂଳା—ମନୋହରଦେଶରେ ସହଦେବ ଏ ସମସ୍ତ ସ୍ଥାନକୁ ଯାଇ ନିମନ୍ତ୍ରଣ ଦେଇଥିଲେ । ଯମନିକତୀର୍ଥ, ଅର୍କତୀର୍ଥ, ଏକାମ୍ରତୀର୍ଥ ଓ ଚନ୍ଦୋସୂଳା ଯଥାକ୍ରମେ ଜଗନ୍ନାଥକ୍ଷେତ୍ର ପୁରୀ, କୋଣାର୍କ, ଭୁବନେଶ୍ୱର ଓ ମହାନଦୀର ଅନ୍ୟତମ ନାମ । ମହ୍ଲାର ଅଞ୍ଚଳ ହେଉଛି ଓଡ଼ିଶାର ପାର୍ବତ୍ୟ ଅଞ୍ଚଳ । କବି ମହ୍ଲାର ନାମଟି ଆର୍ଯ୍ୟେତର ଜାତି ପ୍ରତି ସର୍ବଥା ପ୍ରୟୋଗ କରିଛନ୍ତି । କହିବା ବାହୁଲ୍ୟ ଯେ ଏ ସମସ୍ତ ସ୍ଥାନ କବିବର୍ଣ୍ଣିତ ମନୋହରଦେଶ ବା ଓଡ଼ିଶାରେ ହିଁ ଅବସ୍ଥିତ ।

୨୫-୨୬ । ଜଳତରଙ୍ଗଦେଶ, ନିଷାଦପୁର—ଏଗୁଡ଼ିକୁ ଚିହ୍ନିତ କରାଯାଇ-ପାରୁନାହିଁ ।

୨୭ । ଜୀନନଗରପୁର—କବି ସ୍ଥାନାନ୍ତରରେ ଲେଖିଛନ୍ତି ଯେ, ଜୀନପୁର ଗଙ୍ଗାକୂଳରେ ଅବସ୍ଥିତ ଥିଲା ଓ ଜତୁଗୃହ ନିର୍ମାତା ଓ ଦାହକ ପୁରଞ୍ଜନ ଏହି ଜୀନପୁରର ବାସିନ୍ଦା ଥିଲା (ଆଦ୍ୟ, ପୃ. ୧୪୮) । ସହଦେବ ରାଜସୂୟ ଯଜ୍ଞୋପଲକ୍ଷେ ଜୀନପୁରରୁ ଗଙ୍ଗାସାଗର ସଙ୍ଗମକୁ ଯାଇଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ ଜୀନପୁର ବଙ୍ଗଦେଶର ଗଙ୍ଗାକୂଳରେ ଅବସ୍ଥିତ ଥିଲା । ଦଶମ ଶତାବ୍ଦୀର ଶେଷ ଭାଗରେ ପୂର୍ବବଙ୍ଗରେ ଗୋଟିଏ ରାଜବଂଶର ଚନ୍ଦ୍ରାନ୍ତ ନାମଧେୟ ଲଳିତଚନ୍ଦ୍ର, ତ୍ରୈଲୋକ୍ୟଚନ୍ଦ୍ର ଓ ଶ୍ରୀଚନ୍ଦ୍ର ରାଜା ରାଜତ୍ୱ କରିଥିଲେ । ପରେ ଏ ବଂଶ ଦକ୍ଷିଣ-ବଙ୍ଗରେ ମଧ୍ୟ ରାଜ୍ୟବିସ୍ତାର କରିଥିଲେ । (The Age of Imperial Kanauj, ଭାରତୀୟ ବିଦ୍ୟାଭବନ, ପୃ. ୫୪), କିନ୍ତୁ କେବଳ ଦୁଇଟି ତାମ୍ରଶାସନରୁ ଏ ରାଜବଂଶ ସମ୍ବନ୍ଧରେ ସାମାନ୍ୟ କିଛି ଜଣାଯାଇଛି । ଏ ରାଜବଂଶର ଇତିହାସ ଅବଧି ଅତ୍ୟନ୍ତ ଅସ୍ପଷ୍ଟ । ସାରଳା ଦାସ ଲେଖିଛନ୍ତି ଯେ, ସହଦେବ ଜୀନପୁରକୁ ଗଲାବେଳେ ସେଠାରେ କୌସ୍ତୁଭବଂଶୀ ଜୀନଚନ୍ଦ୍ର ଓ କୂଳଚନ୍ଦ୍ର ରାଜା ରାଜତ୍ୱ କରୁଥିଲେ । ଜୀନପୁରର ଅବସ୍ଥିତି ଭୂଗୋଳରୁ ମିଳେ ନାହିଁ, କିମ୍ବା ଜୀନଚନ୍ଦ୍ର ଓ କୁଳଚନ୍ଦ୍ର ରାଜା ବଙ୍ଗରେ ରାଜତ୍ୱ କରିଥିବାର ପ୍ରମାଣ ବର୍ତ୍ତମାନ ସୁଦ୍ଧା ମିଳିନାହିଁ । ଏ ରାଜବଂଶର ନାମ କୌସ୍ତୁଭବଂଶ ଥିବା କଥା ମଧ୍ୟ ତାମ୍ରଲେଖରୁ ମିଳିନାହିଁ । ତଥାପି ଏ ସମସ୍ତ ନାମକୁ ସାରଳା ଦାସଙ୍କ କପୋଳକଳ୍ପିତ ନାମ ବୋଲି କହିବା ଅସମୀଚୀନ ହେବ । କେବଳ ଦୁଇଟି ତାମ୍ରଶାସନରୁ ବଙ୍ଗର ଚନ୍ଦ୍ର-ବଂଶ ସମ୍ପର୍କରେ ଯାହା ଜଣାଯାଇଛି, ତାହା ଅତି ସାମାନ୍ୟ । ଏ ବଂଶର ଇତିହାସ ସମ୍ପର୍କରେ ଅଧିକ ଉପାଦାନ ଆବିଷ୍କୃତ ହେଲେ ହୁଏତ ସାରଳା ଦାସଙ୍କ ବର୍ଣ୍ଣିତ ନାମଗୁଡ଼ିକ ଐତିହାସିକ ବୋଲି ପ୍ରତିପାଦିତ ହୋଇପାରେ ।

୨୮ । ସାଗରସଙ୍ଗମ—ଏହା ବଙ୍ଗର ସୁବିଖ୍ୟାତ ତୀର୍ଥସ୍ଥାନ ଗଙ୍ଗାସାଗର ସଙ୍ଗମ । ପ୍ରତିବର୍ଷ ମକର ସଂକ୍ରାନ୍ତିରେ ଏଠାରେ ବିରାଟ ମେଳା ହୁଏ । ଏଠାରେ କପିଳମୁନିଙ୍କ ଆଶ୍ରମ ଅଛି । ସାରଳା ଦାସ ସହଦେବଙ୍କ ହାତରେ କପିଳମୁନିଙ୍କୁ ମଧ୍ୟ ନିମନ୍ତ୍ରଣ ଦିଆଇଛନ୍ତି ।

ସାରଳା ମହାଭାରତ ସଭାପର୍ବର ପାଣ୍ଡବମାନଙ୍କ ଦିଗ୍‌ବିଜୟ ବୃତ୍ତାନ୍ତମାନ ଗଙ୍ଗାସାଗର ସଙ୍ଗମଠାରେ ଶେଷ ହୋଇଛି । ଏହି ବୃତ୍ତାନ୍ତଗୁଡ଼ିକୁ ଅନୁଶୀଳନ କଲେ କେତେଗୁଡ଼ିଏ ସିଦ୍ଧାନ୍ତ ମନ ମଧ୍ୟରେ ଆପେ ଆପେ ଆସି ଉପସ୍ଥିତ ହୁଏ ।

(କ) କେତେକ ସ୍ଥଳରେ ଏ ବୃତ୍ତାନ୍ତମାନଙ୍କ ମଧ୍ୟରେ ଅବା ଭୌଗୋଳିକ ବିବରଣୀରେ ଦିଗ୍‌ଭ୍ରାନ୍ତ ରହିଛି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ କବି ସିନ୍ଧୁ ଓ ଗାନ୍ଧାରଦେଶକୁ ପୂର୍ବରେ ଓ କାଉଁଶ ଦେଶକୁ (ଆସାମର ଗୌହାଟି ଅଞ୍ଚଳକୁ) ପଶ୍ଚିମରେ ସ୍ଥାନ ଦେଇଛନ୍ତି ।

(ଖ) ଯେଉଁ ରାଜ୍ୟ ବା ଅଞ୍ଚଳଗୁଡ଼ିକ ପରସ୍ପର ସହିତ ସଂଲଗ୍ନ, କବି ସେଗୁଡ଼ିକୁ ଠିକ୍ ସେହିପରି ଭାବରେ ସର୍ବଥା ବର୍ଣ୍ଣନା କରିନାହାନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ପାଞ୍ଚାଳଦେଶ ବର୍ଣ୍ଣନା କରିସାରିବା ପରେ ସେ ଅମରଚୂଡ଼ ପର୍ବତର (ଦେବରକୋଣ୍ଡାର) ଅବତାରଣା କରିଛନ୍ତି । ଏହିପରି ଆହୁରି ବହୁ ଉଦାହରଣ ରହିଛି । ଏଥିରୁ ଜଣାଯାଏ ଯେ ସାରଳାଦାସ କୌଣସି ମାନଚିତ୍ର ବ୍ୟବହାର କରି ନ ଥିଲେ । ବିଭିନ୍ନ ଦିଗରେ ଅବସ୍ଥିତ ବିଭିନ୍ନ ଅଞ୍ଚଳର ଯେଉଁ ନାମଗୁଡ଼ିକ ତାଙ୍କୁ ଜଣାଥିଲା, ସେଗୁଡ଼ିକୁ ହିଁ ଲେଖିଯାଇଛନ୍ତି ।

(ଗ) ଦିଗ୍‌ବିଜୟ ବୃତ୍ତାନ୍ତମାନଙ୍କରେ ସାରଳାଦାସ ବିଭିନ୍ନ ରାଜ୍ୟ, ସ୍ଥାନ, ରାଜା, ନଦୀ, ପର୍ବତ ଇତ୍ୟାଦିର ଯେଉଁ ନାମମାନ ଦେଇଛନ୍ତି, ସେଗୁଡ଼ିକ ମଧ୍ୟରୁ କେତେକ ପୌରାଣିକ, କେତେକ ଐତିହାସିକ, କେତେକ ସମସାମୟିକ ଓ କେତେକ କାଳ୍ପନିକ; କିନ୍ତୁ ଏମାନଙ୍କ ମଧ୍ୟରୁ ଯେଉଁ ରାଜ୍ୟ ବା ସ୍ଥାନମାନଙ୍କରେ ସେ ପାଣ୍ଡବମାନଙ୍କୁ ନେଇ ପହଞ୍ଚାଇଛନ୍ତି, ସେଗୁଡ଼ିକ ଆଦୌ କାଳ୍ପନିକ ନୁହେଁ । ଏହି ରାଜ୍ୟ ବା ସ୍ଥାନମାନଙ୍କ ମଧ୍ୟରୁ ଅଧିକାଂଶକୁ ଚିହ୍ନିତ କରିବା ସମ୍ଭବପର ହେଉଛି; ଏଣୁ ଜ୍ଞାନ ସ୍ୱଳ୍ପତା ହେତୁରୁ ଯେଉଁଗୁଡ଼ିକୁ ଚିହ୍ନିତ କରାଯାଇ ପାରିନାହିଁ, ସେଗୁଡ଼ିକୁ କାଳ୍ପନିକ ବୋଲି କହିବା ସମୀଚୀନ ହେବନାହିଁ । ମାତ୍ର ଏମାନଙ୍କ ସହିତ ବର୍ଣ୍ଣିତ ଆନୁସଙ୍ଗିକ ନାମମାନଙ୍କ ମଧ୍ୟରୁ କେତେକ ନିଶ୍ଚୟ କାଳ୍ପନିକ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ କବି ଉଜାଣିକାନ୍ତି ବା ଉଜାଣିନଗରୀକୁ (ଉଜ୍ଜୟିନୀକୁ) "ବିଶାଳ ସରିତର କୂଳେ" ଅବସ୍ଥିତ ବୋଲି ଲେଖିଛନ୍ତି (ସଭା, ପୃ-୧୬୧ । କିନ୍ତୁ ସମସ୍ତେ ଜାଣନ୍ତି ଯେ ଉଜ୍ଜୟିନୀ ସିପ୍ରାନଦୀ କୂଳରେ ଅବସ୍ଥିତ । ଏଣୁ "ବିଶାଳ ସରିତ"ଟି ନିଶ୍ଚୟ କାଳ୍ପନିକ ନାମ । ସିପ୍ରା ନାମଟି ଯେ କବିଙ୍କୁ ଅଜ୍ଞାତ ଥିଲା, ଏପରି ଭାବିବା ମଧ୍ୟ ଉଚିତ ହେବନାହିଁ, କାରଣ ସେ ଆଦ୍ୟପର୍ବରେ ସିପ୍ରାର ନାମ ଉଲ୍ଲେଖ କରିଛନ୍ତି (ଆଦ୍ୟ, ପୃ-୨୨୯) । ତାଙ୍କ ଖିଆଲକୁ ଯାହା ଆସୁଥିଲା, ବେଳେବେଳେ ସେ ତାହା ହିଁ ଲେଖିଛନ୍ତି । ଏଠାରେ ସ୍ମରଣ ରଖିବା ଉଚିତ୍ ଯେ ସାରଳାଦାସ ବାସ୍ତବ ଓ ଐତିହାସିକ ନାମଗୁଡ଼ିକୁ ଲେଖିବାବେଳେ ସେଗୁଡ଼ିକୁ ସର୍ବଥା ପୌରାଣିକ ରୂପ ପାଇଁ ଚେଷ୍ଟା କରିଛନ୍ତି ।

(ଘ) ବିଶ୍ବବିଜୟସ୍ତୁତିସ୍ତ୍ରନ୍ଥମାନଙ୍କରେ କେତେକ ଭୌଗୋଳିକ ନାମ ବିକୃତ ଆକାରରେ ଦେଖାଯାଏ, ଯଥା—ଏରଣ୍ଡିକ ସ୍ଥାନରେ ଏରଡ଼ଙ୍ଗ, ଜମ୍ବୁମାର୍ଗ ସ୍ଥାନରେ ଜମ୍ବୁକବନ, ମୋହନ ଦେଶ ସ୍ଥାନରେ ମନୋହର ଦେଶ, ହରିକାଳନଗର ସ୍ଥାନରେ ହସ୍ତୀକାଳ ନଗର, ମଧୁମଥନଦେଶ ସ୍ଥାନରେ ମଧୁମାତଙ୍ଗ ଦେଶ ଇତ୍ୟାଦି । କିନ୍ତୁ ଏହି ବିକୃତି ପାଇଁ କବି ସର୍ବଥା ନିଜେ ଦାୟୀ କିମ୍ବା ପରବର୍ତ୍ତୀ ଅନୁଲେଖକ ଓ ମୁଦ୍ରାକରମାନେ ଦାୟୀ, ତାହା ସ୍ଥିର କରିବା ସହଜ ହୁଏନାହିଁ ।

(ଙ) କବି କେତେକ ଅଞ୍ଚଳର ନାମକୁ ସ୍ୱେଚ୍ଛାକୃତ ଭାବରେ ବଦଳାଇଛନ୍ତି । ସେ ଓଡ଼ିଶାଦେଶକୁ ମନୋହର ଦେଶ ନାମରେ ଆଖ୍ୟାତ କରି ସେଥିରେ ଥିବା କପିଳାସତୀର୍ଥ, ଯମନିକତୀର୍ଥ, ଅର୍କତୀର୍ଥ, ଏକାମ୍ର ତୀର୍ଥ ଇତ୍ୟାଦିର ଉଲ୍ଲେଖ କରିଛନ୍ତି । ସେ ହରଦ୍ୱାରକୁ କାଶୀ ହରଉଦ୍ୟାନ ବୋଲି ଲେଖିଛନ୍ତି । ଓଡ଼ିଶା ବା ହରଦ୍ୱାରର ପ୍ରକୃତ ନାମ କବିଙ୍କୁ ଜଣା ନ ଥିଲା ବୋଲି ଭାବିବା ଠିକ୍ ହେବନାହିଁ । ତାଙ୍କ ଖିଆଲ ଅନୁସାରେ ସେ ଏପରି ଲେଖିଛନ୍ତି ବୋଲି ଭାବିବା ହିଁ ସମୀଚୀନ ହେବ ।

———

# ଚତୁର୍ଦ୍ଦଶ ପରିଚ୍ଛେଦ

## ସାରଳାଦାସଙ୍କ ଜୀବନୀ ଓ ପ୍ରତିଭା

ମୁଗଜନ୍ମା ସାରଳାଦାସଙ୍କ ରଚନାବଳୀ ଓଡ଼ିଶାର ସର୍ବପ୍ରଥମ ବିଶାଳ ସାହିତ୍ୟ ସୃଷ୍ଟି କରିଛି । ତାଙ୍କ ଲେଖାମାନଙ୍କରେ, ବିଶେଷତଃ ତାଙ୍କ ମହାଭାରତରେ, ବହୁବିଧ ବିଷୟମାନ ଏତେ ମାତ୍ରାରେ ରହିଛି ଯେ ସେ ସବୁକୁ ଗୋଟିଏ ପୁସ୍ତକରେ ଆଲୋଚନା କରି ନିଃଶେଷ କରିବା ଏକାବେଳକେ ଅସମ୍ଭବ । ଆମ୍ଭେମାନେ ମୂଳରୁ ଏ କଥା ଉପଲବ୍‌ଧି କରି ସାରଳା ସାହିତ୍ୟର କେବଳ ଐତିହାସିକ ଦିଗ ସମ୍ବନ୍ଧରେ ହିଁ ଏ ପର୍ଯ୍ୟନ୍ତ ଆଲୋଚନା କରିଛୁଁ । ଏହି ଆଲୋଚନା କଲାବେଳେ କବିଙ୍କ ଲେଖାବଳୀରେ ଥିବା ବହୁବିଧ ବିଷୟମାନ ଆମ୍ଭମାନଙ୍କ ଦୃଷ୍ଟିରେ ଯେ ନ ପଡ଼ିଛି, ଏପରି ନୁହେଁ, କିନ୍ତୁ ବହୁ ବିଷୟର ଅବତାରଣା କରି ନିର୍ଦ୍ଦିଷ୍ଟ ଆଲୋଚ୍ୟ ପ୍ରସଙ୍ଗକୁ ଜଟିଳ ଓ ଅବାନ୍ତର କରିବା ଅନୁଚିତ ମନେକରି ସେଗୁଡ଼ିକୁ ଏ ଆଲୋଚନାରେ ସ୍ଥାନ ଦେଇ ନାହୁଁ । ସାରଳା ସାହିତ୍ୟର ଐତିହାସିକ ଦିଗ ସମ୍ବନ୍ଧରେ ଏ ପର୍ଯ୍ୟନ୍ତ ଯେଉଁ ଆଲୋଚନା କରାଗଲା, ତାହା ଯେ ଗୋଟିଏ ପୂର୍ଣ୍ଣାଙ୍ଗ ଆଲୋଚନା, ଏ କଥା ମଧ୍ୟ ଆମ୍ଭେମାନେ କହୁନାହୁଁ । ଆଲୋଚିତ ବିଷୟମାନଙ୍କ ଛଡ଼ା ଏ ସାହିତ୍ୟରେ ଆହୁରି ଅନେକ ବିଷୟ ଅଛି, ଯାହାକି ଅତୀତ ବା ସମସାମୟିକ ଇତିହାସର ଅବଲମ୍ବନରେ ଲିଖିତ ବୋଲି ମନେହୁଏ । କେତେବେଳେ ବାହୁଲ୍ୟ ଭୟରେ ଓ କେତେବେଳେ ପ୍ରମାଣ ଅଭାବରୁ ସେଗୁଡ଼ିକୁ ପରିତ୍ୟାଗ କରିଛୁ । କବିବର୍ଣ୍ଣିତ ଆହୁରି ଶତ ଶତ ଭୌଗୋଳିକ ନାମ ଅଛି, ଯାହାକି ଆଲୋଚିତ ଓ ଚିହ୍ନିତ ହୋଇପାରିଲା ନାହିଁ । ପରିଶେଷରେ ଐତିହାସିକ ଦୃଷ୍ଟିରୁ ସାରଳାଦାସଙ୍କ ଜୀବନୀ ଓ ପ୍ରତିଭା ସମ୍ବନ୍ଧରେ କେତେକ କଥା କହି ଏ ଆଲୋଚନା ସମାପନ କରିବା ସଙ୍ଗେ ସଙ୍ଗେ କ୍ଷମାଶୀଳ, ଧୈର୍ଯ୍ୟଶୀଳ ସୁଧୀ ସମ୍ପାଦକ ତଥା ପାଠକବର୍ଗଙ୍କ ଠାରେ ଗଭୀର କୃତଜ୍ଞତା ଜଣାଉଛୁ ।

ସାରଳାଦାସଙ୍କ ନିର୍ଦ୍ଦିଷ୍ଟ ଜନ୍ମ ତାରିଖ ସ୍ଥିର କରିବା ଅସମ୍ଭବ, କିନ୍ତୁ ସେ ଯେ ପଞ୍ଚଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରି ତାଙ୍କ ଗ୍ରନ୍ଥମାନ ଲେଖିଥିଲେ, ଏହାର ଭୂରି ଭୂରି ପ୍ରମାଣ ପୂର୍ବ ପରିଚ୍ଛେଦମାନଙ୍କରେ ଦିଆଯାଇଛି । ସେ ସମସ୍ତକୁ ଏଠାରେ

ପୁନରାବୃତ୍ତି କରି ପାଠକମାନଙ୍କ ସମୟ ଅଯଥା ବ୍ୟୟ କରିବା ଅନାବଶ୍ୟକ ମନେ ହେଉଛି । ସାରଳା ମହାଭାରତରେ କପିଳେଶ୍ୱରଦେବ ଗଜପତିଙ୍କର (ଖ୍ରୀ. ୧୪୩୫–୧୪୬୭) ଓ ପୁରୁଷୋତ୍ତମଦେବ ଗଜପତିଙ୍କ (ଖ୍ରୀ. ୧୪୬୭–୧୪୯୭) ରାଜତ୍ୱ ସମୟର ଐତିହାସିକ ଚିତ୍ର ରହିଛି ଏବଂ ସେମାନଙ୍କ ସମୟର ଭାରତର ଐତିହାସିକ ଚିତ୍ର ମଧ୍ୟ ରହିଛି । ସାରଳାଦାସ ଗ୍ରନ୍ଥ ଆରମ୍ଭରେ କପିଳେଶ୍ୱର ଗଜପତିଙ୍କ ନାମ ଉଲ୍ଲେଖ କରିଛନ୍ତି ଏବଂ ଉଦ୍‌ଯୋଗ ପର୍ବରେ ପୁରୁଷୋତ୍ତମ ଦେବଙ୍କ ନାମ ଅର୍ଥାନ୍ତରରେ ନରବଳୀ ନରଶ୍ରେଷ୍ଠ ପୁରୁଷୋତ୍ତମ) ରୂପେ ପ୍ରକାଶ କରିଛନ୍ତି । ଏଣୁ ଏହି ଉଭୟ ଗଜପତିଙ୍କ ଅମଳରେ ଯେ ସାରଳା ମହାଭାରତ ରଚିତ ହୋଇଥିଲା, ଏଥିରେ ସନ୍ଦେହର ଅବକାଶ ରହେ ନାହିଁ । ମାତ୍ର ସେ କେବେ ଜନ୍ମଗ୍ରହଣ କରିଥିଲେ, କେବେ ବିଲଙ୍କା ରାମାୟଣ, ମହାଭାରତ ଓ ଚଣ୍ଡୀପୁରାଣ ଲେଖିଥିଲେ, ଏ ସମସ୍ତ ସଂଶୟ ସଙ୍କୁଳ ହୋଇ ରହେ । କବି ମଧ୍ୟପର୍ବରେ ଲେଖିଛନ୍ତି—

କୁଷ୍ଠାନବାସୀ ହୋଇ ନ ପାଇ ବିପ୍ରଗୋଷ୍ଠୀ
ଅଳପମତି ମୋହର ବାଳବୁଦ୍ଧି ଗୋଟି ।        ମଧ୍ୟ. ପୃ ୫

ଏହି ପଦର ଦ୍ୱିତୀୟ ଧାଡ଼ିଟି ଅନ୍ୟ ପୁସ୍ତକରେ 'ଶିଶୁବୁଦ୍ଧି ମୋହର ବୟସ ଅଳପଟି' ଭାବରେ ରହିଛି (ଶ୍ରୀ ଭାରତଦର୍ପଣ, ସା. ଏ., ପୃ–୨୭୧) । ଏଥିରୁ କିନ୍ତୁ ସୂଚିତ ହେଉନାହିଁ ଯେ ମଧ୍ୟପର୍ବ ଲେଖିବାବେଳକୁ କବିଙ୍କ ବାଳବୁଦ୍ଧି ବା ଶିଶୁବୁଦ୍ଧି ଯାଇନଥିଲା । ନିଜ ବୁଦ୍ଧିକୁ ବାଳବୁଦ୍ଧି ବା ଶିଶୁବୁଦ୍ଧି କହିବା କବିଙ୍କ ଏକପ୍ରକାର ବିନୟ । ଅନ୍ୟ ପ୍ରାଚୀନ କବିମାନେ ଏପରି ବିନୟ ପ୍ରକାଶ କରିଯାଇଛନ୍ତି । ମହାକବି କାଳିଦାସ ରଘୁବଂଶର ପ୍ରାରମ୍ଭରେ ଲେଖିଛନ୍ତି, 'ଗୃପଳୟ ପ୍ରଗ୍ରେଦତଃ' । ଚପଳତା ହେଉଛି ବାଳବୁଦ୍ଧିର ବିଶେଷତ୍ୱ । ଏଣୁ ମହାକବି ଏଠାରେ ନିଜ ବୁଦ୍ଧିକୁ ବାଳବୁଦ୍ଧି ବୋଲି ଲେଖିଛନ୍ତି । ଭୀଷ୍ମ, ଦ୍ରୋଣ ପର୍ବମାନ ଲେଖିବା ବେଳକୁ ସାରଳାଦାସ ଯେ ବୃଦ୍ଧ ହୋଇଯାଇଥିଲେ, ଏକଥା ସେ ସ୍ପଷ୍ଟ ଭାଷାରେ ଲେଖିଯାଇଛନ୍ତି—

ଶ୍ରୀଚଣ୍ଡୀ ଶାରଳା ମାଗୋ ଝଙ୍କଡ଼ବାସିନୀ
ମୋର କାଳଫାଶୀ ଫେଡ଼ ଦୁର୍ଗତି ନାଶିନୀ ।
ବୃଦ୍ଧ କାଳରେ କହଇ ଶ୍ରୀ ସାରଳା ଦାସ
ଜନ୍ମେ ଜନ୍ମେ ତୋର ପାଦେ ରହୁ ମୋର ଆଶ ।   ଭୀଷ୍ମ, ପୃ–୭୫
ଆରେ ମନ କାହିଁପାଇଁ କରୁ ନଟକୂଟ
ନ ଜାଣୁ କି ଯମ ତୋର ହେଉଛି ନିକଟ ।
ଯାହାକୁ ଧରଇ ଥରେ ନ ଛାଡ଼ଇ ତାକୁ
ରହିଯାଏ ସେହି କରି ପାଟି ପାକୁପାକୁ ।        ଦ୍ରୋଣ, ପୃ–୧୩୩

ଏସବୁ ଉକ୍ତିରୁ ନିଶ୍ଚିତ ଭାବରେ ପ୍ରମାଣିତ ହେଉଛି ଯେ କବି ମହାଭାରତ ଲେଖି ସାରିବା ବେଳକୁ ବୃଦ୍ଧ ହୋଇଯାଇଥିଲେ । ପଚାଶ ବର୍ଷରୁ ଊର୍ଦ୍ଧ୍ୱ ବୟସକୁ ହିଁ ସାଧାରଣତଃ ବୃଦ୍ଧାବସ୍ଥା ବୋଲି ଧରାଯାଏ । ଚଣ୍ଡୀପୁରାଣ ଲେଖିଲା-ବେଳକୁ କବି ଆହୁରି ବେଶୀ ବୃଦ୍ଧ ହୋଇ ରୋଗ କବଳରେ ପଡ଼ିସାରିଥିଲେ—

ବୟସ ତ ଗତ ହେଲା ଆସି ଗୃହୁଁ ଗୃହୁଁ
ସାରିଦେଲା ରୋଗ ମୋତେ ଯେହ୍ନେ କାଳ ରାହୁ ।

× × ×

ବାତୁଳ ପରାୟେ ଲେଖେଁ ମୋର ଦୋଷ ନାହିଁ
ସଂପୂର୍ଣ୍ଣ ରୂପେ ଏ ଶାସ୍ତ୍ର କେମନ୍ତ ଲେଖଇ ।

ଚଣ୍ଡୀପୁରାଣ—ଅରୁଣୋଦୟ ପ୍ରେସ ୧୯୫୭, ପୃ. ୧୨୦

ଚଣ୍ଡୀପୁରାଣର ଅର୍ଦ୍ଧାଧିକ ଅଂଶ ଲେଖିସାରିବା ପରେ କବି ବାର୍ଦ୍ଧକ୍ୟ ଓ ରୋଗଗ୍ରସ୍ତ ହୋଇପଡ଼ିଥିବାରୁ ଗ୍ରନ୍ଥଟିକୁ ସମାପନ କରି ପାରିବେ କି ନା ଏ ବିଷୟରେ ସନ୍ଦିହାନ ହୋଇପଡ଼ିଥିଲେ । ଏକାଧିକ ପୂର୍ବ ସମାଲୋଚକ ଲେଖିଛନ୍ତି ଯେ କବି ପ୍ରଥମେ ବିଲଙ୍କା ରାମାୟଣ, ତା'ପରେ ମହାଭାରତ ଓ ତା'ପରେ ଚଣ୍ଡୀପୁରାଣ ଲେଖିଥିଲେ । ସାରଳା ଦାସ ନିଜେ ମଧ୍ୟ ଏକଥା ଚଣ୍ଡୀପୁରାଣରେ ଲେଖିଯାଇଛନ୍ତି (ପୃ. ୭୫) । ବିଲଙ୍କା ରାମାୟଣରେ କବିଙ୍କ ପରିପକ୍ୱ ଜୀବନର ବା କବିତ୍ୱରେ ସିଦ୍ଧହସ୍ତତାର ପ୍ରମାଣ ନାହିଁ, ମାତ୍ର ମହାଭାରତର ଆଦ୍ୟପର୍ବରେ ମଧ୍ୟ ଉଭୟର ପୂର୍ଣ୍ଣ ପ୍ରମାଣମାନ ରହିଛି । ଅତଏବ ମହାଭାରତର ଲେଖା ଆରମ୍ଭ କଲାବେଳକୁ ତାଙ୍କୁ ଅନ୍ତତଃ ଚାଳିଶ ବର୍ଷ ହୋଇଥିଲା ବୋଲି ଧରାଗଲେ ଅସମୀଚୀନ ହେବ ନାହିଁ । ଗୋଟିଏ ମୋଟାମୋଟି ହିସାବରୁ ଜଣାଯାଏ ଯେ ସାରଳା ମହାଭାରତର ଛାପାବହିରେ ପ୍ରାୟ ତେୟାଅଶୀ ହଜାର ପଦ ଏବଂ ଏକଲକ୍ଷ ଓ ଛ'ଷଠି ହଜାର ଧାଡ଼ି ରହିଛି । ଏହା ଓଡ଼ିଆ ଭାଷାର ସର୍ବପ୍ରଥମ ସୁବିଶାଳ ଗ୍ରନ୍ଥ । ଏହାକୁ ଲେଖିବା ପାଇଁ ଅନ୍ତତଃ ପନ୍ଦର ବର୍ଷରୁ କମ୍ ଲାଗି ନ ଥିବ । ଏଣୁ ମହାଭାରତ ଲେଖିସାରିବା ବେଳକୁ କବିଙ୍କୁ ପ୍ରାୟ ୫୫ ବର୍ଷ ଓ ଚଣ୍ଡୀପୁରାଣ ସଂପୂର୍ଣ୍ଣ ହେବା ବେଳକୁ ପ୍ରାୟ ୬୦ ବର୍ଷ ହୋଇଥିବ ।

ଆଗରୁ କୁହାଯାଇଛି ଯେ କବି ଆଦ୍ୟପର୍ବରେ ସିଧାସଳଖ ଭାବରେ ବିଜୟ-ନଗରର ସମ୍ରାଟ ବିରୂପାକ୍ଷଙ୍କ ନାମ ଉଲ୍ଲେଖ କରି ତାଙ୍କୁ ଅନ୍ଧକବଂଶୀୟ ବା ଆନ୍ଧ୍ର-ବଂଶୀୟ ବୋଲି ବର୍ଣ୍ଣନା କରିଛନ୍ତି (ଆଦ୍ୟ, ପୃ. ୪୪) । ବିରୂପାକ୍ଷ ଆନ୍ଧ୍ରଜାତୀୟ ସଙ୍ଗମବଂଶର ଶେଷ ସମ୍ରାଟ ଥିଲେ ଓ ଖ୍ରୀ: ୧୪୬୫ରୁ ୧୪୮୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏଣୁ ସାରଳା ମହାଭାରତର ଲେଖା ପ୍ରାୟ ୧୪୬୫ ଖ୍ରୀଷ୍ଟାବ୍ଦରେ ଆରମ୍ଭ

ହୋଇଥିଲା ବୋଲି ଧରାଗଲେ, କବିଙ୍କ ଜନ୍ମକାଳକୁ ୧୪୨୫ ବା ୧୪୨୦ ଖ୍ରୀଷ୍ଟାବ୍ଦ ବୋଲି ଧରିବାକୁ ହେବ । ଏହା ଏକ ମୋଟାମୋଟି ଗଣନା ଓ ଏଥିରେ ଦଶପନ୍ଦର ବର୍ଷର ଭ୍ରାନ୍ତ ରହିଯିବା ନିତାନ୍ତ ସ୍ୱାଭାବିକ । କବିଙ୍କ ନିର୍ଦ୍ଦିଷ୍ଟ ଜନ୍ମକାଳ ଜାଣିବା ପାଇଁ ଉପାୟାନ୍ତର ନ ଥିବା ସ୍ଥଳେ ସେ ଆଜଠାରୁ ସାଢ଼େ ପାଞ୍ଚଶତ ବର୍ଷ ପୂର୍ବେ ଜନ୍ମଗ୍ରହଣ କରିଥିଲେ ବୋଲି କହିବା ହିଁ ସମୀଚୀନ ହେବ । ସେକ୍ସପିଅର ଓ ତୁଳସୀ ଦାସଙ୍କ ପ୍ରାୟ ଏକଶତ ବର୍ଷ ପୂର୍ବେ ସାରଳା ଦାସ ତାଙ୍କ ଗ୍ରନ୍ଥମାନ ଲେଖିଥିଲେ ।

ସାରଳା ଦାସଙ୍କ ଜନ୍ମସ୍ଥାନ କଟକ ଜିଲ୍ଲାର ଝଙ୍କଡ଼ସ୍ଥ ସାରଳା ମନ୍ଦିରର ନିକଟବର୍ତ୍ତୀ ତେନ୍ତୁଳିଆପଦା ଠାରେ ଥିଲା; ପୂର୍ବ ପଣ୍ଡିତମାନେ ଏହା ବହୁ ଭାବରେ ପ୍ରମାଣ କରିଯାଇଛନ୍ତି । ଏହା ନିକଟରେ କବିବର୍ଣ୍ଣିତ ବୃଦ୍ଧମାତା (ବୁଢ଼ାନଈ) ଅଦ୍ୟାପି ପ୍ରବାହିତା ହେଉଛି । କବି ବର୍ଣ୍ଣିତ ଗ୍ରାମଗୁଡ଼ିକର ନାମ ବଦଳିଯାଇଛି । ସାଢ଼େ ପାଞ୍ଚଶତ ବର୍ଷ ମଧ୍ୟରେ ଗ୍ରାମଗୁଡ଼ିକର ନାମ ବଦଳିଯିବା ଅତ୍ୟନ୍ତ ସ୍ୱାଭାବିକ ହେଲେ ହେଁ ନଦୀର ନାମ ବଦଳି ନାହିଁ । ଏହି ବୁଢ଼ାନଈ ବା ବୃଦ୍ଧମାତା ହିଁ ସାରଳା ଦାସଙ୍କ ଜନ୍ମସ୍ଥାନର ନିଶ୍ଚିତ ସଙ୍କେତ ଦେଉଛି । କବିଙ୍କ ଜନ୍ମସ୍ଥାନ ସମ୍ବନ୍ଧରେ ସମସ୍ତ ପଣ୍ଡିତ ଏକମତ ହୋଇଛନ୍ତି ଓ ଏ ସମ୍ବନ୍ଧରେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ ଦ୍ୱାରା ଯେଉଁ ଏକମାତ୍ର ବିରୁଦ୍ଧ ମତ ପ୍ରକାଶିତ ହୋଇଥିଲା, ତାହା ବହୁ ଭାବରେ ଖଣ୍ଡିତ ହୋଇଛି । ଯେଉଁମାନେ ଏହି ବିରୁଦ୍ଧ ମତ ଓ ତତ୍ପରବର୍ତ୍ତୀ ଆଲୋଚନାମାନ ଜାଣିବାକୁ ଚାହିଁବେ, ସେମାନେ ଝଙ୍କାରର ଅଷ୍ଟମବର୍ଷ (୧୯୫୬) ୨ୟ ସଂଖ୍ୟାଠାରୁ ତତ୍ପରବର୍ତ୍ତୀ ୧୯୫୬ ଓ ୧୯୫୭ ସଂଖ୍ୟାଗୁଡ଼ିକ ଦୟାକରି ପଢ଼ିବେ ।

କବିଙ୍କ ପିତୃଦତ୍ତ ନାମ ଥିଲା ସିଦ୍ଧେଶ୍ୱର, ବିଲଙ୍କା ରାମାୟଣରେ ସେ ଏହି ନାମରେ ନିଜର ପରିଚୟ ଦେଇଛନ୍ତି । ପରବର୍ତ୍ତୀ ମହାଭାରତରେ ଓ ଚଣ୍ଡୀପୁରାଣରେ ସେ ନିଜକୁ ସାରଳା ଦାସ ନାମରେ ଆଖ୍ୟାତ କରିଛନ୍ତି, ମାତ୍ର ଗୋଟିଏ ଯୋଡ଼ିଏ ସ୍ଥାନରେ ତାଙ୍କ ପୂର୍ବନାମର ଉଲ୍ଲେଖ କରି କହିଛନ୍ତି ଯେ ଶ୍ରୀ ଚଣ୍ଡୀ ତାଙ୍କୁ ସାରଳା ଦାସ ନାମ ଦେଇଥିଲେ—

ଶୂଦ୍ର ମୁନି ସିଦ୍ଧେଶ୍ୱର ଦାସ ଦେଲୁ ନାମ
ଏ କଥାରେ ମୋହର ନ କରିମନ୍ତୁ ଭ୍ରମ ।
ତୁ ସିଂହବାହିନୀ ଗୋ ପ୍ରତ୍ୟକ୍ଷେ ହିଙ୍ଗୁଳା
ଏ ସଂସାରେ ବୋଲଉ ତୁ ସିଦ୍ଧ ଯେ ଶାରଳା ।
ମୁହିଁ ତ ପୁତ୍ର ସାରଳା ଦାସ ବୋଲାଇଲି
ଅବଶ୍ୟ ପାଇବି ମୁହିଁ ଯାହା ବାଞ୍ଛା କଲି ।

ଆଦ୍ୟ, ପୃ. ୧୫୩-୫୪

ଶୁମ୍ଭ ନିଶୁମ୍ଭ ବିନାଶି ଉଣ୍ଣାସିଲୁ ମହୀ
ଅଜ୍ଞାନୀ ପାମର ସିଦ୍ଧେଶ୍ୱର ଦାସ ମୁହିଁ ।
ପଢ଼ି ନାହିଁ ଶାସ୍ତ୍ର ମୁହିଁ ଜନ୍ମରୁ ମୂରୁଖ
ବିଷୟ ରସରେ ମଜ୍ଜି ପାଇଲି ମୁଁ ଦୁଃଖ ।
ଶ୍ରୀ ଶାରଳାଦେବୀଙ୍କର କୃପା ହେଲା ମୋତେ
ମହାଭାରତ ଲେଖିଲି ସନ୍ଥଜନ ହିତେ ।
ଶିବ ନ ପାଇଲେ ଏହି ଗ୍ରନ୍ଥର ଯେ ଅନ୍ତ
ମୁହିଁ କି ଭଜନ ଲେଖିବାକୁ ଆଦ୍ୟ ପ୍ରାନ୍ତ ।
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇଁ
ଶୁଦ୍ଧ ଅଶୁଦ୍ଧ କି ମୋର ଜ୍ଞାନ ଅଛି କାହିଁ ।
ଶ୍ରୀ ସାରଳାଦେବୀଙ୍କର ମୁଖରୁ ନିର୍ଗତ
ଅମୃତରସକୁ ପାନ କର ସାଧୁସନ୍ଥ ।
ଶ୍ରୀ ଚଣ୍ଡୀ ଶାରଳା ଦାସ ନାମ ଦେଲେ ମୋତେ
ଏଣୁ ମୋର ଦୋଷ ନ ଧରିବ ହେ ପଣ୍ଡିତେ ।

ଶଲ୍ୟ, ପୃ-୨୮

ଏଣୁ ନିଶ୍ଚିନ୍ତ ଭାବରେ ଜଣାଯାଏ ଯେ ସିଦ୍ଧେଶ୍ୱର ଦାସ ସାରଳାଙ୍କ ବରପୁତ୍ର ହେବା ପରେ ସାରଳା ଦାସ ନାମଧାରଣ କରିଥିଲେ । ସାରଳାଠାକୁରାଣୀ ଯେଉଁ ଗ୍ରାମରେ ବିଜେ କରିଛନ୍ତି, ସେହି ଗ୍ରାମର ଯେଉଁ ନାମ ଥିଲା, ତାହା ବିଭିନ୍ନ ପୋଥିରେ ଜଙ୍ଖେର, ଜଖର ଇତ୍ୟାଦି ଆକାରରେ ଦେଖାଯାଏ । ଏହି ନାମରୁ ହିଁ ଆଧୁନିକ ଝଙ୍କଡ଼ ନାମଟିର ଉତ୍ପତ୍ତି ଘଟିଛି, କିନ୍ତୁ ସେ ଯେଉଁସ୍ଥାନରେ ବିଜେ କରିଛନ୍ତି, ତା'ର ନାମ ଥିଲା ସିଦ୍ଧସ୍ଥାନ—

ନମସ୍ତେ ସାରଳା ମାଗୋ ତୁ ସିଂହବାହିନୀ
ସିଦ୍ଧସ୍ଥାନେ ବାସ କରିଅଛୁ ଗୋସାମଣି ।
କାତି ଖପରକୁ ତୁହି ଧରିଥାଉ କରେ
ସିଂହବାହିନୀ ତୁ ମାତ ଭ୍ରମୁ ତିନିପୁରେ ।
ଛାଗଳ ମହିଷ ବୋଦା ଆଦି ତୁହି ଖାଉ
ରୁଧିର ଆହାରେ ଭୋଳମତି ହୋଇଥାଉ ।
ହୀନେ ମାନ ଭୋଗ ତୋର ପଢ଼ୁଆ ନୁହଇ
ଜନ୍ମେ ଜନ୍ମେ ମୁହିଁ ତୋର ସେବକ ଅଟଇଁ ।

ଯେତେଦୂର ସମ୍ଭବ କବିଙ୍କ ପିତାମାତା ସିଦ୍ଧସ୍ଥାନରେ ମାନସିକ କରି ତାଙ୍କୁ ଲାଭ କରିଥିବାରୁ ତାଙ୍କ ନାମ ସିଦ୍ଧେଶ୍ୱର ରଖିଥିଲେ । "ଦାସ" ଶବ୍ଦଟି ତାଙ୍କର କୌଳିକ ଉପାଧି । କୌଣସି କୌଣସି ପୋଥିରେ ସିଦ୍ଧେଶ୍ୱର ଦାସ ସ୍ଥାନରେ ସିଦ୍ଧେଶ୍ୱର ପରିଡ଼ା ଲେଖା ଅଛି ବୋଲି କେତେକ ସମାଲୋଚକ ପ୍ରକାଶ କରିଛନ୍ତି । ଏପରି ପାର୍ଥକ୍ୟରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ପରିଡ଼ା ବା ପରିଯା ଏକ ରାଜଦତ୍ତ ଉପାଧି, ଉଚ୍ଚାରଣ ଭେଦରେ ହିଁ ଏହା ଦୁଇଟି ରୂପ ଧାରଣ କରିଛି । ସାରଳା ସାହିତ୍ୟର ବହୁସ୍ଥାନରେ ପରିଯା ଶବ୍ଦଟି "ନ୍ୟସ୍ତ ପଦାର୍ଥ" ଅର୍ଥରେ ବ୍ୟବହୃତ ହୋଇଛି । ଏଇଥିରୁ ଜଣାଯାଏ ଯେ ପରିଯାମାନେ ସୈନ୍ୟବିଭାଗରେ ଗଚ୍ଛିତ ପଦାର୍ଥମାନଙ୍କର ମାଲଫତ୍‌ଦାର ବା ଷ୍ଟୋରକିପର୍ ଥିଲେ । ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ଗଜପତିମାନଙ୍କ ଅମଳରେ ଓଡ଼ିଶାର ସମସ୍ତ ଶ୍ରେଣୀ ଓ ସମସ୍ତ ଜାତିକୁ ସୈନ୍ୟବିଭାଗରେ କୌଣସି ନା କୌଣସି କାର୍ଯ୍ୟ କରିବାକୁ ପଡ଼ୁଥିଲା । ବ୍ରାହ୍ମଣ ଠାରୁ ବାଜାଦାର ପର୍ଯ୍ୟନ୍ତ ବର୍ତ୍ତମାନ ଓଡ଼ିଶାର ଏପରି କୌଣସି ଜାତି ନାହାନ୍ତି, ଯେଉଁମାନଙ୍କଠାରେ କି ସାମରିକ ପଦବୀ ଦେଖା ନ ଯାଏ । ଦରକାର ବେଳେ ସମସ୍ତ ଜାତି ଓ ସମସ୍ତ ବ୍ୟକ୍ତି ବାଧ୍ୟତାମୂଳକ ଭାବରେ ସମରବିଭାଗରେ କାର୍ଯ୍ୟ କରୁଥିଲେ । ସାରଳାଦାସ ବା ତାଙ୍କ ପୂର୍ବପୁରୁଷମାନେ ଏଥିରୁ ଅବ୍ୟାହତି ପାଇଥିଲେ ବୋଲି ଭାବିବାର କୌଣସି କାରଣ ନାହିଁ । ପରବର୍ତ୍ତୀ ଆଲୋଚନାରୁ ଦେଖାଯିବ ଯେ କବି ନିଜେ ସୈନ୍ୟବିଭାଗରେ କାର୍ଯ୍ୟ କରିଥିଲେ ।

କବି ନିଜକୁ ଶୂଦ୍ରମୁନି ବୋଲି ଆଖ୍ୟାତ କରିଛନ୍ତି । ଏହି ମୁନି ଶବ୍ଦର ବହୁବିଧ ବ୍ୟାଖ୍ୟା କରାଯାଇଛି, ମାତ୍ର କବି ନିଜେ ଏ ସମ୍ବନ୍ଧରେ କଅଣ କହିଛନ୍ତି, ତାହା କେହି ଦର୍ଶାଇ ନାହାନ୍ତି । ଆଲୋଚ୍ୟ ଗ୍ରନ୍ଥରେ କଅଣ ଅଛି ତାହା ନ ଦେଖି, ନ ପଢ଼ି ଓ ବିଚାର ନ କରି କୌଣସି ସମସ୍ୟାକୁ ସମାଧାନ କରିବା ପାଇଁ ଅନ୍ୟ ପ୍ରମାଣମାନଙ୍କ ଉପରେ ନିର୍ଭର କରିବା ସମାଲୋଚନାର ଶ୍ଳାଘ୍ୟ ପନ୍ଥା ନୁହେଁ । ସାରଳାଦାସ ସ୍ପଷ୍ଟ ଭାଷାରେ ଲେଖିଯାଇଛନ୍ତି ଯେ, ମୁନି ଅଂଶରେ ଜନ୍ମଗ୍ରହଣ କଲେ ମନୁଷ୍ୟ କବି ହୁଏ, ଓ ସେ ନିଜେ ମୁନି ଅଂଶରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କର କବିତ୍ୱର ବିକାଶ ଘଟିଥିଲା—

× × ×

କୁବେର ଅଂଶେ ଜନ୍ମିଲେ ପ୍ରାପ୍ତ ବହୁ ନିଧି
ସହଦେବ ଅଂଶେ ହେଲେ ପ୍ରାପ୍ତ ନାନା ବୁଦ୍ଧି ।
ନକୁଳ ଅଂଶରେ ଅଶ୍ୱ ଲକ୍ଷଣ ଦିଶଇ
ଯୋଗାଙ୍ଗେ ଜାତ ହୋଇଲେ ମହାଯୋଗୀ ହୋଇ ।

ଯମ ଅଂଶେ ଜାତ ହେଲେ ନାତ୍ୟ ଅସନ୍ତୋଷ
ପ୍ରହ୍ଲାଦ ଅଂଶେ ଜନ୍ମିଲେ ବୈଷ୍ଣବ ଅବଶ୍ୟ ।
ମୁନି ଅଂଶରେ ଜନ୍ମିଲେ ବାକ୍ୟ ପାରେ କହି
ନ ପଢ଼ିଣ ଏତେ ବିଦ୍ୟା ସାଧିଲଇଁ ମୁହିଁ !
ଝଙ୍କଡ଼ବାସିନୀ ଚିହ୍ନି ଶାରଳା ଯା ନାମ
ସେହି ମୋତେ ଶିକ୍ଷା ଦେଲେ ଧର୍ମ, ମୋକ୍ଷ, କାମ ।
ତାହାଙ୍କୁ ଭକତ ମୁହିଁ କଲଇଁ ଏ ଜନ୍ମେ
ବାଳିକା ରୂପେ କହିଲେ ମୋତେ ସେହି ସୂକ୍ଷ୍ମେ ।
ପ୍ରସନ୍ନା ଅପର୍ଣ୍ଣା ସେହି ଅଭୟା ଭବାନୀ
ତାହାଙ୍କ ଆଜ୍ଞାରେ ମୁହିଁ ହେଲି ଶୂଦ୍ରମୁନି ।

ବନ, ନୀଳଗିରିର ପୂର୍ବବୃତ୍ତାନ୍ତ, ପୃ. ୨୨୮

ଯାବତ ଧର୍ମ ତାବତ କର୍ମେ ସିନା ଲେଖା
ବିରାଟ ପର୍ବ କହିଲି ଶାସ୍ତ୍ର କରି ଶିକ୍ଷା ।
ମୁନି ଅଂଶ ହୋଇ ମୁହିଁ ଜନ୍ମିଲଇଁ ଯୋନି
ଚଣ୍ଡୀ ପଦ୍ମପାଦ ସେବ ହେଲି ଶୂଦ୍ରମୁନି ।

ବିରାଟ, ଶେଷଭାଗ, ପୃ. ୧୮୭

କୁବେର ଅଂଶ ଯେଜନ ଜନମ ନ ହେଲେ
ସାଧବ ହୋଇବ କାହୁଁ ମହାଜ୍ଞାନୀ ହେଲେ ।
ଗନ୍ଧର୍ବ କଳା ନ ଥିଲେ ସାଧି କି ଗାୟନ
ମୁନି ଅଂଶ ନ ଥିଲେ କି ଶାସ୍ତ୍ରେ ହେବ ଜ୍ଞାନ ।

ଉଦ୍‌ଯୋଗ, ପୃ ୪୫

ଉଲ୍ଲିଖିତ ପଦମାନଙ୍କରେ ଥିବା "ମୁନି ଅଂଶରେ ଜନ୍ମିଲେ ବାକ୍ୟ ପାରେ କହି"ର ଶୁଦ୍ଧପାଠ "ମୁନି ଅଂଶରେ ଜନ୍ମିଲେ କାବ୍ୟ ପାରେ କହି" ହେବ, ଅନ୍ୟଥା ବୁଝିବାକୁ ହେବ ଯେ ମୁନି ଅଂଶରେ ନ ଜନ୍ମିଲେ ମନୁଷ୍ୟ ବାକ୍ୟ ବା କଥା କହିପାରେ ନାହିଁ । ସାରଳାଦାସ କଦାପି ଏପରି ଅର୍ଥହୀନ ଲେଖା ଲେଖି ନ ଥିବେ । ଏଣୁ ଅନୁଲେଖକ ବା ମୁଦ୍ରାକରଙ୍କ ଭ୍ରମ ହେତୁରୁ କାବ୍ୟ ସ୍ଥାନରେ ବାକ୍ୟ ହୋଇଯାଇଛି । କବି ବିଶ୍ୱାସ କରୁଥିଲେ ଯେ ସେ ମୁନି ଅଂଶରେ ଜାତ ହୋଇଥିଲେ ଓ ସେଥିପାଇଁ ତାଙ୍କର କବିତ୍ୱର ବିକାଶ ଘଟିଥିଲା । ଏଣୁ ସେ ସାରଳାଦେବୀଙ୍କ ସେବା କରି ତାଙ୍କରି ଆଜ୍ଞାରେ ଶୂଦ୍ରମୁନି ଆଖ୍ୟା ଧାରଣ କରିଥିଲେ । ତାଙ୍କ ପୂର୍ବର ବାଲ୍ମୀକି ମୁନି, ବ୍ୟାସମୁନି ଇତ୍ୟାଦି ଶାସ୍ତ୍ରକାରମାନେ

ସମସ୍ତେ ବ୍ରାହ୍ମଣ ଥିଲେ, ମାତ୍ର ସାରଳାଦାସ ଶାସ୍ତ୍ରକାର ହୋଇଥିଲେ ସୁଦ୍ଧା ଶୂଦ୍ର ଥିଲେ । ଏଣୁ ଅନ୍ୟ ମୁନି ବା ଶାସ୍ତ୍ରକାରମାନଙ୍କ ଠାରୁ ନିଜକୁ ପୃଥକ୍ ଭାବରେ ଚିହ୍ନିତ କରିବା ପାଇଁ ସେ ଶୂଦ୍ରମୁନି ଆଖ୍ୟା ଧାରଣ କରିଥିଲେ । ବସ୍ତୁତଃ ତାଙ୍କ ଦ୍ୱାରା ବ୍ୟବହୃତ ମୁନି ଶବ୍ଦଟିର ଅର୍ଥ ହେଉଛି କବି ବା ଶାସ୍ତ୍ରକାର ।

କବିଙ୍କ ବାଲ୍ୟ ଜୀବନ ସମ୍ବନ୍ଧରେ ଏକାଧିକ ଗଳ୍ପ ପ୍ରଚଳିତ ଅଛି । ଗୋଟିଏ ଗଳ୍ପ ଏହି ଯେ ସେ ବାଲ୍ୟକାଳରେ ନିତାନ୍ତ ଜଡ଼ବୁଦ୍ଧି ଓ ସ୍ମୃତିଶକ୍ତିହୀନ ଥିଲେ । ତାଙ୍କ ପିତା ପୁରାଣଜ୍ଞ ଥିଲେ । ଅନ୍ୟ ପୁତ୍ରମାନେ ତାଙ୍କଠାରୁ ପୌରାଣିକ ଗଳ୍ପମାନ ଶୁଣି ସହଜରେ ମନେ ରଖିପାରୁଥିଲେ ହେଁ ତାଙ୍କ କନିଷ୍ଠ ପୁତ୍ର ସିଦ୍ଧେଶ୍ୱର ସେଥିମଧ୍ୟରୁ କୌଣସି ଗୋଟିଏ ସୁଦ୍ଧା ମନେ ରଖିପାରୁ ନ ଥିଲେ । ଏଥିପାଇଁ ପିତାଙ୍କ ଦ୍ୱାରା ଭର୍ତ୍ସିତ ହୋଇ ସେ ଶାରଳାଦେବୀଙ୍କ ଆରାଧନା କରିବାରୁ ତାଙ୍କର ଅଦ୍ଭୁତ ସ୍ମୃତିଶକ୍ତି ଓ କବିତ୍ୱଶକ୍ତିର ବିକାଶ ଘଟିଥିଲା । ଅନ୍ୟ ଗଳ୍ପରେ କୁହାଯାଇଛି ଯେ ସିଦ୍ଧେଶ୍ୱର ହଳ କରୁଥିବାବେଳେ ଯେଉଁ ଗୀତ ଗାଉଥିଲେ, ଶାରଳାଦେବୀ ତାକୁ ତନ୍ମୟ ହୋଇ ଶୁଣି ତାଙ୍କୁ ବର ଦେଇଥିଲେ । ଏ ସମସ୍ତ ଗଳ୍ପର କୌଣସି ମାତ୍ର ସୂଚନା ତାଙ୍କ ଗ୍ରନ୍ଥାବଳୀରେ ନ ଥିବାରୁ ଏଗୁଡ଼ିକର କୌଣସି ଐତିହାସିକ ଭିତ୍ତି ଅଛି ବୋଲି କହିବା ଏକାବେଳେକେ ଅସମ୍ଭବ ହୋଇପଡ଼ୁଛି । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ କହିବାକୁ ଗଲେ ଏ ସବୁ ଗଳ୍ପ ହେଉଛି "ଭକ୍ତିକଳ୍ପିତଥ୍ୟ" । ଯେତେବେଳେ ଇତିହାସ ଲୋପ ପାଏ ଓ ତା'ର ପୁନରୁଦ୍ଧାର ପାଇଁ କୌଣସି ବିଧିବଦ୍ଧ ଚେଷ୍ଟା କରା ନ ଯାଏ, ସେତେବେଳେ ଭକ୍ତିକଳ୍ପିତଥ୍ୟାରୁ ଜାତ ଗଳ୍ପମାନ ଇତିହାସର ସ୍ଥାନ ଅଧିକାର କରି ବସନ୍ତି । ସମସ୍ତ ପ୍ରଖ୍ୟାତ ପ୍ରାଚୀନ କବି, ଏପରିକି ମହାକବି କାଳିଦାସଙ୍କ ସମ୍ବନ୍ଧରେ ମଧ୍ୟ ଏହିପରି ଗଳ୍ପ ପ୍ରଚଳିତ ଅଛି । ଆମ୍ଭେମାନେ ଐତିହାସିକ ଦୃଷ୍ଟିରୁ ସାରଳାଦାସଙ୍କ ଜୀବନୀ ଆଲୋଚନା କରୁଥିବାରୁ ଏହି ଇତିହାସ ଭିତ୍ତିହୀନ ଗଳ୍ପଗୁଡ଼ିକୁ ତାଙ୍କ ଜୀବନୀ ସହିତ ସମ୍ମିଶ୍ରଣ କରିବାର କୌଣସି କାରଣ ଦେଖୁନାହୁଁ ।

କବି ତାଙ୍କ ପିତା ଓ ଭ୍ରାତାଙ୍କ ନାମ ଛଡ଼ା ତାଙ୍କ ପରିବାରର ଅନ୍ୟ କାହାରି ନାମ ପ୍ରକାଶ କରିନାହାନ୍ତି ।

ଆହେ ପ୍ରଭୁ ମୋତେ କର ଆପଣଙ୍କ ଭୃତ୍ୟ
ଯଶୋବନ୍ତ ନନ୍ଦନ ମୁଁ ମୂରୁଖ ଅତ୍ୟନ୍ତ ।
ଶୂଦ୍ରମୁନି ଶାରଳାକୁ ତ୍ୱରିତେ ଉଦ୍ଧାର
ଏହି କୃପା କର ପ୍ରଭୁ ଶଙ୍ଖ ଚକ୍ରଧର । ଦ୍ରୋଣ, ପୃ. ୭୯

ଚନ୍ଦ୍ରଭାଗା ନଦୀର ଉତ୍ତର ଯେ ଠଣା
ଝଙ୍କଡ଼ପୁର ନାମରେ ବସଇ ପାଟଣା ।
କନକପୁର ପାଟଣା ଘର ପର୍ଶୁରାମ
ତାର ଅନୁଜ ସାରଳାଦାସ ମୋର ନାମ ।          ମଧ୍ୟ, ପୃ-୫୯

କବିଙ୍କ ନିଜ ଉକ୍ତିରୁ ହିଁ ପ୍ରମାଣିତ ହେଉଛି ଯେ ତାଙ୍କ ପିତାଙ୍କ ନାମ ଥିଲା ଯଶୋବନ୍ତ ଓ ତାଙ୍କ ଜ୍ୟେଷ୍ଠଭ୍ରାତାଙ୍କ ନାମ ଥିଲା ପର୍ଶୁରାମ । ସେ କବିତା ଲେଖୁଥିଲେ ହେଁ ବିଷୟବାସନା ଛାଡ଼ି ନ ଥିଲେ ବା ଗୃହତ୍ୟାଗ କରିନଥିଲେ । ସେ ବହୁ ସ୍ଥାନରେ ଲେଖିଛନ୍ତି ଯେ, ସେ ସଂସାର ବିଷୟରେ ଜଡ଼ିତ ହୋଇ ପଡ଼ିଛନ୍ତି ଓ କେତେକ ସ୍ଥାନରେ ଲେଖିଛନ୍ତି ଯେ ସେ ନିଜେ ଲଙ୍ଗଳ ଧରି କୃଷି କରନ୍ତି—

ଜନ୍ମୁ ମୁହିଁ ଅପଣ୍ଡିତ ମୂର୍ଖ ମୋର ଗୋବି
ବଳରାମ ଶସ୍ତ୍ର ଦ୍ୱାରା କୃଷି ମୋର ନିତି । ଚଣ୍ଡୀପୁରାଣ, ପୃ-୧୧୪

ଆଧୁନିକ ଯୁଗରେ ମଧ୍ୟ ମେହେର କବି ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ନିଜ ଜୀବିକା କରି ପେଟ ପୋଷୁଥିଲେ । ସାରଳାଦାସ ଠିକ୍ ସେହିପରି ଭାବରେ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ କୃଷିକର୍ମ କରି ଜୀବନଧାରଣ କରୁଥିଲେ । ତାଙ୍କ କବିତା ତାଙ୍କୁ ଅନ୍ନ ବା ସମ୍ମାନ ଯୋଗାଇଥିବାର କୌଣସି ପ୍ରମାଣ ତାଙ୍କ ଗ୍ରନ୍ଥମାନଙ୍କରେ ନାହିଁ । ଅତି ନିକଟରେ କେହି କେହି ନୂଆ ଗଳ୍ପଟିଏ ତିଆରି ଦେଇ ଲେଖିଦେଲେଣି ଯେ ଓଡ଼ିଶାର ଗଜପତି ସାରଳାଦାସଙ୍କୁ ଦଶଖଣ୍ଡ ଗ୍ରାମ ଦାନ କରିଥିଲେ । ଏହା ନିତାନ୍ତ ଭିତ୍ତିହୀନ ଅସତ୍ୟ ଗଳ୍ପ । ଓଡ଼ିଶାରେ ଐତିହାସିକ ଉପାଦାନର ଅଭାବ ନାହିଁ, ମାତ୍ର ସେଗୁଡ଼ିକର ସଦୁପଯୋଗ କରାନଯାଇ ଭିତ୍ତିହୀନ ଗଳ୍ପମାନ ଓ ଜାଲ୍ ଐତିହାସିକ ଉପାଦାନମାନ ସୃଷ୍ଟି ହୋଇଆସିଛି ଓ ବର୍ତ୍ତମାନ ମଧ୍ୟ ହେଉଛି, ଏବଂ ଏଗୁଡ଼ିକ ହିଁ ଓଡ଼ିଶାର ଇତିହାସକୁ ହତ୍ୟା କରୁଛନ୍ତି । କବି ଗ୍ରନ୍ଥାରମ୍ଭରେ ଜଗନ୍ନାଥଙ୍କ ବନ୍ଦନା ପ୍ରସଙ୍ଗରେ ଜଗନ୍ନାଥଙ୍କ ତତ୍କାଳୀନ ପ୍ରଧାନ ସେବକ କପିଳେଶ୍ୱର ଗଜପତିଙ୍କ ନାମ ଉଲ୍ଲେଖ କରିଛନ୍ତି । ଏହାଛଡ଼ା ସେ ରାଜଦ୍ୱାରରେ ସମ୍ମାନ ବା ରାଜାଙ୍କଠାରୁ ଦାନ ପାଇଥିବାର ତିଳାର୍ଦ୍ଧ ପ୍ରମାଣ ତାଙ୍କ ଗ୍ରନ୍ଥମାନଙ୍କରେ ନାହିଁ । ବୃଦ୍ଧକାଳ ପର୍ଯ୍ୟନ୍ତ ସାଧାରଣ ବ୍ୟକ୍ତି ପରି ଗୃହଜଞ୍ଜାଳରେ ପଡ଼ି ଓ ପୁତ୍ରପୌତ୍ରୀ ନେଇ ସଂସାରରେ ଚଳୁଥିବା କଥା ସେ ସ୍ପଷ୍ଟ ଭାବରେ ଲେଖିଯାଇଛନ୍ତି—

ତେଣୁ କରି ଲେଖିଲି ମୁଁ ଠିକ ଠିକ କରି
ହିତ ଶାରଳା ପ୍ରସାଦେ ଭାରତ ବିସ୍ତରି ।
ବିସ୍ତାରିଣ କହିବାକୁ କିସ ମୋ ଶକତି
ଗୃହୀ ହୋଇ ଚଳୁଅଛି ଘେନି ପୁତ୍ରପୌତ୍ରୀ ।

ଯାହା ଇଚ୍ଛେ ଦେଉଛନ୍ତି ଅନ୍ନପୂର୍ଣ୍ଣା ମାତ
ହେ ବୁଧଜନେ ମୁଁ ମୂର୍ଖ ପୁଣି ଅପଣ୍ଡିତ ।
କୁସ୍ଥାନବାସୀ ଅଟଇ ମୂର୍ଖବଂଶେ ଜାତ
ଜ୍ଞାନୀଜନଙ୍କ ସଙ୍ଗରେ ନାହିଁ ମୋ ସଙ୍ଗତ ।
ଗ୍ରାମର ପାଠଶାଳାରେ ପଢ଼ିନାହିଁ ଭଲେ
ନିକଟେ ଶାସନ ନାହିଁ ପୌରାଣିକ କୁଳେ ।
ଝଙ୍କଡ଼ନିବାସୀ ଚଣ୍ଡୀ ଶ୍ରୀ ଶାରଳା ସେବି
ତାହାଙ୍କ ପ୍ରସନ୍ନେ ମୁହିଁ ବୋଲଉଛି କବି । ଦ୍ରୋଣ, ପୃ ୯୧-୯୬

ଏ ସମସ୍ତ ଉକ୍ତିରୁ ନିଶ୍ଚିତ ଭାବରେ ଜଣାଯାଏ ଯେ କବି ବୃଦ୍ଧାବସ୍ଥାରେ ପୁଅ, ନାତି, ନାତୁଣୀଙ୍କ ସଙ୍ଗରେ ଗୃହସ୍ଥ ଜୀବନଯାପନ କରୁଥିଲେ । ଜୀବନଧାରଣ ପାଇଁ ଯାହା ଦରକାର ହେଉଥିଲା, ତାହା ତାଙ୍କୁ ଅନ୍ନପୂର୍ଣ୍ଣା ବା ଲକ୍ଷ୍ମୀ ଯୋଗାଇ ଦେଉ-ଥିଲେ । ଅବଶ୍ୟ ଏଠାରେ ଲକ୍ଷ୍ମୀ ହେଉଛନ୍ତି ତାଙ୍କର ଚାଷଜମି । ନିଜ ମନଗଢ଼ା ଗଳ୍ପ ସାହାଯ୍ୟରେ ସାରଳାଦାସଙ୍କୁ ଗୃହତ୍ୟାଗୀ ବା ମହାଯୋଗୀ ରୂପେ ଉପସ୍ଥାପିତ କରିବା ନିତାନ୍ତ ଅସତ୍ୟ ହେବ । ଖାଲି ଓଡ଼ିଶାରେ ନୁହେଁ, ପୃଥିବୀର ସବୁ ଅଞ୍ଚଳରେ ମଧ୍ୟ ସ୍ୱଗଜନ୍ମା ମହାପ୍ରତିଭାଶାଳୀ ବ୍ୟକ୍ତିମାନଙ୍କୁ ଜୀବଦ୍ଦଶାରେ ସମ୍ମାନ ବା ବିଭବ କ୍ୱଚିତ୍ ମିଳିଥାଏ । ଷାଠିଏ ବର୍ଷ ପୂର୍ବେ ଓଡ଼ିଶାର କୌଣସି ବ୍ୟକ୍ତି ସାରଳାଦାସଙ୍କୁ ପ୍ରଶଂସା କରିଥିବାର କିମ୍ବା ତାଙ୍କ ପ୍ରତିଭା ଓ କୃତି ସମ୍ବନ୍ଧରେ ପଦେ ଅଧେ କହିଥିବାର ପ୍ରମାଣ କୌଣସିଠାରୁ ମିଳେ ନାହିଁ । ଏପରି ଅବସ୍ଥାରେ ଗ୍ରନ୍ଥମାନ ଲେଖିବା ସଙ୍ଗେ ସଙ୍ଗେ ସେ ସମ୍ମାନିତ ହୋଇ ବିଭବଶାଳୀ ହୋଇପଡ଼ୁଥିଲେ ବୋଲି କହିବା ବା ଭାବିବା ନିତାନ୍ତ ଅସମୀଚୀନ ହେବ ।

କବିଙ୍କ ବାଲ୍ୟଜୀବନ ଯାହା ଥିଲା, ତା'ର ସାମାନ୍ୟ ଚିତ୍ର ଉଲ୍ଲିଖିତ ପଦ-ମାନଙ୍କରେ ପ୍ରତିଫଳିତ ହୋଇଛି । ସେ ନିଜକୁ ମୂର୍ଖ ଓ ମୂର୍ଖବଂଶଜ ବୋଲି ପରିଚୟ ଦେଇଛନ୍ତି । ଏଣୁ ପୂର୍ବୋକ୍ତ ଗଳ୍ପ ମନଗଢ଼ା ବୋଲି ପ୍ରମାଣିତ ହୋଇଯାଉଛି । ତାଙ୍କ ପିତା ପଣ୍ଡିତ ବା ପୁରାଣଜ୍ଞ ନ ଥିଲେ କିମ୍ବା ଗ୍ରାମପାଠଶାଳାରେ ବା ବ୍ରାହ୍ମଣଶାସନ-ମାନଙ୍କରେ ଥିବା ସଂସ୍କୃତ ବିଦ୍ୟାଳୟମାନଙ୍କରେ ପଢ଼ିବାର ସୁବିଧା ପାଇନଥିଲେ । କବିଙ୍କ ଏ ଉକ୍ତି ସତ୍ୟାଶ୍ରିତ ବୋଲି ମନେହୁଏ । ସେ ଯେଉଁ କୁଳରେ ଜନ୍ମଗ୍ରହଣ କରିଥିଲେ ଓ ତାଙ୍କ ସମୟରେ ଶିକ୍ଷାର ପ୍ରସାର ଓ ପଦ୍ଧତି ଯାହା ଥିଲା, ସେଥିରେ ସେ ବାଲ୍ୟଶିକ୍ଷା ପାଇଥିଲେ ବୋଲି ଭାବିବାର କାରଣ ନାହିଁ । ପ୍ରତିଭା ହୀରକ ପରି; ଶିକ୍ଷା ତାକୁ ଟିକିଏ ମାଜି ଅଧିକ ଉଜ୍ଜ୍ୱଳ କରେ, ମାତ୍ର ନ ମାଜିଲେ ଯେ ହୀରକ ଉଜ୍ଜ୍ୱଳ

ହୁଏନାହିଁ, ଏକଥା ସତ୍ୟ ନୁହେଁ । ସାରଳାଦାସଙ୍କ ଠାରେ ବିରାଟ ପ୍ରତିଭା ନିହିତ ଥିଲି ଓ ସେ ବିଧିବଦ୍ଧ ଭାବରେ ଶିକ୍ଷାଲାଭ କରିବାର ସୁବିଧା ପାଇ ନ ଥିଲେ ମଧ୍ୟ ଏହି ପ୍ରତିଭାର ପରିପ୍ରକାଶ ଘଟିଥିଲା । ବିଧିବଦ୍ଧ ଭାବରେ ଶିକ୍ଷା ନ ପାଇ ପୃଥିବୀର ବହୁବ୍ୟକ୍ତି ସେମାନଙ୍କର ପ୍ରତିଭାର ଅମର ଅବଦାନ ରଖିଯାଇଛନ୍ତି । ସେକ୍‌ସପିଅର୍ ବିଧିବଦ୍ଧ ଭାବରେ ଶିକ୍ଷା ନ ପାଇଥିଲେ ମଧ୍ୟ ପୃଥିବୀର ନାଟ୍ୟକାରମାନଙ୍କ ମଧ୍ୟରେ ସର୍ବୋଚ୍ଚସ୍ଥାନ ଲାଭ କରିଛନ୍ତି । ରବୀନ୍ଦ୍ରନାଥଙ୍କ ବିଧିବଦ୍ଧ ଶିକ୍ଷା ପର୍ଯ୍ୟାପ୍ତ ହୋଇ ନ ଥିଲେ ମଧ୍ୟ ସେ ବିଶ୍ୱକବି ହୋଇପାରିଛନ୍ତି । ଏ ସ୍ଥଳରେ ଆମ ରାଜ୍ୟର ମେହେର କବି ଓ ବୈଷ୍ଣବ ପାଣିଙ୍କ ଉଦାହରଣ ମଧ୍ୟ ଦିଆଯାଇପାରେ । ଯେଉଁମାନେ ମହାପ୍ରତିଭାଶାଳୀ, ସେମାନଙ୍କ ଶିକ୍ଷାକ୍ଷେତ୍ର ସ୍କୁଲ୍ କଲେଜ ନୁହେଁ । ସେମାନଙ୍କ ଶିକ୍ଷାକ୍ଷେତ୍ର ହେଉଛି ଦୃଶ୍ୟମାନ ଜଗତ୍, ସେମାନଙ୍କ ଶିକ୍ଷାଦାତା ହେଉଛନ୍ତି ଜନସମାଜ ଏବଂ ସେମାନଙ୍କ ନିଜ ଚକ୍ଷୁ, କର୍ଣ୍ଣ, କଳ୍ପନା ଓ ଅନୁଭୂତି । ସାରଳା ଦାସ ମହାପ୍ରତିଭାଶାଳୀ ଥିଲେ ଓ ଏହିପରି ଭାବରେ ତାଙ୍କ ପ୍ରତିଭାର ପରିପ୍ରକାଶ ଘଟିଥିଲା ।

କବି ବାରମ୍ବାର ଲେଖିଛନ୍ତି ଯେ ସେ ମୂର୍ଖ ଅପଣ୍ଡିତ, ମୂର୍ଖବଂଶଜ, ବାଲ୍ୟ-ଶିକ୍ଷାରୁ ବଞ୍ଚିତ ଓ ପଣ୍ଡିତ ସଙ୍ଗତିରୁ ବଞ୍ଚିତ ହୋଇଥିଲେ ସୁଦ୍ଧା ତାଙ୍କ ଆରାଧ୍ୟ ସାରଳାଦେବୀଙ୍କ କୃପାରୁ ତାଙ୍କର ଅଦ୍ଭୁତ କବିତ୍ୱଶକ୍ତିର ବିକାଶ ଘଟିଥିଲା ଏବଂ ସେ ସର୍ବଶାସ୍ତ୍ର ଓ ସର୍ବଜ୍ଞାନ ପାରଙ୍ଗମ ହୋଇପାରିଥିଲେ । ଦୈବ ଶକ୍ତି ଉପରେ କବିଙ୍କ ନିଷ୍ଠାଯୁକ୍ତ ପ୍ରଗାଢ଼ ବିଶ୍ୱାସ ଥିଲା ଓ ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ସେ ତାଙ୍କର ଅହଙ୍କାରକୁ ନିଶ୍ଚିହ୍ନ କରିଯାଇଛନ୍ତି । କିନ୍ତୁ ଐତିହାସିକ ଦୃଷ୍ଟିରୁ ତାଙ୍କ ଜୀବନୀ ଆଲୋଚନା କରୁଥିବାବେଳେ କେବଳ ଦୈବଶକ୍ତିରୁ ତାଙ୍କ କବିତ୍ୱର ଅଭ୍ୟୁଦୟ ଘଟିଥିଲା ବୋଲି ଧରିଯାଇ ପାରିବ ନାହିଁ; ଅନ୍ୟାନ୍ୟ କାରଣମାନ ମଧ୍ୟ ବିଚାର କରିବାକୁ ପଡ଼ିବ । ଆଜିକାଲି ଓଡ଼ିଶାରେ ପ୍ରତିଭାଶାଳୀ କବିମାନଙ୍କ ଜୀବନୀ ଆଲୋଚନା କଲାବେଳେ କେବଳ ଦୈବଶକ୍ତି ଉପରେ ଅତିମାତ୍ରାରେ ଜୋର୍ ଦିଆଯାଉଛି । କୁହାଯାଉଛି ଯେ ସାରଳାଦାସ ସାରଳାଦେବୀଙ୍କୁ ଆରାଧନା କରି, ଉପେନ୍ଦ୍ରଭଞ୍ଜ ରାମତାରକ ମନ୍ତ୍ର ଜପ କରି, ବଳଦେବ ରଥ ଇଷ୍ଟଦେବୀଙ୍କ ସ୍ତନ୍ୟପାନ କରି ଓ ଗୋପାଳକୃଷ୍ଣ ଇଷ୍ଟଦେବତାଙ୍କୁ ଆରାଧନା କରି ବିଶିଷ୍ଟ କବି ହୋଇ ପାରିଥିଲେ । ଏହିପରି ଓଡ଼ିଶାର ପ୍ରତ୍ୟେକ କବି ଓ ପ୍ରତ୍ୟେକ ପ୍ରତିଭାଶାଳୀ ବ୍ୟକ୍ତି ସହିତ ଦୈବଶକ୍ତିକୁ ସଂଶ୍ଳିଷ୍ଟ କରି ସେମାନଙ୍କ ପ୍ରତିଭାର ବିଚାର କରାଯାଉଛି । ଓଡ଼ିଶାର ପ୍ରାଚୀନ ମନୀଷୀମାନଙ୍କର ଦୈବଶକ୍ତି ଉପରେ ଯେ ପ୍ରଗାଢ଼ ବିଶ୍ୱାସ ଥିଲା, ଏହା ସତ୍ୟକଥା; ମାତ୍ର ଆମ୍ଭମାନଙ୍କ ବର୍ତ୍ତମାନ ସେପରି ବିଶ୍ୱାସ ଯେ ନାହିଁ, ଏହା ମଧ୍ୟ ସତ୍ୟକଥା । ତେବେ କାହିଁକି ଏହି ଜ୍ଞାନବିଜ୍ଞାନ ଯୁଗରେ ଓ ଓଡ଼ିଶାରେ ଦେବଦେବୀ ପୂଜା ପ୍ରହସନରେ ପରିଣତ ହେଉଥିବାବେଳେ, ସହସ୍ର ଭ୍ରାନ୍ତିକୁ

ଗୋଟିଏ ଠେଙ୍ଗାରେ ଭାଙ୍ଗିବା ଭଳିରେ ଓଡ଼ିଶାର ସମସ୍ତ ପ୍ରାଚୀନ ପ୍ରବନ୍ଧଙ୍କୁ କେବଳ ଦୈବଶକ୍ତି ସାହାଯ୍ୟରେ ହିଁ ବିଗ୍ରହ କରାଯାଉଛି ? ଏହାର ଉତ୍ତର ଏହି ଯେ ଏହା ଏକ ସହଜ ପନ୍ଥା । ଏ ପନ୍ଥା ଅବଲମ୍ବନ କଲେ ଅଧ୍ୟୟନ, ଅନୁସନ୍ଧାନ, ଅନୁଶୀଳନ, ବିଶ୍ଳେଷଣ ଓ ବିଗ୍ରହର ପ୍ରୟୋଜନ ରହେନାହିଁ, ଅଥଚ ଲେଖିବା ପାଇଁ ବା କହିବା ପାଇଁ ଯଥେଷ୍ଟ ସାମଗ୍ରୀ ମିଳିଥାଏ ।

କେବଳ ଦୈବଶକ୍ତି ସାହାଯ୍ୟରେ ସାରଳାଦାସଙ୍କ ପ୍ରବନ୍ଧ ବିଗ୍ରହ କରିବାକୁ ଆମ୍ଭେମାନେ ଅନିଚ୍ଛୁକ । ସାରଳା ଦାସ ଯେଉଁ ଯୁଗରେ ଜନ୍ମଗ୍ରହଣ କରିଥିଲେ ସେ ଯୁଗର କବି ଓ ସନ୍ଥମାନେ ଦୈବଶକ୍ତି ଉପରେ ଏକାନ୍ତ ବିଶ୍ୱାସ କରି ଆତ୍ମ-ଅହଂକାରର କୌଣସି ଚିହ୍ନ ରଖିଯାଇ ନାହାନ୍ତି । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ପୂର୍ବରୁ ଓଡ଼ିଶାରେ ଯେତେ କବି ଜନ୍ମଗ୍ରହଣ କରିଥିଲେ, ସେମାନେ ସମସ୍ତେ ହେଉଛନ୍ତି "ଦାସ", ଅର୍ଥାତ୍ କୌଣସି ଦେବ ବା ଦେବୀର ଦାସ । ଜାତି ନିର୍ବିଶେଷରେ ସେମାନେ ଏହି ଦାସ ଉପାଧିରେ ନିଜକୁ ଆଖ୍ୟାତ କରିଯାଇଛନ୍ତି, ଯଥା ସାରଳାଦାସ, ବତ୍ସାଦାସ, ମାର୍କଣ୍ଡ ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ ଇତ୍ୟାଦି । ଏମାନେ ନିଜ ନିଜ ରଚନାବଳୀରେ ସବୁଠାରେ ମୂର୍ଖ, ପାମର, ଛାର, ହୀନ, ଅଧମ, ନିରକ୍ଷ (ନିରେଖ), ଅରକ୍ଷିତ, ଅଜ୍ଞାନ ଇତ୍ୟାଦି ଆଖ୍ୟାରେ ନିଜ ନିଜକୁ ଭୂଷିତ କରିଛନ୍ତି । ବେଳେବେଳେ ନିଜ ନିଜକୁ କେବଳ କବି ବୋଲି ଆଖ୍ୟାତ କରିଥିଲେ ହେଁ କବିଠାରୁ ଉଚ୍ଚତର ଉପାଧିରେ ଏମାନେ ଭୂଷିତ ହୋଇନାହାନ୍ତି । ଏହି କବିମାନେ ବାରମ୍ବାର କହିଯାଇଛନ୍ତି ଯେ ସେମାନେ "ସଂସାରଜନହିତେ", "ସର୍ବଜନହିତେ", "ସର୍ବ-ପ୍ରାଣୀହିତେ", "ସନ୍ଥଜନହିତେ" ସେମାନେ ଗ୍ରନ୍ଥମାନ ଲେଖିଯାଇଛନ୍ତି । ବସ୍ତୁତଃ ସେମାନଙ୍କ ଲେଖା କୌଣସି ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ନ ହୋଇ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥିଲା । ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ରଚିତ ସମସ୍ତ ଓଡ଼ିଆ ସାହିତ୍ୟରେ ଏହି ଚିନ୍ତାଧାରା ନିର୍ଦ୍ଦିଷ୍ଟ ଭାବରେ ଦେଖାଯାଏ । ଏହି ସମୟ ପର୍ଯ୍ୟନ୍ତ ଯେଉଁମାନେ ଭାରତର ଧର୍ମକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ ସେମାନେ ମଧ୍ୟ କୌଣସି ପ୍ରକାର ଉପାଧି ଗ୍ରହଣ ନ କରି ନିଜ ଅହଂକାରକୁ ନିଶ୍ଚିହ୍ନ କରି ଯାଇଛନ୍ତି, ଯଥା—ଶଙ୍କର, ରାମାନୁଜ, ରାମାନନ୍ଦ, କବିର, ନାନକ ଓ ଚୈତନ୍ୟ । ପରେ ଏମାନଙ୍କ ମଧ୍ୟରୁ କାହାର କାହାରିକୁ ସେମାନଙ୍କ ଶିଷ୍ୟ ପ୍ରଶିଷ୍ୟମାନେ ଉପାଧିଜଡ଼ିତ କଲେ, ମାତ୍ର ଏହି ସନ୍ଥମାନେ ଜୀବିତାବସ୍ଥାରେ ଅହଂକାର ସୂଚକ କୌଣସି ପ୍ରକାର ଉପାଧି ଗ୍ରହଣ କରି ନ ଥିଲେ ।

ସାରଳାଦାସ ଯେଉଁ ସମୟରେ ଜନ୍ମଗ୍ରହଣ କରିଥିଲେ, ଏହା ହିଁ ଥିଲା ସାହିତ୍ୟ ଓ ଧର୍ମର ଚିନ୍ତାଧାରା, ମାତ୍ର ପରେ ଏହା ବଦଳିଗଲା । ଏହାପରେ କବିମାନେ ନିଜ

ଗ୍ରନ୍ଥମାନଙ୍କରେ ନିଜ ନିଜକୁ ବେଳେ ବେଳେ ଦେବଦେବୀର ଭକ୍ତ ରୂପେ ପରିଚୟ ଦେଇଥିଲେ ମଧ୍ୟ ସେମାନଙ୍କ ଜାତି ଓ ଶ୍ରେଣୀସୂଚକ ଉପାଧି ଭଞ୍ଜ, ସାମନ୍ତ, ସିଂହାର, ବ୍ରହ୍ମା, ରଥ ଇତ୍ୟାଦିକୁ ନିଜ ନାମ ସହିତ ପ୍ରକାଶ କଲେ । ରୀତିଯୁଗର କବିମାନେ ନିଜ ଗ୍ରନ୍ଥମାନଙ୍କରେ ମୂର୍ଖ, ଅପଣ୍ଡିତ, ଅଧମ, ଅଜ୍ଞାନ ରୂପେ କୌଣସିଠାରେ ନିଜ ନିଜକୁ ଉପସ୍ଥାପିତ କରି ନାହାନ୍ତି; ପକ୍ଷାନ୍ତରେ ସେମାନେ ନିଜକୁ ସୁପଣ୍ଡିତ ରୂପେ ଉପସ୍ଥାପିତ କରି ବାରମ୍ବାର ଲେଖିଛନ୍ତି ଯେ, ସେମାନଙ୍କ ଲେଖା "ପଣ୍ଡିତ", "ବୁଧ", "କୋବିଦ", "ବିଦଗ୍ଧ", "ଚତୁର ଗ୍ରାହକ" ଇତ୍ୟାଦିଙ୍କ ପାଇଁ ଉଦ୍ଦିଷ୍ଟ । କେହି କେହି ସ୍ପଷ୍ଟଭାବରେ ଲେଖିଛନ୍ତି ଯେ, ମୂର୍ଖ ଓ ଅପଣ୍ଡିତମାନେ ସେମାନଙ୍କର ଲେଖାର ରସାସ୍ୱାଦନ କରିପାରିବେ ନାହିଁ । ବସ୍ତୁତଃ ରୀତିଯୁଗର କବିମାନଙ୍କ ଲେଖା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ନ ହୋଇ ଗୋଟିଏ ଶ୍ରେଣୀପାଇଁ ଉଦ୍ଦିଷ୍ଟ ହୋଇଥିଲା । ରୀତିଯୁଗର ଓ ତତ୍ପରବର୍ତ୍ତୀ ଯୁଗର ଲେଖକମାନେ କେବଳ 'କବି' ଉପାଧିରେ ସନ୍ତୁଷ୍ଟ ହୋଇନାହାନ୍ତି; ସେମାନଙ୍କ ମଧ୍ୟରୁ ଅନେକ କବିସମ୍ରାଟ, କବିସୂର୍ଯ୍ୟ, କବିଚନ୍ଦ୍ର, କବିଶେଖର, କବିବର, କବିଭୂଷଣ ଇତ୍ୟାଦି ଉଚ୍ଚତର ଉପାଧିରେ ନିଜ ନିଜକୁ ଭୂଷିତ କରିଛନ୍ତି । ଧର୍ମକ୍ଷେତ୍ରରେ ମଧ୍ୟ ଅନୁରୂପ ପରିବର୍ତ୍ତନ ଘଟିଲା ଓ ସନ୍ଥମାନେ ବିଶ୍ୱଗୁରୁ, ଜଗଦ୍‌ଗୁରୁ ଶ୍ରୀମଦ୍ ସ୍ୱାମୀ, ପରମହଂସ, ଆନନ୍ଦ ଶବ୍ଦ ଯୋଗରେ ବହୁବିଧ ଉପନାମ, ପରିବ୍ରାଜକାଚାର୍ଯ୍ୟ, ଶ୍ରୀ ଶ୍ରୀ ଶ୍ରୀ ମହାରାଜ, ତ୍ରିଦଣ୍ଡୀସ୍ୱାମୀ, ସାଧକ, ବଶିଷ୍ଟ ସାଧକ, ପ୍ରପତ୍ତି ଇତ୍ୟାଦି ବହୁବିଧ ଉପାଧିରେ ନିଜ ନିଜକୁ ଭୂଷିତ କଲେ ।

ଅତଏବ ଦେଖାଯାଉଛି ଯେ, ତାଙ୍କ ସମୟର ସାହିତ୍ୟ ଓ ଧର୍ମକ୍ଷେତ୍ରରେ ଯେଉଁ ରୀତି ପ୍ରଚଳିତ ଥିଲା, ସାରଳା ଦାସ ତାହା ହିଁ ଅନୁସରଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ ବିଚାର କଲେ ତାଙ୍କର ଅହଂକାର ଶୂନ୍ୟତା ଓ ବିନୟ ବୁଝିବାକୁ ସହଜ ହୁଏ । ତାଙ୍କ ଗ୍ରନ୍ଥମାନ ଅନୁଶୀଳନ କଲାବେଳେ ତାଙ୍କ ପ୍ରତିଭାରେ ଅଭିଭୂତ ହୋଇ ବିସ୍ମିତ ଓ ସ୍ତମ୍ଭିତ ହେବାକୁ ପଡ଼େ ଏବଂ ଏହି ହେତୁରୁ ତାଙ୍କ ପାଣ୍ଡିତ୍ୟ ଓ ପ୍ରତିଭା ସମ୍ବନ୍ଧୀୟ ତାଙ୍କ ନିଜ ଉକ୍ତିକୁ ଗ୍ରହଣ କରିବା କୌଣସିମତେ ସମ୍ଭବପର ହୁଏନାହିଁ ।

ତାଙ୍କ ଆରାଧ୍ୟା ସାରଳା ଦେବୀଙ୍କଠାରେ ତାଙ୍କର ସମ୍ପୂର୍ଣ୍ଣ ଆତ୍ମସମର୍ପଣ ତତ୍କାଳୀନ ଧର୍ମଧାରାରୁ ସମ୍ଭୂତ ବୋଲି ଧରିଗଲେ ମଧ୍ୟ, ଏହାର ଅନ୍ୟଏକ ଗୂଢ଼ କାରଣ ମଧ୍ୟ ଥିଲା ବୋଲି ମନେହୁଏ । ସାରଳା ଦାସ ଥିଲେ ଜଣେ ବିଦ୍ରୋହୀ ଓ ବିପ୍ଳବୀ କବି । ଧର୍ମଗ୍ରନ୍ଥ ରଚନାରେ ତାଙ୍କ ସମୟ ପର୍ଯ୍ୟନ୍ତ ଓଡ଼ିଶାରେ ଯେଉଁ ଚିରାଚରିତ ପ୍ରଥା ପ୍ରଚଳିତ ଥିଲା, ତାହା ସେ ମାନିନାହାନ୍ତି । ଏହି ପ୍ରଥା ଅନୁସାରେ ସମସ୍ତ ଧର୍ମଗ୍ରନ୍ଥ ସଂସ୍କୃତରେ ଲେଖା ହେବାର କଥା, ମାତ୍ର ସାରଳା ଦାସ

ସର୍ବପ୍ରଥମେ ଏହି ପ୍ରଥାକୁ ଭାଙ୍ଗି ଦେଇଛନ୍ତି । ପ୍ରାଚୀନ ପ୍ରଥା ଅନୁଯାୟୀ ଧର୍ମଗ୍ରନ୍ଥ-ମାନଙ୍କରେ ଐତିହାସିକ ଓ ସମସାମୟିକ ଘଟଣାବଳୀର ଗନ୍ଧସ୍ପର୍ଶ ପର୍ଯ୍ୟନ୍ତ ନ ରହିବାର କଥା; ମାତ୍ର ଆମର କବି ତାଙ୍କ ଗ୍ରନ୍ଥରେ ଏସବୁକୁ ପୂର୍ଣ୍ଣମାତ୍ରାରେ ସ୍ଥାନ ଦେଇଛନ୍ତି । ସଂସ୍କୃତ ମହାଭାରତରେ ଯାହା ଅଛି, ତାକୁ ଅନୁସରଣ ବା ଅନୁବାଦ କରି ଓଡ଼ିଆରେ ମହାଭାରତ ଲେଖିବାର କଥା; ମାତ୍ର ସାରଳା ଦାସ ମୂଳ ମହାଭାରତର ଗଳ୍ପ-କଙ୍କାଳଟି ମାତ୍ର ଘେନିଆସି ବାକି ସମସ୍ତ ଅଂଶକୁ ତାଙ୍କ ନିଜସ୍ୱରେ ପରିପୂର୍ଣ୍ଣ କରିଦେଇଛନ୍ତି । ଚିରାଚରିତ ପ୍ରଥା ବିରୁଦ୍ଧରେ ଯିବା ହିଁ ବିଦ୍ରୋହ ବା ବିପ୍ଳବ । ସାରଳା ଦାସଙ୍କ ସମସ୍ତ ଲେଖାରେ ଏହି ବିଦ୍ରୋହ ବା ବିପ୍ଳବ ରହିଛି । କବି ବୋଧହୁଏ ଅବହିତ ଥିଲେ ଯେ ତାଙ୍କ ଲେଖାମାନ ପଣ୍ଡିତ-ମାନଙ୍କ କଟୁ ସମାଲୋଚନା ଓ ବ୍ୟଙ୍ଗ ବିଦ୍ରୂପର ସାମଗ୍ରୀ ହେବ ଓ ଏହି ହେତୁରୁ ସେ ଏ ସବୁକୁ ଶାରଳାଦେବୀଙ୍କୁ ଉତ୍ସର୍ଗ କରି ଦେଇଥିଲେ । ଯଦି କେହି ତାଙ୍କ ବୈପ୍ଳବିକ ଲେଖାମାନଙ୍କ ସମ୍ବନ୍ଧରେ ବିବିଧ ପ୍ରଶ୍ନ ପଚାରୁଥିଲେ, ସେ ହୁଏତ ଉତ୍ତର ଦେଉଥିଲେ—"ମୁଁ ତ ବାରମ୍ବାର ଲେଖିଛି ଯେ, ମୁଁ ନିକେ ମୂର୍ଖ, ମୂର୍ଖବଂଶଜ, ଅପଣ୍ଡିତ, କୁସ୍ଥାନବାସୀ, ବାଲ୍ୟଶିକ୍ଷା ଓ ସତ୍‌ସଙ୍ଗତିରୁ ବଞ୍ଚିତ । ମୁଁ ଯାହା ଲେଖେଁ, ତାହା ମୋର ନିଜସ୍ୱ ନୁହେଁ । ଶାରଳାଦେବୀ ମୋତେ ରାତିରେ ଯାହା କହିଦିଅନ୍ତି, ତାହା ଦିନରେ ଲେଖିପକାଏ । ମୋ ଲେଖାର ଦୋଷଗୁଣ ସମ୍ବନ୍ଧରେ ସେହି ଦେବୀଙ୍କୁ ହିଁ ପଚାର ।"

ସାରଳା ଦାସ ଐତିହାସିକ ଓ ସମସାମୟିକ ଘଟଣାମାନ ଲେଖୁଁ ଲେଖୁଁ ବେଳେ ବେଳେ ଏ ସମସ୍ତର ସୀମା ଅତିକ୍ରମ କରି ରାଜନୀତିରେ ମଧ୍ୟ ପ୍ରବେଶ କରିଛନ୍ତି । ଏଥିପାଇଁ ତାଙ୍କୁ ଆହୁରି ବେଶି ସାବଧାନ ହେବାକୁ ପଡ଼ିଛି । ସଭାପର୍ବରେ (ପୃଃ ୨୩୩-୨୩୭) "ଯଯାତି ରାଜା ପ୍ରତି ପୁରୁ ପ୍ରବୀର ଦୁଇପୁତ୍ରଙ୍କର ଷଡ଼ଯନ୍ତ୍ର" ଶୀର୍ଷକ ଯେଉଁ ଆଖ୍ୟାୟିକାଟି ଅଛି, ତାହା ସାଂପ୍ରତିକ ରାଜନୀତିକ ଘଟଣାବଳୀ ଉପରେ ଆଧାରିତ ହୋଇଛି ବୋଲି ମନେହୁଏ । ଯୁଧିଷ୍ଠିର ରାଜସୂୟ ଯଜ୍ଞ ଆରମ୍ଭ କରୁଥିବା ବେଳେ ଯମଙ୍କର କାଳଞ୍ଜନ ଓ କାଳଧ୍ୱଂସ ନାମକ ଦୁଇଜଣ ଡଗର ହଠାତ୍ ଯଜ୍ଞସ୍ଥଳରେ ଉପସ୍ଥିତ ହୋଇଥିଲେ । ଯୁଧିଷ୍ଠିର ସେମାନଙ୍କ ପରିଚୟ ପୁଚ୍ଛିବାରୁ ସହଦେବ କହିଲେ ଯେ ସେମାନେ ପୂର୍ବଜନ୍ମରେ ତାଙ୍କ ସୋମବଂଶର ପ୍ରଖ୍ୟାତ ଯଯାତି ରାଜାଙ୍କ ପୁରୁ ଓ ପ୍ରବୀର ନାମଧେୟ ପୁତ୍ରଦ୍ୱୟ ଥିଲେ । ପିତୃଦ୍ରୋହ କରିଥିବାରୁ ସେମାନେ ଯମଦ୍ୱାରରେ ଡଗର ହୋଇଛନ୍ତି ଏବଂ ରାଜସୂୟ ଯଜ୍ଞ ଦେଖିବା ପରେ ସେମାନେ ଶାପମୁକ୍ତ ହେବେ । ପିତୃଦ୍ରୋହର ବିବରଣୀ ପ୍ରକାଶ କରି ସହଦେବ କହିଥିଲେ ଯେ ଯଯାତି ଦୀର୍ଘକାଳ ରାଜତ୍ୱ କରିଥିବାରୁ ତାଙ୍କ ପୁତ୍ରଦ୍ୱୟ (ପୁରୁ ଓ ପ୍ରବୀର) ଏକ ପ୍ରକାର ବୃଦ୍ଧ ହୋଇ ଆସିଥିଲେ ଓ ଏହି ହେତୁରୁ ପିତାଙ୍କୁ ହତ୍ୟା

କରାଇ ରାଜା ହେବାପାଇଁ ଇଚ୍ଛୁକ ହୋଇ ପଡ଼ିଥିଲେ । ଦିନେ ଯମନକ ମନ୍ତ୍ରୀଙ୍କ ସହ ମୃଗୟା କରୁଥିବା ବେଳେ ଉଭୟେ ମନ୍ତ୍ରୀଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲେ । ପୁଷ୍ୟାଭିଷେକ ଦିନ ଯଯାତିଙ୍କୁ ହତ୍ୟା କରାଇ ସେମାନଙ୍କୁ ରାଜା କରିବା ପାଇଁ ସତ୍ୟ କରିବା ପରେ ମନ୍ତ୍ରୀ ମୃତ୍ୟୁମୁଖରୁ ରକ୍ଷା ପାଇଥିଲେ । ପ୍ରାଣଭୟରେ ନିଜ ରାଜାଙ୍କୁ ହତ୍ୟା କରାଇବା ପାଇଁ ସତ୍ୟ କରିଥିବାରୁ ମନ୍ତ୍ରୀ ସେହି ଚିନ୍ତାରେ ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲେ । ଯଯାତି ତାଙ୍କ ଅସୁସ୍ଥତାର କାରଣ ବାରମ୍ବାର ପଚାରିବାରୁ ସେ ପରିଶେଷରେ ପୁରୁ-ପ୍ରବୀରଙ୍କ ଷଡ଼ଯନ୍ତ୍ର କଥା ପ୍ରକାଶ କରିବାକୁ ବାଧ ହୋଇଥିଲେ । ଯଯାତି ଏହା ଜାଣିବାମାତ୍ରେ ପୁତ୍ରଦ୍ୱୟଙ୍କୁ ଡାକି ଓ ରାଜ୍ୟ ଭାଗ କରି ସେମାନଙ୍କୁ ରାଜା କରାଇଥିଲେ ଓ ନିଜେ ସନ୍ନ୍ୟାସ ବ୍ରତ ଗ୍ରହଣ କରିଥିଲେ ।

ଏହି ଆଖ୍ୟାୟିକା ମୂଳ ସଂସ୍କୃତରେ ନାହିଁ । ଯଯାତିଙ୍କ ପ୍ରବୀର ନାମକ ପୁତ୍ର ଥିବାର ପ୍ରମାଣ ମଧ୍ୟ କୌଣସିଥିରେ ନାହିଁ । ସଂସ୍କୃତ ମହାଭାରତରେ ବର୍ଣ୍ଣିତ ଅଛିଯେ ଯଯାତିଙ୍କ ଧର୍ମ-ପତ୍ନୀ ଥିଲେ ଶୁକ୍ରଙ୍କ କନ୍ୟା ଦେବଯାନି, ମାତ୍ର ଯଯାତି ଗୋପନରେ ଶର୍ମିଷ୍ଠାଙ୍କୁ ବିବାହ କରିବାରୁ ଶୁକ୍ର ତାଙ୍କୁ ଜରାଗ୍ରସ୍ତ ହୋଇଯିବା ପାଇଁ ଅଭିଶାପ ଦେଲେ । ଏହାପରେ ଯଯାତିଙ୍କ କନିଷ୍ଠପୁତ୍ର ପୁରୁ ପିତାଙ୍କ ଠାରୁ ଜରା ଗ୍ରହଣ କରି ତାଙ୍କୁ ସହସ୍ରବର୍ଷ ପର୍ଯ୍ୟନ୍ତ ଉପଭୋଗ କରିବାର ସୁଯୋଗ ଦେଇଥିଲେ । ଯଯାତିଙ୍କ ପ୍ରବୀର ନାମକ ପୁତ୍ର ନ ଥିବା ସ୍ଥଳେ କମ୍ବା ତାଙ୍କ ପୁତ୍ରମାନେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଥିବାର କୌଣସି ଶାସ୍ତ୍ରୀୟ ପ୍ରମାଣ ନ ଥିବା ସତ୍ତ୍ୱେ, ସାରଳାଦାସ ଏହି ଆଖ୍ୟାୟିକାଟି ଲେଖିଲେ କିପରି ? କଥା ହେଉଛି କବି ଏହି ଆଖ୍ୟାୟିକାରେ ଗଜପତି କପିଳେଶ୍ୱରଦେବଙ୍କ ଶେଷ ଜୀବନକୁ ଅତି ଗୋପନରେ ଓ ପୁରାଣାକାରରେ ଚିତ୍ର କରି ଯାଇଛନ୍ତି । କପିଳେଶ୍ୱରଙ୍କ ବହୁ ପୁତ୍ର ଥିଲେ ହେଁ ସେମାନଙ୍କ ମଧ୍ୟରେ ପୁରୁଷୋତ୍ତମ ଓ ହମ୍ବିର ସର୍ବଶ୍ରେଷ୍ଠ ଓ ବିଖ୍ୟାତ ଥିଲେ । ଏ ଦୁହିଙ୍କ ମଧ୍ୟରେ ହିଁ ସିଂହାସନ ପାଇଁ ଯୁଦ୍ଧ ଲାଗିଥିଲା । ସାରଳାଦାସ ଏହି ପୁରୁଷୋତ୍ତମ ଓ ହମ୍ବିରଙ୍କୁ ହିଁ ପୁରୁ ଓ ପ୍ରବୀର ବୋଲି ବର୍ଣ୍ଣନା କରିଛନ୍ତି । ଦିଗ୍‌ବିଜୟୀ ଓ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର କପିଳେନ୍ଦ୍ରଙ୍କ ଶେଷ ଜୀବନ ଦୁଃଖମୟ ହୋଇଥିଲା । ତାଙ୍କ ଜୀବିତାବସ୍ଥାରେ ସିଂହାସନ ପାଇଁ ପୁତ୍ରଦ୍ୱୟଙ୍କ ମଧ୍ୟରେ ଘୋର ବିବାଦ ଲାଗିଯାଇଥିଲା ଏବଂ ସେ ନିଜେ ଜରାଗ୍ରସ୍ତ ଓ ବ୍ୟାଧିଗ୍ରସ୍ତ ହୋଇ ପଡ଼ିଥିଲେ । କପିଳେଶ୍ୱରଙ୍କ ରାଜତ୍ୱର କିପରି ଅବସାନ ଘଟିଲା, ତାହାର ସଠିକ ବିବରଣୀ ଆମ୍ଭମାନଙ୍କୁ ଜଣାନାହିଁ । ଅଧ୍ୟାପକ ପ୍ରଭାତ କୁମାର ମୁଖାର୍ଜି ତାଙ୍କ Gajapati Kings of Orissaରେ ଲେଖିଛନ୍ତି ଯେ କପିଳେଶ୍ୱର ୧୪୬୭ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ ଓ ସେହିବର୍ଷ ପୁରୁଷୋତ୍ତମଦେବ ଗଜପତି ହୋଇଥିଲେ । ପୁରୁଷୋତ୍ତମଦେବ

୧୪୬୭ ଖ୍ରୀଷ୍ଟାବ୍ଦରୁ ରାଜତ୍ୱ କରିଥିବାର ପ୍ରମାଣ ମିଳୁଛି, ମାତ୍ର ଡକ୍ଟର ଭେଙ୍କଟ ରାମନୟ୍ୟା ପ୍ରମାଣ କରିଛନ୍ତି ଯେ କପିଳେଶ୍ୱର ୧୪୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ ( The Delhi Sultanate, ଭାରତୀୟ ବିଦ୍ୟାଭବନ, P. 325, fn. 20a )। ଏଥିରୁ ଅନୁମିତ ହୁଏ ଯେ ତାଙ୍କ ଜୀବିତାବସ୍ଥାରେ ହିଁ ତାଙ୍କ ପୁତ୍ର ଦ୍ୱୟ ଶୀଘ୍ର ସିଂହାସନ ପାଇବା ପାଇଁ ତାଙ୍କ ଉପରେ ଚାପ ପକାଇଥିଲେ କିମ୍ବା କୌଣସି ଷଡ଼ଯନ୍ତ୍ର ସୃଷ୍ଟି କରିଥିଲେ। ଏହି ହେତୁରୁ ପିତାଙ୍କ ଜୀବିତାବସ୍ଥାରେ ପୁରୁଷୋତ୍ତମ ରାଜା ହୋଇପାରିଥିଲେ। ସାରଳାଦାସ ଏହି ସମସାମୟିକ ଘଟନା ଅବଲମ୍ବନରେ ଉଲ୍ଲିଖିତ ଆଖ୍ୟାୟିକାଟି ଲେଖିଯାଇଛନ୍ତି।

ସାରଳାଦାସ ବେଳେବେଳେ ଏହିପରି ରାଜନୀତିର ଗହନବନରେ ପ୍ରବେଶ କରିଛନ୍ତି। ଏଥିରେ ତାଙ୍କ ମନରେ ରାଜଦଣ୍ଡର ଭୟ ଜାଗ୍ରତ ହୋଇଥିବା ସ୍ୱାଭାବିକ କଥା। ରାଜଭୟ, ସମାଜ ଭୟ, ସଂସ୍କୃତ ପଣ୍ଡିତମାନଙ୍କ ବ୍ୟଙ୍ଗ ବିଦ୍ରୂପ ଇତ୍ୟାଦି ସମସ୍ତ ଭୟରୁ ରକ୍ଷା ପାଇବା ପାଇଁ ସେ କେତେଗୁଡ଼ିଏ ଉପାୟ ଅବଲମ୍ବନ କରିଛନ୍ତି। ଐତିହାସିକ, ସମସାମୟିକ ବା ରାଜନୀତିକ ଘଟଣାଗୁଡ଼ିକୁ ସେ ଯଥାସାଧ୍ୟ ପ୍ରଚ୍ଛନ୍ନ ଭାବରେ ଓ ପୌରାଣିକ ଭାବରେ ପ୍ରକାଶ କରିଛନ୍ତି ଓ ସର୍ବତ୍ର ଶାରଳା-ଦେବୀଙ୍କୁ ରକ୍ଷାକବଚ ରୂପେ ବ୍ୟବହାର କରିଛନ୍ତି। ସମସ୍ତ ପ୍ରଚ୍ଛନ୍ନତା ଭେଦ କରି ଏ ସମସ୍ତ ପାଇଁ ଯଦି କେହି ତାଙ୍କୁ ସମାଲୋଚନା କରୁଥିଲେ ବା ଦାୟୀ କରୁଥିଲେ, ସେ ହୁଏତ କହୁଥିଲେ ଯେ ଏସବୁ ସେ ଶାରଳାଦେବୀଙ୍କ ଆଜ୍ଞାରେ ହିଁ ଲେଖିଛନ୍ତି।

କବି ପ୍ରଥମ ଯୌବନରେ ସୈନ୍ୟ ବିଭାଗରେ କାର୍ଯ୍ୟ କରିଥିବାର କେତେକ ପ୍ରମାଣ ତାଙ୍କ ଗ୍ରନ୍ଥରୁ ମିଳେ। ଆଗରୁ କୁହାଯାଇଛି ଯେ ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ଅମଳରେ ସୈନ୍ୟବିଭାଗରେ ଯୋଗ ଦେବା ଓଡ଼ିଶାର ସମସ୍ତ ଶ୍ରେଣୀ ବା ଜାତି ପକ୍ଷରେ ବାଧ୍ୟତାମୂଳକ ଥିଲା। ଏଥିରୁ ବ୍ରାହ୍ମଣମାନେ କେତେକ ପରିମାଣରେ ଅବ୍ୟାହତି ପାଇଥିଲେ ବୋଲି ମନେ ହୁଏ। ତଥାପି ତାମ୍ରଶିଳା ଲେଖାଦିରୁ ଅଦ୍ୟାପି ଯାହା ଜଣାଯାଇଛି, ସେଥିରୁ ସୂଚିତ ହୁଏ ଯେ ବ୍ରାହ୍ମଣମାନେ ମଧ୍ୟ ମହାପାତ୍ର, ସାମନ୍ତରାୟ, ସେନାପତି ଇତ୍ୟାଦି ଉପାଧି ଧାରଣ କରି ଉଚ୍ଚ କର୍ମଚାରୀ ରୂପେ ସୈନ୍ୟବିଭାଗରେ ଯୋଗ ଦେଉଥିଲେ। କୃଷକମାନେ ଶାନ୍ତି ସମୟରେ କୃଷିକାର୍ଯ୍ୟରେ ରତ ରହୁଥିଲେ, ମାତ୍ର ଯୁଦ୍ଧ ସମୟରେ ବାଧ୍ୟତାମୂଳକ ଭାବରେ ସୈନ୍ୟବିଭାଗରେ ଯୋଗ ଦେଉଥିଲେ। ଏହି ହେତୁରୁ ଆଜିକାଲି ଓଡ଼ିଶାର କୃଷକଶ୍ରେଣୀୟ ଜାତିମାନଙ୍କଠାରେ ସର୍ବାଧିକ ସାମରିକ ପଦବୀ ଦେଖାଯାଏ। ସାରଳାଦାସଙ୍କ ସମୟରେ ସାମରିକ ଶକ୍ତି ଜାତିର ସମାଜର ସମସ୍ତ ସ୍ତରରେ ପ୍ରବେଶ କରିଥିଲା ଓ ଏହି ସାମରିକ ଶକ୍ତିର ଚାପ କପରି ତାଙ୍କ

ଗ୍ରନ୍ଥମାନଙ୍କରେ ପ୍ରତିଫଳିତ ହୋଇଛି, ଏ ସମସ୍ତ ବିଷୟ ଏଠାରେ ଆଲୋଚନା କରିବା ସମ୍ଭବପର ନୁହେଁ । ଏହା ଏକ ସ୍ୱତନ୍ତ୍ର ଆଲୋଚ୍ୟ ବିଷୟ । କବି କିନ୍ତୁ କିପରି ଏହି ସାମରିକ ଶିଳ୍ପ ସହିତ ପରିଚିତ ଥିଲେ, ଏହାହିଁ କେବଳ ଏଠାରେ ଆଲୋଚ୍ୟ ବିଷୟ ।

ପୂର୍ବ ପରିଚ୍ଛେଦମାନଙ୍କରେ ଆଲୋଚିତ ସାରଳା ମହାଭାରତରେ ଥିବା ଦକ୍ଷିଣାଞ୍ଚଳର ଭୌଗୋଳିକ ବିବରଣୀମାନଙ୍କରୁ ସ୍ପଷ୍ଟଭାବରେ ପ୍ରତୀତ ହୁଏ ଯେ ଆନ୍ଧ୍ର ଅଞ୍ଚଳର କୃଷ୍ଣା ଗୋଦାବରୀ ଅବବାହିକାର ଓ ନାଲଗୋଣ୍ଡା ଜିଲ୍ଲାର ପ୍ରାୟ ସମସ୍ତ ବିଖ୍ୟାତ ସ୍ଥାନ ସାରଳାଦାସଙ୍କୁ ଖୁବ୍ ଭଲରୂପେ ଜଣାଥିଲା । କବି ଏ ଅଞ୍ଚଳର କୃଷ୍ଣା ଓ ଗୋଦାବରୀର ନାମ ବାରମ୍ବାର ଉଲ୍ଲେଖ କରିଛନ୍ତି ଏବଂ ବେଳେବେଳେ ସିଲେରୁ ଓ ଶବରୀ ପରି କ୍ଷୁଦ୍ରନଦୀର ନାମମାନ ମଧ୍ୟ ରୂପାନ୍ତରିତ ଭାବରେ ପ୍ରକାଶ କରିଛନ୍ତି । ସେ ଏ ଅଞ୍ଚଳରେ ଅବସ୍ଥିତ ତତ୍କାଳୀନ ପ୍ରଧାନ ପ୍ରଧାନ ଦୁର୍ଗମାନ, ଯଥା ରାଜମହେନ୍ଦ୍ରୀ ( ମାହେନ୍ଦ୍ର ନଗର, କୋଣ୍ଡବିଡ଼ୁ ( କୁଣ୍ଡାବେଦୀ ), ଆଡ଼୍ଙ୍କି ଆଡ଼ଙ୍କିକା ଓ ଦେବରକୋଣ୍ଡା ( ଅମରଚୂଡ଼ ପର୍ବତ )ର ଉଲ୍ଲେଖ କରିଛନ୍ତି ଓ ଦେବରକୋଣ୍ଡା ଯୁଦ୍ଧର ଦୀର୍ଘ ବିବରଣୀ ଦେଇଛନ୍ତି । କବି ବର୍ଣ୍ଣିତ ଦେବରକୋଣ୍ଡା ଯୁଦ୍ଧ ଆଗରୁ ବିଶଦ୍ଭାବରେ ଆଲୋଚିତ ହୋଇଥିବାରୁ ଏଠାରେ ପୁଣି ଆଲୋଚନା କରିବା ଅନାବଶ୍ୟକ । ଏ ଅଞ୍ଚଳର ତତ୍କାଳୀନ ପ୍ରଧାନ ସ୍ଥାନମାନ, ଯଥା, ଶ୍ରୀଶୈଳମ୍ ( ମତଙ୍ଗ ବା ଶ୍ରୀଗିରି ), ପାତାଳଗଙ୍ଗା ( ଗୋପନଭାଗୀ ), ବିଜୟବାଡ଼ା (ବିଜୟା), ମଙ୍ଗଳଗିରି (ମଙ୍ଗଳ) ଭଦ୍ରାଚଲମ୍ (ଭଦ୍ରା) ଇତ୍ୟାଦିକୁ ଲେଖିବାପାଇଁ ମଧ୍ୟ ସେ ଭୁଲିନାହାନ୍ତି । ସର୍ବୋପରି ଏ ଅଞ୍ଚଳର ପ୍ରଧାନ ତୀର୍ଥ ଶ୍ରୀଶୈଳମ୍ ବା ଶ୍ରୀ ଗିରି ଓ ତତ୍ସନ୍ନିହିତ ପାତାଳଗଙ୍ଗାର ଏକାଧିକଥର ସେ ଯେଉଁ ବିବରଣୀ ଦେଇଛନ୍ତି, ତାହା ପ୍ରତ୍ୟକ୍ଷ-ଦର୍ଶୀର ବିବରଣୀ ବୋଲି ମନେହୁଏ । କବି ଏ ତୀର୍ଥମାନଙ୍କ ଉତ୍ପତ୍ତି ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ଶୁଣିଥିଲେ, ତାହା ସଭାପର୍ବ ଓ ବନପର୍ବରେ ଲିପିବଦ୍ଧ କରିଯାଇଛନ୍ତି—

ଶ୍ରୀଗିରି ପର୍ବତରେ ସେ ରହିଲି ସୁଷେଣ
ଶ୍ରୀରାମ ବିଜେ କରିଲେ ବିଜୟ ନରେଶ ।
ସ୍ୱାମୀ ହେ କଳପନଦୀ ବୋଲି ନଦୀଟିଏ
ଏଥେ ସ୍ନାନ କଲେ କଲ୍ପେ ନ ତୁଟଇ କାୟେ ।
ସୀତାଦେବୀ ଶୁଣିଲେ ଯେ କଳ୍ପ ମହାତମ
ନଦୀ ସ୍ନାନେ ବାହାରିଲେ ସୀତୟା ଶ୍ରୀରାମ ।
ବ୍ରହ୍ମାଦେଖିଣ ବୋଇଲେ ନଦୀକି ହକାରି
ରାମ ସୀତା ଆସୁଛନ୍ତି ଏବେ ସ୍ନାନ କରି ।"

ତୋ ତହିଁ ସ୍ନାନ ସେ କଲେ ହେବେ କଲ୍ମଷୀ
ଭଗୀରଥରଣେ କେମନ୍ତେ ହୋଇବ ପୃଥିବୀ ।
ଲକ୍ଷ୍ମୀ ନାରାୟଣ ଜନ୍ମ ହୋନ୍ତୁ ପୁନଃ ପୁନଃ
ତେବେ ଯାଇ ଦାନବଙ୍କ ହୁଅଇ ନିଧନ ।
ଏମନ୍ତ ଅନୁଜ୍ଞା ଯହୁଁ ଦେଲେ ଧାତା ସ୍ୱାମୀ
ଏ କଲ୍ମନଦୀ ହୋଇଲେ ରସାତଳଗାମୀ ।
ଶ୍ରୀରାମଜଗମ କହେ ବୀର ନକୁଳକୁ
ତେଣୁ କରି ଗଙ୍ଗା ହ୍ରାଦେ ଗଲେ ପାତାଳକୁ ।
ଯାଇ ସୁତଳରେ ଗୋପ୍ୟ ହୋଇଲେ ଜାହ୍ନବୀ
ତହୁଁ ରାଗେ ଶାପ ଦେଲେ ମା' ଜାନକୀଦେବୀ ।
ମୋତେ ଦେଖି ଭୂଦ୍ଧ ଯେବେ ପଶିଲୁ ପାତାଳେ
ଗୋପନଭାଗୀ ତୁ ହୋଇଥାଅ ସର୍ବକାଳେ । ସଭା, ପୃ. ୧୯୦
ସୁଷେଣ ରହିଲେ ଯାଇ ଶ୍ରୀଗିରି ପର୍ବତେ
ମଲ୍ଲିକା ଅର୍ଜୁନ ନାମ ଦେଲେ ସେ ମୁକତେ ।
ତାରକମନ୍ତ୍ର ଜପିଣ ସାଧିଲେ ଯେ ବ୍ରହ୍ମ
କୃଷ୍ଣାବେଣୀ ନଦୀକୂଳେ ଶଯ୍ୟା କଲେ ରାମ ।
ଶୁଣ ତୁମ୍ଭେ ଯୁଧିଷ୍ଠିର ଏସନ ଉପାମ
ଏହିଠାରେ ଥିବା ହରନାଥ ନାମ ଗ୍ରାମ ।
× × ×
ସେଠାରୁ ବିଜୟ କଲେ ଋଷିଙ୍କର ମେଳେ
ଶ୍ରୀଗିରି ପର୍ବତେ ଯାଇ ପ୍ରବେଶିଲେ ହେଳେ ।
ଦେଖିଲେ ପାତାଳଗଙ୍ଗା ତହିଁ କରି ସ୍ନାନ
ଦେଖିଲେ ଗିରି ଶିଖରେ ମଲ୍ଲିକା ଅର୍ଜୁନ ।
ଅନେକ ଭକତସହ ବଳେ ଦେବସ୍ୱାମୀ
ଶବଦ ଶୁଭିଲା ତହିଁ ହୋଇ ଶୂନ୍ୟଗାମୀ ।
ଯୁଧିଷ୍ଠିର ଆନନ୍ଦକ ସାରି ସୀତାକୁଣ୍ଡେ
ଶ୍ରୀଗିରି ପର୍ବତେ ଭେଟ ହେଲେ ମାରକଣ୍ଡେ । ବନ, ପୃ-୧୩୦

ଏହାପରେ ବର୍ଣ୍ଣିତ ଅଛି ଯେ ଶ୍ରୀରାମ ସୁଷେଣଙ୍କୁ ଶ୍ରୀଗିରି ପର୍ବତରେ ରାଜା କରିବାକୁ ଇଚ୍ଛା କରିଥିଲେ, ମାତ୍ର ରାଜା ହେବା ପୂର୍ବରୁ ସୁଷେଣର ପ୍ରାଣବାୟୁ ଉଡ଼ି ଯାଇଥିଲା । ହନୁମନ୍ତ ସୁଷେଣର ମୃତଦେହ ଉପରେ ଗୁଡ଼ାଏ ମଲ୍ଲିକାପୁଷ୍ପ ଓ ଗୋଟିଏ

କୃଷ୍ଣାଜିନ ଘୋଡ଼ାଇ ଦେଲେ । ସେହି ସ୍ଥାନରୁ ଯେଉଁ ଶିବଲିଙ୍ଗ ବାହାରିଲେ, ତାଙ୍କ ନାମ ହେଲା ମଲ୍ଲିକାର୍ଜ୍ଜୁନ । ମଲ୍ଲିକା ଓ ଅଜିନର ସଂଯୋଗରେ ମଲ୍ଲିକାର୍ଜ୍ଜୁନ ନାମଟି ବ୍ୟାକରଣସମ୍ମତ ହେଉନାହିଁ ବୋଲି ପଣ୍ଡିତ ଗୋପୀନାଥ ନନ୍ଦ ଦର୍ଶାଇଛନ୍ତି (ଶ୍ରୀ ଭାରତ ଦର୍ପଣ, ସାଃ ଏଃ, ପୃ-୨୪୭) । ଏହା ସତ୍ୟ, କାରଣ ମଲ୍ଲିକା ପରି ଅର୍ଜ୍ଜୁନ ଅର୍ଥାତ୍ ଧବଳ, ଏହା ହିଁ ନାମଟିର ପ୍ରକୃତ ଅର୍ଥ । ମାତ୍ର ଏଠାରେ ବିଗୃର କରିବା ବିଷୟ ଏହି ଯେ ସାରଳାଦାସ ନିଜେ ନାମଟି ଏପରି ବ୍ୟାଖ୍ୟା କରିନାହାନ୍ତି; ସେ ଏ ନାମଟିର ଯେପରି ବ୍ୟାଖ୍ୟା ସ୍ଥାନୀୟ ପୂଜକମାନଙ୍କ ଠାରୁ ଶୁଣିଥିଲେ, ତାହା ହିଁ ଲେଖିଯାଇଛନ୍ତି । ସ୍ୱମାଯ୍ୟଣ ମହାଭାରତର ସାହାଯ୍ୟରେ ଏବଂ ନାନା ସଙ୍ଗତ ଓ ଅସଙ୍ଗତ ବ୍ୟାଖ୍ୟା ମାଧ୍ୟମରେ ପୂଜକମାନେ ଆଜିକାଲି ଯେପରି ତୀର୍ଥମାନଙ୍କ "ଇତିହାସ" ବର୍ଣ୍ଣନା କରୁଛନ୍ତି, ସାରଳାଦାସଙ୍କ ସମୟରେ ମଧ୍ୟ ଠିକ୍ ସେହିପରି କରୁଥିଲେ । କବି ଯାହା ଶୁଣୁଥିଲେ, ତାହା ହିଁ ଲେଖିଯାଇଛନ୍ତି । କବିଙ୍କ ସମୟରେ ଗବେଷଣା ନ ଥିଲା କିମ୍ବା ସେ ନିଜେ ଗବେଷକ ନ ଥିଲେ । ଏହି ଦୃଷ୍ଟିରୁ ହିଁ ବିଷୟଟିକୁ ବିଗୃର କରିବାକୁ ହେବ ।

କବି ଯେଉଁ ଉଲ୍ଲିଖିତ ତୀର୍ଥମାନଙ୍କ କଥା ଲେଖିଛନ୍ତି, ସେଗୁଡ଼ିକ ଅଦ୍ୟାପି ବିଦ୍ୟମାନ ଅଛନ୍ତି । ଶ୍ରୀ ଶୈଳମ୍, ଏହାର ଶିଖରରେ ଅବସ୍ଥିତ ମଲ୍ଲିକାର୍ଜ୍ଜୁନ ମନ୍ଦିର, ଏହା ନିକଟରେ ଥିବା ପ୍ରବାହିତା ପାତାଳଗଙ୍ଗା ନାମଧେୟା କୃଷ୍ଣାନଦୀର ଅଂଶବିଶେଷ ଓ ଏଥିରେ ଥିବା ସୀତାକୁଣ୍ଡ ଅଦ୍ୟାପି ବିଦ୍ୟମାନ ଅଛନ୍ତି । କେବଳ କବିବର୍ଣ୍ଣିତ ହରିନାଥ ଗ୍ରାମର ଅନୁସନ୍ଧାନ କରାଯାଇ ପାରିନାହିଁ । କବି ଦେବରକୋଣ୍ଡା ଯୁଦ୍ଧର ପ୍ରତ୍ୟେକଟି ଘଟଣା ଯେପରି ସୁନିପୁଣ ଭାବରେ ବର୍ଣ୍ଣନା କରିଛନ୍ତି, ଏଥିରେ ଯୋଗ ଦେଇଥିବା ପ୍ରଧାନ ଯୋଦ୍ଧାମାନଙ୍କ ନାମ ଯେପରି ବର୍ଣ୍ଣନା କରିଛନ୍ତି ଓ ଦେବର-କୋଣ୍ଡାରୁ ଉଦୟଗିରି ପର୍ଯ୍ୟନ୍ତ ଗଜପତି ସେନାର ଯେପରି ଗତିମାର୍ଗ ବର୍ଣ୍ଣନା କରିଛନ୍ତି, ଏ ସମସ୍ତରୁ ନିର୍ଦ୍ଦିଷ୍ଟ ଭାବରେ ସୂଚିତ ହୁଏ ଯେ ସେ ଗଜପତି ସେନାର ଗହଣରେ ଏ ସମସ୍ତ ସ୍ଥାନକୁ ଯାଇ ଯେଉଁ ପ୍ରତ୍ୟକ୍ଷ ଭୌଗଳିକ ଓ ଐତିହାସିକ ଜ୍ଞାନ ଅର୍ଜ୍ଜନ କରିଥିଲେ, ତାହାହିଁ ତାଙ୍କ ମହାଭାରତରେ ଲେଖିଯାଇଛନ୍ତି । କହିବା ବାହୁଲ୍ୟ ଯେ ଏ ସମସ୍ତ ବିବରଣୀ ସଂସ୍କୃତ ମହାଭାରତରେ ନାହିଁ । ଏହି ହେତୁରୁ ଆମ୍ଭେମାନେ ଦୃଢ଼ଭାବରେ ବିଶ୍ୱାସ କରୁ ଯେ କପିଳେଶ୍ୱରଙ୍କ ରାଜତ୍ୱକାଳରେ ସଂଘଟିତ ଗୋଣ୍ଡବିଡ଼ୁ, ଦେବରକୋଣ୍ଡା ଓ ଉଦୟଗିରି ଯୁଦ୍ଧର ସେ ପ୍ରତ୍ୟକ୍ଷଦର୍ଶୀ ଥିଲେ । କପିଳେଶ୍ୱରଙ୍କ ରାଜତ୍ୱକାଳରେ ୧୪୪୮ ଖ୍ରୀଷ୍ଟାବ୍ଦ ବେଳକୁ ରାଜମହେନ୍ଦ୍ରୀ ଓ କୋଣ୍ଡବିଡ଼ୁ ସମେତ କୃଷ୍ଣା-ଗୋଦାବରୀ ଅବବାହିକା ଅଧିକୃତ ହୋଇଥିଲା, ୧୪୫୮ ଖ୍ରୀଷ୍ଟାବ୍ଦରେ ଦେବରକୋଣ୍ଡା ଯୁଦ୍ଧ ସଂଘଟିତ ହୋଇଥିଲା ଓ ୧୪୭୦ ଖ୍ରୀଷ୍ଟାବ୍ଦ ବେଳକୁ

ଉଦୟଗିରି ଦୁର୍ଗ ଅଧିକୃତ ହୋଇସାରିଥିଲା (Gajapati Kings of Orissa, pp. 27-33) । କବି ୧୪୪୮ ଖ୍ରୀଷ୍ଟାବ୍ଦ ବେଳକୁ ସୈନ୍ୟବିଭାଗରେ ଥିଲେ ଓ ସେତେବେଳକୁ ତାଙ୍କ ବୟସ କୋଡ଼ିଏ ବର୍ଷ ହୋଇଥିଲା ବୋଲି ଧରାଗଲେ, ତାଙ୍କ ଜନ୍ମକାଳ ୧୪୨୮ ଖ୍ରୀଷ୍ଟାବ୍ଦରେ ପଡ଼ୁଛି । ବିଜୟନଗର ସମ୍ରାଟ ବିରୂପାକ୍ଷଙ୍କ ରାଜତ୍ୱର ପ୍ରାରମ୍ଭ ୧୪୬୫ ଖ୍ରୀଷ୍ଟାବ୍ଦ ଠାରୁ ଗଣନା କରାଯାଇ ଆଗରୁ ପ୍ରଦର୍ଶିତ ହୋଇଛି ଯେ ସେ ପ୍ରାୟ ୧୪୨୫ ଖ୍ରୀଷ୍ଟାବ୍ଦ ବେଳକୁ ଜନ୍ମଗ୍ରହଣ କରିଥିଲେ । ସାରଳାଦାସଙ୍କ ଜନ୍ମତାରିଖ ନିର୍ଦ୍ଦିଷ୍ଟ ଭାବରେ ସ୍ଥିର କରାଯାଇ ପାରିବ ନାହିଁ, କିନ୍ତୁ ସେ ୧୪୨୦ରୁ ୧୪୩୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ ବୋଲି ଧରାଗଲେ, ଭ୍ରାନ୍ତିର ଆଶଙ୍କା ବେଶୀ ରହିବ ନାହିଁ ।

କବି ଯେ ଯୁଦ୍ଧ ବିଶାରଦ ଥିଲେ ଓ ପ୍ରକୃତ ଯୁଦ୍ଧର ପ୍ରତ୍ୟକ୍ଷଦର୍ଶୀ ଥିଲେ, ଏହାର ଭୂରିଭୂରି ପ୍ରମାଣ ତାଙ୍କ ଗ୍ରନ୍ଥମାନଙ୍କରେ ଅଛି । ମାଲଯୁଦ୍ଧରେ ଶତ୍ରୁକୁ କିପରି ତଳେ ପକାଇ ତା'ଉପରେ ମାଡ଼ିବସିବ ଓ 'କିରାଟ' 'କିରାଟ' କହିଲେ କିପରି ତାକୁ ଛାଡ଼ିଦେବ, ଏସବୁ କଥା ସେ ବିଶେଷ ଭାବରେ ଲେଖି ଯାଇଛନ୍ତି । ଯୁଦ୍ଧରେ ବ୍ୟବହୃତ ବିଭିନ୍ନ ପ୍ରକାର ବାଦ୍ୟର ନାମ, ବିଭିନ୍ନପ୍ରକାର ଅସ୍ତ୍ରଶସ୍ତ୍ରର ନାମ, ବିଭିନ୍ନ ପ୍ରକାର ଯୁଦ୍ଧ ଅଶ୍ୱର ନାମ, ବିଭିନ୍ନ ପ୍ରକାର ଯୋଦ୍ଧାର ନାମ ଓ ବିଭିନ୍ନ ସାମରିକ ବିଭାଗର ନାମ ତାଙ୍କ ଗ୍ରନ୍ଥରେ ବିକ୍ଷିପ୍ତ ଆକାରରେ ରହିଛି । ଯେତେବେଳେ ସୈନ୍ୟମାନେ ଶତ୍ରୁରାଜ୍ୟକୁ ବା ଶତ୍ରୁଗଡ଼କୁ 'ଧାଡ଼ି' ଦେଉଥିଲେ, ସେତେବେଳେ ସେମାନଙ୍କର ଅନ୍ତତଃ ଚାରୋଟି ବିଭାଗ ରହୁଥିଲା, ଯଥା—ହନ୍ତକାରୁଦଳ (Pioneer force), ଆଗୁଆଣି ଥାଟ (Advance units)' ପ୍ରଧାନ ଚଳ (Main army) ଏବଂ ପଛୁଆଣି ଥାଟ (Rear guards) । ପ୍ରଧାନ ପ୍ରଧାନ ସାମରିକ କର୍ମଚାରୀମାନଙ୍କ ଅଙ୍ଗବଳ (Body guards) ରହୁଥିଲେ । କୌଣସି ଦୁର୍ଗକୁ ଜୟ କରିବା ପରେ ସେଠାରୁ ଛାଡ଼ିଯାଇଥିବା ସୈନ୍ୟ ସମାବେଶର ନାମ ଥିଲା ପାରିଦଣ୍ଡ (Detachment) । ପ୍ରଧାନ ପ୍ରଧାନ ଯୋଦ୍ଧାମାନେ ଯେଉଁ ପୋଷାକ ଓ ଅଳଙ୍କାରମାନ ପିନ୍ଧୁଥିଲେ, କବି ତାହାର ପୂର୍ଣ୍ଣ ବିବରଣୀ ଦେଇଛନ୍ତି । ଯୁଦ୍ଧପାଇଁ ବାହାରିଲାବେଳେ ନାରୀମାନେ କିପରି ହୁଳହୁଳି ଦେଉଥିଲେ, ସୈନ୍ୟମାନେ କିପରି କଳକଳା ରାବ ଦେଇ ଅଥବା ଗାଲଭୁଷି ମାରି 'ମଦରା ଖେଳେ ଖେମଟା ନାଚ ଖଣ୍ଡି' ନାଚ ନାଚ ଯାଉଥିଲେ, ଏବଂ ବିବିଧ ବାଦ୍ୟରେ, ଅଶ୍ୱମାନଙ୍କର ହ୍ରେସାରେ, ହସ୍ତୀମାନଙ୍କ ଘଣ୍ଟି ଶବ୍ଦରେ, ଅସ୍ତ୍ରଶସ୍ତ୍ରର ଝଣତ୍କାରରେ ଓ ଯୋଦ୍ଧାମାନଙ୍କର ମୁଖ ରାବରେ ପ୍ରକୃତ ଯୁଦ୍ଧବେଳେ କିପରି 'ରଣଧାନ୍ଦୋଳ' ସୃଷ୍ଟି ହେଉଥିଲା, ତାହାର ପୂର୍ଣ୍ଣ ଚିତ୍ରଟିଏ ସାରଳା-ସାହିତ୍ୟରୁ ମିଳେ । ଯୁଦ୍ଧ ବର୍ଣ୍ଣନା କଲାବେଳେ ସାରଳାଦାସ ଏପରି

ତନ୍ମୟ ହୋଇ ପଢ଼ୁଥିଲେ ଯେ, ଏହି ବର୍ଣ୍ଣନାରେ କେତେପୃଷ୍ଠା ଗଲଣି, ତାହା ହୁଏତ ସେ ଜାଣିପାରୁ ନ ଥିଲେ । ତାଙ୍କର ଯେଉଁ ଯୁଦ୍ଧବର୍ଣ୍ଣନା ପଢ଼ିବାପାଇଁ ଆମ୍ଭମାନଙ୍କ ସମୟ ବା ଧୈର୍ଯ୍ୟ ନାହିଁ, ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ସେ ସବୁ ସେ ଲମ୍ବା ଲେଖନରେ ଲେଖି ଯାଇଛନ୍ତି । ତାଙ୍କ ଯୁଦ୍ଧ ବର୍ଣ୍ଣନାର ଭାଷା ଏପରି ଉଚ୍ଚକୋଟିକୁ ଉଠିଛି ଯେ ତାହା ଶରୀରରେ ରୋମାଞ୍ଚ ସୃଷ୍ଟି କରେ ।

ସାରଳା ସାହିତ୍ୟରୁ ଯେଉଁ ସମରଚିତ୍ର ମିଳେ, ତାହା କେତୋଟି ଧାଡ଼ି ବା ପୃଷ୍ଠାରେ ଲେଖାଯାଇ ପାରିବ ନାହିଁ । କବି ତାଙ୍କ ଗ୍ରନ୍ଥମାନଙ୍କରେ ତାଙ୍କ ସମୟର ପୂର୍ଣ୍ଣ ସାମରିକ ଚିତ୍ରଟିଏ ରଖି ଯାଇଛନ୍ତି, ମାତ୍ର ଏପର୍ଯ୍ୟନ୍ତ ତାହାର ସମ୍ୟକ ଆଲୋଚନା କରାଯାଇ ପାରିନାହିଁ । ଏଠାରେ ମଧ୍ୟ ତାହାର ସମ୍ୟକ୍ ଆଲୋଚନା କରିବା ସମ୍ଭବପର ନୁହେଁ, କିନ୍ତୁ ଏ ସମରଚିତ୍ରରୁ ନିର୍ଦ୍ଦିଷ୍ଟ ଧାରଣା ମିଳେ ଯେ କବି ନିଜେ ଜଣେ ସୈନିକ ଓ ସମର ବିଶାରଦ ଥିଲେ । ବସ୍ତୁତଃ ତାଙ୍କ ସମୟର ସଂଗ୍ରାମ ହିଁ ତାଙ୍କ ପ୍ରେରଣାର ମୂଳଉତ୍ସ ହୋଇ ତାଙ୍କଠାରେ ନିହିତ କବିତ୍ୱମୁକୁଳକୁ ପ୍ରସ୍ଫୁଟିତ କରିଥିଲା । କବି ହୃଦୟରେ ନିହିତ ନୈସର୍ଗିକ ପ୍ରତିଭା କୌଣସି ନିର୍ଦ୍ଦିଷ୍ଟ ପ୍ରେରଣାରେ ହିଁ ପରିସ୍ଫୁଟ ହୋଇଥାଏ । ଏହି ହେତୁରୁ ବିଭିନ୍ନ କବିଙ୍କ କବିତାବଳୀ ଆଲୋଚନା କଲେ ଦେଖାଯାଏ ଯେ ସେଥିମଧ୍ୟରୁ କେତେକରେ ପ୍ରେମ, କେତେକରେ ଧର୍ମ, କେତେକରେ କାରୁଣ୍ୟ, କେତେକରେ ବାତ୍ସଲ୍ୟ ଓ କେତେକରେ ବୀରରସ ପ୍ରାଧାନ୍ୟ ଲାଭ କରିଛି । ଏଥିମଧ୍ୟରୁ ଧର୍ମ, ପ୍ରେମ ଓ ସଂଗ୍ରାମ ବେଶୀଭାବରେ କବିତ୍ୱ-ବିକାଶର ମୂଳଉତ୍ସ ରୂପେ ଯୁଗେ ଯୁଗେ ରହିଆସିଛି । ସାରଳାଦାସଙ୍କ କବିତାରେ ଧର୍ମ ଓ ବୀରରସ ମୁଖ୍ୟସ୍ଥାନ ଅଧିକାର କରିଛି । ତାଙ୍କ କବିତାବଳୀରେ ପ୍ରେମବର୍ଣ୍ଣନାର ଅଭାବ ନଥିଲେ ମଧ୍ୟ ତାହା ସର୍ବତ୍ର ଗତାନୁଗତିକ ଓ ବାସ୍ତବତାଦ୍ୟୋତକ ହୋଇଛି । ତାଙ୍କ ପ୍ରେମବର୍ଣ୍ଣନାରୁ ଗୋଟିଏ ଉଦାହରଣ ଦେଲେ ବିଷୟଟି ସ୍ପଷ୍ଟ ହେବ ।

ତୁ ମୋତେ ରମଣ ଦେବୁ ଭୋଜରକୁମାରୀ
ମୂର୍ତ୍ତିମନ୍ତ ହେଲ ରତିମନ୍ତକୁ ଯେ ଡରି ।
ସ୍ୱରୂପ ଦେଖିଣ ଦେବୀ ସଲଜ୍ଜିତ ମତି
ପବନ ଦେବତା କୋଳେ ଧଇଲେ ତଡ଼ିତି ।
ଯେସନେ ପ୍ରଭୁଭାରିଯା ବିବସନଶାୟୀ
ସ୍ୱାମୀକି ଗୁଡ଼ାଇଲ କେହି ସନ୍ନିଧିରେ ନାହିଁ ।
ମରୁତ ଦେବତା ତୁଲେ ଶୃଙ୍ଗାରକୁ ଇଚ୍ଛା
ବଢ଼ିଲ ଉଭୟଙ୍କର ମନୋହର ବାଞ୍ଛା ।

ପଞ୍ଚପବନ ଯେତେକ ପଚଶ ପ୍ରକୃତି
ବଳବନ୍ତ ଦେବ ସଙ୍ଗେ ଅନାଦି ଶକତି ।
ଚନ୍ଦ୍ର ଷୋଳକଳା ଯେନ ହୋଇଣ ପ୍ରସନ୍ନ
ଗୁଡ଼ଳକ ମହାବାର୍ଯ୍ୟ ଦୁର୍ଦ୍ଦଣ୍ଡ ପବନ । ୮

ଆଦ୍ୟ, ଭୀମଜନ୍ମ, ପୃ-୭୪

ସାରଳାଦାସଙ୍କ ପ୍ରେମବର୍ଣ୍ଣନା ପ୍ରାୟ ସମସ୍ତ ସ୍ଥାନରେ ଏହିପରି ସିଧାସଳଖ ଆକାର ଧାରଣ କରିଛି ଓ ବହୁସ୍ଥଳରେ ପ୍ରେମଲୀଳା ପରେ ପରେ 'ସଇନ୍ଦ୍ର' ପୁତ୍ରଟିଏ ଜାତ ହୋଇପଡ଼ିଛି । ପୁତ୍ରଲାଭ ଯେ ପ୍ରେମରସର ମୂଳକଥା, ସାରଳାଦାସ ଏକଥା ଭୁଲିନାହାନ୍ତି; ଏଣୁ ପ୍ରତ୍ୟେକ ପ୍ରେମଲୀଳା ପରେ ପୁତ୍ରଟିଏ ଜନ୍ମାଇଛନ୍ତି । ପ୍ରେମ ଯେ ନିଷ୍ଫଳ ନୁହେ, ଏ ବିଷୟରେ ତାଙ୍କର ଦୃଢ଼ ମତ ଥିବାରୁ ସେ ଆଦ୍ୟପର୍ବରେ ଥିବା ଖଣ୍ଡକାର ଜନ୍ମବୃତ୍ତାନ୍ତରେ ବୃଦ୍ଧା ଦୂତୀଗର୍ଭରୁ ମଧ୍ୟ ପୁତ୍ରଟିଏ ଜାତ କରାଇଛନ୍ତି । ଗୃଷ ପରେ ଫସଲ ନ ପାଇବା ଯେପରି ଦୁର୍ବିସହ, ପ୍ରେମ ପରେ ପୁତ୍ର ନ ପାଇବା ସେହିପରି ଦୁର୍ବିସହ ବୋଲି ହୁଏତ ସେ ମନେ କରୁଥିଲେ । କବିଙ୍କ ପ୍ରେମବର୍ଣ୍ଣନାରେ ହାହୁତାଶ, ରୁଷାଫଲ, ମାନ ଅଭିମାନର କୌଣସି ଚିତ୍ର ନାହିଁ; ଏହା ସର୍ବତ୍ର ପ୍ରୟୋଜନବୋଧକ (Utilitarian) ହୋଇଛି । କେହି କେହି କହିପାରନ୍ତି ଯେ ସାରଳାଦାସ ତାଙ୍କ ମହାଭାରତରେ ଦ୍ୱାପରଯୁଗର ଦେବାଦେବୀ ଓ ମାନବମାନବୀର ପ୍ରେମଲୀଳା ବର୍ଣ୍ଣନା କରିଥିବାରୁ ତାହା ଏପରି ସିଧାସଳଖ ଆକାର ଧାରଣ କରିଛି । ମାତ୍ର ଏପରି ଯୁକ୍ତିସଙ୍ଗତ ଓ ସତ୍ୟମୂଳକ ହେବନାହିଁ । ଦ୍ୱାପର ଯୁଗର ଦେବଦେବୀ କୃଷ୍ଣ ରାଧାଙ୍କୁ ପ୍ରତୀକ କରି ସାରଳା ଦାସଙ୍କ ପରବର୍ତ୍ତୀ କବିମାନେ ଯେଉଁ ପ୍ରେମଲୀଳାର ଚିତ୍ର ସୃଷ୍ଟି କରିଛନ୍ତି, ତାହା ସର୍ବଜନବିଦିତ । ଏହି ଚିତ୍ରରେ ଦୀର୍ଘ ବିରହ ଓ ମାନଅଭିମାନ ପରେ ନାୟକନାୟିକାର ମିଳନ ଘଟିଛି, ମାତ୍ର ତା ପୂର୍ବରୁ କୁଞ୍ଜସଞ୍ଚାର ଶ୍ରମରେ ଦୂତୀମାନଙ୍କ ଚରଣତଳ ଫାଟି ପଡ଼ିଛି ଓ ନାୟକ ନାୟିକାମାନେ ଦଶମ ଦଶାରେ ଏପରି ପଡ଼ିଯାଇଛନ୍ତି ଯେ ସେମାନଙ୍କୁ ସଖା ବା ସଖୀ ନବପଲ୍ଲବରେ ବାନ୍ଧିଛନ୍ତି ଓ ସେମାନଙ୍କ ପ୍ରାଣବାୟୁ ଅଛି କି ନା, ତାହା ନାକ ପାଖରେ ତୁଳା ଧରି ପରୀକ୍ଷା କରିଛନ୍ତି । ଏ ସମସ୍ତ ଚିତ୍ର ନିତାନ୍ତ ଅତିରଞ୍ଜିତ, ଅସଙ୍ଗତ ଓ ଅବାସ୍ତବ । ସାରଳାଦାସଙ୍କ ପ୍ରେମଲୀଳା ବର୍ଣ୍ଣନାରେ ଏପରି ଚିତ୍ର ଆଦୌ ନାହିଁ ।

ସାରଳାସାହିତ୍ୟରେ ପ୍ରେମଲୀଳାର ବର୍ଣ୍ଣନା ଥିଲେ ହେଁ ଧର୍ମ ଓ ସଂଗ୍ରାମ ହିଁ ଏ ସାହିତ୍ୟର ମୂଳଭିତ୍ତି ହୋଇଛି । କବିଙ୍କ ସମୟ ପର୍ଯ୍ୟନ୍ତ ସବୁ ଧର୍ମଗ୍ରନ୍ଥ ସଂସ୍କୃତରେ ହିଁ ଲିପିବଦ୍ଧ ଥିବାରୁ ତାହା ଜନସାଧାରଣଙ୍କ ସହଜଲଭ୍ୟ ବା ସହଜବୋଧ ନ ଥିଲା । ଅନନ୍ୟସାଧାରଣ ପ୍ରତିଭାସମ୍ପନ୍ନ ଓ ଏକାନ୍ତ ଧର୍ମପରାୟଣ ସାରଳାଦାସ ସର୍ବପ୍ରଥମେ

ଓଡ଼ିଶାରେ ଧର୍ମଗ୍ରନ୍ଥମାନ ଲେଖି ଏ ଅଭାବ ଦୂର କରିବାକୁ ଜୀବନର ବ୍ରତ କରିଥିଲେ । ତାଙ୍କର ପ୍ରେରଣାର ଅନ୍ୟତମ ଉତ୍ସ ଥିଲା କପିଳେଶ୍ବରଙ୍କ ରାଜତ୍ବର ବିପୁଳ ସମରସଜ୍ଜା, ବିପୁଳ ଜୟ ଓ ବିପୁଳ ସାମ୍ରାଜ୍ୟ । କପିଳେନ୍ଦ୍ରଙ୍କ ପୂର୍ବେ ଓଡ଼ିଶାର ପ୍ରାୟ ସମସ୍ତ ରାଜବଂଶ ଓଡ଼ିଶା ବାହାରୁ ଆସି ଓଡ଼ିଶାରେ ରାଜତ୍ବ କରିଥିଲେ, ମାତ୍ର କପିଳେନ୍ଦ୍ର ଥିଲେ ଏହି ରାଜ୍ୟର ଓ ଏହି ମାଟିର ଜଣେ ପ୍ରବଳ ପରାକ୍ରମ ସୁସନ୍ତାନ । ସେ ଯେ ଏହି ଦେଶରେ ଜନ୍ମ ଗ୍ରହଣ କରିଥିଲେ, ଏକଥା ତାଙ୍କ ମନ୍ତ୍ରୀ ଗୋପୀନାଥ ମହାପାତ୍ର ଗୋପୀନାଥପୁର ଶିଳାଲେଖରେ ସ୍ପଷ୍ଟ ଭାଷାରେ ଲେଖାଇ ଯାଇଛନ୍ତି—

ଭାସ୍ୱଦ୍‌ବଂଶାବତଂସ ନିଜଗଦଧିପତେ ନୀଳଶୈଳାଧିନାଥସ୍ୟ (ଧିପସ୍ୟ) ।
ଆଦେଶାଦୋଡ୍ରଦେଶେ ସମଜନି କପିଲାଭିଧାନୋ ନରେନ୍ଦ୍ରଃ ।।
Journal of Asiatic Society of Bengal
Vol. LXIX, 1901, P. 175

ଅର୍ଥ—ନିଜଗତର ଅଧୀଶ୍ବର ନୀଳାଦ୍ରିପତିଙ୍କ (ଜଗନ୍ନାଥଙ୍କ) ଆଦେଶରେ ସୂର୍ଯ୍ୟବଂଶର ଅବତଂସ ସ୍ୱରୂପ କପିଳ ନାମକ ରାଜା ଉଡ୍ରଦେଶରେ (ଓଡ଼ିଶାରେ) ଜନ୍ମ ଗ୍ରହଣ କରିଥିଲେ ।

ଏହି ଶିଳାଲେଖ ୧୯୦୧ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗୀୟ ମନମୋହନ ଚକ୍ରବର୍ତ୍ତୀଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲେ ହେଁ ଓ ତାହା କଟକ ଠାରୁ ୮ମାଇଲ ଦୂରବର୍ତ୍ତୀ ଗୋପୀନାଥପୁରରେ ଅବଧି ବିଦ୍ୟମାନ ଥିଲେ ମଧ୍ୟ, କେତେକ ପ୍ରାଦେଶିକଭାବାପନ୍ନ ପଣ୍ଡିତ ଟଣାଓଟରା ଯୁକ୍ତି ବଳରେ କପିଳେଶ୍ବରଙ୍କୁ ଓଡ଼ିଶା ବାହାରର ବ୍ୟକ୍ତି ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି, ମାତ୍ର ସତ୍ୟକୁ ଶତଚେଷ୍ଟାରେ ମଧ୍ୟ ଧ୍ୱଂସ କରାଯାଇ ପାରିବ ନାହିଁ । ସେ ଯାହାହେଉ, ଖାରବେଳଙ୍କ ପରେ କପିଳେଶ୍ବରହିଁ ଓଡ଼ିଶାର ଏକମାତ୍ର ରାଜପୁରୁଷ ଥିଲେ ଯେ କି ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରି ଓଡ଼ିଆମାନଙ୍କ ପ୍ରାଣରେ ବିପୁଳ ଆତ୍ମବିଶ୍ୱାସ ଓ ପ୍ରେରଣା ସୃଷ୍ଟି କରି ପାରିଥିଲେ । ସାରଳାଦାସ ସ୍ୱଚକ୍ଷୁରେ ଦେଖିଥିଲେ ଯେ ଏହି ବିସ୍ତୀର୍ଣ୍ଣ ଅଞ୍ଚଳରେ ଗଜପତିସେନା ଦୁର୍ଗରୁ ଦୁର୍ଗାନ୍ତରକୁ ଗତି କରି ଚାଲିଛି, ବିବିଧ ରଣକ୍ଷେତ୍ରରେ ଯୁଦ୍ଧ ଲିପ୍ତ ରହିଛି, ବିବିଧ ରଣବାଦ୍ୟ ବାଜୁଛି ଓ ରାଜ୍ୟ ପରେ ରାଜ୍ୟ ବିଜିତ ହୋଇ ଗଜପତି ସାମ୍ରାଜ୍ୟରେ ମିଶି ଯାଉଛି । ଏ ସମସ୍ତ ତାଙ୍କ କବି ପ୍ରାଣରେ ବିପୁଳ ପ୍ରେରଣା ଆଣି ଦେଇଥିଲା; ଏଣୁ ସେ ସ୍ୱକବିତ୍ୱର ପରିପ୍ରକାଶ ପାଇଁ ସମରଚିତ୍ର ସମ୍ବଳିତ ଗ୍ରନ୍ଥମାନଙ୍କୁହିଁ ବାଛି ନେଇଥିଲେ । ତାଙ୍କ ବିଲଙ୍କା ରାମାୟଣ, ମହାଭାରତ ଓ ଚଣ୍ଡୀପୁରାଣକୁ ଅନୁଶୀଳନ କଲେ ଦେଖାଯାଏ ଯେ ଯୁଦ୍ଧବର୍ଣ୍ଣନାହିଁ ଏ ଗ୍ରନ୍ଥମାନଙ୍କ ବହୁଳ ଅଂଶ ଅଧିକାର କରି ବସିଛି । ସାରଳାଦାସ ତାଙ୍କ ସମୟର

ପ୍ରଚଳିତ ମତକୁ ଗ୍ରହଣ କରି ନିଜେ ଭାବୁଥିଲେ ଯେ ସଂଗ୍ରାମ କରିବା ହେଉଛି ସର୍ବୋତ୍କୃଷ୍ଟ କର୍ମ ଓ ରଣଯଜ୍ଞରେ ପ୍ରାଣବଳି ଦେଲେ ମହାପାପରୁ ମୁକ୍ତି ମିଳେ । ବ୍ରହ୍ମହତ୍ୟା ପାପରୁ କିପରି ମୁକ୍ତି ମିଳେ, କବି ତାହା ନାରଦଙ୍କ ମୁଖରେ କହି ଯାଇଛନ୍ତି—

ଧର୍ମକୁ ବୋଧି ନାରଦେ ପୁଛିଲେ ଶ୍ରୀହରି
ବ୍ରହ୍ମହତ୍ୟାରୁ ତରିବେ କେଉଁ କାର୍ଯ୍ୟ କରି ।
ନାରଦ ବୋଇଲେ ହରି ଅଛୁ ପ୍ରତିକାର
ତହିଁର କାରଣ ତୁମ୍ଭେ ଶୁଣ ଚକ୍ରଧର ।
ଅନ୍ନଦାନ ଯେବେ କେହି ଦିଏ ଅନୁକ୍ଷଣ ।
ତେବେ ବ୍ରହ୍ମହତ୍ୟା ଦୋଷୁଁ ହେବ ପରିତ୍ରାଣ ।
ନତୁବା ଯେ ଦୋଷୀ ଯେହୁ ଯେବେ ବ୍ରହ୍ମଜ୍ଞାନ
ସାଧିପାରେ ସେ ହୋଇବ ପାପରୁ ମୋଚନ ।
ନୋହିଲେ ଯେବେ ପାରଇ ବହୁ ତୀର୍ଥ କରି
କିବା ରଣଯଜ୍ଞେ ମରେ ଅସ୍ତ୍ରଶସ୍ତ୍ର ଧରି ।
କି ଅବା ପ୍ରୟାଗ ଜଳେ ଦେବ ଯେବେ ଝାସ
ତାହାର ଖଣ୍ଡନ ହେବ ବ୍ରହ୍ମହତ୍ୟା ଦୋଷ । ସଭା, ପୃ. ୮

କବି ବିଶ୍ୱାସ କରୁଥିଲେ ଯେ ରଣଯଜ୍ଞରେ ଅସ୍ତ୍ରଶସ୍ତ୍ର ଧରି ପ୍ରାଣ ଦେବା ଗୋଟିଏ ପୁଣ୍ୟକର୍ମ ଓ ତଦ୍ଦ୍ୱାରା ମହାପାପରୁ ମୁକ୍ତି ମିଳେ । ଯେହେତୁ କବିଙ୍କ ସମୟର ବହୁ ବ୍ୟକ୍ତି ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଯୁଦ୍ଧରେ ଯୋଗ ଦେଉଥିଲେ, ପୁତ୍ରଲାଭ କରିବାଟା ଜାତିର ପରମ କାମ୍ୟ ହୋଇ ପଡ଼ିଥିଲା । ଶାସ୍ତ୍ରରେ ଯାହା ନାହିଁ ସେ ଉପାୟରେ ମଧ୍ୟ ପୁତ୍ରଲାଭ କରିବା ପାଇଁ ସାରଳାଦାସ ଉପଦେଶ ଦେଇ ଯାଇଛନ୍ତି—

ନିଜ ସ୍ୱାମୀ ବୀର୍ଯ୍ୟେ ଯେବେ ନୋହିବ ସନ୍ତତି
ପୁତ୍ର ଇଷ୍ଟି କରାଇବ ରାଇ ମହାଯତି ।
ତହିଁରେ ଯେବେ ନୋହିବ ଜାଣ ପୁତ୍ର ଜାତ
ତୀର୍ଥେ ଦାନ ଦେବ ଭଲ ଭଲ ଯେ ପଦାର୍ଥ ।
ସେ ରୂପେ ଯଦ୍ୟପି ଜାଣ ନୋହିବ ସନ୍ତାନ
ଶୁଶ୍ରୂଷିବ ଯେ ଆଦ୍ୟ ପ୍ରାନ୍ତ କରି ରାମାୟଣ ।
ଏତେ ରୂପେ ଜାଣ ଯେବେ ନୋହିବ ନନ୍ଦନ
ଧନ ଦେଇଣ ପାଳିବ ପରର ସନ୍ତାନ ।

ତାହା ହିଁ ଯେବେହି ପୁଣ ନ ପାଇବ ଲୋଡ଼
ସ୍ୱାମୀ ଅନୁମତ ଯେନ ହୋଇବ ଦୋଗୃଷ୍ଟ ।
ତେତେ ବାଗେ ଯେବେ ପୁଣି ନୋହିବ ଆତ୍ମଜ
ଧର୍ମ ଅର୍ଥେ ବଭ୍ର କର୍‌ଇବ ଭଗିନୀଜ ।
କନ୍ୟାଦାନ କର ତା'ର ନୋହିଲେ ସନ୍ତତ
ବାଟେ ବୃକ୍ଷ ଲଗାଇବ ଜାଣିଥାଅ ସତୀ ।
ଏ ଅଷ୍ଟ ପ୍ରକାର ଜାଣ ପୁତ୍ର ଜାତକଥା
ସ୍ତ୍ରିଣ ଜନ୍ମହିଁ ଦୁର୍ଲ୍ଲଭ ଅଟଇ ଗୋ ମାତା ।

ବହୁ ସଂଖ୍ୟକ ତରୁଣ ଯୁଦ୍ଧରେ ଯୋଗ ଦେଇ ରଣଯଜ୍ଞରେ ପ୍ରାଣବଳି ଦେଉଥିବାରୁ ଯେକୌଣସି ଉପାୟରେ ପୁତ୍ରଲଭ କରିବା ପାଇଁ ଦେଶର ଲୋକେ କିପରି ବ୍ୟାକୁଳ ହେଉଥିଲେ, ତାହା ସେମାନଙ୍କ ସମୟର କବି ସାରଳା ଦାସଙ୍କ ଏହି ପଦାବଳୀରେ ପ୍ରତିଫଳିତ ହୋଇଛି । କବି ନାରୀ ଜନ୍ମକୁ ଦୁର୍ଲ୍ଲଭ ଜନ୍ମ ବୋଲି କହିଛନ୍ତି, କାରଣ ନାରୀମାନେ ହିଁ ପୁତ୍ର ପ୍ରସବ କରି କୁଳ ରକ୍ଷା କରିଥାନ୍ତି ।

ସାରଳା ଦାସଙ୍କ ଏହିପରି ଆହୁରି ଅନେକ ସୂତ୍ରରୁ ଜଣାଯାଏ ଯେ ସେ ସମସାମୟିକ ରାଜନୀତିକ ଓ ସାମରିକ ଘଟନାବଳୀରେ ପ୍ରଭାବିତ ହୋଇଥିଲେ । ତାଙ୍କ ସମୟରେ ଯେଉଁ ଦୁର୍ଜୟ ସାମରିକ ଶକ୍ତି ଗଢ଼ି ଉଠିଥିଲା, ସେ ତା'ର ନୀରବଦ୍ରଷ୍ଟା ନ ହୋଇ ନିଜେ ସେଥିରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ସମସାମୟିକ ସାମରିକ ଶକ୍ତି ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିବାରୁ ତାଙ୍କ ମନଶ୍ଚକ୍ଷୁର ପରିଧି ବିସ୍ତାରିତ ହୋଇପାରିଥିଲା । ସାରଳା ଦାସଙ୍କ ଭୌଗୋଳିକ ଜ୍ଞାନ ଅନୁଶୀଳନ କଲେ ବିସ୍ମିତ ଓ ଚମତ୍କୃତ ହେବାକୁ ହୁଏ । ତାଙ୍କ ଭୌଗୋଳିକ ଦୃଷ୍ଟି ଭାରତର ସର୍ବାଞ୍ଚଳରେ ପରିବ୍ୟାପ୍ତ ହୋଇ ଭାରତ ବାହାରକୁ ମଧ୍ୟ ପ୍ରସାରିତ ହୋଇଥିଲା । ସେ ଏହି ବିପୁଳ ଭୌଗୋଳିକ ଜ୍ଞାନ ଅର୍ଜନ କଲେ କିପରି ? ଏହାଛଡ଼ା ସେ ତାଙ୍କର କିମ୍ବଦନ୍ତୀମୂଳକ ଇତିହାସ ଜ୍ଞାନର ଯେଉଁ ପ୍ରମାଣମାନ ତାଙ୍କ ଗ୍ରନ୍ଥରେ ରଖିଯାଇଛନ୍ତି ତାଙ୍କ ସମୟର ପରିପ୍ରେକ୍ଷୀରେ ତାହା ମଧ୍ୟ ବିସ୍ମୟକର । ସେ ଏହି ଐତିହାସିକ ଜ୍ଞାନ କେଉଁଠାରୁ ପାଇଲେ ? ଯଦି ଆମ୍ଭେମାନେ ଧରିନେଉଁ ଯେ, ସେ ନିଜ ଗ୍ରାମରେ ରହି କେବଳ ସାରଳା ଦେବୀଙ୍କ ଆଜ୍ଞାରେହିଁ ତାଙ୍କ ଗ୍ରନ୍ଥମାନ ଲେଖିଯାଇଛନ୍ତି, ତେବେ ତାହା ସମସ୍ତ ପ୍ରଶ୍ନର ସମାଧାନ ପାଇଁ ଏକ ସହଜ ପନ୍ଥା ହେବ; ମାତ୍ର ଆଧୁନିକ ଜ୍ଞାନ ବିଜ୍ଞାନଯୁଗ ସେପରି ସହଜପନ୍ଥୀ ସମାଧାନକୁ ମାନିବ ନାହିଁ ।

ଅତଏବ ତାଙ୍କ ଗ୍ରନ୍ଥରୁ ଯେଉଁ ପ୍ରମାଣମାନ ମିଳୁଛି, ସେହି ପ୍ରମାଣମାନଙ୍କ ସାହାଯ୍ୟରେ ହିଁ ତାଙ୍କ ପ୍ରତିଭା ବିକାଶର ବିଶ୍ଳେଷଣ କରିବାକୁ ହେବ । ଏହି ପ୍ରମାଣମାନଙ୍କରୁ ଜଣାଯାଉଛି ଯେ, କବି ବହୁବର୍ଷ ଧରି ସେନାବାହିନୀ ସହିତ ସଂପୃକ୍ତ ଥିଲେ ଓ ଏହି ସମୟରେ ହିଁ ତାଙ୍କ ମହାଭାରତ ଲେଖିବା ପାଇଁ ବିବିଧ ପ୍ରକାର ଉପାଦାନ ସଂଗ୍ରହ କରି ମସ୍ତିଷ୍କରେ ରଖିଥିଲେ । ସେନାବାହିନୀରେ ଖାଲି ଯୋଦ୍ଧା ନୁହେଁ, ଜ୍ଞାନୀ, ପଣ୍ଡିତ, ରାଜନୀତିଜ୍ଞ, ପୁରାଣଜ୍ଞ, ଦୂତ, ବାଣ୍ଡୀବନ୍ଦି, ଭାଟ, ନଟକାର, ବିଦୂଷକ, ବୈଦ୍ୟ, ଜ୍ୟୋତିଷ, ହସ୍ତୀ ଅଶ୍ୱାଦିର ବିଶେଷଜ୍ଞ, ଭୌଗୋଳିକ ଓ ଐତିହାସିକମାନେ ମଧ୍ୟ ରହୁଥିଲେ । ବିଚକ୍ଷଣ ବୁଦ୍ଧିଧାରୀ ଓ ଅସାଧାରଣ ସ୍ମୃତିଧର ସାରଳା ଦାସ ଯେତେବେଳେ ଯାହା ଦେଖିଥିଲେ ବା ଶୁଣିଥିଲେ ସେ ସମସ୍ତକୁ ସ୍ମୃତିକୋଷରେ ସାଇତି ରଖି ପ୍ରୟୋଜନ ସମୟରେ ତାହାର ସଦ୍‌ବ୍ୟବହାର କରିପାରୁଥିଲେ । ସେ ନିଜକୁ କିମ୍ବା ଯେଉଁମାନଙ୍କ ଠାରୁ ଜ୍ଞାନ ଲାଭ କରିଥିଲେ ସେମାନଙ୍କୁ ତାଙ୍କ ଲେଖାମାନଙ୍କରେ ପ୍ରକାଶିତ ଜ୍ଞାନ ସହିତ କୌଣସି ପ୍ରକାରେ ସଂପୃକ୍ତ ନ କରି କେବଳ ସାରଳା ଦେବୀଙ୍କୁ ଏକମାତ୍ର ଜ୍ଞାନଦାତ୍ରୀ ରୂପେ ଉପସ୍ଥାପିତ କରିଯାଇଛନ୍ତି । ଏହା ହିଁ ତାଙ୍କ ପକ୍ଷରେ ଏକମାତ୍ର ପନ୍ଥା ଥିଲା, କାରଣ ତାଙ୍କ ମହାଭାରତରେ ଏପରି ବହୁ ବିଷୟ ଅଛି, ଯାହା ପ୍ରକାଶ କରିବା-ବେଳେ ସେ ନିଶ୍ଚିତ ରୂପେ ରାଜଦଣ୍ଡ ଓ ସମାଜ ଦଣ୍ଡର ଆଶଙ୍କା କରିଥିବେ ।

କବି ବାରମ୍ବାର ଲେଖିଛନ୍ତି ଯେ ସେ ନ ପଢ଼ି ମୂର୍ଖ କେବଳ ସାରଳାଦେବୀଙ୍କ କୃପାରୁ ସୁପଣ୍ଡିତ ହୋଇଥିଲେ । ତାଙ୍କର ଏହି ଉକ୍ତିକୁ ମଧ୍ୟ ଆକ୍ଷରିକ ଭାବରେ ଗ୍ରହଣ କରାଯାଇ ପାରିବ ନାହିଁ । କାରଣ ତାଙ୍କ ଗ୍ରନ୍ଥମାନ ପରିଶୀଳନ କଲେ ଦେଖାଯାଏ ଯେ, ସେ ନିଶ୍ଚୟ ବହୁଗ୍ରନ୍ଥ ଅଧ୍ୟୟନ ଓ ଶ୍ରବଣ କରିଥିଲେ । ତାଙ୍କ ସମୟ ପର୍ଯ୍ୟନ୍ତ ଧର୍ମଗ୍ରନ୍ଥମାନ ଓଡ଼ିଆ ଭାଷାରେ ଲିଖିତ ହୋଇ ନ ଥିଲେ ହେଁ, ସଂସ୍କୃତ ରାମାୟଣ, ମହାଭାରତ ଓ ପୁରାଣାଦି ଓଡ଼ିଶାରେ ବହୁଳ ଭାବରେ ପ୍ରଚଳିତ ହୋଇ ସାରିଥିଲା । ବିଭିନ୍ନ-ପ୍ରକାର ଧର୍ମଲାଭ ଉଦ୍ଦେଶ୍ୟରେ ସମାଜର ସମସ୍ତ ଶ୍ରେଣୀର ବ୍ୟକ୍ତିମାନେ ବିଭିନ୍ନ ପ୍ରକାର ଧର୍ମଗ୍ରନ୍ଥମାନଙ୍କୁ ସଂସ୍କୃତଜ୍ଞ ବ୍ରାହ୍ମଣ ପଣ୍ଡିତମାନଙ୍କ ଠାରୁ ଶୁଣିବା ସଙ୍ଗେ ସଙ୍ଗେ ସେମାନଙ୍କ ଠାରୁ ସେଗୁଡ଼ିକର ଓଡ଼ିଆ ବ୍ୟାଖ୍ୟା ମଧ୍ୟ ଶୁଣୁଥିଲେ । ଆଜିକାଲି ଓଡ଼ିଶାରେ "ପୋଥିବସାଇବା" ଓ ଧର୍ମଗ୍ରନ୍ଥ ପାରାୟଣ କରିବାର ଯେଉଁ ବ୍ୟବସ୍ଥା ଅଛି, କବିଙ୍କ ସମୟରେ ମଧ୍ୟ ସେହି ବ୍ୟବସ୍ଥା ଥିଲା, କିନ୍ତୁ ତାଙ୍କ ସମୟର ସବୁ ଧର୍ମଗ୍ରନ୍ଥ କେବଳ ସଂସ୍କୃତ ଭାଷାରେ ହିଁ ଲିପିବଦ୍ଧ ଥିଲା । ପୁଣ୍ୟଲାଭ ପାଇଁ ଉଲ୍ଲିଖିତ ଆଠ ପ୍ରକାର ବ୍ୟବସ୍ଥା ମଧ୍ୟରେ ଗୋଟିଏ ବ୍ୟବସ୍ଥା ହେଉଛି "ଶୁଣିବ ଯେ ଆଦ୍ୟ ପ୍ରାନ୍ତ କରି ରାମାୟଣ ।" କବିଙ୍କ ସମୟରେ ଓଡ଼ିଆ ରାମାୟଣ ନ ଥିଲା; ଏଣୁ ଏଠାରେ ବୁଝିବାକୁ ହେବ ଯେ ତାଙ୍କ ସମୟର ଲୋକମାନେ ପୁଣ୍ୟଲାଭ ଆଶାରେ ସଂସ୍କୃତ ରାମାୟଣକୁ ହିଁ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ

ଶୁଣୁଥିଲେ । ସାରଳାଦାସଙ୍କ ସମୟରେ ବ୍ରାହ୍ମଣମାନେ ଯେ ସଂସ୍କୃତ ରାମାୟଣ, ମହାଭାରତ ଓ ପୁରାଣମାନ ପଢ଼ି ଜନସାଧାରଣଙ୍କୁ ବୁଝାଉଥିଲେ, ତାହାର ଅନ୍ୟ ଏକ ପ୍ରମାଣ ତାଙ୍କ ଉଦ୍‌ଯୋଗପର୍ବରେ ଅଛି—

ତସ୍କରମାନଙ୍କର ଯେ ଥିଲ ସଭାଟିଏ
ପୁରାଣ ଫେଇଲେ ତହିଁ ଗୋବନ୍ଧ ପଣ୍ଡାଏ ।
ଅନେକ ଦୋଷ ଗାଆଁନ୍ତେ କୋପେ ପରଚଣ୍ଡା
ଉପହାସ କରି ଖେଦଦେଲେ ମାରି ବଣ୍ଡା ।
ଗୋଟିଏ ନାଚଲ ତହିଁ ଭଣ୍ଡଗୀତ ଗାଇ
କେଶକୁ ମୁକୁଳା କରି ଜିହ୍ୱାକୁ ହଲଇ ।
କୌତୁହଳରେ ଯେ ତହିଁ ସମସ୍ତେ ହିଁ ହସି
ବସ୍ତ୍ର ଅଳଙ୍କାର ଦେଲେ ତାକୁ ହୋଇ ତୋଷି । ଉଦ୍‌ଯୋଗ,ପୃ ୧୧୬

ଚୋରମାନଙ୍କ ଗୋଟିଏ ସଭାରେ ଗୋବନ୍ଧପଣ୍ଡା ପୁରାଣ ଫେଇ ଚୋରି କରିବାର ବହୁତ ଦୋଷ ବଖାଣିଥିଲେ । ଏଥିରେ ଚୋରମାନେ ରାଗିଯାଇ ତାଙ୍କ ପାଟିରେ ବଣ୍ଡାଟିଏ ମାରିଦେଲେ ଓ ଉପହାସ କରି ତାଙ୍କୁ ତଡ଼ିଦେଲେ । ଏହାପରେ ସେମାନଙ୍କ ମଧ୍ୟରୁ ଜଣେ ବାଳ ଫିଟାଇ ଓ ଜିଭ ହଲାଇ ଭଣ୍ଡଗୀତ ଗାଇଲା । ଚୋରମାନେ ଏତେ ଆନନ୍ଦିତ ଓ ସନ୍ତୁଷ୍ଟ ହେଲେ ଯେ ତାକୁ ବସ୍ତ୍ର ଅଳଙ୍କାର ଉପହାର ଦେଲେ । ଦୁର୍ଯ୍ୟୋଧନାଦି କୌରବମାନେ ତାଙ୍କ ଉପଦେଶ ନ ଶୁଣି ଶକୁନିଙ୍କ ମନ୍ତ୍ରଣା ସମସ୍ତେ ଶୁଣୁଥିବାରୁ ଏଠାରେ ଧୃତରାଷ୍ଟ୍ର ନିଜକୁ ଗୋବନ୍ଧପଣ୍ଡା, କୌରବସଭାକୁ ତସ୍କରସଭା ଓ ଶକୁନିକୁ ଭଣ୍ଡଗୀତ ଗାଇଥିବା ତସ୍କର ସହିତ ତୁଳନା କରିଛନ୍ତି ।

ଏହିସବୁ ପ୍ରମାଣମାନଙ୍କରୁ ନିଶ୍ଚିତଭାବରେ ଜଣାଯାଏ ଯେ ସଂସ୍କୃତଧର୍ମ-ଗ୍ରନ୍ଥମାନ କବିଙ୍କ ସମୟର ଓଡ଼ିଶାରେ ଘରେ ଘରେ ଓ ସଭାସମିତିରେ ପଠିତ ଓ ବ୍ୟାଖ୍ୟାତ ହେଉଥିଲା ଓ ପୁରାଣପଣ୍ଡାମାନେ ବସ୍ତ୍ରଅଳଙ୍କାରାଦି ଉପହାରମାନ ପାଉ-ଥିଲେ । ସାରଳାଦାସ ବିଭିନ୍ନ ସଂସ୍କୃତ ଧର୍ମଶାସ୍ତ୍ରମାନ ଶୁଣିବାର ସୁବିଧା ଏହିପରି ଭାବରେ ପାଇଥିଲେ । ତାଛଡ଼ା ସେ ନିଜେ ମଧ୍ୟ କେତେଗୁଡ଼ିଏ ସଂସ୍କୃତଗ୍ରନ୍ଥ ନିଶ୍ଚୟ ପଢ଼ିଥିଲେ, ତାହା ନ ହେଲେ ତାଙ୍କ ସଂସ୍କୃତଜ୍ଞାନ ଏତେ ବେଶୀ ବ୍ୟାପକ ହୋଇ-ପାରି ନ ଥାନ୍ତା । ପଣ୍ଡିତ ଗୋପୀନାଥ ନନ୍ଦଶର୍ମା କବିଙ୍କ ସଂସ୍କୃତ ଜ୍ଞାନ ସମ୍ବନ୍ଧରେ ଲେଖିଛନ୍ତି—

'ପ୍ରଦତ୍ତ ବ୍ୟୁତ୍ପତ୍ତିସ୍ଥାନମାନ ସମ୍ୟକ୍ ପରିଶୀଳନପୂର୍ବକ ଦେଖିଗଲେ ସୁବିଦିତ ହୁଏ ଯେ ଏହି ମହାକବି ମହାଶୟ ସଂସ୍କୃତ ଶାସ୍ତ୍ରରେ ସମ୍ପୂର୍ଣ୍ଣ ବ୍ୟୁତ୍ପନ୍ନ ନଥିଲେ ସୁଦ୍ଧା

ତାହାଙ୍କର ସଂସ୍କୃତଜ୍ଞାନ ନିତାନ୍ତ ଊଣାଥିଲା, ତାହା ନୁହେ, କେତେକ ବ୍ୟୁତ୍ପତ୍ତି ଓ ଯାବତୀୟ ରୂପବର୍ଣ୍ଣନାର ସ୍ଥାନମାନ ଦେଖିଲେ ଏବଂ ତତ୍ରପ୍ରୟୋଜିତ ସଂସ୍କୃତ ଗୂଢ଼ ଶବ୍ଦ ଓ ସମାସାନ୍ତ ପ୍ରଭୃତି ପଦମାନଙ୍କୁ ଦେଖିଲେ ଏବଂ ଓଡ଼ିଆଭାଷାର ଶୈଶବାବସ୍ଥାରେ ଏତାଦୃଶ ମହାଗ୍ରନ୍ଥ ରଚନାରେ ତଦୀୟ ମହନୀୟ ସଫଳ ପ୍ରତିଜ୍ଞତାର ସମୁଜ୍ଜ୍ୱଳ ଆଲୋକ ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ବୋଧହୁଏ, କବିମହାଶୟ ସଂସ୍କୃତରେ ଅବଶ୍ୟ କେତେଦୂର ସୁବ୍ୟୁତ୍ପନ୍ନ ଥିଲେ, ଅଥଚ ତାହାଙ୍କର ସୁପ୍ରଗାଢ଼ ଶାସ୍ତ୍ରଶୁଶ୍ରୂଷା ସମ୍ୟକ୍ ବଳବତୀଥିଲା, ଏଥିରେ କିଅଣ୍ଟିତ୍ ସନ୍ଦେହ ହୋଇନପାରେ (ଶ୍ରୀଭାରତଦର୍ପଣ, ସା.ଏ., ପୃ-୨୪୨ ।"

ଏ ବିଷୟରେ ପଣ୍ଡିତ ନନ୍ଦଙ୍କ ସହିତ ଆମ୍ଭେମାନେ ସମ୍ପୂର୍ଣ୍ଣ ଏକମତ । ବିଧିବଦ୍ଧ-ଭାବରେ ସଂସ୍କୃତ ଜ୍ଞାନଲାଭ କରିବାର ସୁବିଧା ପାଇ ନ ଥିଲେ ମଧ୍ୟ କବି ତାଙ୍କର ସୁତୀକ୍ଷ୍ଣମେଧା ଓ ଅସାଧାରଣ ସ୍ମୃତିଶକ୍ତି ବଳରେ ବହୁ ସଂସ୍କୃତଗ୍ରନ୍ଥରୁ ଉପାଦାନ ସଂଗ୍ରହ କରି ତାଙ୍କ ଗ୍ରନ୍ଥମାନଙ୍କରେ ସନ୍ନିବେଶ କରିଯାଇଛନ୍ତି । କେଉଁ କେଉଁ ଗ୍ରନ୍ଥରୁ କିପରି ଭାବରେ ସାରଳାଦାସ ଜ୍ଞାନ ଓ ଆଦର୍ଶ ଆହରଣ କରିଛନ୍ତି, ଏବିଷୟ ପୂର୍ବ ସମାଲୋଚକମାନେ ବିଶ୍ଲେଷଣ କରିନାହାନ୍ତି । ଏଣୁ ସୀମିତ ସଂସ୍କୃତଜ୍ଞାନ ସତ୍ତ୍ୱେ ଏ ବିଷୟକୁ ଏଠାରେ ବିଶ୍ଳେଷଣ କରିବା ଅପରିହାର୍ଯ୍ୟ ମନେକରୁଛୁଁ ।

(୧) ସଂସ୍କୃତ ମହାଭାରତ । କବି ଏହା ନିଶ୍ଚୟ ଶୁଣିଥିଲେ ଓ ପଢ଼ିଥିଲେ । ଏଠାରେ ପ୍ରଶ୍ନ ହୋଇପାରେ—ତେବେ କାହିଁକି ସାରଳା ମହାଭାରତରେ ବିଷୟ-ବୈଷମ୍ୟ ଏତେବେଶୀ ପରିମାଣରେ ରହିଛି ? ବିଷୟବୈଷମ୍ୟର କାରଣ ପରବର୍ତ୍ତୀ ଆଲୋଚନାରୁ ସ୍ପଷ୍ଟ ହେବ ।

(୨) ରଘୁବଂଶ । ଏ ଗ୍ରନ୍ଥ ସାରଳା ମହାଭାରତକୁ ବହୁଳ ଭାବରେ ପ୍ରଭାବିତ କରିଛି । ମୂଳରାମାୟଣର ପ୍ରଧାନ ପ୍ରଧାନ ବିଷୟବସ୍ତୁକୁ ଅକ୍ଷୁର୍ଣ୍ଣରଖି କାଳିଦାସ କଳ୍ପନା ବଳରେ ବହୁକଥା ଓ ଉପକଥା ସୃଷ୍ଟି କରି ତାଙ୍କ ରଘୁବଂଶକୁ ଯେପରି ରାମାୟଣର ଏକ ନୂତନ ରୂପ ଦେଇଛନ୍ତି, ସାରଳାଦାସ ମଧ୍ୟ ସେହିପରି ମୂଳମହାଭାରତର ପ୍ରଧାନ ପ୍ରଧାନ ବିଷୟବସ୍ତୁକୁ ଅକ୍ଷୁର୍ଣ୍ଣ ରଖି ବହୁକଥା ଓ ଉପକଥା ସାହାଯ୍ୟରେ ତାଙ୍କ ମହାଭାରତକୁ ପଲ୍ଲବିତ କରି ତାକୁ ଏକ ନୂତନ ରୂପ ଦେଇଛନ୍ତି । ମୂଳଗ୍ରନ୍ଥର ଗଳ୍ପ-କଙ୍କାଳଟି ମାତ୍ର ନେଇ ଅପି ଦୀର୍ଘକାୟ ଗ୍ରନ୍ଥକୁ ଯେ ବହୁଭାବରେ ପ୍ରସାରିତ ଓ ପଲ୍ଲବିତ କରାଯାଇପାରେ, ସାରଳା ଦାସ ଏ ଆଦର୍ଶ ରଘୁବଂଶରୁହିଁ ପାଇଥିଲେ । ଏହା ବ୍ୟତୀତ ରଘୁବଂଶର ରଘୁଙ୍କ ଦିଗ୍‌ବିଜୟ ଓ ଇନ୍ଦୁମତୀ ସ୍ୱୟମ୍ବରର ଆଦର୍ଶରେ ସେ ତାଙ୍କ ମହାଭାରତର ପାଣ୍ଡବମାନଙ୍କ ଦିଗ୍‌ବିଜୟ ଓ ଦ୍ରୌପଦୀ ସ୍ୱୟମ୍ବର ଲେଖିଛନ୍ତି ।

କାଳିଦାସ ତାଙ୍କୁ ଜଣାଥିବା ସମସ୍ତ ଦେଶକୁ ଯେପରି ରଘୁଙ୍କୁ ନେଇ ଯାଇଛନ୍ତି, ସାରଳାଦାସ ମଧ୍ୟ ତାଙ୍କୁ ଜଣାଥିବା ସମସ୍ତ ଦେଶକୁ ସେହିପରି ପାଣ୍ଡବମାନଙ୍କୁ ନେଇ ଯାଇଛନ୍ତି । ସାରଳା ମହାଭାରତରେ ଥିବା ଦ୍ରୌପଦୀ ସ୍ୱୟମ୍ବରର ଦ୍ରୌପଦୀଙ୍କ ଦାସୀ କେଶିନୀ ରଘୁବଂଶରେ ଥିବା ଇନ୍ଦୁମତୀ ସ୍ୱୟମ୍ବରର ଇନ୍ଦୁମତୀଙ୍କ ଦାସୀ ସୁନନ୍ଦାର ସ୍ଥାନ ଅଧିକାର କରିଛି । ସୁନନ୍ଦା ଇନ୍ଦୁମତୀଙ୍କୁ ପ୍ରତ୍ୟେକ ରାଜାଙ୍କ ପାଖକୁ ନେଇଯାଇ ତାଙ୍କର ପରିଚୟ ଦେଇଛି, ସେହିପରି କେଶିନୀ ଦ୍ରୌପଦୀଙ୍କୁ ସମବେତ ସମସ୍ତ ରାଜାଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ପରିଚୟ ଦେଇଛି ( ଆଦ୍ୟ, ପୃ ୨୫୩-୨୫୮ ) । ପାର୍ଥକ୍ୟ ଭିତରେ ଏହି ଯେ କେଶିନୀ ଦ୍ରୌପଦୀଙ୍କୁ ପ୍ରତ୍ୟେକ ରାଜାଙ୍କ ପାଖକୁ ନେଇ ଯାଇନାହିଁ । ଏହାର କାରଣ ଏହି ଯେ ଦ୍ରୌପଦୀ ସ୍ୱୟମ୍ବରର ପଣ ଭିନ୍ନପ୍ରକାର ଥିଲା । ସାରଳାଦାସ କେଶିନୀ ମୁଖରେ ରାଜାମାନଙ୍କ ପରିଚୟ ଦେବାବେଳେ ସ୍ଥଳେ ସ୍ଥଳେ ଇନ୍ଦୁମତୀ ସ୍ୱୟମ୍ବରର ଭାବ ଓ ବର୍ଣ୍ଣନା ନେଇ ଆସିଛନ୍ତି । କେଶିନୀ କହୁଛି—

କୃଷ୍ଣରାଷ୍ଟ୍ରରାଜ୍ୟ ରାଜା ମଦନମୋହନ<br>
ଲକ୍ଷେକ ଯୁବତୀ ନେଇ ବିଳାସେ ରାଜନ ।<br>
କାମୁକ ନୃପତି ଏହି କାମର ପ୍ରସନ୍ନେ<br>
ଜାଣଇ ଧାରଣ ବିଦ୍ୟା ନୃପ ବଦ୍ୟମାନେ ।<br>
ଏକରାଜେ ୪ ସମସ୍ତ ବାମାକୁ ବୋଧଇ<br>
କାମିନୀମାନଙ୍କ ମନ ସର୍ବଦା ରଞ୍ଜଇ । ଆଦ୍ୟ, ପୃ ୨୫୫-୫୬

କୃଷ୍ଣରାଜ୍ୟ ହେଉଛି ମଥୁରା ଓ ମଥୁରାର ଅନ୍ୟତମ ନାମ ହେଉଛି ଶୂରସେନ । ରଘୁବଂଶର ଷଷ୍ଠସର୍ଗରେ ସୁନନ୍ଦା ଶୂରସେନର ରାଜା ସୁଷେଣଙ୍କ ପରିଚୟ ଦେଇ ଯାହା କହିଛି ସେଥିମଧ୍ୟରୁ ଗୋଟିଏ କଥା ହେଉଛି—

ଯସ୍ୟାବରୋଧସ୍ତନଚନ୍ଦନାନାଂ ପ୍ରକ୍ଷାଳନାଦ୍ ବାରିବିହାର କାଲେ ।<br>
କଳିନ୍ଦକନ୍ୟା ମଥୁରାଂ ଗତାପି ଗଙ୍ଗୋର୍ମି-ସଂସକ୍ତଜଲେବ ଭାତି ॥

ଅର୍ଥ—ମଥୁରାର ପ୍ରାନ୍ତବାହିନୀ ନୀଳସଲିଳା ଯମୁନାର ଜଳରେ ଅନ୍ତଃପୁରବାସିନୀମାନଙ୍କୁ ନେଇ ଏହି ରାଜା ଯେତେବେଳେ ଜଳବିହାର କରନ୍ତି, ସେତେବେଳେ ଏହି କାମିନୀମାନଙ୍କ ଚନ୍ଦନଚର୍ଚ୍ଚିତ ସ୍ତନମଣ୍ଡଳର ଚନ୍ଦନ ନୀଳଜଳ ସହିତ ମିଶ୍ରିତ ହେବାରୁ ମନେହୁଏ ଯେ ସୁଦୂର ମଥୁରାରେ ରହି ସୁଦ୍ଧା ଯମୁନା (ପ୍ରୟାଗର) ଦୁଗ୍ଧ-ଧବଳ ଗଙ୍ଗାତରଙ୍ଗ ସହିତ ମିଶି ଶୋଭା ପାଉଛି ।

ଏଥିରୁ ଦେଖାଯିବ ଯେ କାଳିଦାସ ମଥୁରାର ରାଜାଙ୍କୁ ବହୁପତ୍ନୀକ ରୂପେ ଉପସ୍ଥାପିତ କରିଛନ୍ତି । ସାରଳାଦାସ ଏହି ଭାବଟିକୁ ରଘୁବଂଶର ଇନ୍ଦୁମତୀ ସ୍ୱୟମ୍ବରରୁ ଘେନି ଆସି ତାଙ୍କ ମହାଭାରତର ଦ୍ରୌପଦୀ ସ୍ୱୟମ୍ବରର ମଥୁରା ରାଜାଙ୍କୁ ମଧ ବହୁପତ୍ନୀକ ରୂପେ ବର୍ଣ୍ଣନା କରିଛନ୍ତି ଏବଂ ସେଥିରେ କିଛିଏ ନିଜ କଳ୍ପନା ମିଶାଇ ଦେଇ ଲେଖିଛନ୍ତି ଯେ ମଥୁରାର ରାଜା ଧାରଣବିଦ୍ୟା ଜାଣିଥିବାରୁ ଏକରାତିରେ ସମସ୍ତ କାମିନୀଙ୍କୁ ସନ୍ତୁଷ୍ଟ କରି ପାରୁଥିଲେ ।

ସାରଳାଦାସ ଏହିପରି ରଘୁବଂଶର ରଘୁଜନ୍ମର ପୂର୍ବ ବୃତ୍ତାନ୍ତଟି ଘେନି ଆସି ତାଙ୍କ ମହାଭାରତର ରାମଜନ୍ମର ପୂର୍ବବୃତ୍ତାନ୍ତ ସହିତ ଯୋଡ଼ି ଦେଇଛନ୍ତି । ରଘୁବଂଶର ପ୍ରଥମ ଦ୍ୱିତୀୟ ସର୍ଗରେ କାଳିଦାସ ଅନନ୍ୟ ସାଧାରଣ ବର୍ଣ୍ଣନା ଭଙ୍ଗୀରେ ରଘୁଜନ୍ମର ପୂର୍ବ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ବୃତ୍ତାନ୍ତଟିର ସାରାଂଶ ଅଳ୍ପ କଥାରେ କୁହାଯାଇ ପାରିବ । ସେ କାହିଁକି ଅପୁତ୍ରିକ ହୋଇ ରହିଛନ୍ତି ବୋଲି ଦିଲୀପ ବଶିଷ୍ଠଙ୍କୁ ପ୍ରଶ୍ନ କରିବାରୁ ବଶିଷ୍ଠ ଧ୍ୟାନରୁ ଜାଣିପାରି କହିଲେ ଯେ ପୂର୍ବେ ସେ ଦିଲୀପ ଇନ୍ଦ୍ର ପୂଜା ଶେଷ କରି ଋତୁସ୍ନାନା ସ୍ୱପତ୍ନୀଙ୍କୁ ଶୀଘ୍ର ଭେଟିବା ପାଇଁ ବ୍ୟସ୍ତ ହୋଇ ସ୍ୱର୍ଗରୁ ଫେରୁଥିବାବେଳେ କଳ୍ପତରୁତଳଶାୟିତା କାମଧେନୁ ସୁରଭିଙ୍କୁ ଯଥାଯୋଗ୍ୟ ସମ୍ମାନ ଦେଖାଇ ପାରି ନ ଥିଲେ । ଏଥିରେ କୁପିତା ହୋଇ ସୁରଭି ଦିଲୀପଙ୍କୁ ଅପୁତ୍ରିକ ହୁଅ ବୋଲି ଅଭିଶାପ ଦେଲେ, ମାତ୍ର ଦିଗ୍‌ଗଜମାନେ ମନ୍ଦାକିନୀରେ ଚିତ୍କାର କରି କେଳି କରୁଥିବାରୁ ଏହି ଅଭିଶାପ ତାଙ୍କର ଶ୍ରୁତିଗୋଚର ହୋଇ ନ ଥିଲା । ତତ୍ପରେ ବଶିଷ୍ଠ ସୁରଭିକନ୍ୟା ନନ୍ଦିନୀଙ୍କୁ ସେବା କରି ତାଙ୍କଠାରୁ ପୁତ୍ର ପାଇଁ ବରଲାଭ କରିବା ଲାଗି ରାଜାଙ୍କୁ ଉପଦେଶ ଦେଲେ । ଦିଲୀପ ସ୍ୱପତ୍ନୀ ସୁଦକ୍ଷିଣାଙ୍କ ସହିତ ନନ୍ଦିନୀଙ୍କୁ ବହୁ ଭାବରେ ସେବା କରିଥିଲେ । ଦିନେ ରାଜା ଧନୁଶର ଧରି ନନ୍ଦିନୀଙ୍କ ସହଚର ରୂପେ ବନରେ ଭ୍ରମୁଥିବା ବେଳେ ନନ୍ଦିନୀ ତାଙ୍କ ନିଷ୍ଠା ପରୀକ୍ଷା କରିବା ପାଇଁ ସିଂହ ରୂପରେ ନିଜକୁ ଆକ୍ରମଣ କଲେ । ମାୟାହେତୁରୁ ରାଜା ଧନୁଶର ବ୍ୟବହାର କରି ନ ପାରିବାରୁ ନନ୍ଦିନୀଙ୍କୁ ରକ୍ଷା କରିବାର ଅନ୍ୟ କୌଣସି ଉପାୟ ନ ଦେଖି ସିଂହକୁ ଖାଦ୍ୟ ରୂପେ ନିଜ ଶରୀରକୁ ଯାଚିଲେ । ଏହାପରେ ନନ୍ଦିନୀ ଦିଲୀପଙ୍କର ଏକାନ୍ତ ନିଷ୍ଠାରେ ପ୍ରୀତା ହୋଇ ସ୍ୱରୂପ ଧାରଣ ପୂର୍ବକ ପୁତ୍ରଲାଭ ପାଇଁ ତାଙ୍କୁ ବର ପ୍ରଦାନ କଲେ ।

ସାରଳା ମହାଭାରତର ବନପର୍ବରେ ସଂକ୍ଷିପ୍ତ ରାମାୟଣରେ (ପୃ.୨୨୮-୨୯) ଏହି ଗଳ୍ପଟି ଯେପରି ଭାବେ ବର୍ଣ୍ଣିତ ହୋଇଛି, ତା'ର ସାରାଂଶ ହେଉଛି—ଦଶରଥ କାହିଁକି ଅପୁତ୍ରିକ ହୋଇ ରହିଥିଲେ ଯୁଧିଷ୍ଠିର ଏହା ଜାଣିବାକୁ ପୁଚ୍ଛିବାରୁ ମାର୍କଣ୍ଡ କହିଲେ ଯେ ଦଶରଥ ତାଙ୍କ ମିତ୍ର ଇନ୍ଦ୍ର ସହିତ ଥରେ ସ୍ୱର୍ଗରେ ଆମୋଦ ପ୍ରମୋଦରେ

ରହୁଥିବାବେଳେ ଶୁକ୍ରସ୍ନାନ କରଥିବାରୁ ରାଜାଙ୍କୁ ଶୀଘ୍ର ସ୍ୱର୍ଗରୁ ଫେରାଇ ଆଣିବା ପାଇଁ କୈକେୟୀ ମନ୍ଥରାକୁ ପଠାଇଥିଲେ । ମନ୍ଥରା ଠାରୁ କୈକେୟୀଙ୍କ ଋତୁସ୍ନାନ କଥା ଶୁଣିବା ପରେ ଇନ୍ଦ୍ରଙ୍କ ଠାରୁ ବିଦାୟ ନେଇ ଦଶରଥ ଗୃହକୁ ଫେରିବା ପାଇଁ ଏପରି ଉତ୍ସୁକ ହୋଇଯାଇଥିଲେ ଯେ, ରଥରୁ ଓହ୍ଲାଇ ପଡ଼ିଥିବା ତାଙ୍କ ପାଦ ପଥ ମଧ୍ୟରେ ଶାୟିତା କାମଧେନୁ କପିଳାଙ୍କ ମୁଣ୍ଡରେ ବାଜିଲେ ସୁଦ୍ଧା ତାହା ସେ ଜାଣିପାରି ନ ଥିଲେ । ଏଥିରେ କପିଳା କ୍ରୁଦ୍ଧା ହୋଇ ଅପୁତ୍ରିକ ହୁଅ ବୋଲି ରାଜାଙ୍କୁ ଅଭିଶାପ ଦେଲେ । ଦଶରଥ ଗୃହକୁ ନ ଫେରି ଶାପମୋଚନ ପାଇଁ ସେହିଠାରେ କପିଳାଙ୍କୁ ବହୁ ଭାବରେ ସେବା କଲେ । କପିଳା ଯେଉଁଆଡ଼େ ଯାଉଥାନ୍ତି, ରାଜା ସେହିଆଡ଼େ ଗୋଟିଏ ଖଣ୍ଡା ଧରି ତାଙ୍କ ପଛରେ ଚାଲୁଥାନ୍ତି । ଦିନେ କପିଳା ଦଶରଥଙ୍କ ନିଷ୍ଠା ପରୀକ୍ଷା କରିବା ପାଇଁ ବ୍ୟାଘ୍ର ରୂପରେ ନିଜକୁ ଆକ୍ରମଣ କଲେ । ରାଜା ଖଣ୍ଡା ଧରି ବ୍ୟାଘ୍ର ଆଡ଼କୁ ଦଉଡ଼ିଗଲେ ଓ ପଳାଇ ଯିବାପାଇଁ କପିଳାଙ୍କୁ କହିଲେ, ମାତ୍ର ସେ ତାଙ୍କ କଥା ନ ଶୁଣି ଘାସ ଖାଇବାରେ ବ୍ୟସ୍ତ ରହିଲେ । ଗତ୍ୟନ୍ତର ନ ଦେଖି ଦଶରଥ ସ୍ୱଶରୀରକୁ ଖାଦ୍ୟ ରୂପେ ବ୍ୟାଘ୍ରକୁ ଯାଚିଲେ । ଏଥିରେ କପିଳା ଅତ୍ୟନ୍ତ ପ୍ରୀତା ହୋଇ ସ୍ୱ-ସ୍ୱରୂପ ଧାରଣପୂର୍ବକ ଚାରୋଟି ପୁତ୍ରପ୍ରାପ୍ତି ପାଇଁ ରାଜାଙ୍କୁ ବର ଦେଲେ ।

କହିବା ବାହୁଲ୍ୟ ଯେ ଉଭୟ ଗ୍ରନ୍ଥର ଗଳ୍ପ ତ ଏକ, ମାତ୍ର ନାମ ଓ ବର୍ଣ୍ଣନା ଭିନ୍ନ ଆକାର ଧାରଣ କରିଛି । କୌଣସି କୌଣସି ସ୍ଥଳରେ ସାରଳାଦାସ କାଳିଦାସଙ୍କ ବର୍ଣ୍ଣନାକୁ ମଧ୍ୟ ଘେନି ଆସିଛନ୍ତି, ମାତ୍ର ନିଜ ସ୍ୱଭାବରେ ତାକୁ ସମ୍ପୂର୍ଣ୍ଣ ରୂପେ ବଦଳାଇ ଦେଇଛନ୍ତି । ରଘୁବଂଶରେ ଅଛି—'କଣ୍ଡୂୟନୈର୍ଦଂଶନିବାରଣୈଶ୍ଚ' ଅର୍ଥାତ୍ ଦିଲୀପ ନନ୍ଦିନୀଙ୍କ ସେବାରତ ଥିବାବେଳେ ତାଙ୍କ ଦେହକୁ କୁଣ୍ଡାଇ ଦେଉଥିଲେ ଓ ତାହାଙ୍କ ଦେହରୁ ଡାଆଁସ ମଶା ତଡ଼ି ଦେଉଥିଲେ । ସାରଳାଦାସ ଏହି ବର୍ଣ୍ଣନାଟିକୁ ବଦଳାଇ ଲେଖିଛନ୍ତି—"ଶୟନ ସ୍ଥାନରେ ଧୂମକୁଣ୍ଡକୁ ଲଗାଇ ।" କାଳିଦାସ ବ୍ରାହ୍ମଣ ଘର ପୁଅ ଓ ସାରଳାଦାସ ଚାଷୀଘର ପୁଅ ଥିଲେ । ଗୋରୁମାନଙ୍କ ଦେହରୁ କିପରି ଡାଆଁସ ମଶା ତଡ଼ିବାକୁ ହୁଏ, ସେ କଥାଟା କାଳିଦାସଙ୍କ ଠାରୁ ସାରଳା ଦାସଙ୍କୁ ବେଶୀ ଭାବରେ ଜଣାଥିଲା ।

ଏହାଛଡ଼ା ରଘୁବଂଶର ଏକାଧିକ ଭାବ ସାରଳା ମହାଭାରତରେ ପ୍ରତିଧ୍ୱନିତ ହୋଇଛି । ରଘୁବଂଶର ପଞ୍ଚମସର୍ଗରେ ରଘୁ ନାନା କୁଶଳ ପ୍ରଶ୍ନ ମଧ୍ୟରେ ବରତନ୍ତୁ ଶିଷ୍ୟ କୌତ୍ସଙ୍କୁ ପଚାରିଛନ୍ତି—"ଶିବାନି ବସ୍ତୀର୍ଥଜଳାନି କଚ୍ଚିତ୍ ? ଅର୍ଥାତ୍ ଆପଣ-ମାନଙ୍କ ତୀର୍ଥଜଳସମୂହର କୌଣସି ପ୍ରକାର ବ୍ୟାଘାତ ଘଟୁନାହିଁ ତ ? ସାରଳାଦାସ ଏହି ଭାବଟିକୁ ଘେନିଆସି ଆଦ୍ୟପର୍ବରେ ଗାନ୍ଧାରସେନଙ୍କୁ ପଚାରିଥିବା ବ୍ୟାସଙ୍କ ନାନା କୁଶଳ ପ୍ରଶ୍ନ ମଧ୍ୟରେ ଲେଖିଛନ୍ତି—

ତୀର୍ଥେ ନାହିଁ କନା କଉଣସ ଉପଦ୍ରବ
ତପୋଧନ ରକ୍ଷା କରୁ କନା ବହ ଗୃପ । ଆଦ୍ୟ, ପୃ. ୩୬

ରଘୁବଂଶର ଷୋଡ଼ଶସର୍ଗରେ ବର୍ଣ୍ଣିତ ଅଛୁ ଯେ ଅଯୋଧାନଗରୀ ପରିତ୍ୟକ୍ତା ହେବାପରେ ଅଯୋଧାନଗରୀର ଅଧିଦେବତା ତାଙ୍କ ଦୁଃଖ ଜଣାଇବା ପାଇଁ ଦିନେ ଅର୍ଦ୍ଧରାତ୍ରରେ ମହାରାଜା କୁଶଙ୍କ ଶୟନ କକ୍ଷରେ ପ୍ରବେଶ କରିଥିଲେ । ମହାରାଜ କୁଶ ଜାଗ୍ରତ ହୋଇ ତାଙ୍କୁ ଦେଖିବାମାତ୍ରେ ତାଙ୍କୁ ଯେଉଁ ବହୁବିଧ ପ୍ରଶ୍ନମାନ ପଚାରିଥିଲେ ସେଥିଭିତରୁ କେତୋଟି ହେଉଛି—'କା ତ୍ୱଂ ଶୁଭେ ! କସ୍ୟ ପରିଗ୍ରହୋ ବା କମ୍ବା ମଦଭ୍ୟାଗମନକାରଣଂ ତେ ?" ଅର୍ଥାତ୍ ହେ ଭଦ୍ରେ ! ତୁମେ କିଏ ? କାହାର ଭାର୍ଯ୍ୟା ? ମୋ ପାଖକୁ ତୁମର ଆସିବାର କାରଣ କଅଣ ? ଅନୁରୂପ ନାଟକୀୟ ପରିସ୍ଥିତିରେ ସାରଳା ଦାସ ଗଦାପର୍ବରେ ଲେଖିଛନ୍ତି ଯେ ଦୁର୍ଯ୍ୟୋଧନ ବ୍ୟାସ-ସରରେ ଶୋଇଥିବାବେଳେ ଲକ୍ଷ୍ମୀଦେବୀ ହଠାତ୍ ସେଠାରେ ପ୍ରବେଶ କରି ନିଦ୍ରିତ ଦୁର୍ଯ୍ୟୋଧନଙ୍କ ମସ୍ତକକୁ ତାଙ୍କ ଜାନୁ ଉପରେ ରଖିଥିଲେ । ଦୁର୍ଯ୍ୟୋଧନଙ୍କ ଦୁରବସ୍ଥା ଦେଖି ଲେକମାତାଙ୍କ ନୟନରୁ ଅଶ୍ରୁ ଝରି ପଡ଼ିଥିଲା ଓ ଏହି ଅଶ୍ରୁଜଳରେ ରାଜାଙ୍କ ନିଦ୍ରାଭଙ୍ଗ ହୋଇଥିଲା । ନିଦ୍ରାଭଙ୍ଗ ପରେ ହଠାତ୍ ନାରୀମୂର୍ତ୍ତିଟିକୁ ଦେଖି ଦୁର୍ଯ୍ୟୋଧନ ପଚାରିଥିଲେ—

କିଏ ତୋର ପିତାମାତା କେଉଁଠି ବସତି
କିଏ ତୁମର ବଲ୍ଲଭ କହଗୋ ଯୁବତୀ ।
ହତଶ୍ରୀ ଲେକ ମୁଁ ମୋତେ କିସପାଇଁ ବନ୍ଦ
ତ୍ରୈଲୋକ୍ୟ ମୋହୁଛୁ ମାଗୋ କିସପାଇଁ କାନ୍ଦୁ । ଗଦା, ପୃ. ୩

ଏହିପରି ରଘୁବଂଶର ଗ୍ରୁପ୍ତ ସାରଳା ମହାଭାରତର ଆଉ କେତେକ ଅଂଶରେ ମଧ୍ୟ ପଡ଼ିଛି; ମାତ୍ର ସାରଳାଦାସ ଯାହା ଆଣିଛନ୍ତି, ତାକୁ ସମ୍ପୂର୍ଣ୍ଣ ରୂପେ ବଦଳାଇ ଦେଇ ନିଜସ୍ୱ କରି ନେଇଛନ୍ତି ।

(୩) ଶ୍ରୀମଦ୍ ଭଗବତ ଗୀତା । ଏ ଗ୍ରନ୍ଥର ଗ୍ରୁପ୍ତ ସାରଳା ମହାଭାରତରେ ପଡ଼ିଛି । ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ପ୍ରଦର୍ଶନ ଗୀତାର ଗୋଟିଏ ସୁବିଦିତ ବିଷୟ । ଏହା ଭିନ୍ନ ଆକାରରେ ସାରଳା ଦାସଙ୍କ କର୍ଣ୍ଣପର୍ବରେ ସ୍ଥାନ ପାଇଛି—

ଦେଖ ଦେଖ କହି କୃଷ୍ଣ ବିସ୍ତାରିଲେ ପାଟି
ସପ୍ତ ବ୍ରହ୍ମାଣ୍ଡ ରହିଛି ଦେଖିଲେ କିରୀଟି ।

କାହିଁ ନଦୀ କାହିଁ ଗିରି କାହିଁ ବନ ଘୋର
ଏ ସକଳ ଦେଖି ପାର୍ଥ ହୋଇଲେ କାତର ।
ହିମାଦ୍ରି ର ସପ୍ତଶୃଙ୍ଗ ମେରୁ ଯେ ମନ୍ଦର
ଦେଖି ପାର୍ଥ ବିସ୍ମରନ୍ତି ରଥ କେତେ ଦୂର ।
ପୁଣି ଦେଖିଲେ ଅର୍ଜୁନ ସପ୍ତଦ୍ଵୀପା ମହୀ
ସାତସମୁଦ୍ର ଘେରିଛି ସାତଥର ହୋଇ ।
କାହିଁ ରାମାୟଣ ଯୁଦ୍ଧ ହୁଏ ଭୟଙ୍କର
ରାମଙ୍କ ସଙ୍ଗେ ରାବଣ କରୁଛି ସମର ।
କାହିଁ ଦୁର୍ଗା ସହିତରେ ମହିଷ କୌଣପ
ସମର କରଇ ସୈନ୍ୟ ଘେନଣ ଅମାପ ।
କାହିଁ ଭାରତ ସମର ଅର୍ଜୁନ ଦେଖନ୍ତି
କେତେ କେତେ ମହାରଥୀ ମରି ପଡ଼ିଛନ୍ତି ।
କାହିଁ ଦଶ ଅବତାର ମୂର୍ତ୍ତି ନାରାୟଣ
କୃଷ୍ଣଙ୍କ ଗର୍ଭେ ରହିଛି ସକଳ ପୂରଣ ।
ଏ ସକଳ ଦେଖି ପାର୍ଥ ରଥରୁ ଓହ୍ଲାଇ
ଶ୍ରୀକୃଷ୍ଣଙ୍କ ପଦତଳେ ପଡ଼ିଲେ କିଯାଇ । କର୍ଣ୍ଣ, ପୃ. ୨୧

(୪) ବାଣଙ୍କ କାବ୍ୟାବଳୀ । ସଂସ୍କୃତରେ ଗୋଟିଏ କଥା ଅଛି— "ବାଣୋଚ୍ଛିଷ୍ଟମିଦଂ ଜଗତ୍" । ବାଣଙ୍କ ପରେ ଯେଉଁମାନେ କାବ୍ୟ ଲେଖିଥିଲେ, ସେମାନଙ୍କ ଲେଖାକୁ ବାଣଙ୍କ କାବ୍ୟାବଳୀ ବହୁଭାବରେ ପ୍ରଭାବିତ କରିଥିଲା । ସାରଳାଦାସ ବାଣଙ୍କ ଗ୍ରନ୍ଥାବଳୀରୁ କେତେକ ଅଂଶ ନିଶ୍ଚୟ ପଢ଼ିଥିଲେ ବା ଶୁଣିଥିଲେ । ବାଣଙ୍କ ହର୍ଷଚରିତରେ ବର୍ଣ୍ଣିତ ଅଛି ଯେ ଗୌଡ଼ଦେଶର (ବଙ୍ଗଦେଶର) ରାଜା ଶଶାଙ୍କ ହର୍ଷବର୍ଦ୍ଧନଙ୍କ ଜ୍ୟେଷ୍ଠଭ୍ରାତା ରାଜ୍ୟବର୍ଦ୍ଧନଙ୍କୁ ହତ୍ୟା କରିଥିଲେ । ଏଣୁ ବାଣ ଶଶାଙ୍କଙ୍କୁ "ଗୌଡ଼ଭୁଜଙ୍ଗ" ବୋଲି ବର୍ଣ୍ଣନା କରିଛନ୍ତି । ସାରଳା ମହାଭାରତର ଜତୁଗୃହ ନିର୍ମାତା ଓ ଦାହକ ପୁରଞ୍ଜନ ଥିଲେ ଗଙ୍ଗାସାଗର ନିକଟବର୍ତ୍ତୀ ଗଙ୍ଗାକୂଳର ଜ୍ଞାନପୁରନିବାସୀ ଜଣେ ଶାସନୀ ବ୍ରାହ୍ମଣ । ଏଣୁ ସେ ଶଶାଙ୍କଙ୍କ ପରି ଦୁଷ୍କୃତକାରୀ ଜଣେ ଗୌଡ଼ୀୟ ଥିଲେ । ସାରଳାଦାସ ପୁରଞ୍ଜନଙ୍କୁ "ଗଉଡ଼ିଆ ଗୋଖର" ବୋଲି ବର୍ଣ୍ଣନା କରିଛନ୍ତି—

ସହଦେବ ବୋଲେ ଦେବ ଉତ୍ତର କୋଶଳେ
ଜ୍ଞାନପୁର ବୋଲି ଗ୍ରାମ ଗଙ୍ଗାନଦୀ କୂଳେ ।

ନବସହସ୍ର ନଉଶ ଷାଠିଏ ବସତ
ସମସ୍ତ ଜନେ କୁଜ୍ଜନୀ ମନୁଷ୍ୟ ନାଶନ୍ତ ।
ତହିଁର ମହାଜନ ଏ ଅଟଇ ଶାସନୀ
ପାପପ୍ରକୃତ ଏହାର ଅଟଇ କୁଜ୍ଜନୀ ।
ଗଉଡ଼ିଆ ଗୋଖର ଏ ଅଟେ ମନ୍ଦନଷ୍ଟ
ଭିଆଇଲା ଜଉ ସଜାଳସ ଛଣପଟ ।
ଭୀମସେନ ଠାକୁରଙ୍କୁ ଦେଲା ବଷଲଡୁ ।
ଆମ୍ଭଙ୍କୁ ଏ ବଷ ଦେବ ପାକ କରୁ କରୁ । ଆଦ୍ୟ, ପୃ ୧୪୮

ଏଠାରେ ବାଣଙ୍କ ଅନୁକୃତରେ ତାଙ୍କ "ଗୌଡ଼ଭୁଜଙ୍ଗ"କୁ ଓଡ଼ିଆ ଅନୁବାଦ କରି ସାରଳାଦାସ ପୁରଞ୍ଜନଙ୍କୁ "ଗଉଡ଼ିଆ ଗୋଖର" ବୋଲି କହିଛନ୍ତି । ଏହାଛଡ଼ା ଭ୍ରାତୃହନ୍ତା ଶଶାଙ୍କଙ୍କୁ ବଧ କରିବା ପାଇଁ ହର୍ଷବର୍ଦ୍ଧନ ହର୍ଷଚରିତରେ ଯେଉଁ ପ୍ରତିଜ୍ଞାମାନ କରିଛନ୍ତି ଓ ପୁତ୍ରହନ୍ତା ଜୟଦ୍ରଥଙ୍କୁ ବଧ କରିବା ପାଇଁ ଅର୍ଜ୍ଜୁନ ସାରଳାମହାଭାରତର ଦ୍ରୋଣପର୍ବରେ ଯେଉଁ ପ୍ରତିଜ୍ଞାମାନ କରିଛନ୍ତି, ସେଗୁଡ଼ିକ ମଧ୍ୟରେ କେତେକାଂଶରେ ମେଳ ରହିଛି । ମନେହୁଏ ଯେ ସାରଳାଦାସ ଅର୍ଜ୍ଜୁନଙ୍କ ପ୍ରତିଜ୍ଞାମାନ ଲେଖିବାବେଳେ ହର୍ଷଚରିତ ଦ୍ୱାରା ପ୍ରଭାବିତ ହୋଇଥିଲେ ।

(୫) ଶ୍ରୀମଦ୍ ଭାଗବତ ପୁରାଣ । ସାରଳାଦାସ ଏ ଗ୍ରନ୍ଥକୁ ପଢ଼ିଥିବାର ବା ଶୁଣିଥିବାର ନିଶ୍ଚିତ ପ୍ରମାଣମାନ ତାଙ୍କ ମହାଭାରତରେ ରହିଛି । ଏଠାରେ ସ୍ମରଣ ରଖିବା ଉଚିତ ଯେ, ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ସାରଳାଦାସଙ୍କ ଅନ୍ତତଃ ପଚାଶ ବର୍ଷ ପରେ ରଚିତ ହୋଇଥିଲା । ଏଣୁ ସାରଳା ମହାଭାରତର ଆଶ୍ରମିକପର୍ବରେ ଯଦୁବଂଶ ଧ୍ୱଂସର ଯେଉଁ ବିବରଣ ଅଛି, ସାରଳାଦାସ ତାହା ସଂସ୍କୃତ ଭାଗବତ ପୁରାଣରୁ ହିଁ ସଂଗ୍ରହ କରିଥିଲେ । ଉଭୟ ଗ୍ରନ୍ଥରେ ଯଦୁବଂଶ ଧ୍ୱଂସ ସମ୍ବନ୍ଧରେ ଯାହା ଅଛି, ତାହା ଅନେକାଂଶରେ ମେଳ ଖାଇଯାଏ ଓ କୌଣସି କୌଣସି ସ୍ଥଳରେ ସାରଳାଦାସଙ୍କ ଲେଖା ଅନୁବାଦ ପରି ଜଣାଯାଏ । ସଂସ୍କୃତରେ ଅଛି—"ଜନୟିଷ୍ୟତି ବୋ ମନ୍ଦା ମୁଷଲଂ କୁଳନାଶନମ୍" । ସାରଳା ଦାସ ଏହାକୁ ଅନୁବାଦ କଲାପରି ଲେଖିଛନ୍ତି—

ବୋଇଲେ ଏ ନାରୀ ଯାହା ପ୍ରସବ କରିବ
ହରି ସହ ଯଦୁବଂଶ ତହିଁ ନାଶ ଯିବ । ଆଶ୍ରମିକ, ପୃ ୩୧

ଅବଶ୍ୟ ଏହା ପୂର୍ବରୁ କବି ଲେଖିଛନ୍ତି ଯେ, ଯାଦବ ବାଳକମାନେ ଶାମ୍ବର ପେଟରେ ଗୋଟାଏ ମୁଷଳ ବାନ୍ଧିଥିଲେ ।

(୬) ଭାରତ ସାବିତ୍ରୀ । ଏହି ସଂସ୍କୃତ ଗ୍ରନ୍ଥଟିର ଭାଷା ଅତ୍ୟନ୍ତ ସରଳ ହୋଇଥିବାରୁ ଏହା ଘରେ ଘରେ ପଠିତ ହୁଏ । ସାରଳା ଦାସ ଏହାକୁ ପଢ଼ିଥିବାର ନିଶ୍ଚିତ ପ୍ରମାଣ ତାଙ୍କ ମହାଭାରତର ଉଦ୍‌ଯୋଗ ପର୍ବରେ ଅଛି । ବିଦୁର କୃଷ୍ଣଙ୍କୁ ବର ମାଗୁଛନ୍ତି—

ନିଶ୍ଚୟ ସଂକଳ୍ପ ଯେବେ ବର ମୋତେ ଦେବ
ପୁତ୍ରପୌତ୍ରାଦିରେ ପୂର୍ଣ୍ଣ ମୋର ପୁର ହେବ ।
ହେ ପ୍ରଭୁ ଯଦ୍ୟପି ମୋତେ ହୋଇଲ ପ୍ରସନ୍ନ
ମୋର ପୁରେ ଆସୁଥିବେ ନିତ୍ୟ ବନ୍ଧୁ ଜନ ।
ମନ୍ଦିର ଗହଳ ହେବ ଦ୍ୱିଜ ଆଗମନେ
ପୂର୍ଣ୍ଣ ହୋଇଥିବ ଗୃହ ରନ୍ଧନ ଭୋଜନେ । ଉଦ୍‌ଯୋଗ, ପୃ ୩୪

ଭାରତ ସାବିତ୍ରୀରେ ଅଛି—

ଆସନେ ବିପ୍ରସଙ୍କୀର୍ଣ୍ଣଂ ବନ୍ଧୁ ସଙ୍କୀର୍ଣ୍ଣ ମନ୍ଦିରମ୍ ।
ଶୟନେ ସୁତ-ସଙ୍କୀର୍ଣ୍ଣଂ ଦେହି ମେ ମଧୁସୂଦନ ॥

ଭାରତ ସାବିତ୍ରୀରେ ଦୁର୍ଯୋଧନ ଶ୍ରୀକୃଷ୍ଣଙ୍କଠାରେ ପ୍ରତିଜ୍ଞା କରିଛନ୍ତି ଯେ, ସେ ପାଣ୍ଡବମାନଙ୍କୁ ସୂଚ୍ୟଗ୍ର ଭୂମି ମଧ୍ୟ ଦେବେ ନାହିଁ—

ସୂଚ୍ୟଗ୍ରେଣ ସୁତୀକ୍ଷ୍ଣେଣ ଯାବତ୍ ଛିଦ୍ୟତି ମେଦିନୀ ।
ତାବତ୍ ଭୂମି ନ ଦାତବ୍ୟା ବିନା ଯୁଦ୍ଧେନ କେଶବ ॥
ସାରଳା ଦାସ ଏହାକୁ ଅନୁବାଦ କରି ଲେଖିଛନ୍ତି—
ମୋହର ପ୍ରତିଜ୍ଞା ଏବେ ଶୁଣ ନାରାୟଣ
ବିନା ଯୁଦ୍ଧେ ନ ଦେବି ମୁଁ ଭୂମି ସୂଚ୍ୟଗ୍ରେଣ । ଉଦ୍‌ଯୋଗ, ପୃ ୬୮

(୭) ସପ୍ତସତୀ ଚଣ୍ଡୀ । କବି ଏ ଗ୍ରନ୍ଥ ନିଶ୍ଚୟ ଶୁଣିଥିଲେ ବା ପଢ଼ିଥିଲେ । ସେ ଏ ଗ୍ରନ୍ଥରୁ କପରି ପଦଟିଏ ଯେନି ଅଛିନ୍ତି, ତାହା ଦେଖନ୍ତୁ—

ଜୟ ଜୟ ମାହେଶ୍ୱରୀ ପ୍ରସନ୍ନ ବଦନ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନମୋ ନାରାୟଣୀ । ଦ୍ରୋଣ ପୃ ୧୦୧

(୮) ଗୀତଗୋବିନ୍ଦ । ସାରଳା ମହାଭାରତରେ ଗୀତଗୋବିନ୍ଦର ଯେଉଁ ପ୍ରଭାବ ପଡ଼ିଛି, ଝଙ୍କାରର ୧୯୬୦ ଜାନୁୟାରୀ ସଂଖ୍ୟାରେ "ଓଡ଼ିଆ ସାହିତ୍ୟରେ

ଗୀତଗୋବିନ୍ଦର ପ୍ରଭାବ” ଶୀର୍ଷକ ପ୍ରବନ୍ଧରେ ଆମ୍ଭେମାନେ ତାହାର ଦୀର୍ଘ ଆଲୋଚନା କରିଥିବାରୁ ଏଠାରେ ପୁନରାବୃତ୍ତି ଅନାବଶ୍ୟକ ମନେ ହେଉଛି । ସାରଳା ଦାସ ଗୀତଗୋବିନ୍ଦର ପଦଲାଳିତ୍ୟରେ ମୁଗ୍ଧ ହୋଇଥିଲେ କିନ୍ତୁ ଏ ଗ୍ରନ୍ଥରେ ଥିବା ସହଜିଆ ଧର୍ମଧାରାକୁ ସେ ଗ୍ରହଣ କରି ନ ଥିଲେ । ଆଦ୍ୟ ପର୍ବରେ ଥିବା ଖଣ୍ଡିକାରର ଜନ୍ମ ଓ ଶ୍ରୀହରିର ବାଲ୍ୟଲୀଳା-ଶୀର୍ଷକ ଆଖ୍ୟାୟିକାମାନଙ୍କରେ ସେ ଗୀତଗୋବିନ୍ଦର ସହଜିଆ ଧର୍ମକୁ ତୀବ୍ର ଆକ୍ରମଣ କରିଛନ୍ତି । କବି ଗୀତଗୋବିନ୍ଦର ଭାଷାରେ କିପରି ପ୍ରଭାବିତ ହୋଇଛନ୍ତି, ତାହାର ଗୋଟିଏ ଉଦାହରଣ ଦେଖନ୍ତୁ—

ଅଭିନବ ସୁନ୍ଦର ସେ ଜଳଧର ମୂର୍ତ୍ତି
ଅଜପାସାଧନ ନାଥ କଲ୍ପାନ୍ତରେ ସ୍ଥିତି । ସ୍ୱର୍ଗ, ପୃ ୧୧୭

ଗୀତଗୋବିନ୍ଦର “ଅଭିନବ ଜଳଧର-ସୁନ୍ଦର ଧୃତମନ୍ଦର” ଇତ୍ୟାଦି ପଦ ସଙ୍କଳନ ବିଦିତ ।

(୯) ଏକାମ୍ର ପୁରାଣ । ସାରଳା ଦାସ ଏକାମ୍ରପୁରାଣର ଏକାଧିକ ଆଖ୍ୟାୟିକାକୁ ଘେନି ଆସି ତାଙ୍କ ମହାଭାରତରେ ସ୍ଥାନ ଦେଇଛନ୍ତି । ମଧ୍ୟପର୍ବରେ (ପୃ ୨୪୮-୨୫୧) ଥିବା କୁନ୍ତୀଗାନ୍ଧାରୀ ବିବାଦ ନାମକ ଉପାଖ୍ୟାନ ଏହିପରି ଭାବରେ ସୃଷ୍ଟି ହୋଇଛି । ଏକାମ୍ରପୁରାଣର ଅଷ୍ଟଚତ୍ୱାରିଂଶ ଅଧ୍ୟାୟରେ (ରାଧାରମଣ ପ୍ରେସ, କଟକ, ପୃ ୩୬୬-୩୭୩) ବର୍ଣ୍ଣିତ ଅଛି ଯେ ଗବଳପୁତ୍ର ଗୋକର୍ଣ୍ଣ ପ୍ରତିଦିନ ସକାଳ-ବେଳା ଏକାମ୍ରକୁ ଆସି ଲିଙ୍ଗରାଜଙ୍କ ଅଳ୍ପ ଦୂରରେ ଥିବା ଗୋଟିଏ ଶିବଲିଙ୍ଗକୁ ପୁଷ୍ପ-ରତ୍ନାଦିରେ ପୂଜା କରି ତାହାର ରାଜ୍ୟ ପ୍ରାଗ୍‌ଜ୍ୟୋତିଷପୁରକୁ (ଆସାମକୁ) ଫେରିଯାଉଥିଲା । ତା'ପରେ ଦ୍ରୁମିଳ ପୁତ୍ର ସୁଷେଣ ପ୍ରତିଦିନ ଉପରବେଳା ଏକାମ୍ରକୁ ଆସି ଆଗ ପୂଜା ସାମଗ୍ରୀକୁ ଫିଙ୍ଗିଦେଇ ନିଜ ସାମଗ୍ରୀରେ ସେହି ଲିଙ୍ଗକୁ ପୂଜା କରି ତାହାର ବାସସ୍ଥାନ ବିନ୍ଧ୍ୟପର୍ବତକୁ ଫେରିଯାଉଥିଲା । ଦିନେ ଭେଟାଭେଟି ହେବାପରେ ଉଭୟ ଅସୁରଙ୍କ ମଧ୍ୟରେ ଘୋର ଯୁଦ୍ଧ ଲାଗିଗଲା ଓ ଏହି ଯୁଦ୍ଧରେ ଉଭୟେ ପ୍ରାଣତ୍ୟାଗ କଲେ । ଗୋକର୍ଣ୍ଣ ପ୍ରଥମେ ଏହି ଲିଙ୍ଗକୁ ପୂଜା କରିଥିବାରୁ ଏହାର ନାମ ଗୋକର୍ଣ୍ଣେଶ୍ୱର ହେଲା ।

କୁନ୍ତୀଗାନ୍ଧାରୀ ବିବାଦ ଉପାଖ୍ୟାନରେ ମଧ୍ୟ ଠିକ୍ ଏହିପରି ଗଳ୍ପଟିଏ ଅଛି । କୁନ୍ତୀ ଗଙ୍ଗାକୂଳରେ ବିରଜେଶ୍ୱର ଲିଙ୍ଗକୁ ରାତି ଥାଉଁ ଥାଉଁ ପ୍ରତିଦିନ ପୂଜାକରି ଜଇନ୍ତାକୁ ଫେରିଯାଉଥିଲେ । ତା'ପରେ ଗାନ୍ଧାରୀ ସୂର୍ଯ୍ୟୋଦୟ ପରେ ପୂର୍ବ ପୂଜା ସାମଗ୍ରୀକୁ ଫିଙ୍ଗି ଦେଇ ସେହି ଲିଙ୍ଗକୁ ନିଜ ସାମଗ୍ରୀରେ ପୂଜା କରିବା ପରେ ହସ୍ତିନାକୁ ଫେରି ଯାଉଥିଲେ । ଦିନେ ଭେଟାଭେଟି ହେବାରୁ ଉଭୟଙ୍କ ମଧ୍ୟରେ

ଘୋର କଳହ ହେଲା । ସ୍ୱୟଂ ଶିବ ଆବର୍ଭୂତ ହୋଇ ଏହି କଳି ଭାଙ୍ଗି ଦେବାକୁ ଯାଇ ଲକ୍ଷେ ସ୍ୱର୍ଣ୍ଣଚମ୍ପା ବରାଦ କଲେ । କୁନ୍ତୀ ବହୁସଂଖ୍ୟକ ସ୍ୱର୍ଣ୍ଣଚମ୍ପା ଦେଇ-ପାରଲେ; ମାତ୍ର ଗାନ୍ଧାରୀ ତାହା ଦେଇପାରଲେ ନାହିଁ । କୁନ୍ତୀ ଏହି ଲିଙ୍ଗକୁ ପ୍ରଥମେ ପୂଜା କରିଥିବାରୁ ଏହାର ନାମ କୁନ୍ତୀଶ୍ୱର ହେଲା ।

ଏହାଛଡ଼ା ଏକାମ୍ର ପୁରାଣର ପଞ୍ଚବିଂଶ ଓ ଷଡ୍‌ବିଂଶ ଅଧ୍ୟାୟରେ କାର୍ତ୍ତି-ବାସବଧର ଯେଉଁ ଦୀର୍ଘ ଉପାଖ୍ୟାନ ଅଛି, ସାରଳା ଦାସ ତାହାର ଅବଲମ୍ବନରେ ତାଙ୍କ ବନପର୍ବର କାର୍ତ୍ତିବାସବଧ ଚରିତ (ପୃ. ୧୯୯-୨୦୪) ଲେଖିଯାଇଛନ୍ତି । ଉଭୟ ଗ୍ରନ୍ଥର ମୂଳଗଳ୍ପ ଏକ, ମାତ୍ର କଳ୍ପନାପ୍ରିୟ ସାରଳା ଦାସ ଏ ଗଳ୍ପରେ ତାଙ୍କର କେତେକ ନିଜସ୍ୱ ମଧ୍ୟ ମିଶାଇ ଦେଇଛନ୍ତି । ବନପର୍ବରେ ଥିବା "ଚନ୍ଦ୍ରଭାଗା ତୀର୍ଥରେ ଶାମ୍ବଙ୍କର କୁଷ୍ଠବ୍ୟାଧି ମୋଚନ" ଆଖ୍ୟାୟିକାଟି ମଧ୍ୟ କପିଳ ସଂହିତାରୁ ସଂଗୃହୀତ ହୋଇଛି ।

ଏସବୁ ପ୍ରମାଣରୁ ନିର୍ଦ୍ଦିଷ୍ଟ ଭାବରେ ଜଣାଯାଏ ଯେ, ସାରଳା ଦାସ ବହୁ ସଂସ୍କୃତଗ୍ରନ୍ଥ ଅଧ୍ୟୟନ ଓ ଶ୍ରବଣ କରିଥିଲେ । ତାଙ୍କ ସମୟରେ ଯେଉ ନୀତିଶ୍ଳୋକମାନ ପ୍ରଚଳିତ ଥିଲା, ସେ ସମସ୍ତ ମଧ୍ୟ ତାଙ୍କ କଣ୍ଠସ୍ଥ ଥିବାର ଯେଉଁ ବହୁ ପ୍ରମାଣ ତାଙ୍କ ଗ୍ରନ୍ଥରେ ରହିଛି, ସେଥିମଧ୍ୟରୁ କେତୋଟିର ଉଦାହରଣ ନିମ୍ନରେ ଦିଆଗଲା ।

ଅହି ନକୁଳ ନୃପତି ବ୍ୟାଘ୍ର କଣ୍ଟିବର
ଶ୍ୱାନ ମୂର୍ଖ ଋକ୍ଷ ସିଂହ ମର୍କଟ ଆବର ।
ମହାଯୋଗୀ ମହାଦେବ ଖଳଙ୍କର ଚଣ୍ଡ
ଏହାଙ୍କୁ ଗୃହିଲେ ନଷ୍ଟେ ଉପୁଜେ ବିଖଣ୍ଡ । ଆଦ୍ୟ, ଶିବପୁରରେ ଚଣ୍ଡାଳ
ବଧ, ପୃଃ ୨୨୩

ଦୁଷ୍ଟପୁରୁଷ ଆବର ଭ୍ରଷ୍ଟା ନଷ୍ଟା ଭାର୍ଯ୍ୟା
ଛେଦକାରୀ ପିତା ଭେଦକାରୀ ମିତ୍ର ଦ୍ୱିଜା ।
କୁସ୍ଥାନ କୁଭୂମି ଆଉ ଅସୁରଙ୍କ ତୀର୍ଥ
ଏମାନଙ୍କୁ ଉପେକ୍ଷନ୍ତି ଧାର୍ମିକ ପଣ୍ଡିତ । ଆଦ୍ୟ, ବକାସୁର ବଧ, ପୃଃ ୨୩୩

ବିବାଦରେ ରାଜଦ୍ୱାରେ ଆବର ଶ୍ମଶାନେ
ଏତେ ସ୍ଥାନରେ ପରୀକ୍ଷା ହୋନ୍ତି ବନ୍ଧୁମାନେ । ଉଦ୍‌ଯୋଗ, ପୃଃ ୮୫

ଏସବୁ ନୀତିବାକ୍ୟର ଅନୁରୂପ ନୀତିଶ୍ଳୋକମାନ ରହିଛି, ମାତ୍ର ସାରଳା ଦାସ ତାଙ୍କ ସୁବିଧା ଅନୁସାରେ ସେଗୁଡ଼ିକୁ କେତେବେଳେ ବିସ୍ତୃତ ଓ କେତେବେଳେ

ଖଣ୍ଡିତ କରିଛନ୍ତି । କବିଙ୍କ ସମୟରେ ପଞ୍ଚତନ୍ତ୍ରର ଯେଉଁ ଗଳ୍ପମାନ ପ୍ରଚଳିତ ଥିଲା, ସେଗୁଡ଼ିକ ତାଙ୍କୁ ସୁବିଦିତ ଥିଲା । ଉଦ୍‌ଯୋଗ ପର୍ବରେ ତାଙ୍କ ବର୍ଣ୍ଣିତ ତୁଳସୀବଣ ବାଘ ଓ ତୁଳାମୁହାଁକାଙ୍କର ଗଳ୍ପମାନ ପଞ୍ଚତନ୍ତ୍ରର କଙ୍କଣଲୋଭୀ ପଥିକ ଓ ବକକୁଳୀରଙ୍କ ଗଳ୍ପମାନଙ୍କର ରୂପାନ୍ତର ମାତ୍ର । ସାରଳା ଦାସ ସ୍ୱାଧୀନତା ପ୍ରିୟ ଓ ରୂପାନ୍ତର ପ୍ରିୟ ଥିଲେ । ସେ ଯେଉଁଠାରୁ ଯାହା ଆଣିଛନ୍ତି, ସେଥିରେ ତାଙ୍କ ନିଜସ୍ୱରୁ କିଛି ମିଶାଇ ଦେଇଛନ୍ତି ।

ବହୁବିଧ ସଂସ୍କୃତଗ୍ରନ୍ଥମାନଙ୍କୁ ଶ୍ରବଣ ଓ ଅଧ୍ୟୟନ କରିବା ପରେ ସାରଳା ଦାସ ଏହି ଗ୍ରନ୍ଥମାନଙ୍କରୁ ହିଁ ଆଦର୍ଶ ପାଇ ଓଡ଼ିଆରେ ମହାଭାରତ ଲେଖିଥିଲେ । ତାଙ୍କ ସମୟ ପୂର୍ବରୁ ଲିଖିତ କୌଣସି ଓଡ଼ିଆ ସାହିତ୍ୟରୁ ସେ ପ୍ରେରଣା ବା ଆଦର୍ଶ ପାଇଥିବାର ପ୍ରମାଣ ତାଙ୍କ ଗ୍ରନ୍ଥମାନଙ୍କରୁ ମିଳୁନାହିଁ । ଅତି ନିକଟରେ ଡକ୍ଟର ବେଣୀମାଧବ ପାଢ଼ୀ ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ଯେ, ବିଚିତ୍ର ରାମାୟଣର କବି ସିଦ୍ଧେଶ୍ୱର ଦାସ ଓ ବିଲଙ୍କା ରାମାୟଣର କବି ସିଦ୍ଧେଶ୍ୱର ଦାସ ଏକ ଓ ଅଭିନ୍ନ ବ୍ୟକ୍ତି ନୁହନ୍ତି (ଝଙ୍କାର ଫେବୃୟାରି, ୧୯୭୧, ପୃଃ ୯୯୭-୧୦୦୨) । ତାଙ୍କ ମତରେ ବିଚିତ୍ର ରାମାୟଣର କବି ସାରଳା ଦାସଙ୍କ ଦୁଇଶତବର୍ଷ ପୂର୍ବେ ଜନ୍ମଗ୍ରହଣ କରିଥିଲେ ଓ ଏହି ବିଚିତ୍ର ରାମାୟଣରୁ ଆଦର୍ଶ ପାଇ ସାରଳା ଦାସ ତାଙ୍କ ଗ୍ରନ୍ଥମାନ ଲେଖିଯାଇଛନ୍ତି । ବିଷୟଟି ଯେତେ ଗୁରୁତ୍ୱପୂର୍ଣ୍ଣ, ତାହାର ପ୍ରମାଣ ଓ ସମାଧାନ ମଧ୍ୟ ସେତେ ଗୁରୁତ୍ୱପୂର୍ଣ୍ଣ ହେବାର କଥା । ପ୍ରକାଣ୍ଡ ସୌଧପାଇଁ ସୁଦୃଢ଼ ମୂଳଭିତ୍ତି ଆବଶ୍ୟକ ହୋଇଥାଏ । ଡକ୍ଟର ପାଢ଼ୀ ଲେଖିଛନ୍ତି ଯେ, ସାରଳା ଦାସ ଦ୍ୱିତୀୟ ଜନ୍ମରେ "ମହାକାଳଧ୍ୱଂସ" ହୋଇଥିଲେ ବୋଲି ତାଙ୍କ ଲିପି ମହାଭାରତରେ ଯାହା ଲେଖାଅଛି, ତାହାର ଶୁଦ୍ଧପାଠ "ମହାକୁଳ ଦାସ" ହେବ । "ମହାକାଳ ଧ୍ୱଂସ" ନାମଟିକୁ ନିରର୍ଥକ ବୋଲି ସ୍ୱୀକାର କରିଗଲେ ମଧ୍ୟ, ଏହାର ଶୁଦ୍ଧପାଠ ଯେ, "ମହାକୁଳ ଦାସ" ହେବ, ଏହାକୁ ମାନିନେବାର କାରଣ ରହୁନାହିଁ । ବିଚିତ୍ର ରାମାୟଣର କବି ତାଙ୍କ ଗ୍ରନ୍ଥରେ କୁତ୍ରାପି ନିଜକୁ ମହାକୁଳ ଦାସ ବୋଲି ପରିଚୟ ଦେଇନାହାନ୍ତି । ଏଣୁ ସାରଳା ଦାସ ତାଙ୍କୁ ମହାକୁଳ ଦାସ ବୋଲି ଲେଖିବାର କାରଣ ରହୁନାହିଁ । ମୁଁ ଯଦି ମୋର ଗ୍ରନ୍ଥରେ ସର୍ବତ୍ର ନିଜକୁ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ବୋଲି ପରିଚୟ ଦେଇଥାଏଁ, ପାଢ଼ୀ ଓ ପାଣିଗ୍ରାହୀ ଉଭୟ ବ୍ରାହ୍ମଣମାନଙ୍କ ଉପାଧି ହୋଇଥିଲେ ହେଁ ଦୁଇଶତବର୍ଷ ପରେ କେହି ମୋତେ ପାଢ଼ୀ ବୋଲି କହିବେ ନାହିଁ କିମ୍ବା ଲେଖିବେ ନାହିଁ । ରୂପବର୍ଣ୍ଣନାରେ ବିଚିତ୍ର ରାମାୟଣ ଓ ସାରଳା ମହାଭାରତରେ ସାମଞ୍ଜସ୍ୟ ରହିଥିବାର କାରଣ ସହଜରେ ଅନୁମେୟ । ଉଭୟ କବି ରୂପବର୍ଣ୍ଣନା ପାଇଁ ସଂସ୍କୃତ ଗ୍ରନ୍ଥମାନଙ୍କରୁ ଉପାଦାନମାନ ସଂଗ୍ରହ କରିଛନ୍ତି; ଏଣୁ ସ୍ଥଳେ ସ୍ଥଳେ ଉଭୟଙ୍କ ରୂପବର୍ଣ୍ଣନାରେ ସାମଞ୍ଜସ୍ୟ ରହିବା ସ୍ୱାଭାବିକ ହୋଇପଡ଼ୁଛି ।

ଡକ୍ଟର ପାଢ଼ୀ ଲେଖିଛନ୍ତି "ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଗ୍ଭର କଲେ ଏହା (ବିଚିତ୍ର ରାମାୟଣ) ସାରଳା ମହାଭାରତ ଠାରୁ ଅନ୍ୟୂନ ଦୁଇଶହ ବର୍ଷ ତଳର ରଚନା ବୋଲି ମନେହୁଏ ।" ଏହା ଏକ ଅଭିମତ ଓ ଏହା ସୁଦୃଢ଼ ପ୍ରମାଣମାନଙ୍କ ଉପରେ ପ୍ରତିଷ୍ଠିତ ହେବା ପରେ ହିଁ ତଥ୍ୟ ବା ସତ୍ୟ ବୋଲି ଗୃହୀତ ହୋଇପାରିବ । ପ୍ରମାଣ ପାଇଁ ଅନ୍ୟ ଗ୍ରନ୍ଥମାନଙ୍କ ଉପରେ ନିର୍ଭର ନ କରି ବିଚିତ୍ର ରାମାୟଣରେ ଯେଉଁ ପ୍ରାଚୀନତର ଶବ୍ଦମାନ ଓ ପ୍ରୟୋଗମାନ ରହିଛି, ଅଥଚ ସାରଳା ସାହିତ୍ୟରେ ନାହିଁ, ଡକ୍ଟର ପାଢ଼ୀ ସେପରି ଏକ ତୁଳନାତ୍ମକ ବିଶ୍ଳେଷଣ କରି ଦେଖାଇ ଦିଅନ୍ତୁ ଯେ ବିଚିତ୍ର ରାମାୟଣ ଦୁଇଶହ ବର୍ଷ ପ୍ରାଚୀନତର । ଆମ୍ଭେମାନେ ଡକ୍ଟର ପାଢ଼ୀଙ୍କ ଏପରି ତୁଳନାତ୍ମକ ବିଶ୍ଳେଷଣକୁ ଅପେକ୍ଷା କରି ରହିଲୁଁ । ଯେଉଁ ବିଷୟ ବହୁ ପ୍ରମାଣ ଉପରେ ପ୍ରତିଷ୍ଠିତ ହେବାର କଥା, ତାକୁ କେବଳ ଗୋଟିଏ ବାକ୍ୟରେ କହିଦେଲେ ଚଳିବ କିପରି ?

ଡକ୍ଟର ପାଢ଼ୀ ଏ ସମ୍ବନ୍ଧରେ ଆଉ କେତୋଟି ସମସ୍ୟାର ବିଗ୍ଭର କରି ନାହାନ୍ତି । ତାଙ୍କ ମତାନୁଯାୟୀ ଯଦି ଧରାଯାଏ ଯେ ସାରଳା ଦାସ ଓଡ଼ିଆ ବିଚିତ୍ର ରାମାୟଣରୁ ଆଦର୍ଶ ପାଇ ତାଙ୍କ ଓଡ଼ିଆ ମହାଭାରତ ଲେଖିଥିଲେ, ତେବେ ପ୍ରଶ୍ନ ଉଠେ—ବିଚିତ୍ର ରାମାୟଣର କବି କେଉଁ ଓଡ଼ିଆ ସାହିତ୍ୟରୁ ଆଦର୍ଶ ପାଇ ତାଙ୍କ ଓଡ଼ିଆ ରାମାୟଣ ଲେଖିଥିଲେ ? ଡକ୍ଟର ପାଢ଼ୀ ଏ ପ୍ରଶ୍ନର ସମାଧାନ କରି ନଥିବାରୁ ଜଣାଯାଉଛି ଯେ ସେ ବିଚିତ୍ର ରାମାୟଣର କବିଙ୍କୁ ହିଁ ଓଡ଼ିଆ ସାହିତ୍ୟର ପ୍ରଥମ ସ୍ରଷ୍ଟା ବୋଲି ଧରି ନେଇଛନ୍ତି । ତାଙ୍କ ମତରେ ଏ କବିଙ୍କ ପ୍ରତିଭା ଏପରି ସମୁଜ୍ଜ୍ୱଳ ଥିଲା ଯେ ସେ ବିନା ଆଦର୍ଶରେ ପ୍ରଥମ ଓଡ଼ିଆ ସାହିତ୍ୟ ସୃଷ୍ଟି କରିଥିଲେ ଓ ତାଙ୍କର ଠାରୁ ଆଦର୍ଶ ପାଇ ଦୁଇଶତ ବର୍ଷ ପରେ ସାରଳା ଦାସ ତାଙ୍କ ଗ୍ରନ୍ଥମାନ ଲେଖିଥିଲେ । ଏପରି ମତକୁ ଗ୍ରହଣ କଲେ ଆହୁରି କେତେକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ । ପ୍ରଥମ ସମସ୍ୟା ଏହି ଯେ ବିଚିତ୍ର ରାମାୟଣ ଅବଧି ଗବେଷଣାର ବିଷୟବସ୍ତୁ ହୋଇ ରହିଛି, ମାତ୍ର ଓଡ଼ିଶା ଦେଶ କୌଣସି କାଳରେ ତାକୁ ସମୁଜ୍ଜ୍ୱଳ ରତ୍ନ ରୂପେ ଗ୍ରହଣ କରିନାହିଁ । ସାରଳା ଦାସଙ୍କ ରଚନାବଳୀ ସମ୍ବନ୍ଧରେ ଏକଥା କୁହାଯାଇ ପାରିବ ନାହିଁ । କାରଣ ଏଗୁଡ଼ିକ ଓଡ଼ିଶାରେ ଯୁଗେ ଯୁଗେ ସମୁଜ୍ଜ୍ୱଳ ରତ୍ନ ବୋଲି ବିବେଚିତ ହୋଇ ଆସିଛି ଓ ଏହି ଆଧୁନିକ ଯୁଗରେ ମଧ୍ୟ ଏ ସାହିତ୍ୟ ପ୍ରକାଶକମାନଙ୍କୁ କୋଠାବାଡ଼ି ତୋଳିବାରେ ସାହାଯ୍ୟ କରିଛି । ଦ୍ୱିତୀୟ ସମସ୍ୟା ଏହି ଯେ ବିଚିତ୍ର ରାମାୟଣର କବି ଓ ସାରଳା ଦାସଙ୍କ ମଧ୍ୟରେ ଥିବା ଡକ୍ଟର ପାଢ଼ୀଙ୍କ କଳ୍ପିତ ଦୀର୍ଘ ଦୁଇଶତ ବର୍ଷ ମଧ୍ୟରେ ଓଡ଼ିଆ ସାହିତ୍ୟ-ସ୍ରୋତର କୌଣସି ଚିହ୍ନବର୍ତ୍ତି ମିଳେ ନାହିଁ । ଡକ୍ଟର ପାଢ଼ୀଙ୍କ ମତରେ ବିଚିତ୍ର ରାମାୟଣର କବିଙ୍କ

ସମୁଜ୍ଜ୍ୱଳ ପ୍ରତିଭା ଯଦି ସାରଳା ଦାସଙ୍କୁ ଆଦର୍ଶ ଯୋଗାଇଥିଲା; ତେବେ ତାହା ଦୀର୍ଘ ଦୁଇଶତ ବର୍ଷ ମଧ୍ୟରେ ଅନ୍ୟମାନଙ୍କୁ ଆଦର୍ଶ ଯୋଗାଇ ସାହିତ୍ୟ ସୃଷ୍ଟି ନ କଲା କିପରି ଓ କାହିଁକି ? ସାରଳା ସାହିତ୍ୟ ସମ୍ବନ୍ଧରେ ଏପରି ପ୍ରଶ୍ନ ଉଠି ନ ପାରେ, କାରଣ ସାରଳା ଦାସଙ୍କ ରଚନାବଳୀ ଓଡ଼ିଆ ସାହିତ୍ୟର ଯେଉଁ ଶାଶ୍ୱତ ନିର୍ଝର ସୃଷ୍ଟି କଲା, ତାହା ନଦୀ ରୂପେ ପ୍ରବାହିତା ହୋଇ ଆଧୁନିକ ଯୁଗରେ ଆସି ପହଞ୍ଚିଛି । ଓଡ଼ିଶାର ଦୁଃଖ-ଦୈନ୍ୟ ବେଳେ ଏହି ନଦୀ କୌଣସି କୌଣସିଠାରେ କ୍ଷୀଣ-ସ୍ରୋତା ହୋଇପଡ଼ିଥିଲେ ହେଁ କୋଣସିଠାରେ ଲୁପ୍ତ-ସ୍ରୋତା ହୋଇନାହିଁ । ସାରଳା ଦାସଙ୍କ ପରେ ପରେ ହିଁ ବିଶାଳ ପଞ୍ଚସଖା ସାହିତ୍ୟ ସୃଷ୍ଟି ହୋଇଥିଲା ।

ଏହିପରି ବହୁ ଦିଗରୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସାରଳା ଦାସ ହେଉଛନ୍ତି ଓଡ଼ିଆ ସାହିତ୍ୟର ପ୍ରଥମ-ପ୍ରତିଷ୍ଠାତା । ତାଙ୍କ ପୂର୍ବେ ଯେଉଁ ଓଡ଼ିଆ ରଚନାବଳୀ ଥିଲା, ସେସବୁ ଗୋଟିଏ ଗୋଟିଏ କ୍ଷୁଦ୍ର କ୍ଷୁଦ୍ର ପଲ୍ଲୀ ପଦ । ସାରଳା ଦାସ ସେଗୁଡ଼ିକ ଦ୍ୱାରା ପ୍ରଭାବିତ ହୋଇଥିବାର କୌଣସି ପ୍ରମାଣ ମିଳୁନାହିଁ । ବତ୍ସା ଦାସଙ୍କ କଳସା ଚଉତିଶା ଓ ମାର୍କଣ୍ଡ ଦାସଙ୍କ କେଶବ କୋଇଲି ସାରଳା ଦାସଙ୍କ ପୂର୍ବବର୍ତ୍ତୀ ଲେଖା ବୋଲି ବହୁ ପଣ୍ଡିତ କହିଯାଇଛନ୍ତି । ଆମ୍ଭେମାନେ ମଧ୍ୟ ସେମାନଙ୍କ ସିଦ୍ଧାନ୍ତ ମାନି ନେଉଛୁଁ, ମାତ୍ର ଚଉତିଶା ବା କୋଇଲିର ପ୍ରଭାବ ସାରଳା ଦାସଙ୍କ ବିଶାଳ ସାହିତ୍ୟର କୌଣସି ଅଂଶରେ ପଡ଼ିଥିବାର ପ୍ରମାଣ କେହି ଦେଖାଇ ପାରିବେ ନାହିଁ । ବତ୍ସା ଦାସଙ୍କ ସମୟ ଠାରୁ ବିଚ୍ଛନ୍ଦ ପଟ୍ଟନାୟକଙ୍କ ସମୟ ପର୍ଯ୍ୟନ୍ତ ଲେଖା ହୋଇଥିବା ସମସ୍ତ ଓଡ଼ିଆ ସାହିତ୍ୟରେ ଚଉତିଶାର ସୁସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୁଏ । ରୁଦ୍ରସୁଧାନିଧିର ରଚୟିତା ନାରାୟଣାନନ୍ଦ ଅବଧୂତ ସ୍ୱାମୀ ତାଙ୍କ ଗ୍ରନ୍ଥଟିକୁ ଗଦ୍ୟରେ ଲେଖିଥିଲେ ମଧ୍ୟ କେତେକ ସ୍ଥଳରେ କ୍ରମାନ୍ୱୟରେ କ ଖ ଗ ଘ ଇତ୍ୟାଦିକୁ ବାକ୍ୟମାନଙ୍କ ଆରମ୍ଭରେ ରଖି ଚଉତିଶା ରୀତି ଅବଲମ୍ବନ କରିଛନ୍ତି । ପଞ୍ଚସଖାଙ୍କ ମଧ୍ୟରୁ ଅଧିକାଂଶ କବି ଚଉତିଶା ଲେଖିଯାଇଛନ୍ତି । ଏମାନଙ୍କ ପରବର୍ତ୍ତୀ ରୀତିଯୁଗର କବିମାନଙ୍କ ଲେଖାରେ ମଧ୍ୟ ଚଉତିଶାର ପ୍ରଭାବ ପଡ଼ିଛି । ଏମାନେ ଚଉତିଶା ଲେଖିନାହାନ୍ତି, ମାତ୍ର ଓଡ଼ିଆ ବର୍ଣ୍ଣମାଳାର କୌଣସି କୌଣସି ଅକ୍ଷରକୁ ଆଦ୍ୟରେ ରଖି କବିତା-ଗ୍ରନ୍ଥମାନ ଲେଖିଯାଇଛନ୍ତି । ଯଥା, ରସକଲ୍ଲୋଳ ଓ ବୈଦେହୀଶ ବିଳାସ । ଏହାଛଡ଼ା ଅକ୍ଷର ନିୟମ ମାନି ସେମାନେ ଯେଉଁ ଗ୍ରନ୍ଥମାନ ଲେଖିଯାଇଛନ୍ତି, ସେଥିରେ ମଧ୍ୟ ଚଉତିଶାର ପ୍ରକାରାନ୍ତ ପ୍ରଭାବ ପଡ଼ିଛି । ବ୍ରିଟିଶ ରାଜତ୍ୱରେ କବିସୂର୍ଯ୍ୟ ବଳଦେବ ରଥ ଯେଉଁ କିଶୋର-ଚନ୍ଦ୍ରାନନ୍ଦଚମ୍ପୂ ଲେଖିଯାଇଛନ୍ତି, ତାହା ଏକ ପୂର୍ଣ୍ଣାଙ୍ଗ ଚଉତିଶା । ସନ୍ଥକବି ଭୀମ ଭୋଇ ମଧ୍ୟ ବ୍ରିଟିଶ ରାଜତ୍ୱରେ ଚଉତିଶା ଲେଖିଯାଇଛନ୍ତି । ଏ ସମସ୍ତରୁ ସୂଚିତ ହେବ ଯେ ସମଗ୍ର ଓଡ଼ିଆ ସାହିତ୍ୟରେ ଚଉତିଶାର ସୁଦୀର୍ଘ ଓ ବ୍ୟାପକ ପ୍ରଭାବ ପଡ଼ିଛି, ମାତ୍ର ସାରଳା ସାହିତ୍ୟରେ ଏହାର ପ୍ରଭାବ ଆଦୌ ନାହିଁ । ଏଣୁ ଅକାଟ୍ୟ ପ୍ରମାଣ

'ନ ଥିବା ସ୍ଥଳେ ଚଉଡଶା ସାହିତ୍ୟ ସାରଳାଦାସଙ୍କ ପୂର୍ବେ କମ୍ବା ପରେ ଜନ୍ମଗ୍ରହଣ କରିଥିଲା, ଏ'ବିଷୟରେ ସବୁଦିନେ ମତଦ୍ୱୈଧର ଅବକାଶ ରହିବ ।

ଆମ୍ଭେମାନେ ଦୀର୍ଘ ସମୟ ଧରି ସାରଳାଦାସ ଓ ସାରଳା'ସାହିତ୍ୟ ସମ୍ବନ୍ଧରେ ଲେଖି ଆସିଛୁଁ, ମାତ୍ର କୌଣସିଠାରେ ପ୍ରଶଂସାମୁଖର ହୋଇ ତାଙ୍କ ପ୍ରତି ଅତିଭକ୍ତି ପ୍ରଦର୍ଶନ କରିନାହୁଁ । ଏଠାରେ ମଧ୍ୟ ଅତିଭକ୍ତି ଦେଖାଉନାହୁଁ ; ମାତ୍ର ଯେଉଁମାନେ ନୂତନତା ମୋହରେ ଓ ଓଡ଼ିଆ ସାହିତ୍ୟର ପ୍ରାରମ୍ଭକୁ ଅତି ପ୍ରାଚୀନ ବୋଲି ପ୍ରମାଣ କରିବାର ବ୍ୟାକୁଳତାରେ ସାରଳାଦାସଙ୍କୁ ସ୍ଥାନଚ୍ୟୁତ କରୁଛନ୍ତି, କମ୍ବା ତାଙ୍କୁ ତାଙ୍କର ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ କରୁଛନ୍ତି, ସେମାନଙ୍କ ବିରୁଦ୍ଧରେ ଆମ୍ଭେମାନେ ସ୍ୱର ଉତ୍ତୋଳନ କରିଆସିଛୁଁ ଓ ଏଠାରେ ମଧ୍ୟ କରୁଛୁଁ । ଯେଉଁ ଓଡ଼ିଆଗ୍ରନ୍ଥଗୁଡ଼ିକ ଆପେ ଆପେ ଲୋପ ପାଇଥିଲା ଓ ଯେଉଁମାନଙ୍କ ଆଜିକାଲି ଗୋଟିଏ ଯୋଡ଼ିଏ ପୋଥି ଶେଷ ଶବ ପରି କାଁ ଭାଁ ମିଳୁଛି, ସେପରି ଗ୍ରନ୍ଥଗୁଡ଼ିକୁ ଓଡ଼ିଆ ସାହିତ୍ୟର ସମୁଜ୍ଜ୍ୱଳ ରତ୍ନ ବୋଲି କହିଲେ କେବଳ ଗବେଷଣାର ପ୍ରସାର ହେବ, ମାତ୍ର ସେଗୁଡ଼ିକ ପ୍ରକୃତ ରତ୍ନ ହୋଇପାରିବେ ନାହିଁ । ବହୁକ୍ଷେତ୍ରରେ ଦେଖାଯାଉଛି ଯେ ଏହି ତଥାକଥିତ ରତ୍ନଗୁଡ଼ିକ ଛାପାଖାନାରୁ ଆସି ଭଣ୍ଡାରଘରେ ପଡ଼ି ରହୁଛନ୍ତି । ଛାତ୍ରାବସ୍ଥାରେ ଥରେ ଉତ୍କଳଗୌରବ ମଧୁସୂଦନ ଦାସ ଜଣେ ବିଖ୍ୟାତ ସାହିତ୍ୟିକଙ୍କୁ କହିଥିବାର ଶୁଣିଥିଲି—'ରତ୍ନ ବୋଲି ଗେଣ୍ଡା କୋଚିଆଗୁଡ଼ାକୁ କାହିଁକି ଗୋଟାଉଛ ? ଓଡ଼ିଆ ସାହିତ୍ୟର ଯାହା ରତ୍ନ, ତାହା ଆପେ ଆପେ ଆଦୃତ ହୋଇଛି ।' ମଧୁବାବୁ ଥିଲେ ଏ ଯୁଗର ପ୍ରବୁଦ୍ଧ ମାନବ ଓ ତାଙ୍କର ପ୍ରତ୍ୟେକ ବିଷୟ ପ୍ରତି ସମ୍ୟକ ଦୃଷ୍ଟି ଥିଲା । ଉତ୍ସାହ ଆତିଶଯ୍ୟରେ ଓ ଭାବପ୍ରବଣତାର ପ୍ରେରଣାରେ ଯେଉଁ ଦେଶରେ ସମସ୍ତ ପ୍ରାଚୀନ ଗ୍ରନ୍ଥକୁ ରତ୍ନ ବୋଲି କୁହାଯାଏ, ସେଠାରେ ପ୍ରକୃତ ସାହିତ୍ୟରତ୍ନର ମୂଲ୍ୟ ଅବଧାରିତ ହୋଇପାରେ ନାହିଁ । ସେହିପରି ଯେଉଁ ଦେଶରେ ସମସ୍ତଙ୍କୁ ଗୁଣୀ କୁହା-ଯାଏ, ସେଠାରେ ପ୍ରକୃତ ଗୁଣୀ ଆଦର ପାଏନାହିଁ । ସାରଳାସାହିତ୍ୟକୁ ରତ୍ନ ବୋଲି କହିବାର ଆଜି ଆବଶ୍ୟକତା ନାହିଁ, କାରଣ ଏହା ସୃଷ୍ଟିକାଳରୁ ରତ୍ନ ବୋଲି ବିବେଚିତ ହୋଇଆସିଛି । ଯେଉଁମାନେ ଏହାକୁ ନ ପଢ଼ି ଓ ନ ବୁଝି ଏହାକୁ ନିନ୍ଦା ବା ପ୍ରଶଂସା କରନ୍ତି, ସେମାନଙ୍କ ପାଇଁ ହିଁ ଆମ୍ଭମାନଙ୍କ ଆଲୋଚନା ବେଶୀ ଭାବରେ ଉଦ୍ଦିଷ୍ଟ ।

ସାରଳାଦାସ ମୂଳ ମହାଭାରତର ଗଳ୍ପକଙ୍କାଳଟି ମାତ୍ର ଅବଲମ୍ବନ କରି ଓ ବାକି ସମସ୍ତ ଅଂଶକୁ ତାଙ୍କ ନିଜସ୍ୱରେ ପୂର୍ଣ୍ଣ କରି ପ୍ରକାଣ୍ଡ ମହାଭାରତ ଲେଖିଯାଇଛନ୍ତି । ପୂର୍ବ ପଣ୍ଡିତମାନେ ଏକଥା କହିଛନ୍ତି ଓ ଆମ୍ଭେମାନେ ମଧ୍ୟ ଏକଥା ବାରମ୍ବାର କହି-ଆସିଛୁଁ । ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ସହିତ ଆମ୍ଭେମାନେ ବହୁ ବିଷୟରେ

ଏକମତ ହୋଇ ଆସିଛୁଁ, ମାତ୍ର ସାରଳାମହାଭାରତର ବିଷୟ୍‌ବୈଷମ୍ୟ ସମ୍ବନ୍ଧରେ ସେ ଯେଉଁ କାରଣ ଦେଇଛନ୍ତି, ତାହା ଆମ୍ଭେମାନେ ଗ୍ରହଣ କରିପାରୁନାହୁଁ । ପଣ୍ଡିତ ନନ୍ଦଙ୍କ ଶ୍ରୀଭାରତ ଦର୍ପଣର ଦୁଇ-ତୃତୀୟାଂଶ ଉକ୍ତ ମହାଭାରତର ବିଷୟ-ବୈଷମ୍ୟ-ଆଲୋଚନାରେ ହିଁ ପରିବ୍ୟାପ୍ତ ହୋଇଛି । ଏଥିରେ ସେ ଯେଉଁ ପାଣ୍ଡିତ୍ୟ, ଅନୁସନ୍ଧିତ୍ସା ଓ ଧୈର୍ଯ୍ୟର ନିଦର୍ଶନ ରଖିଯାଇଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ଅତୁଳନୀୟ ହେଲେହେଁ ସେ ଏହି ଆଲୋଚନାର ସର୍ବତ୍ର ବିଷୟ-ବୈଷମ୍ୟର ଏକମାତ୍ର କାରଣ ଉପରେ ବାରମ୍ବାର ଗୁରୁତ୍ୱ ଆରୋପ କରିଛନ୍ତି । ସେ ବାରମ୍ବାର ଲେଖିଛନ୍ତି ଯେ ସାରଳାଦାସ ଅତ୍ୟନ୍ତ ଧୀମାନ୍ ଓ ଅସାଧାରଣ ସ୍ମୃତିଧର ବ୍ୟକ୍ତି ଥିଲେ ହେଁ ମୂଳ ମହାଭାରତର ବହୁ କଥା ସ୍ମୃତିକୋଷରେ ରଖି ନ ପାରି, ଶୂନ୍ୟସ୍ଥାନଗୁଡ଼ିକୁ ବହୁ ସଙ୍ଗତ, ଅସଙ୍ଗତ, କପୋଳକଳ୍ପିତ ଓ ଅବାନ୍ତର ଲେଖାରେ ପରିପୂର୍ଣ୍ଣ କରି-ଯାଇଛନ୍ତି । ଆମ୍ଭେମାନେ ଯେ ପଣ୍ଡିତ ନନ୍ଦଙ୍କ ମତର କଦର୍ଥ କରୁନାହୁଁ, ଏକଥା ତାଙ୍କ ନିଜ ଲେଖାରୁ ସ୍ପଷ୍ଟ ହେବ । ସେ ଲେଖିଛନ୍ତି—

"ଶ୍ରୀମାନ୍ ସାରଳାଦାସଙ୍କ ମହାଭାରତର ବନପର୍ବୀୟ ଚରିତ୍ରମାନଙ୍କର ଅନୁକ୍ରମ ମୌଳିକ ପରିପାଟୀ ଅପେକ୍ଷା ନିତାନ୍ତ ଭିନ୍ନ ପ୍ରକାର । ପରନ୍ତୁ ଯେଉଁ-ଗହନାରଣ୍ୟ କାନ୍ତାର ବର୍ତ୍ମବର୍ତ୍ତୀ ପଥିକ ଶନୈଃ ଶନୈଃ ପଥଭ୍ରାନ୍ତ ହେଲା ପ୍ରାୟ ସୁଚିନ୍ତନପୂର୍ବକ ସରଣିକର୍ତ୍ତବ୍ୟାବଧାରଣ ବିରହରୁ ଏ ମହାଶୟ ଏହି ପର୍ବରେ ଅନେକତ୍ର ଭ୍ରାନ୍ତଧାରଣାରେ ପଡ଼ି ଅମାର୍ଗରେ ଚାଲିଯାଇ ଇଚ୍ଛାନୁମତରେ କେତେ କଥା କହିଯାଇଛନ୍ତି (ଶ୍ରୀଭାରତ ଦର୍ପଣ, ସାଃ ଏଃ ପୃ-୭୮) ।"

ଅନ୍ୟତ୍ର—"ଏ କବି ମହୋଦୟ ପ୍ରଥମତଃ ପ୍ରଗାଢ଼ ଶୁଶ୍ରୂଷା ବଳରେ ବଳୀୟାନ୍ ହୋଇ ସାଗରୋପମ ଅତିଗହନ ମହାଭାରତର ଲେଖାରେ ସାହସପୂର୍ବକ ସର ସଚେଷ୍ଟ ହୋଇଉଠିଲେ ସତ୍ୟ, କିନ୍ତୁ ଏହାଙ୍କ ଶୁଶ୍ରୂଷାବଳାନୁପ୍ରାଣିତ ସ୍ମୃତି ସର୍ବତ୍ର ଧାରାବାହିନୀ ଓ ସୁଶୃଙ୍ଖଳା ରୂପେ ଅକ୍ଷୁର୍ଣ୍ଣା ଓ ଉର୍ଜସ୍ୱଳା ରହିପାରିନାହିଁ (ପୃ-୮୧) ।"

ସାରଳା ମହାଭାରତ ଓ ତା'ର କବି ସାରଳାଦାସଙ୍କ ପ୍ରତି ଏ ସମସ୍ତ ମନ୍ତବ୍ୟ ଆଦୌ ଯଥାର୍ଥ ଓ ସମୀଚୀନ ହୋଇନାହିଁ । ସାରଳା ମହାଭାରତର ଜନ୍ମ ସମୟର ଓ ତା' ପୂର୍ବର ଐତିହାସିକ ଓ ଭୌଗୋଳିକ ପୃଷ୍ଠଭୂମି ସମ୍ବନ୍ଧରେ ପଣ୍ଡିତ ନନ୍ଦ ସମ୍ପୂର୍ଣ୍ଣ ଅନବହିତ ଥିବାରୁ ଜଣେ ନୈଷ୍ଠିକ ସଂସ୍କୃତଜ୍ଞ ବ୍ରାହ୍ମଣ ପଣ୍ଡିତଙ୍କ ଦୃଷ୍ଟିକୋଣରୁ ହିଁ ସେ ଗ୍ରନ୍ଥର ବିଷୟ-ବୈଷମ୍ୟକୁ ବିଚାର କରିଛନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତବର୍ଗ ସଂସ୍କୃତ ମହାଭାରତକୁ ବହୁ ଭାବରେ ଅଧ୍ୟୟନ ଓ ଅନୁଶୀଳନ

କଲ ପରେ ସ୍ଥିର୍ କରଛନ୍ତି ଯେ ଏ ଗ୍ରନ୍ଥ ଭିନ ଭିନ୍ନ ଶତାବ୍ଦୀ ମଧ୍ୟରେ ବହୁ କବିଙ୍କ ଦ୍ୱାରା ରଚିତ କବିତାବଳୀର ଏକ ସଙ୍କଳନ ମାତ୍ର । ମାତ୍ର ନୈଷ୍ଠିକ ମତାନୁସାରେ ଏହା କେବଳ ତ୍ରିକାଳଦର୍ଶୀ ବ୍ୟାସମହର୍ଷିଙ୍କ ଦ୍ୱାରା ହିଁ ରଚିତ । ପଣ୍ଡିତ ପ୍ରବର ନନ୍ଦ ମହାଶୟଙ୍କ ଦ୍ୱାରା ଏହି ନୈଷ୍ଠିକ ମତ ହିଁ ତାଙ୍କ ଗ୍ରନ୍ଥର ସର୍ବତ୍ର ଗୃହୀତ ହୋଇଛି, କିନ୍ତୁ ସାରଳାଦାସ ମହାଭାରତ ସମ୍ବନ୍ଧରେ ଏକାଧିକ ଥର ଯେଉଁ ମତ ପ୍ରକାଶ କରି-ଛନ୍ତି, ତାକୁ ସେ ଲକ୍ଷ୍ୟ କରିନାହାନ୍ତି କିମ୍ବା ବିଗ୍ଭରକୁ ମଧ୍ୟ ଆଣିନାହାନ୍ତି । ସାରଳା ଦାସ ବାରମ୍ବାର ଲେଖିଛନ୍ତି ଯେ ମହାଭାରତ ଯୁଦ୍ଧ ଥର ଥର କରି ବହୁଥର ଘଟିଯାଇଛି—

ଅଗସ୍ତି ବୈବସ୍ୱତ ମନୁଙ୍କୁ କହୁଛନ୍ତି—

ସର୍ବ ଅବତାରେ ସେହି କୁରୁକ୍ଷେତ୍ର ଭୂମି<br>
ଦଗମ୍ବରୀ କାତ୍ୟାୟନୀ ଯେ ପ୍ରେତରୂପେ ଭ୍ରମି ।<br>
ମହାଭାରତ ସମର ହୁଏ ସେ ଭୂମିର<br>
ଏମନ୍ତେ ସମର ହେଲ ତେଏସ୍ତର ଥର । ସଭା, ପୃ-୨୩୨

ସିଂହମୁଖା ଶୃଗାଳ କହୁଛି—

ଏମନ୍ତେ ମହାଭାରତ ହୋଇଲ ସତୁରି<br>
ଶୁଣିଲୁ କି ଏକମନେ ଯୁଦ୍ଧ ହେଉ କରି ।<br>
ଆଉ ସତୁରି ଭାରତ ମୋତେ ହେଲା ଜ୍ଞାତ<br>
ଆଗତ ଭାରତକଥା ଶୁଣ ତୁ ସଙ୍ଗାତ । ଉଦ୍‌ଯୋଗ, ପୃ-୧୧୨

ବସୁଧା କହୁଛନ୍ତି—

ବସୁଧା ବୋଲେ ମାତା ମୁଁ ଜାଣଇ ସମସ୍ତ<br>
ମୋ ପରେ ଅନେକ ବାର ହୋଇଛି ଭାରତ ।<br>
ଚଣ୍ଡୀପୁରାଣ ପୃ-୧୧୭

ଉଲ୍ଲିଖିତ ପଦମାନଙ୍କରୁ ପ୍ରମାଣିତ ହେଉଛି ଯେ, ସାରଳାଦାସଙ୍କ ମତରେ ଥରେ ନୁହେଁ, ବହୁଥର ମହାଭାରତ ଯୁଦ୍ଧ ଘଟିଯାଇଛି ଓ ଭବିଷ୍ୟତରେ ଆହୁରି ମଧ୍ୟ ଘଟିବ । ଏଣୁ ତାଙ୍କ ମତରେ ସୁଦୂର ଅତୀତ, ନିକଟ ଅତୀତ, ଆଧୁନିକ ଓ ଅତ୍ୟା-ଧୁନିକ ଯୁଗର ସମସ୍ତ ଘଟଣା ମହାଭାରତରେ ସ୍ଥାନ ପାଇବାର ଯୋଗ୍ୟ । ସେ ଯେ ଆଦର୍ଶ ଦୃଷ୍ଟିରୁ ଖାଲି ଏପରି ମତ ପ୍ରକାଶ କରିଯାଇଛନ୍ତି, ତାହା ନୁହେଁ; ସେ ତାଙ୍କ

ଗ୍ରନ୍ଥରେ କାର୍ଯ୍ୟତଃ ତାଙ୍କ ନିଜ ସମୟର ଘଟଣାବଳୀକୁ ମଧ୍ୟ ସ୍ଥାନ ଦେଇଛନ୍ତି । ସେ କୁତ୍ରାପି କହିନାହାନ୍ତି ଯେ ସେ ବ୍ୟାସକୃତ ମହାଭାରତକୁ ଅନୁବାଦ ବା ଅନୁସରଣ କରି ଓଡ଼ିଆରେ ମହାଭାରତ ଲେଖିଛନ୍ତି । ଏଣୁ ତାଙ୍କ ଗ୍ରନ୍ଥ ମୂଳସଂସ୍କୃତ ସହିତ ମେଳ ନ ଖାଇଲେ ତାଙ୍କୁ ଅଜ୍ଞତା ଦୋଷରେ ଦୋଷୀ କରିବାର କାରଣ ନାହିଁ । ପଣ୍ଡିତ ନନ୍ଦ ନିଜେ ସ୍ୱୀକାର କରିଛନ୍ତି ଯେ ସାରଳା ଦାସଙ୍କ ସଂସ୍କୃତ ଜ୍ଞାନ ଅଳ୍ପ ନ ଥିଲା । ତାଙ୍କର ଯେତକ ସଂସ୍କୃତଜ୍ଞାନ ଥିଲା, ସେତକରେ ମଧ୍ୟ ସେ ସଂସ୍କୃତ ମହାଭାରତକୁ ଅନୁସରଣ କରି ତାଙ୍କ ଗ୍ରନ୍ଥ ଲେଖିପାରିଥାନ୍ତେ, କିମ୍ବା କାହାରି ସାହାଯ୍ୟରେ ମୂଳ ଗ୍ରନ୍ଥକୁ ଧାରାବାହିକ ଭାବରେ ଶୁଣି ବିଷୟବୈଷମ୍ୟ ଦୂର କରି ପାରିଥାନ୍ତେ । ମାତ୍ର ସାରଳାଦାସ ଥିଲେ ବିପ୍ଳବୀ କବି ଏବଂ ସ୍ୱାତନ୍ତ୍ର୍ୟ ଓ ନୂତନତ୍ୱକୁ ମୂଳଭିତ୍ତି କରି ସେ ତାଙ୍କ ପ୍ରକାଣ୍ଡ ଗ୍ରନ୍ଥ ଲେଖି ଯାଇଛନ୍ତି । ଏଥିରେ ସତ୍ୟ, ତ୍ରେତା, ଦ୍ୱାପର ଯୁଗର ଘଟଣାମାନଙ୍କ ସହିତ କଳିଯୁଗର ଅତିଅତୀତ, ନିକଟ ଅତୀତ ସମସାମୟିକ ଓ ଅତି ସମସାମୟିକ ଘଟଣାମାନ ସହାବସ୍ଥାନ କରିଛନ୍ତି । ଏ ଗ୍ରନ୍ଥର ଭାଷାରେ ମଧ୍ୟ ସଂସ୍କୃତ, ପ୍ରାକୃତ, ତତ୍ସମ, ତଦ୍‌ଭବ, ଦେଶଜ ଓ ଆଞ୍ଚଳିକ ଶବ୍ଦମାନ ସହାବସ୍ଥାନ କରିଛନ୍ତି । କାହାରି ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇନାହିଁ । ଭାରତର ପ୍ରାଚୀନ-ସାହିତ୍ୟ-ଧାରା ଏପରି ସହାବସ୍ଥାନକୁ ଅନୁମୋଦନ କରିନାହିଁ, କିମ୍ବା ଅତୀତ ବା ବର୍ତ୍ତମାନର ନୈଷ୍ଠିକ ପଣ୍ଡିତମାନେ ଏପରି ବର୍ଣ୍ଣସଙ୍କରତାର ପ୍ରଶ୍ରୟ ଦେଇ-ନାହାନ୍ତି । ସାରଳାଦାସ ହୁଏତ ଜୀବିତାବସ୍ଥାରେ ଏପରି ବୈପ୍ଳବିକ ଚିନ୍ତାଧାରା ପାଇଁ ଶରବ୍ୟ ହୋଇଥିବେ ଓ ଏଥିପାଇଁ ଭବିଷ୍ୟତରେ ଯେ ଶରବ୍ୟ ହେବେ, ଏକଥା ମଧ୍ୟ ସେ ଅନୁମାନ କରିପାରିଥିବେ । ସବସମାଲୋଚନାରୁ ତ୍ରାଣ ପାଇବା ପାଇଁ ସେ ନିଜକୁ ମହାମୂର୍ଖ ବୋଲି ପରିଚୟ ଦେଇଛନ୍ତି ଓ ସାରଳା ଦେବୀଙ୍କୁ ସବଂନ୍ଧ ରକ୍ଷା କବଚ ରୂପେ ବ୍ୟବହାର କରିଛନ୍ତି । କିନ୍ତୁ ଏହି ଜ୍ଞାନବିଜ୍ଞାନ ଯୁଗରେ ତାଙ୍କର କଥା ଅନୁସାରେ ତାଙ୍କୁ ଯଦି ଆମ୍ଭେମାନେ ମହାମୂର୍ଖ ବୋଲି ଧରିନେଉଁ, ତେବେ ସେଥିରେ ଆମ୍ଭମାନଙ୍କର ପାଣ୍ଡିତ୍ୟର ପ୍ରମାଣ ରହିବ କି ନା, ତାହାହିଁ ବିଗୁର କରିବାର କଥା ।

ଆଗରୁ ପ୍ରଦର୍ଶିତ ହୋଇଛି ଯେ ସାରଳାଦାସ ରଘୁବଂଶ ଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଛନ୍ତି । ଏହି ଗ୍ରନ୍ଥ ଓ ମୂଳରାମାୟଣ ମଧ୍ୟରେ ପ୍ରଭୂତ ବିଷୟ-ବୈଷମ୍ୟ ରହିଛି ଓ ଏହି ବିଷୟ-ବୈଷମ୍ୟ ଏତେ ବେଶୀ ଯେ ତାହା ଆଲୋଚନା କଲେ ଗୋଟିଏ ସ୍ୱତନ୍ତ୍ର ପୁସ୍ତିକ ହେବ । ଏତେ ବେଶୀ ବୈଷମ୍ୟ ସତ୍ତ୍ୱେ ରଘୁବଂଶର ରଚୟିତା କାଳିଦାସ ଶନୈଃ ଶନୈଃ ଅମାର୍ଗରେ ଗତି କରିଛନ୍ତି ବୋଲି କୌଣସି ସମାଲୋଚକ କହିନାହାନ୍ତି । ସ୍ୱାତନ୍ତ୍ର୍ୟ ହିଁ ମୌଳିକତା । ଏହି ମୌଳିକତା ରଘୁବଂଶ ଓ ସାରଳା ମହାଭାରତରେ ପୂର୍ଣ୍ଣମାତ୍ରାରେ ରହିଛି । ରଘୁବଂଶର ସ୍ୱତନ୍ତ୍ର ଅଂଶଗୁଡ଼ିକ ସମ୍ପୂର୍ଣ୍ଣରୂପେ କାଳିଦାସଙ୍କ କଳ୍ପନା-ପ୍ରସୂତ, ମାତ୍ର ସାରଳା ମହାଭାରତର ସ୍ୱତନ୍ତ୍ର ଅଂଶଗୁଡ଼ିକ

ସାରଳା ଦାସଙ୍କ କଳ୍ପନା-ପ୍ରସୂତ ହେଲେ ହେଁ ସେଗୁଡ଼ିକ ଇତିହାସ ଓ ଭୂଗୋଳ ସହିତ ଘନିଷ୍ଠ ଭାବରେ ସଂଶ୍ଲିଷ୍ଟ । ସାରଳା ଦାସ ଇତିହାସ ଓ ଭୂଗୋଳ ଅବଲମ୍ବନରେ ତାଙ୍କର ବହୁସଂଖ୍ୟକ ଆଖ୍ୟାୟିକା ଲେଖିବାବେଳେ ଯେଉଁ ଉଦାରତା ଦେଖାଇଛନ୍ତି, ତାହା ହିନ୍ଦୁ ସାହିତ୍ୟରେ ବିରଳ । ସେ ମୁସଲମାନ ଇତିହାସରୁ ବହୁ ସଂଖ୍ୟକ ଘଟନା ଓ ନାମ ଘେନିଆସି ସେଗୁଡ଼ିକୁ ରୂପାନ୍ତରିତ ଆକାରରେ ତାଙ୍କ ଗ୍ରନ୍ଥରେ ସ୍ଥାନ ଦେଇଛନ୍ତି । ଏପରି ରୂପାନ୍ତରିତ ଘଟନା ଓ ନାମର ଅନେକ ଉଦାହରଣ ଆମ୍ଭେମାନେ ପୂର୍ବ ପରିଚ୍ଛେଦମାନଙ୍କରେ ଦେଇଛୁଁ, ମାତ୍ର ତଥାପି ଆହୁରି ଅନେକ ଉଦାହରଣ ଅନାଲୋଚିତ ହୋଇ ରହିଯାଇଛି । ଏଣୁ ଏଠାରେ ଆଉ ଗୋଟିଏ ଉଦାହରଣ ଦିଆଯାଉଛି ।

ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବରେ ( ପୃ. ୬ ) ଯେଉଁ "ସୁବର୍ଣ୍ଣ ଚୁଡ଼ି ଓ କଳିଯୁଗର ବିବରଣ" ଅଛି, ତାହା ମୁସଲ୍‌ମାନ୍ ଇତିହାସର ଏକ ଘଟନାର ରୂପାନ୍ତର ମାତ୍ର । ଏ ଘଟନା ସମ୍ବନ୍ଧରେ ମୁସଲ୍‌ମାନ୍ ଐତିହାସିକ ମହମ୍ମଦ କାସିମ୍ ଫେରିସ୍ତା ଯାହା ଲେଖିଛନ୍ତି, ତାହାର ସାରାଂଶ ଏହି—

ଦିଲ୍ଲୀର ଅଧିବାସୀ ହୁସେନ୍ ନାମକ ଜଣେ ବ୍ୟକ୍ତି ଗଙ୍ଗୁ ନାମକ ଜଣେ ବ୍ରାହ୍ମଣ ଜ୍ୟୋତିର୍ବିଦଙ୍କର ମୂଲିଆ ଥିଲା । ଗଙ୍ଗୁ ଜଣେ ବିଶିଷ୍ଟ ଜ୍ୟୋତିର୍ବିଦ ଥିବାରୁ ଯୁବରାଜ ମହମ୍ମଦ ତୋଗଲକଙ୍କ ଅତ୍ୟନ୍ତ ପ୍ରିୟପାତ୍ର ଥିଲେ । ହୁସେନ୍ କାର୍ଯ୍ୟ ଓ ସ୍ୱଭାବ ଦ୍ୱାରା ତାହାର ମୁନିବଙ୍କୁ ଅତ୍ୟନ୍ତ ସନ୍ତୁଷ୍ଟ କରିଥିବାରୁ ସେ ତାକୁ ହଳେ ବଳଦ ଓ ଖଣ୍ଡେ ଜମି ନିଜ ଚାଷ କରିବାକୁ ଦେଲେ । ଦିନେ ହୁସେନ ହଳ କରୁଥିବାବେଳେ ତାହାର ଲଙ୍ଗଳ ଗୋଟାଏ ପଦାର୍ଥରେ ଲଗିଲା ଓ ସେ ତାକୁ ପରୀକ୍ଷା କଲା ପରେ ଜଣାଗଲା ଯେ ତାହା ତମ୍ବା ହାଣ୍ଡିରେ ବନ୍ଧା ହୋଇଥିବା ଗୋଟିଏ ଜଞ୍ଜିର । ତମ୍ବା ହାଣ୍ଡିଟିରେ ଅନେକଗୁଡ଼ିଏ ପ୍ରାଚୀନ ସ୍ୱର୍ଣ୍ଣମୁଦ୍ରା ଥିଲା । ହୁସେନ୍ ସ୍ୱର୍ଣ୍ଣମୁଦ୍ରାଗୁଡ଼ିକ ସହିତ ହାଣ୍ଡିଟିକୁ ସଙ୍ଗେ ସଙ୍ଗେ ନେଇ ତାହାର ମୁନିବଙ୍କୁ ସମର୍ପଣ କଲା । ଏଥିରେ ଗଙ୍ଗୁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କ ଚାକର ହୁସେନର ସାଧୁତା ସମ୍ବନ୍ଧରେ ସମସ୍ତ ଘଟନା ଯୁବରାଜ ମହମ୍ମଦ ତୋଗଲକ୍‌ଙ୍କୁ କହିବାରୁ ମହମ୍ମଦ ସେ ଘଟନାବଳୀକୁ ତାଙ୍କ ପିତା ସୁଲତାନ୍ ଗିୟାସୁଦ୍ଦିନ୍ ତୋଗଲକଙ୍କ କର୍ଣ୍ଣଗୋଚର କରାଇଥିଲେ । ଏହାପରେ ସମ୍ରାଟ ଗିୟାସୁଦ୍ଦିନ୍, ହୁସେନକୁ ଡକାଇ ଆଣି ତାଙ୍କ ସୈନ୍ୟବିଭାଗର ଶହେଜଣ ଘୋଟକାରୋହୀ ସୈନ୍ୟ ଉପରେ ତାକୁ ମାଲିକ୍ କରିଦେଇଥିଲେ । ( History of the Rise of the Mohomedan Power in India, translated from original Persian by John Briggs, Vol. II, London, 1829, pp. 284-85 )

ହୁସେନ୍ ଦିଲ୍ଲୀ ସୁଲତାନଙ୍କ ସୈନ୍ୟ ବିଭାଗର ସାମାନ୍ୟ କର୍ମଚାରୀ ପଦରୁ କ୍ରମଶଃ ଉନ୍ନୀତ ହୋଇ ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ ନିଯୁକ୍ତ ହୋଇଥିଲେ ଓ ଶେଷରେ ୧୩୪୭ ଖ୍ରୀଷ୍ଟାବ୍ଦରେ ପ୍ରକାଣ୍ଡ ସ୍ୱାଧୀନ ବାହମନି ରାଜ୍ୟର ସଂସ୍ଥାପକ ହୋଇପାରିଥିଲେ । ହୁସେନଙ୍କ ବ୍ରାହ୍ମଣ ମୁନିବ ଗଙ୍ଗୁ ଜଣେ ବିଖ୍ୟାତ ଜ୍ୟୋତିଷ ଥିବାରୁ ଗଣନା କରି କହିଥିଲେ ଯେ ହୁସେନ୍ ଦିନେ ନିଶ୍ଚୟ ରାଜା ହେବେ । ଏହି ଭବିଷ୍ୟତ ବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ସେ ହୁସେନ୍‌ଙ୍କୁ ଅନୁରୋଧ କରିଥିଲେ ଯେ ଯେ ରାଜା ହେଲେ ତାଙ୍କ ନାମକୁ ମଧ୍ୟ ନିଜ ନାମ ସହିତ ସଂଯୋଗ କରିବେ । କୃତଜ୍ଞ ହୁସେନ୍ ରାଜା ହେବା ପରେ ନିଜକୁ ହୁସେନ୍ ଗଙ୍ଗୁ ନାମରେ ଆଖ୍ୟାତ କରିଥିଲେ ଓ ନିଜ ରାଜ୍ୟର ନାମ ବାହମନି ରଖିଥିଲେ । ଆଧୁନିକ ଯୁଗର ଐତିହାସିକମାନେ ଏହି ଘଟନାର ଐତିହାସିକତା ସ୍ୱୀକାର କରିଛନ୍ତି । ( The Delhi Sultanate, ଭାରତୀୟ ବିଦ୍ୟାଭବନ, ପୃ ୨୪୮-୨୪୯ )

ଏହି ଐତିହାସିକ ଘଟଣାବଳୀ ସାରଳା ମହାଭାରତର ସ୍ୱର୍ଗାରୋହଣ ପର୍ବରେ କିପରି ରୂପାନ୍ତରିତ ଆକାରରେ ବର୍ଣ୍ଣିତ ହୋଇଛି, ତାହା ଦେଖନ୍ତୁ—

ବୈତରଣୀ କୂଳର ବେଦପୁରରେ ସୁରେଶ୍ୱର ନାମକ ଜଣେ କୃଷିଜୀବୀ ବ୍ରାହ୍ମଣଙ୍କ ତପଧି ନାମକ ଜଣେ କୃଷାଣ (ମୂଲିଆ) ଥିଲା । ଦିନେ ତପଧି କୃଷିକର୍ମ କରୁଁ କରୁଁ କୋଦାଳରେ ଅର୍କ ବୁଦାଟିଏ ତାଡ଼ି ଦେବା ପରେ ସେଥିରୁ ଗୋଟିଏ ରତ୍ନଚୁଡ଼ି ପାଇ ସଙ୍ଗେ ସଙ୍ଗେ ତାକୁ ନେଇ ତାହାର ବ୍ରାହ୍ମଣ ମୁନିବଙ୍କୁ ସମର୍ପଣ କଲା, ମାତ୍ର ବ୍ରାହ୍ମଣ ତାକୁ ଗ୍ରହଣ ନ କରି କହିଲେ ଯେ ଜମି ତାଙ୍କର ହେଲେହେଁ ଯେ ରତ୍ନଚୁଡ଼ିଟି ପାଇଛି, ସେ ହିଁ ତାହାର ପ୍ରକୃତ ଅଧିକାରୀ ହେବ । କୃଷାଣ କହିଲା ଯେ ସେ ଦିନା ମଜୁରିର ହକ୍‌ଦାର, କିନ୍ତୁ ଜମିମାଲିକ ଜମିରୁ ମିଳିଥିବା ରତ୍ନଚୁଡ଼ିର ସେ ହକ୍‌ଦାର ନୁହେଁ । ଏହିପରି ଝଗଡ଼ା କରି ଉଭୟେ ସମାଧାନ ପାଇଁ ଯୁଧିଷ୍ଠିରଙ୍କ ପାଖକୁ ଗଲେ । ଯୁଧିଷ୍ଠିର ରତ୍ନଚୁଡ଼ିଟିକୁ ଅଧା ଅଧା କରି ଭାଗ କରି ନେବାକୁ କହିଲେ, ମାତ୍ର ସ୍ୱ ସ୍ୱ ସିଦ୍ଧାନ୍ତରେ ଅଟଳ ରହି ସେମାନଙ୍କ ଭିତରୁ କେହି ଏଥିରେ ରାଜି ହେଲେନାହିଁ । ଯୁଧିଷ୍ଠିର ସେମାନଙ୍କ ନିର୍ଲୋଭତା ଦେଖି ବିସ୍ମିତ ହେଲେ ଓ ସହଦେବଙ୍କୁ ପଚାରିଲେ—"ତେବେ କଅଣ କଳିଯୁଗ ଆସିନାହିଁ ?" ସହଦେବ କହିଲେ—"ପ୍ରଭୋ, ଆପଣଙ୍କୁ ଭୋଗର ସୁବିଧା ଦେବା ପାଇଁ ବାର ବର୍ଷ ହେଲା ମୁଁ କଳିଯୁଗକୁ ବାନ୍ଧି ରଖିଛି ।" ଏହି ସମୟରେ କଳିଯୁଗକୁ ଛାଡ଼ିଦେବା ପାଇଁ ଶୂନ୍ୟବାଣୀ ହେବାରୁ ସହଦେବ ତାଙ୍କୁ ବନ୍ଧନମୁକ୍ତ କଲେ । କଳିଯୁଗ ଆସିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ ଓ କୃଷାଣର ମତିଗତି ବଦଳିଗଲା ଓ ସେମାନେ ରତ୍ନଚୁଡ଼ିକୁ ଅଧିକାର

କରିବା ପାଇଁ ଝଣାଓଝର ଲାଗି ଶେଷରେ ପଟ୍ଟକ୍ଷିତ ରାଜାଙ୍କ ପାଖରେ ପହଞ୍ଚିଲେ । ପଟ୍ଟକ୍ଷିତ କହିଲେ ଯେ, ପୃଥିବୀଟା ରାଜାଙ୍କର ହୋଇଥିବାରୁ ସେହି ପୃଥିବୀରୁ ଯେଉଁ ରତ୍ନ ମିଳିଛି, ତାହାର ପ୍ରକୃତ ଅଧିକାରୀ ହେଉଛନ୍ତି ରାଜା । ଏହା କହି ସେ ନିଜେ ସେହି ରତ୍ନଚୂଡ଼ିକୁ ନେଇଗଲେ ।

ସାରଳା ଦାସ ବାହମନ ରାଜ୍ୟ ସହିତ ସଙ୍ଘର୍ଷରେ ଲିପ୍ତଥିବା ଗଜପତି-ବାହିନୀରେ ଯେତେବେଳେ ସୈନିକରୂପେ କାର୍ଯ୍ୟ କରୁଥିଲେ, ସେତେବେଳେ ସେ ବାହମନ ରାଜ୍ୟର ସ୍ଥାପୟିତା ହୁସେନ୍‌ଗଙ୍ଗୁଙ୍କ ଆଦ୍ୟଜୀବନ ସମ୍ବନ୍ଧରେ ଏହି କିମ୍ବଦନ୍ତୀମୂଳକ ଇତିହାସ ହୁଏତ ଶୁଣିଥିଲେ । ତାହା ହିଁ ସେ ପରିବର୍ତ୍ତିତ ଆକାରରେ ସ୍ୱର୍ଗାରୋହଣ ପର୍ବରେ ଲେଖିଯାଇଛନ୍ତି । ସ୍ୱର୍ଗାରୋହଣ ପର୍ବର ଏପରି ଆଖ୍ୟାୟିକାଟି ଐତିହାସିକ ପଣ୍ଡିତମାନଙ୍କ ମଧ୍ୟରେ ଥିବା ବିବାଦକୁ ମେଣ୍ଟାଇବାରେ ମଧ୍ୟ ସାହାଯ୍ୟ କରୁଛି । ବାହମନ ରାଜ୍ୟ ସ୍ଥାପିତ ହେବାର ପ୍ରାୟ ଦୁଇଶତ ବର୍ଷ ପରେ ଫେରିସ୍ତା ତାଙ୍କ ଇତିହାସରେ ଏହାକୁ ସର୍ବପ୍ରଥମେ ଲିପିବଦ୍ଧ କରିଥିବାରୁ ଏହା ସମସ୍ତଙ୍କ ବିଶ୍ୱାସଯୋଗ୍ୟ ହୋଇପାରିନାହିଁ । ସାରଳା ଦାସ ବାହମନ ରାଜ୍ୟ ସ୍ଥାପିତ ହେବାର ପ୍ରାୟ ଏକଶତ ବର୍ଷ ପରେ ଏହି ଘଟଣାକୁ ରୂପାନ୍ତରିତ ଆକାରରେ ଲିପିବଦ୍ଧ କରିଥିବାରୁ ଏହାକୁ ଅବିଶ୍ୱାସ କରିବାର କାରଣ ରହୁନାହିଁ ।

ଯାହା ଘଟିଥିଲା ବା ଘଟୁଥିଲା ତାହାକୁ ହିଁ ଅବଲମ୍ବନ କରି କବି ତାଙ୍କ ଆଖ୍ୟାୟିକାମାନ ଲେଖିଯାଇଛନ୍ତି । କୌଣସି ଘଟଣା ବା ଯୁଦ୍ଧ ସହିତ ମୁସଲମାନ୍-ମାନେ ସଶ୍ଳିଷ୍ଟ ଥିବାରୁ ତାହାକୁ ସେ ବାଦ୍ ଦେଇନାହାନ୍ତି । ଆମ୍ଭେମାନେ ଏ ଉକ୍ତିର ବହୁ ପ୍ରମାଣ ପୂର୍ବ ପରିଚ୍ଛେଦମାନଙ୍କରେ ପ୍ରକାଶ କରିଛୁଁ । ଯେଉଁମାନେ ଓଡ଼ିଶାର ଶତ୍ରୁ ସ୍ଥାନୀୟ ବ୍ୟକ୍ତି ଥିଲେ, ସେମାନେ ହିନ୍ଦୁ ହେଉନ୍ତୁ ବା ମୁସଲମାନ୍ ହେଉନ୍ତୁ, ସାରଳା ଦାସ ପାଣ୍ଡବମାନଙ୍କ ହାତରେ ସେମାନଙ୍କ ବଧ ବା ବନ୍ଧନର ବ୍ୟବସ୍ଥା କରିଛନ୍ତି । ଏହାର ବହୁ ଉଦାହରଣ ମଧ୍ୟ ଆଗରୁ ଦିଆଯାଇଛି । ବସ୍ତୁତଃ ସାରଳା ଦାସଙ୍କ ଗ୍ରନ୍ଥରେ ମୂଳ ମହାଭାରତର ଗଳ୍ପ କଙ୍କାଳଟି ଅନୁସୃତ ହୋଇଥିବାରୁ ଏହାକୁ ମହାଭାରତ ଆଖ୍ୟା ଦିଆଯାଇଥିଲେ ମଧ୍ୟ, ଏହା ପ୍ରକୃତରେ ଏକ କିମ୍ବଦନ୍ତୀମୂଳକ ଇତିହାସ ଓ ବୀରଗାଥାର ସଙ୍କଳନ । ଏଥିରେ ଖାଲି ଓଡ଼ିଶାର ନୁହେଁ, ଭାରତର ସର୍ବାଞ୍ଚଳର କିମ୍ବଦନ୍ତୀମୂଳକ ଇତିହାସ ଓ ବୀରଗାଥା ସ୍ଥାନ ପାଇଛି । ଏପରି ଅନ୍ୟ କୌଣସି ଗ୍ରନ୍ଥ ଅନ୍ୟ କୌଣସି ଭାରତୀୟ ଭାଷା-ସାହିତ୍ୟରେ ବା ସଂସ୍କୃତରେ ଅଛି ବୋଲି ଆମ୍ଭମାନଙ୍କୁ ଜଣାନାହିଁ । କବି ଓଡ଼ିଶାର ବ୍ୟକ୍ତି ହୋଇଥିବାରୁ ତାଙ୍କ ଗ୍ରନ୍ଥରେ ଓଡ଼ିଶାର ବୀରଗାଥା ବେଶୀ ଭାବରେ ସ୍ଥାନ ପାଇବା ସ୍ୱାଭାବିକ ହୋଇଛି, ମାତ୍ର ସେ ଭାରତକୁ ବାଦ

ଦେଇନାହାନ୍ତି । ଯେଉଁ ରାଜପୁରୁଷମାନେ ଆଲ୍ଲାଉଦ୍ଦିନଖିଲିଜୀଙ୍କ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ଚଳାଇଥିଲେ, ସେମାନଙ୍କ ନାମ ଓ ସେମାନଙ୍କ ରାଜ୍ୟର ନାମ କିପରି ପାଣ୍ଡବମାନଙ୍କ ଦିଗ୍‌ବିଜୟ ବୃତ୍ତାନ୍ତମାନଙ୍କରେ ବର୍ଣ୍ଣିତ ହୋଇଛି, ତାହା ଆଗରୁ ଆଲୋଚନା କରାଯାଇଛି ।

ସାରଳା ଦାସଙ୍କ ପରେ ଓଡ଼ିଆ ସାହିତ୍ୟ କୁଞ୍ଜରେ ଆଉ ଏପରି ବୀରଗାଥା କୂଜିତ ହେଲନାହିଁ । ଗଜପତି ସାମ୍ରାଜ୍ୟର ପତନ ପରେ ଓଡ଼ିଶାର ଶ୍ରେଷ୍ଠାଂଶ ସମାନ୍ତ୍ୱରେ ମୁସଲମାନ୍, ମରହଟ୍ଟା ଓ ଇଂରେଜମାନଙ୍କ କବଳରେ ରହିଲା, ଏବଂ ଗିରିସଙ୍କୁଳ, ବନାକୀର୍ଣ୍ଣ, ଦୁର୍ଗମ ଅଞ୍ଚଳଗୁଡ଼ିକରେ ବହୁସଂଖ୍ୟକ ତଥାକଥିତ ରାଜ୍ୟର ରାଜା ପ୍ରଜା ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ହୋଇରହିଲେ । ଢେଙ୍କାନାଳ ରାଜା କିପରି ଦଳେ ମରହଟ୍ଟା ସୈନ୍ୟଙ୍କୁ ପରାସ୍ତ କରିଥିଲେ, ଅନୁଗୋଳ ଓ ଢେଙ୍କାନାଳ ରାଜାଙ୍କ ମଧ୍ୟରେ ସୀମାବିବାଦ ପାଇଁ କିପରି ଲଢେଇ ଲାଗିଥିଲା, କେଉଁଝର ରାଜା କିପରି ପାଲଲହଡ଼ା ଉପରେ ଆକ୍ରମଣ କରିଥିଲେ, ପାଟନାରାଜା କିପରି ଆଖପାଖ ଅଞ୍ଚଳରେ ଆଧିପତ୍ୟ ବିସ୍ତାର କରିଥିଲେ, ଇତ୍ୟାଦି ବିଷୟର ଅବଲମ୍ବନରେ ପରବର୍ତ୍ତୀ କାଳରେ କେତେକ ସମର-ସାହିତ୍ୟ ସୃଷ୍ଟି ହୋଇଥିଲା, ମାତ୍ର ଗ୍ରାମସୀମା ବିବାଦ ପରି ଏପରି ଘଟଣାମାନଙ୍କ ପରିସର ନିତାନ୍ତ ସଂକୀର୍ଣ୍ଣ । ଏସବୁ ସାହିତ୍ୟରେ ସଂକୀର୍ଣ୍ଣ ଆଞ୍ଚଳିକ ଆନୁଗତ୍ୟ ସୃଷ୍ଟି କରିବା ଭଳି ଉପାଦାନମାନ ବିଦ୍ୟମାନ ଥିଲେ ହେଁ ସମଗ୍ର ଭାବରେ ଓଡ଼ିଆମାନଙ୍କ ପ୍ରାଣସ୍ପର୍ଶ କରିବା ଭଳି ଉପାଦାନମାନ ଏଗୁଡ଼ିକରେ ନାହିଁ ।

ପ୍ରତ୍ୟେକ ମୌଳିକ ଓ ବଳିଷ୍ଠ ସାହିତ୍ୟର ପଛରେ ପରିବେଶର ନିର୍ଦ୍ଦିଷ୍ଟ ପ୍ରଭାବ ରହିଥାଏ । ସାରଳା ସାହିତ୍ୟର ବିପୁଳ ଭୌଗୋଳିକ ଓ ଐତିହାସିକ ଜ୍ଞାନ କବିଙ୍କ ସମୟର ପରିବେଶର ପ୍ରଭାବରୁ ସମ୍ଭୂତ ବୋଲି ଧରାଗଲେ ମଧ୍ୟ, ସାରଳା ଦାସ ଏହି ଜ୍ଞାନ କିପରି ଓ କେଉଁଠାରୁ ଲାଭ କଲେ, ତାହା ନିର୍ଦ୍ଦିଷ୍ଟ ଭାବରେ କହିବା ସମ୍ଭବ-ପର ହୁଏନାହିଁ । ତାଙ୍କ ଦ୍ୱାରା ପ୍ରଦର୍ଶିତ ସମସାମୟିକ ଭୌଗୋଳିକ ଓ ଐତିହାସିକ ଜ୍ଞାନ କୌଣସି ସଂସ୍କୃତ, ଓଡ଼ିଆ ବା ଅନ୍ୟ ଭାରତୀୟ ଭାଷାରେ ଲିଖିତ ଆକାରରେ ତାଙ୍କ ସମୟରେ ପ୍ରଚଳିତ ଥିବାର ପ୍ରମାଣ ମିଳେ ନାହିଁ । ଏଣୁ ବାଧ୍ୟ ହୋଇ ମାନିବାକୁ ହୁଏ ଯେ ଏପରି ଜ୍ଞାନ ଦନ୍ତକଥାରୂପେ ପ୍ରଚଳିତଥିଲା ଓ ଆମର କବି ଏହି ଦନ୍ତକଥାରୁହିଁ ଏହି ଜ୍ଞାନ ଆହରଣ କରିଥିଲେ । ହୁଏତ ପ୍ରତ୍ୟେକ ବିଶାଳ ଓ ପ୍ରଗତିଶୀଳ ଭାରତୀୟ ରାଜ୍ୟର ରାଜଦରବାରରେ ଓ ସେନାବାହିନୀରେ ଭୌଗୋଳିକ ଓ ଐତିହାସିକମାନେ ନିଯୁକ୍ତି ପାଇ ରହୁଥିଲେ ଏବଂ ରାଜ୍ୟରକ୍ଷା ଓ ପରରାଜ୍ୟ ଆକ୍ରମଣବେଳେ ଭୌଗଳିକ ଓ ଐତିହାସିକ ଜ୍ଞାନ ବିତରଣ କରୁଥିଲେ । କହିବା ବାହୁଲ୍ୟ ଯେ ରାଜ୍ୟରକ୍ଷା ଓ

ରାଜ୍ୟ ବିସ୍ତାର ପାଇଁ ଉଭୟ ଜ୍ଞାନ ନିତାନ୍ତ ଅପରିହାର୍ଯ୍ୟ ଥିଲା । ସାରଳା ଦାସଙ୍କ ସମୟରେ ଓଡ଼ିଶା ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ବିସ୍ତୃତ ହୋଇ ଗୋଟିଏ ବିଶାଳ ଓ ପ୍ରଗତିଶୀଳ ସାମ୍ରାଜ୍ୟରେ ପରିଣତ ହୋଇଥିବାରୁ ଏଠାରେ ନିଶ୍ଚୟ ଭୌଗୋଳିକ ଓ ଐତିହାସିକମାନେ ବିଦ୍ୟମାନ ଥିଲେ । ଏହିମାନଙ୍କଠାରୁ ହିଁ ସେ ଏହି ପ୍ରଭୃତି ଐତିହାସିକ ଓ ଭୌଗୋଳିକ ଜ୍ଞାନ ଅର୍ଜନ କରିଥିଲେ । କବି କି ଉପାୟରେ ଓ କାହାଠାରୁ ଏ ସମସ୍ତ ଜ୍ଞାନ ପାଇଥିଲେ ଏ ବିଷୟରେ ନିତାନ୍ତ ନୀରବ ରହି ସାରଳାଦେବୀଙ୍କୁ ହିଁ ତାଙ୍କ ସର୍ବଜ୍ଞାନର ମୂଳାଧାର ରୂପେ ସେ ବର୍ଣ୍ଣନା କରିଛନ୍ତି ।

ସାରଳା ଦାସଙ୍କ ଭୌଗୋଳିକ ଓ ଐତିହାସିକ ଜ୍ଞାନଲାଭ ସମ୍ବନ୍ଧରେ ଉପରେ ଯାହା କୁହାଗଲା, ତାହା ଅନୁମାନ ଉପରେ ପ୍ରତିଷ୍ଠିତ, ଏଣୁ ତାକୁ ଅକାଟ୍ୟ ବୋଲି ଆମ୍ଭେମାନେ ଭାବୁନାହୁଁ କିମ୍ବା କହୁନାହୁଁ । ଭବିଷ୍ୟତରେ ଅନ୍ୟ କେହି ଯଦି ଏ ବିଷୟରେ ଆଲୋକପାତ କରନ୍ତି, ତେବେ ଆମ୍ଭେମାନେ ଆନନ୍ଦିତ ହେବୁ ।

ଲିଖିତ ଗ୍ରନ୍ଥରୁ ହେଉ ବା ଦନ୍ତକଥାରୁ ହେଉ, ସାରଳା ଦାସ ଯେଉଁ ଜ୍ଞାନ ଆହରଣ କରିଥିଲେ, ତାକୁ ସେ ସେହି ଆକାରରେ ନ ରଖି ଅନେକ ସ୍ଥଳରେ ନିଜସ୍ୱ ଆକାରରେ ଓ ପୌରାଣିକ ରୀତିରେ ପ୍ରକାଶ କରିଛନ୍ତି । ଭୌଗୋଳିକ ଓ ଐତିହାସିକ ଜ୍ଞାନକୁ ଆଖ୍ୟାୟିକା ଆକାରରେ ପ୍ରକାଶ କଲାବେଳେ ସେ ସମୟ ସମୟରେ ଏପରି କଳ୍ପନାପ୍ରିୟ ଓ ସ୍ୱାଧୀନତାପ୍ରିୟ ହୋଇପଡ଼ିଛନ୍ତି ଯେ ତାଙ୍କ ଲେଖାକୁ ବୁଝିବା ପାଇଁ ଚେଷ୍ଟା କଲାବେଳେ ପାଠକ ଗୋଳମାଳରେ ପଡ଼ିଯାଏ । ଶ୍ରୀଶୈଳମରେ ଥିବା ମଲ୍ଲିକାର୍ଜ୍ଜୁନ ମହାଦେବଙ୍କ ଉତ୍ପତ୍ତି ସମ୍ବନ୍ଧୀୟ କିମ୍ବଦନ୍ତୀ ଲେଖିବାବେଳେ ସେ ଶ୍ରୀଶୈଳମ୍ ନିକଟରେ ପ୍ରବାହିତା କୃଷ୍ଣାନଦୀକୁ କେତେବେଳେ କଳପନଦୀ ଓ କେତେବେଳେ କୃଷ୍ଣାବେଣୀ ବୋଲି ଲେଖିଛନ୍ତି । କୃଷ୍ଣାବେଣୀ ବା କୃଷ୍ଣବେଣୀ ଅବଶ୍ୟ କୃଷ୍ଣାନଦୀର ଅନ୍ୟତମ ନାମ, ମାତ୍ର କୃଷ୍ଣା କଳପନଦୀ ନାମରେ ଆଖ୍ୟାତ ହୋଇଥିବାର ପ୍ରମାଣ ନାହିଁ । ଏଣୁ କଳପ ନାମଟି କବିଙ୍କ କପୋଳକଳ୍ପିତ । ଏହିପରି ସେ କୂର୍ମପର୍ବତକୁ ବେଳେବେଳେ କୂର୍ମପର୍ବତ ବୋଲି ଲେଖିଥିଲେ ହେଁ କେତେକ ସ୍ଥଳରେ ତାକୁ କରଣପର୍ବତ ବୋଲି ଲେଖିଛନ୍ତି । ହରିଦ୍ୱାରକୁ ସିଧାସଳଖ ଭାବରେ ହରିଦ୍ୱାର ବୋଲି ନ ଲେଖି କବି ତାକୁ କାଶୀହର ଉଦ୍ୟାନ ବୋଲି ବର୍ଣ୍ଣନା କରିଛନ୍ତି । ଏହାଛଡ଼ା ସେ କାଳନଗରକୁ କାଳକୂଟ ନଗ୍ର, ଉଜ୍ଜୟିନୀକୁ ଉଜାଣକାନ୍ତି, ପଦ୍ମାନଦୀକୁ କମଳାସନୀନଦୀ, ଶ୍ରୀରଙ୍ଗପତ୍ତନକୁ ସୁରବରପାଟଣା, ଓଡ଼ିଶାକୁ ମନୋହର ଦେଶ ଇତ୍ୟାଦି ରୂପେ ଉଲ୍ଲେଖ କରିଯାଇଛନ୍ତି । ମୋଟକଥା, କୌଣସି ନାମ ବା ବିଷୟକୁ ସିଧାସଳଖ ଭାବରେ ନ ଲେଖି, ତାକୁ ଗୋଟାଏ

ପୌରାଣିକ ରୂପ ଦେବା ପାଇଁ ସେ ଅନେକ ସମୟରେ ଚେଷ୍ଟା କରିଛନ୍ତି । ପୌରାଣିକ ଆବରଣକୁ ଛିନ୍ନ କରିବା ପରେ ହିଁ ସେଥିରୁ ପ୍ରକୃତ ନାମ ଓ ଘଟଣା ବାହାରିଥାଏ । ଏହା ଏକ ବଶିଷ୍ଟ ଶୈଳୀ ବା ରୀତି ଓ ଏହାକୁ ସାରଳାଦାସୀୟ ରୀତି ବୋଲି ଆଖ୍ୟାତ କରାଯାଇପାରେ ।

କବିଙ୍କ ଧର୍ମଧାରଣା ସମ୍ବନ୍ଧରେ ପୂର୍ବ ଲେଖକମାନେ ବହୁ କଥା ଲେଖି-ଯାଇଛନ୍ତି । ଏଣୁ ଏଠାରେ ଏ ବିଷୟରେ ସମ୍ୟକ୍ ଆଲୋଚନା କରିବାର ବିଶେଷ ଆବଶ୍ୟକତା ନାହିଁ । କୌଣସି ନିର୍ଦ୍ଦିଷ୍ଟ ମତବାଦକୁ ଦୃଢ଼ ଭାବରେ ଗ୍ରହଣ କରିଥିଲେ ହେଁ ସମସ୍ତ ମତବାଦକୁ ସମ୍ମାନ ଦେଖାଇବା ହିଁ ହିନ୍ଦୁ ଧର୍ମର ବିଶେଷତ୍ୱ । ଏ ଦୃଷ୍ଟିରୁ ଦେଖିବାକୁ ଗଲେ ସାରଳା ଦାସ ଜଣେ ପ୍ରକୃତ ହିନ୍ଦୁ ଥିଲେ । ସେ ଶାକ୍ତ ମତର ଏକାନ୍ତ ଭକ୍ତ ଥିଲେ ହେଁ ସମସ୍ତ ମତବାଦକୁ ସମ୍ମାନ ଦେଖାଇଛନ୍ତି ଓ ସମସ୍ତ ଦେବଦେବୀଙ୍କୁ ସ୍ତବ କରିଛନ୍ତି । ସ୍ତବ କଲାବେଳେ ତାଙ୍କର ଭାଷା କବିତ୍ୱର ଉଚ୍ଚତମ ଶିଖରକୁ ଉଠିଯାଇଛି । କବି ଏକାନ୍ତ ଦେବୀଭକ୍ତ ଥିଲେ । ଝଙ୍କଡ଼ବାସିନୀ ସାରଳାଦେବୀ ତାଙ୍କର ପରମାରାଧ୍ୟା ଥିଲେ ଓ ତାଙ୍କ ଠାରେ ହିଁ ସେ ଆତ୍ମସମର୍ପଣ କରିଥିଲେ । ତାଙ୍କ ଗ୍ରନ୍ଥମାନ ପାଠ କଲେ ଜଣାଯାଏ ଯେ ସେ ସର୍ବତ୍ର ନାରୀଶକ୍ତିକୁ ସଂହାରଣୀ ଶକ୍ତି ରୂପେ ଉପସ୍ଥାପିତ କରି ତାକୁ ହିଁ ବିଜୟିନୀ କରିଛନ୍ତି । ତାଙ୍କ ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଓ ମହାଭାରତର ସଂହାରଣୀ ଶକ୍ତି ହେଉଛନ୍ତି ସୀତା, ଦୁର୍ଗା ଓ ଦ୍ରୌପଦୀ । ମୂଳ ମହାଭାରତରେ ଦ୍ରୌପଦୀଙ୍କୁ ସଂହାରଣୀ ଶକ୍ତି ରୂପେ ବର୍ଣ୍ଣନା କରାଯାଇନାହିଁ; ମାତ୍ର ସାରଳା ଦାସ ଏକାନ୍ତ ଶକ୍ତିଭକ୍ତ ଥିବାରୁ ତାଙ୍କ ମହାଭାରତରେ ଏହି ନୂଆ କଥାଟିକୁ ନିଜେ ସୃଷ୍ଟି କରିଛନ୍ତି । ଦୁଃଶାସନ ବଧ ପରେ ଦ୍ରୌପଦୀ ଅତ୍ୟନ୍ତ ସନ୍ତୁଷ୍ଟା ହୋଇଥିବାରୁ ସେହି ଅବସରରେ ତାଙ୍କ ଠାରୁ ବର ମାଗି ନେବା ପାଇଁ ଶ୍ରୀକୃଷ୍ଣ ଭୀମଙ୍କୁ ଏକାନ୍ତରେ ଶିଖାଇଥିଲେ । ସାରଳା ଦାସଙ୍କ ମୂର୍ଖଭୀମଙ୍କର ନାରୀଜାତି ପ୍ରତି ବେଶୀ ସମ୍ମାନ ନ ଥିଲେ ମଧ୍ୟ ଶ୍ରୀକୃଷ୍ଣଙ୍କ କଥାମାନ ତାଙ୍କର ନିର୍ଦ୍ଦେଶ ଅନୁସାରେ ସେ ଦ୍ରୌପଦୀଙ୍କ ପଲଙ୍କ ତଳେ ଠିଆ ହୋଇ କହିଲେ—

ଆଗୋ ଦେବୀ ତୋ ଇଚ୍ଛାରେ ଯେବେ ବର ଦେବୁ
କୃଷ୍ଣ ସହ ଆମ୍ଭେ ତୋର ଦାଢ଼େ ନ ପଡ଼ିବୁ ।
ଭୀମଙ୍କ ପ୍ରାର୍ଥନା ଶୁଣି ନାରୀ ଶିରୋମଣି
ବୋଇଲେ ଏ ବୁଦ୍ଧି ଶିକ୍ଷା ଦେଲେ ଚକ୍ରପାଣି ।
ଆହେ ପ୍ରାଣନାଥ ଆଜ ଯଥାର୍ଥ କହିବ
ତୁମ୍ଭି ଆଦି କରି କୃଷ୍ଣବଂଶକୁ ଖାଇବି ।
ଏକା ଧର୍ମ ଯୁଧିଷ୍ଠିର ନାହାନ୍ତି ମୋ ଦାଢ଼େ
ସଶରୀରେ ସ୍ୱର୍ଗେ ଯିବେ ଜାଣ ଏହା ଦୃଢ଼େ ।

ଏଥିରୁ ସ୍ପଷ୍ଟ ସୂଚିତ ହେଉଛି ଯେ, ସାରଳାଦାସଙ୍କ ମତରେ ଶକ୍ତିଭୂତା ଦ୍ରୌପଦୀଙ୍କ ଦାଢ଼ରେ ହିଁ ଯୁଧିଷ୍ଠିର ଛଡ଼ା କୁରୁବଂଶ, ଓ ପାଣ୍ଡବବଂଶ ଓ ଯଦୁବଂଶର ସମସ୍ତେ ପ୍ରାଣ ହରାଇଥିଲେ । ଏହି ମତ ଅଭିନବ ହେଲେ ହେଁ ସାରଳା ଦାସଙ୍କ ଲେଖନୀରୁ ଏହା ପ୍ରସୂତ ହୋଇଥିବାରୁ ଏହାକୁ ନ ମାନିବାର ଉପାୟ ନାହିଁ । ବସ୍ତୁତଃ ତାଙ୍କର ସମସ୍ତ ଗ୍ରନ୍ଥର ମୂଳରେ ରହିଛି ତାଙ୍କର ଏକନିଷ୍ଠ ଶକ୍ତିପୂଜା । ତାଙ୍କ ମତରେ ଅଯୋନିଜ ଅନାଦି ନାରୀଶକ୍ତି ରୁଧିର ପାନରେ ତୃପ୍ତା ହୁଏ । ତାଙ୍କ ଆରାଧ୍ୟା ସାରଳା ପ୍ରତିଦିନ ରୁଧିର ପାନରେ ତୃପ୍ତା ହୋଇଛନ୍ତି, ତାଙ୍କ ଦୁର୍ଗାଙ୍କ ଅସଂଖ୍ୟ ନାରୀସୈନ୍ୟ ରୁଧିରପାନ କରିଛନ୍ତି, ତାଙ୍କ ଚଣ୍ଡୀପୁରାଣର ପୃଥିବୀ; ତା' ଉପରେ ରୁଧିର-ମେଦ ମାଂସ ପକାଇବା ପାଇଁ ଦୁର୍ଗାଙ୍କୁ ପ୍ରାର୍ଥନା କରିଛି ଓ ତାଙ୍କ ଦ୍ରୌପଦୀ ରୁଧିରସ୍ନାନ କଲା ପରେ ତୃପ୍ତି ଲାଭ କରିଛନ୍ତି । କେବଳ ତାଙ୍କ ବିଲଙ୍କା ରାମାୟଣର ସୀତା ରୁଧିରସିକ୍ତା ହୋଇ ନାହାନ୍ତି, ମାତ୍ର ଯାହାକୁ ଧ୍ୱଂସ କରିବା ପାଇଁ ପୁରୁଷରାମଙ୍କ ସାଧ୍ୟାତୀତ ହୋଇପଡ଼ିଥିଲା, ତାହାକୁ ସେ ଅବଳୀଳା କ୍ରମେ ଧ୍ୱଂସ କରି ଦୁର୍ଗାଙ୍କ ପରି ଆତ୍ମତୃପ୍ତି ଲାଭ କରିଛନ୍ତି । ଏ ଦୃଷ୍ଟିରୁ ଦେଖିବାକୁ ଗଲେ ସାରଳା ଦାସଙ୍କ ସମସ୍ତ ଗ୍ରନ୍ଥରେ ନାରୀଶକ୍ତି ହିଁ ସଂହାରିଣୀ ଓ ବିଜୟିନୀ ଶକ୍ତି-ରୂପେ ଉପସ୍ଥାପିତ ହୋଇଛି ।

ଆଗରୁ କୁହାଯାଇଛି ଯେ କବି ନିଜେ ଶାକ୍ତ ଥିଲେ ମଧ୍ୟ ସେ ସମସ୍ତ ଦେବଦେବୀ ଓ ଧର୍ମମତକୁ ସମ୍ମାନ ଦେଖାଉଥିବାର ଭୂରି ଭୂରି ପ୍ରମାଣ ତାଙ୍କ ଗ୍ରନ୍ଥମାନଙ୍କରେ ରହିଛି । କେବଳ ସହଜିଆ ତନ୍ତ୍ର ମତ ପ୍ରତି ସେ ସମ୍ମାନ ଦେଖାଇ ନାହାନ୍ତି । ତାଙ୍କ ଆଦ୍ୟପର୍ବର ଖଲ୍ୟକାର ଜନ୍ମବୃତ୍ତାନ୍ତଟି ସହଜିଆ ଧର୍ମ ସମ୍ବନ୍ଧରେ ଗୋଟିଏ ନିର୍ମମ ପ୍ରହସନ । ଆମ୍ଭେମାନେ ଏ ବିଷୟ ଅନ୍ୟତ୍ର ବିସ୍ତୃତଭାବରେ ଆଲୋଚନା କରିଛୁଁ (ଝଙ୍କାର ଜାନୁୟାରୀ ୧୯୭୦, ପୃ ୧୬୧-୧୭୨) । ସାରଳା ଦାସଙ୍କ ଆଦ୍ୟପର୍ବର ଜତୁଗୃହ ନିର୍ମାତା ଓ ଦାହକ ଗଙ୍ଗାକୂଳସ୍ଥ ଜ୍ଞାନପୁରନିବାସୀ ପାପପ୍ରକୃତି ପୁରଞ୍ଜନ ହେଉଛି ଜଣେ କୁଜ୍ଞାନୀ ଗଉଡ଼ିଆ ଗୋଖର, ଅର୍ଥାତ୍ ଜଣେ ଦୁଷ୍ଟପ୍ରକୃତି ବର୍ଗୀୟ ତାନ୍ତ୍ରିକ । ତନ୍ତ୍ର ନିଶ୍ଚୟ ଏକ ପ୍ରକାର ଜ୍ଞାନ, ମାତ୍ର କବିଙ୍କ ମତରେ ଏହା ସୁଜ୍ଞାନ ନୁହେଁ, କୁଜ୍ଞାନ । ଏଣୁ ତାନ୍ତ୍ରିକମାନେ ହେଉଛନ୍ତି କୁଜ୍ଞାନୀ । ପୁରଞ୍ଜନର ଗଙ୍ଗାକୂଳର ବାସସ୍ଥାନ ଜ୍ଞାନପୁରର ସମସ୍ତ ଅଧିବାସୀ କୁଜ୍ଞାନୀ ଥିଲେ ଓ ସେମାନେ ମନୁଷ୍ୟ ମାରୁଥିଲେ (ସମସ୍ତ ଜଣେ କୁଜ୍ଞାନୀ ମନୁଷ୍ୟ ମାରନ୍ତି) । ସାରଳାଦାସ ବିଶ୍ୱାସ କରୁଥିଲେ ଯେ, ତାନ୍ତ୍ରିକମାନେ ମନ୍ତ୍ରଯନ୍ତ୍ର କରି ଓ କୁଟକପଟ କରି ମନୁଷ୍ୟମାନଙ୍କୁ ମାରିପାରନ୍ତି । କବିଙ୍କ ବର୍ଣ୍ଣନା ଅନୁସାରେ ଏହି ବର୍ଗୀୟ ତାନ୍ତ୍ରିକମାନେ ହିଁ ସମସ୍ତ ପ୍ରକାର ମନ୍ଦ କର୍ମରେ ଦୁର୍ଯ୍ୟୋଧନଙ୍କ ଦ୍ୱାରା ନିଯୁକ୍ତ

ହୋଇଥିଲେ । ଦୁର୍ଯୋଧନ ଭୀମଙ୍କୁ ବିଷଲଡ଼ୁ ଦେବାରେ ଏବଂ ଜତୁଗୃହ ନିର୍ମାଣ ଓ ଦହନ କରିବାରେ କୁଳ୍ମାନୀ ପୁରଞ୍ଜନଙ୍କୁ ନିଯୁକ୍ତ କରିଥିଲେ । ପୁଣି ଯେତେବେଳେ ପାଣ୍ଡବମାନେ ବଞ୍ଚିଛନ୍ତି କି ନା ଏହା ଜାଣିବାର ଆବଶ୍ୟକତା ପଡ଼ିଲା, ସେତେବେଳେ ସେ ପୁରଞ୍ଜନର ପୁତ୍ର ଗୌରମୋକ୍ଷଙ୍କୁ ପାଣ୍ଡବମାନଙ୍କ ଠାରୁ ସତ୍ୟର ଆମ୍ବ ଘେନି ଆସିବା ପାଇଁ ପଠାଇଥିଲେ । ଗୌରମୋକ୍ଷ 'ତମ୍ଭାର ଫଣୀ' ତନ୍ତ୍ର ମୁଦ୍ରା ସିଦ୍ଧ 'ଛଦ୍ମ ତପସ୍ୱୀ ବେଶରେ' ପାଣ୍ଡବମାନଙ୍କ ଠାରୁ ସତ୍ୟର ଆମ୍ବ ଘେନି ଆସିଲି ସତ୍ୟ, ମାତ୍ର ପରେ ସହଦେବ ତାହାର ପ୍ରକୃତ ପରିଚୟ ଦେଇଥିଲେ—

ସହଦେବ ବୋଲେ ଯେଉଁ ବିପ୍ରପୁରଞ୍ଜନ
ଜତୁଘର କରିଥିଲା କପଟେ ନିର୍ମାଣ ।
ତାହାର ପୁତ୍ର ଅଟେ ଗୌରମୋକ୍ଷ ଦ୍ୱିଜ
ଆମ୍ବ ଅନ୍ୱେଷଣେ ପେଷିଥିଲା କୁରୁରାଜ ।
ଛଦ୍ମନେ ତପସ୍ୱୀ ବେଶ କରିଣ ଧାରଣ
ଆମ୍ଭପାଶେ ଆସିଥିଲା ଜାଣ ନାରାୟଣ ।

ଅବଶ୍ୟ ଗୌରମୋକ୍ଷର ପରିଚୟ ପାଇବା ପରେ ଶ୍ରୀକୃଷ୍ଣ 'ଶଠେ ଶାଠ୍ୟଂ ସମାଚରେତ୍' ନୀତିରେ ତା'ଠାରୁ ସତ୍ୟର ଆମ୍ବଟିକୁ ଅପହରଣ କରି ନେଇଥିଲେ । ସାରଳା ଦାସ ଜ୍ଞାନପୁରର ଆଉ ଗୋଟିଏ ଗୁଣୀବିଦ୍ୟା କଥା ଉଲ୍ଲେଖ କରିଛନ୍ତି—

ଜ୍ଞାନପୁରି ବୋଲି କରି ଏକଇ ଗ୍ରାମରେ
ଜଣେ ବିପ୍ର ଥିଲା କଳ୍ପନାମରେ ସେଠାରେ । ବନ, ପୃ ୨୪୧

ଏହି କଳ୍ପବିପ୍ର ତା' ଭାର୍ଯ୍ୟା ଶାଳ୍ମମତୀକୁ ଭଲ ପାଉ ନ ଥିବାରୁ ଶାଳ୍ମମତୀ କରଞ୍ଜି ନାମକ ଜଣେ ପିଶାଚୀ ଠାରୁ ଚେରମୂଳ ଆଣି ତା' ସ୍ୱାମୀକୁ ଖୁଆଇଦେଲା । ଫଳରେ ବ୍ରାହ୍ମଣର ଜଳୋଦରୀ ରୋଗ ହେଲା ଓ ସେଇଥିରେ ହିଁ ସେ ପ୍ରାଣତ୍ୟାଗ କଲା । ଏସବୁ ବର୍ଣ୍ଣନାରୁ ଜଣାଯାଏ ଯେ, ସାରଳା ଦାସ ତାନ୍ତ୍ରିକ ମତବାଦକୁ ସମ୍ମାନ ଦେଖାଉ ନ ଥିଲେ ।

ସାରଳାଦାସ ଯେଉଁ ଛନ୍ଦରେ ତାଙ୍କ କବିତାବଳୀ ଲେଖିଯାଇଛନ୍ତି, ଆଧୁନିକ ପଣ୍ଡିତମାନେ ତାକୁ ଦାଣ୍ଡିବୃତ୍ତ ଆଖ୍ୟା ଦେଇଛନ୍ତି ଓ ଏହି ନାମର ଉତ୍ପତ୍ତି ସମ୍ବନ୍ଧରେ କେତେକ କଳ୍ପନା ଜଳ୍ପନା ମଧ୍ୟ କରିଛନ୍ତି, କିନ୍ତୁ କବି ନିଜେ ଏହାକୁ 'ଅସମଲେଖନ' ଆଖ୍ୟା ଦେଇଛନ୍ତି—

ସମଲେଖନ ଅସମ ଲେଖନ କି ଅବା
ହେ ସୁଜନ ଜନମାନେ ମେଳ କରି ନେବା । ଚଣ୍ଡୀପୁରାଣ

ଏଥିରୁ ପ୍ରମାଣିତ ହେଉଛି ଯେ କବିଙ୍କ ସମୟରେ ତଥାକଥିତ ଦାଣ୍ଡିବୃତ୍ତ ଅସମଲେଖନ ନାମରେ ଅଭିହିତ ହେଉଥିଲା । ସମଲେଖନରେ ପ୍ରତ୍ୟେକ ପଦର ପ୍ରତ୍ୟେକ ଧାଡ଼ିରେ ସମାନ ସଂଖ୍ୟକ ଚଉଦଟି ଲେଖାଏଁ ଅକ୍ଷର ରହୁଥିଲା, ମାତ୍ର ଅସମଲେଖନରେ ଏହାର ବ୍ୟତିକ୍ରମ ଘଟି ପ୍ରତ୍ୟେକ ଧାଡ଼ିର ଅକ୍ଷର ସମାନସଂଖ୍ୟକ ହେଉ ନ ଥିଲା । ଅସମଲେଖନକୁ ମେଳ କରିନେବା ପାଇଁ କବି ନିଜେ ଅନୁଜ୍ଞା ଦେଇଯାଇଥିବାରୁ ଜଣାଯାଉଛି ଯେ ସମଲେଖନ ବୃତ୍ତରେ ଲେଖିବା ତାଙ୍କର ସ୍ୱାଭାବିକ ପନ୍ଥା ଥିଲା, ମାତ୍ର ଭାବାବେଗରେ ପଡ଼ି ସମୟ ସମୟରେ ସେ ଏହି ସ୍ୱାଭାବିକ ପନ୍ଥା ଅନୁସରଣ କରିପାରି ନ ଥିଲେ । ଏହି ଅସମଲେଖନ ସମ୍ପୂର୍ଣ୍ଣ ଅଭିନବ ନୁହେଁ । ଭାବାବେଗରେ ପଡ଼ି ବିଭିନ୍ନ ଯୁଗର କବିମାନେ କିପରି ଅସମଛନ୍ଦରେ ସେମାନଙ୍କ କବିତାବଳୀ ଲେଖିଯାଇଛନ୍ତି, ତାହାର ତୁଳନାତ୍ମକ ଉଦାହରଣ ଦେଖନ୍ତୁ—

ଉଚା ଉଚା ପାବତ ତହିଁ ବସଇ ଶବରୀବାଲୀ
ମୟୂରୀଙ୍ଗ ପୁଚ୍ଛ ପରହିଣ ଗୀବାତ ଗୁଞ୍ଜରମାଳୀ ।
ଉମ୍ମତ ଶବର ପାଗଲ ଶବର ମା କର ଗୁଳିଗୁହାଡ଼ ତୋହୋରି
ଣିଅ ଘରଣୀ ଣାମେ ସହଜ ସହଜ ସୁନ୍ଦରୀ ।

ଚର୍ଯ୍ୟାପଦ, ୯ଶ ଶତାବ୍ଦୀ

ଚନ୍ଦ୍ରଭାଗା ନାମେ ଯେ ଏକଇ ନଦୀଗୋଟି
ବୃଦ୍ଧମାତାଙ୍କ ପାରୁଶେ ମହୋଦଧିରେ ଯାଇଁ ଫୁଟି ।

ସାରଳା ମହାଭାରତ, ୧୫ଶ ଶତାବ୍ଦୀ

ସମସ୍ତ ବିଛଣା ଆଉ ସମଗ୍ର ଘରଟା ଖୋଜିଲିଣି ମୁଁ ଯେ ଶିନ୍‌ଭିନ
ମାତ୍ର ମିଳିଲା ନାହିଁ କାହିଁଗଲା ତୁମ ହେୟାର ପିନ୍ ।

ବିଂଶ ଶତାବ୍ଦୀର ସପ୍ତଦଶକ

ଉଲ୍ଲିଖିତ ସମସ୍ତ କବିତାର କବିମାନେ ଅସମଛନ୍ଦରେ ଲେଖିଛନ୍ତି, କିନ୍ତୁ କେହି କାହାଠାରୁ ଆଦର୍ଶ ପାଇଥିବାର ପ୍ରମାଣ ମିଳୁନାହିଁ । ଆଧୁନିକ କବିମାନେ ସାରଳା ଦାସଙ୍କଠାରୁ ଆଦର୍ଶ ପାଇ ଅସମଛନ୍ଦରେ ସେମାନଙ୍କ କବିତା ଲେଖୁଛନ୍ତି ବୋଲି କହିବା ବା ଭାବିବା ନିତାନ୍ତ ଅସମୀଚୀନ ହେବ । ଆଧୁନିକ କବିମାନେ ବିଶ୍ୱସାହିତ୍ୟରୁ ହିଁ ଏ ଆଦର୍ଶ ଆଣିଛନ୍ତି । ସେମାନଙ୍କ ମଧ୍ୟରେ ଅନେକ ହୁଏତ ସାରଳା ସାହିତ୍ୟକୁ ପଢ଼ିନାହାନ୍ତି କିମ୍ବା ଦେଖିନାହାନ୍ତି । ସାରଳା ଦାସ ଚର୍ଯ୍ୟାପଦରୁ ଅସମଛନ୍ଦର ଆଦର୍ଶ ପାଇ ତାଙ୍କ କବିତାବଳୀ ମଧ୍ୟରୁ କେତେକକୁ ଅସମଛନ୍ଦରେ ଲେଖିଛନ୍ତି ବୋଲି ଭାବିବା ମଧ୍ୟ ସେହିପରି ନିତାନ୍ତ ଅସମୀଚୀନ

ହେବ । ଓଡ଼ିଆ, ବଙ୍ଗାଳୀ ଓ ଅସମୀୟମାନେ ଚର୍ଯ୍ୟାପଦମାନଙ୍କୁ ସେମାନଙ୍କ ଆଦ୍ୟ-ସାହିତ୍ୟ ବୋଲି ଦାବୀ କରୁଥିଲେ ହେଁ ଓଡ଼ିଶା, ବଙ୍ଗଳା ଓ ଆସାମର କଥା ଦୂରେ ଥାଉ, ଉତ୍ତର ଭାରତ ବା ଦକ୍ଷିଣ ଭାରତର କୌଣସି ଅଞ୍ଚଳରୁ ମଧ୍ୟ ଚର୍ଯ୍ୟାପଦମାନଙ୍କ ପ୍ରାଚୀନ ପୋଥିଟିଏ ମିଳିନାହିଁ ? ଏଣୁ ମନେହୁଏ ଯେ ଭାବପ୍ରବଣତା, ଆଞ୍ଚଳିକତା ଓ ଜାତିଗତ ପରସ୍ପରର ରଥଚକ୍ର ତଳରେ ଚର୍ଯ୍ୟାପଦ ସମ୍ବନ୍ଧୀୟ ଐତିହାସିକ ସତ୍ୟ ନିଷ୍ପେଷିତ ହୋଇପଡ଼ିଛି । ସାରଳା ଦାସ ଚର୍ଯ୍ୟାପଦ-ମାନଙ୍କୁ ପଢ଼ିଥିଲେ କିମ୍ବା ସେମାନଙ୍କ ସମ୍ବନ୍ଧରେ ଶୁଣିଥିଲେ ବୋଲି ଭାବିବାର କୌଣସି କାରଣ ନାହିଁ । ସେ ନିଜେ ହିଁ ଥିଲେ ଏହି ଅସମଛନ୍ଦର ଉଦ୍‌ଭାବକ ଓ ପ୍ରବର୍ତ୍ତକ । ଭାବୋଚ୍ଛ୍ୱାସ ସବୁ ସମୟରେ ଅକ୍ଷରର ନିୟମକୁ ମାନି ଗତି କରିପାରେ ନାହିଁ । ଆଦିକବି ସାରଳା ଦାସ ଏହା ଅନୁଭବ କରିପାରିଥିଲେ ଓ ଏହିଥିରୁ ହିଁ ଅସମଛନ୍ଦର ଉଦ୍‌ଭବ ଘଟିଥିଲା । ଆଧୁନିକ ଓଡ଼ିଆ କବିମାନେ ଭାବିପାରନ୍ତି ଯେ ଆଧୁନିକ ଅସମଛନ୍ଦ ନ୍ୟୁୟର୍କ, ଲଣ୍ଡନ, ମସ୍କୋ ବା କଲିକତାରୁ ଆମଦାନି ହୋଇ ଆସିଛି, କିନ୍ତୁ ପ୍ରକୃତରେ ଏହା ଓଡ଼ିଶା ଦେଶରେ ମଧ୍ୟ ଥିଲା ।

ସାରଳା ଦାସଙ୍କ କବିତାର ଭାଷା ସରଳା କୃଷକ କନ୍ୟା ପରି ସରଳ, ସ୍ୱାଭାବିକ ଓ ସାବଲୀଳ ଗତିରେ ନାଚି ନାଚି ଯାଇଛି, କୌଣସିଠାରେ କୃତ୍ରିମତାର ଗନ୍ଧ ସ୍ପର୍ଶ ପର୍ଯ୍ୟନ୍ତ ନାହିଁ । କବି ଭାବିଚିନ୍ତି ବା ଅକ୍ଷରଯୋଡ଼ି ଲେଖୁ ନ ଥିଲେ କିମ୍ବା ଯାହା ଲେଖୁଥିଲେ, ତାହା ସଂଶୋଧନ କରୁ ନ ଥିଲେ । ତାଙ୍କର ଲୌହଲେଖନ ଅକ୍ଳାନ୍ତ ଓ ଅବାଧ ବେଗରେ ଗତି କରି ଯାହା ଲେଖିଯାଉଥିଲା, ତାହାହିଁ କବିତାରେ ପରିଣତ ହେଉଥିଲା । ଏହାହିଁ ତାହାଙ୍କର ଅସାଧାରଣ କବି ପ୍ରତିଭାର ବିଶେଷତ୍ୱ । ଯାହାଙ୍କର ଜିହ୍ୱାରେ ସରସ୍ୱତୀ ନର୍ତ୍ତକୀ ରୂପେ ଖଟିଥିଲେ, ତାହାଙ୍କର କବିତାବଳୀର ସାହିତ୍ୟିକ ମହତ୍ତ୍ୱ ସାମାନ୍ୟ କଥାରେ କହିବା ପାଇଁ ଚେଷ୍ଟା କରିବା ଧୃଷ୍ଟତା ହେବ । କେବଳ ଗୋଟିଏ ମାତ୍ର ଉଦାହରଣ ଏଠାରେ ପାଠକମାନଙ୍କୁ ଉପହାର ଦିଆଯାଉଛି ।

କେତେଗୁଡ଼ିଏ ବାଳିକା କନ୍ୟା ଧୂଳିଘର କରି ଖେଳୁଥିବାର ଦେଖି ଦେବ ଦେବ ମହାଦେବ ସେମାନଙ୍କ ଘରକୁ ଭିକ୍ଷା ମାଗିବାକୁ ଗଲେ—

ଗିରିଜାଙ୍କୁ ରଖାଇଣ ଦେବ ଦେବ କାଶୀ
ବାଳକ ସନ୍ନ୍ୟାସୀ ରୂପ ତହିଁ ପରକାଶି ।
ଏକଇ ବଦନ ସ୍ୱାମୀ ଶିରରେ ଶୀତାଂଶୁ
ବହଇ ଧବଳାଙ୍ଗୀ ଯେ ତ୍ରିବେଣୀ ଆକାଂଶୁ ।

ଛିନ୍ନବେଶକୁ ଧାରଣ କଲେ ତ୍ରିଅମ୍ବକ
କଣ୍ଠେ ତୁଳସୀର ମାଳା ସଙ୍ଗରେ ଧାରକ ।

ଶୁଦ୍ଧ ସ୍ଫଟିକର ମୁଦ୍ରା ଶୋଭେ ବେନିକର୍ଣ୍ଣେ
ଜଗତକୁ ମୋହୁଛନ୍ତି ସହାସ୍ୟ ବଦନେ ।

ଡାକ ଡମ୍ବରୁ ହସ୍ତରେ ଡିବି ଡିବ ବାଜେ
କ୍ଷୁଦ୍ର ଘଣ୍ଟିକା କିଙ୍କିଣୀ କଟିଦେଶେ ସାଜେ ।

ଅନନ୍ତ ଭୁଜଙ୍ଗ ଶୋଭେ ଶ୍ରୀଅଙ୍ଗେ ବାହୁଟି
ବିଭୂତି ଲେପନ ଦେହ ସିଦ୍ଧ ଚରକୁଟି ।

ଭୁଜରେ ଯାମଳା ଲମ୍ଭ କରରେ ତ୍ରିଦଣ୍ଡି
ଝଟକଇ ଚଉକତି ତିଳକ ଶ୍ରୀଖଣ୍ଡି ।

ଏମନ୍ତ ସ୍ୱରୂପେ ସ୍ୱାମୀ ବାଳୁତ ସୁଆଳି
କନ୍ୟାଙ୍କ ନିକଟ ଗଲେ ହୋଇ କୁତୁହଳି ।

ଡିବଡିବ ଡମ୍ବରୁକୁ ସୁସ୍ୱରରେ ବାଇ
କୁମାରୀଙ୍କ ଖେଳ ଘରେ ପ୍ରବେଶିଲେ ଯାଇ ।

ଦେଖି କରି ହସିଲେ ସେ ବାଳୁତ କୁମାରୀ
ମିଛୁକା ଘରକୁ ଦେଖ ସଜିକା ଭିକାରୀ ।

ଧୂଳିରେ ଅନ୍ନବ୍ୟଞ୍ଜନ କରିଛୁ ସଙ୍ଗାତ
କିସ ଭିକ୍ଷା ଦେବା ନେଇ ଏହାଙ୍କର ପାତ୍ର ।

ସୁପକ୍ୱ କରି ପାତ୍ରରେ ପୂରାଇଲେ ଧୂଳି
ସଦାଶିବଙ୍କ ପାତ୍ରରେ ତାହା ଦେଲେ ତୋଳି ।

ଉଦ୍‌ଯୋଗ, ପୃ. ୫୩

ସାରଳାଦାସଙ୍କ ସମୟ ଆଉ ଫେରି ଆସିବ ନାହିଁ, ମାତ୍ର ତାଙ୍କ ଜ୍ଞାନ, ପ୍ରଜ୍ଞା, ପ୍ରତିଭା, ଅସାଧାରଣ ମୌଳିକତା, ଅସାଧାରଣ ସୃଷ୍ଟିଶକ୍ତି, ଅକ୍ଳାନ୍ତ ପରିଶ୍ରମ, ପ୍ରଗାଢ଼

ଧର୍ମପରାୟଣତା, ପ୍ରଗାଢ଼ ଦେଶଭକ୍ତି, ବଳିଷ୍ଠ ଜାତୀୟତା, ସମ୍ପୂର୍ଣ୍ଣ ନୂତନ ମନୋବୃତ୍ତି ଶୂନ୍ୟତା, ନିରହଙ୍କାରତା ଇତ୍ୟାଦି ପୁଣି ଓଡ଼ିଶାରେ ଯେତେବେଳେ ଦେଖାଦେବ, ସେତେବେଳେ ହିଁ ଏଠାରେ ପ୍ରକୃତ ନୂତନ ଯୁଗର ଅଭ୍ୟୁଦୟ ଘଟିବ । ନିକଟରେ ଓଡ଼ିଶାର ସବୁଜସାହିତ୍ୟର ପ୍ରଧାନ ପୁରୋଧା, ବିଶ୍ୱବିଖ୍ୟାତ ସୁକବି ଓ ସୁସାହିତ୍ୟିକ ଅନ୍ନଦାଶଙ୍କର ରାୟ ଗୋଟିଏ ଭାଷଣରେ କହିଥିଲେ ଯେ ଓଡ଼ିଶାର ତିନୋଟି ଜିନିଷ ବିଶ୍ୱଦରବାରରେ ସ୍ଥାନ ପାଇବାର ଯୋଗ୍ୟ । ସେଗୁଡ଼ିକ ହେଉଛନ୍ତି ଓଡ଼ିଶାର ଜଗନ୍ନାଥ ଧର୍ମ, କୋଣାର୍କ ଓ ସାରଳା ମହାଭାରତ, କିନ୍ତୁ ସାରଳା ସାହିତ୍ୟ ଓଡ଼ିଶାରେ ଅବଧି ଉଚ୍ଚାସନ ପାଇନାହିଁ, କିମ୍ବା ନିକଟ ଭବିଷ୍ୟତରେ ପାଇବ ବୋଲି ଆଶା କରାଯାଇ ନାହିଁ । ଆମ୍ଭମାନଙ୍କ ଏହି କ୍ଷୀଣ ପ୍ରଚେଷ୍ଟା ଯେ ଓଡ଼ିଶାରେ ସାରଳା ସାହିତ୍ୟର ଆସନକୁ ଉପରକୁ ଉଠାଇଦେବ, ଆମ୍ଭେମାନେ ଏପରି ମଧ୍ୟ ଭାବୁନାହୁଁ । ଗୋଟିଏ ମହତ୍ ସାହିତ୍ୟର ଆଲୋଚନାରେ ବହୁଦିନ ପ୍ରବୃତ୍ତ ରହି କେବଳ ନିଜକୁ ଧନ୍ୟ ମନେ କରୁଛୁ ।

———

# ପରିଶିଷ୍ଟ

୧୯୫୭ ମସିହାରୁ ଆଜି ପର୍ଯ୍ୟନ୍ତ ସାରଳା ସାହିତ୍ୟ ସମ୍ବନ୍ଧୀୟ ମୋର ଯେଉଁ ପ୍ରବନ୍ଧମାନ ଝଙ୍କାରର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ହୋଇଥିଲା, ସେଗୁଡ଼ିକ ଝଙ୍କାରର ସୁଧୀ ପାଠକବୃନ୍ଦଙ୍କ ନିଶ୍ଚୟ ଦୃଷ୍ଟିଗୋଚର ହୋଇଥିବ । ମୋର ଏହି ପ୍ରବନ୍ଧଟି ସେହି ପ୍ରବନ୍ଧାବଳୀର ଶେଷ ପ୍ରବନ୍ଧ । ମୋର ପ୍ରବନ୍ଧାବଳୀ ବିରୁଦ୍ଧରେ ଗୋଟିଏ ପ୍ରଧାନ ଅଭିଯୋଗ ଥିଲା, ମୁଁ ସାରଳା ମହାଭାରତର ଛାପା ବହି ସାହାଯ୍ୟରେ ହିଁ ମୋର ଏହି ଆଲୋଚନା ଚଳାଇଥିବାରୁ ଏହି ଆଲୋଚନା ଭ୍ରମାତ୍ମକ । ଏଣୁ ମୁଁ ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସାରଳା ମହାଭାରତର ନୂତନ ସଂସ୍କରଣକୁ ଗ୍ରହିଁ ରହିଥିଲି । ଅବଶେଷରେ ବହୁ ବିଳମ୍ବରେ ଏହି ନୂତନ ସଂସ୍କରଣ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ହେଲା । ଏହା ପ୍ରକାଶିତ ହେବା ପରେ ଡକ୍ଟର ମହତାବଙ୍କ ନିର୍ଦ୍ଦେଶମତେ ଶ୍ରୀଯୁକ୍ତ ଗଣେଶ ପ୍ରସାଦ ପରିଜା ଏହି ମହାଭାରତର ବିଭିନ୍ନ ପର୍ବର ଆଠଖଣ୍ଡ ପୁସ୍ତକ ମୋତେ ବ୍ରହ୍ମପୁରଠାରେ ଯୋଗାଇଥିଲେ । ସେଥିମଧ୍ୟରେ ବିରାଟପର୍ବ ନ ଥିଲା । ପ୍ରାପ୍ତ ପୁସ୍ତକମାନଙ୍କ ସହିତ ମୋର ପ୍ରବନ୍ଧାବଳୀକୁ ତୁଳନା କରି ଦେଖିଲି ଯେ, ମୋ ଦ୍ୱାରା ଆଲୋଚିତ ପ୍ରାୟ ସମସ୍ତ ବିଷୟ ଓ ସମସ୍ତ ନାମ ଅଧ୍ୟାପକ ମହାନ୍ତିଙ୍କ ନୂତନ ସଂସ୍କରଣରେ ମଧ୍ୟ ରହିଛି । ମାତ୍ର ବିରାଟ ପର୍ବଟି ହସ୍ତଗତ ହୋଇ ନ ଥିବାରୁ ମୋର ମନ ଛଟପଟ ହେଲା । ଏଣୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅବସର ନେବା-ପରେ ମୁଁ ନୂତନ ସଂସ୍କରଣର ବିରାଟପର୍ବ ଖଣ୍ଡିଏ ଓଡ଼ିଶା ମିଉଜିଅମରୁ କିଣିଲି; ମାତ୍ର ଏଥିରେ ଯାହା ଦେଖିଲି, ସେଥିରେ ସ୍ତମ୍ଭୀଭୂତ ହୋଇଗଲି । ପାଣ୍ଡବମାନେ ଗୁପ୍ତ ବନବାସରେ ଥିବାବେଳେ ସେମାନଙ୍କୁ ଅନୁସନ୍ଧାନ କରିବା ପାଇଁ ଦୁର୍ଯ୍ୟୋଧନ ଚତୁର୍ଦ୍ଦିଗକୁ ଚରମାନଙ୍କୁ ପଠାଇଥିଲେ । ସେମାନେ ଫେରିଆସି ପାଣ୍ଡବମାନଙ୍କୁ ଯେଉଁ ଯେଉଁ ଦେଶ, ନଗର, ପର୍ବତ, ସ୍ଥାନ ଇତ୍ୟାଦିରେ ଖୋଜିଥିଲେ, ସେଗୁଡ଼ିକର ଦୀର୍ଘ ବିବରଣୀ ଦୁର୍ଯ୍ୟୋଧନଙ୍କୁ ଦେଇଥିଲେ । ଏହି ଦୀର୍ଘ ବିବରଣୀକୁ ଅଧ୍ୟାପକ ମହାନ୍ତିଙ୍କ ସମ୍ପାଦିତ ବିରାଟପର୍ବରୁ ଏକାବେଳକେ ବାଦ୍ କରି ଦିଆଯାଇଛି । ଛାପା ବହିରେ ଏହି ବିବରଣୀ ଯେପରି ଭାବରେ ଅଛି ଓ ଅଧ୍ୟାପକ ମହାନ୍ତିଙ୍କ ନୂତନ ସଂସ୍କରଣରେ ଏହା ଯେପରି ଆକାର ଧାରଣ କରିଛି, ତାହା ନିମ୍ନରେ ପ୍ରଦତ୍ତ ହେଲା ।

ସମ୍ମୁଖ ଆସନେ ବସିକେ ଦୁର୍ଯ୍ୟୋଧନ ସ୍ୱାମୀ
ଦକ୍ଷିଣ ଚର କଣାଏ ହୋଇଣ ପ୍ରଣମି । ୧ ।

କଳିଙ୍ଗ ମଗଧ ଆଉ ବେଲା ଗୁଜୁରାଟ
ମହାନ୍ଦ୍ର ଚର ବିଚିତ୍ର (ଆ)ବର ମହାଣ୍ଠ । ୧ ।

କନାଉଜ ଉଦେଗିରି ପୁଣି ଚନ୍ଦ୍ରଗିରି
କାଞ୍ଚି ଚନ୍ଦ୍ରପୁର ଆଉ ଉତ୍ତମ କାବେରୀ । ୩ ।

ଚୌରମଣ୍ଡଳ କୋଶଳମଣ୍ଡଳ ମଲ୍ଲିକା
ପାଣ୍ଡବନଗର କୃଷ୍ଣାବେଣୀ ଷଡ଼ଙ୍ଗିକା । ୪ ।

ଉଡ୍ଡଙ୍ଗ ମାତଙ୍ଗ ଭଦ୍ରା କୃଷ୍ଣା ଯେ ସୁନନ୍ଦା
ଗୋପନଷଗୀ ବିଜୟା ଆବର ଆନନ୍ଦା । ୫ ।

ଶରଭଙ୍ଗ ସୁନନ୍ଦ୍ରକ କନାଉଜ ଖେଟ
କ୍ଷିନା ଗୋମତୀ କଙ୍କଲୀ ଆଦ ସର୍ବରାଷ୍ଟ୍ର । ୬ ।

ନାଟ ଗୈଡ଼ଙ୍ଗ ଅବନ୍ତୀ ଆବର କାମାକ୍ଷୀ
ଉରତର କୁଣ୍ଡାବେନ୍ଧା ପୁଣି ମଙ୍ଗଳାକ୍ଷୀ । ୭ ।

ପଦ୍ମପୁର ଲକ୍ଷ୍ମୀପୁର ସରସ୍ୱତୀ ସୌରି
ଷଣ୍ଢ୍ୟମାଳ କନ୍ଧମାଳ ମହେନ୍ଦ୍ର ଯେ ଗିରି । ୮ ।

ଦକ୍ଷିଣ ବନକନ୍ଦର ତୀର୍ଥ ରାଜ୍ୟ ଭୂମି
ପାଣ୍ଡବଙ୍କୁ ଖୋଜି ଖୋଜି ନ ପାଇଲୁ ସ୍ୱାମୀ । ୯ ।

ଶୁଣିଣ ମଉନବ୍ରତ ହେଲେ କୁରୁନାଥ
ପ୍ରବେଶ ଆସିଣ ପୂର୍ବ ପ୍ରଦେଶର ଦୂତ । ୧୦ ।

କହେ ଦେଶାନ୍ତର ଦେବ ହୁଅ ଅବଧାରି
ଆମ୍ଭେ ହେ ଦେବ ବାସବ ଦଗ ଦୂତକାରୀ । ୧୧ ।

ଦେବ ଭଦ୍ରଗିରି ଉଦେଗିରି ନୀଳଗିରି
ତାମ୍ରଗିରି ଲୌହଗିରି କର୍ଣ୍ଣାଟ ବନ୍ଦାରୀ । ୧୨ ।

ତୁଳସୀ ଦେବପୁର ଯେ, ପୁଣି ଭୂତଖଣ୍ଡ
ଜମ୍ବୁରାଷ୍ଟ୍ର ଉଡ୍ରରାଷ୍ଟ୍ର ସୁଣ୍ଡି ମାରତଣ୍ଡ । ୧୩ ।

ରୋହିଣୀ ମାର୍କଣ୍ଡ ଶ୍ୱେତଗଙ୍ଗା ଅର୍କତୀର୍ଥ
ମଣିକୁଣ୍ଡ ସାରଦଣ୍ଡ ବଟୀ ଲୋକନାଥ । ୧୪ ।

କାଞ୍ଚିପୁର ବାସପୁର ପୁଣି ଜ୍ୟୋତିପୁର
ସୁଣ୍ଡିଭଦ୍ରା ଭାଗୀରଥୀ ହିରଣ୍ୟକା ତୀର । ୧୫ ।

ଗଙ୍ଗାସାଗରର ପୂର୍ବ କପିଳାସ ଖଣ୍ଡ
ଲବଣ ମହାଖଣ୍ଡ ଯେ ଦଣ୍ଡ ହିଁ ଉଦଣ୍ଡ । ୧୬ ।

ମାଳଵା ମଥୁରା ମଧୁପୁର ନୋପପୁର
କଣପୁ ମାନଭଙ୍ଗ ଯେ ପୁଣି କେହ୍ଲପୁର । ୧୭ ।
ବଇନ୍ଦ୍ରାଳ ଭୂଜ ପୁଣି ବଳାସମହ୍ଲାର
ଏକଓଡ଼ା ଏକଚକ୍ରା ଚମ୍ପା ଶିବପୁର । ୧୮ ।
ମଳୟ ବର୍ଦ୍ଧିନ୍ତ ଭାନୁ ମଣ୍ଡଳ ଲଳିତା
କଳାକଳା ଉଜାଣି ଯେ ଆଟକବର ଜିତା । ୧୯ ।
ଏ ବଧିରେ ପୂର୍ବଦେଶେ ବହୁ ଭ୍ରମି ଭ୍ରମି
ପାଣ୍ଡବଙ୍କ ତତ୍ତ୍ୱବର୍ଣ୍ଣ ନ ପାଇଲୁ ସ୍ୱାମୀ । ୨୦ ।
ହୃଦଗତେ ପାଞ୍ଚ ରାଜା ଗୁପତ ବଚନେ
ମାନଭଙ୍ଗେ ବସିବନ୍ତି ନ ବୋଲ ମଉନେ । ୨୧ ।
ଉତ୍ତର ଦେଶରୁ ଆସି ବୋଲେ ଦେଶାଉର
ଶୁଣ ବାରତା ଦେବ ଉତ୍ତର ଦେଶର । ୨୨ ।
ସ୍ୱାମୀ ମାନ ଭଙ୍ଗ ପୁଣି ଦେବାଙ୍କ ନିହୁତ
ଭୋଟମହ୍ଲାର ନେପାଳ ପୁଣି ବାରସ୍ୱତ । ୨୩ ।
ଶାଖାପୁର ଶ୍ରେଣୀପୁର ବୃନ୍ଦା ମହାରାଷ୍ଟ୍ର
ସିନ୍ଧୁ ମନ୍ଦର ମର୍ହଟ ପୁଣି ସଉରାଷ୍ଟ୍ର । ୨୪ ।
ଭୂବମନୁ ଗଙ୍ଗାପୁରୀ ଆବର ଶ୍ରୀହଟ୍ଟ
ନନ୍ଦଗିରି ରାମଗିରି କପୋଳର ରାଷ୍ଟ୍ର । ୨୫ ।
ଅଙ୍ଗ ବଙ୍ଗ କାଉଁରି ଯେ ସୁଶ୍ରୋଣିତ ପୁରୀ
ନନ୍ଦପୁର ଶ୍ୱେତ ପାଟଣାକୁ ଆଦି କରି । ୨୬ ।
ସୁବର୍ଣ୍ଣ କାଞ୍ଚନପୁର ଆଶ୍ଚର୍ଯ୍ୟ ମଣ୍ଡଳ
କାଉଁରି ଶ୍ରେଷ୍ଠ ନଗର ଉଡ଼ଙ୍ଗ କୋଶଳ । ୨୭ ।
ରଇବତ କୋଳାହଳ ପୁଣି ମୁଦ୍ରାପୁରୀ
ଶୋଣିତାକ୍ଷ ମଣ୍ଡଳ ଯେ ଅଯୋଧ୍ୟାଦି କରି । ୨୮ ।
ଗୋ-ମାତା ଗଣ୍ଡୁକୀ ମାଳବତୀ ଶୂନ୍ୟ ଭଦ୍ରା
ଆରଣ୍ୟକ କାଶୀପୁର ପୁଣି ଉର୍ଦ୍ଧ୍ୱୀ ରୁଦ୍ରା । ୨୯ ।
ପ୍ରୟାଗ କାଶୀ କୌଶିକ କ୍ଷେତ୍ର ବାରାଣସୀ
ମାଲ୍ୟବନ୍ତ ହେମଗିରି କଟକୋଦ ଅନ୍ୱେଷି । ୩୦ ।
ସରସ୍ୱତୀ-ଚନ୍ଦ୍ରପୁର ରଥୀ ଚନ୍ଦ୍ରକଣା
ହରଣୀ ତାରଣୀ ପୁଣି କାମେ ଜଗନ୍ତି ଣ । ୩୧ ।

ଅନ୍ତରୀକ୍ଷ ହଟକେଶ ଏହି ଦୁଇ ପୁରୀ
ଦେବା ରାଜ୍ୟରେ ଭ୍ରମିଲୁ ନଦୀବନ ଗିରି । ୩୨ ।
ପାଣ୍ଡବଙ୍କୁ ନ ପାଇଲୁ ବହୁତ ଲୋଡ଼ିଲୁ
ଶ୍ରୀଗୁରୁମୁରେ ଆସି ତେଣୁ ନିବେଦନ କଲୁ । ୩୩ ।

ଛିଦ୍ରାଛିଦ୍ର ନ ପାଇଲୁ ଖୋଜି ଖୋଜି ରାଜ୍ୟ
କାହିଁ ନ ଦେଖିଲୁ ସେହି ପାଣ୍ଡବଙ୍କ ଖୋଜ । ୩୪ ।
ପଶ୍ଚିମ ଦିଗର ଚର ଆସି ପରଣାମି
ବୋଇଲେ ସକଳ ରାଜ୍ୟ ଅଇଲୁ ଯେ ଭ୍ରମି । ୩୫ ।

ଭଇରବ ପଦ୍ମହୁଡ ଅନ୍ତପାରିଧିବ
କର୍ଣ୍ଣାଟ ଓଡ୍ରାଙ୍ଗମାଳା ଶୁଭ ଭଇରବ । ୩୬ ।
ଆବର ଡାହାଳ ଦେଶ ରାଉଳ ଝୋଲିଲ
ଗୁଜରାଟ ମାଳଭଙ୍ଗ ମାଳବ ଭୂପାଳ । ୩୭ ।
କାଉଁରି ଦେଶ କୋଶଳ ପୁଣି ହିରଣାକ୍ଷୀ
ତାପତ୍ତି ତେଲଙ୍ଗା ଦେଶ ଗଉଡ଼ି କାମାକ୍ଷୀ । ୩୮ ।

ରେଡ଼ି ମେହୁ ମର୍ଦ୍ଦନାଦି ଗୁର୍ଜନରେ ବୁଲି
ବେଳାଉର ବେଳାନଗ୍ର ଗଲୁ ବେଲ୍ଲବଲୀ । ୩୯ ।
ସୁରବର ପାଟଣା ଯେ ନଗ୍ର ମୌଳାବନ୍ତି
ହିରଣ୍ୟପୁର ଗଣ୍ଡକୀ ନଦୀ ଯେ ସୁମତି । ୪୦ ।
ବଇଲବପୁର ଗଲୁ ତେଉଁ ବହ୍ନିଗିରି
କାଳିକାପୁରେ ପ୍ରବେଶ ହେଲୁ ଯାଇ କରି । ୪୧ ।

କେନ୍ଦୁ ଗଣ୍ଡକୀ ସଲନ୍ତ ଜଇନ୍ଦ୍ରାଦି ପୁର
ଯୋଧପୁର କେଶପୁର ସମଲ ନଗର । ୪୨ ।
ଶୁକ୍ଳାମ୍ବରପୁର ଝଙ୍ଗପୁର ଯୋମଦର୍ଗି
ହର ପାପଗଙ୍ଗା ବସ୍ତ୍ରହରଣ ବାତୃଣୀ । ୪୩ ।
ରାମ ରାଜପାଟଣାଦି ନଗ୍ରଗ୍ରାମେ ହେଲୁଁ
ଜାଣି ଚେଦି ଅନ୍ତଃପୁର ପର୍ଯ୍ୟନ୍ତ ଯେ ଗଲୁ । ୪୪ ।
ସ୍ୱାମୀ ଜାନୁମଣ୍ଡଳ ଯେ ଗନ୍ଧର୍ବ ପର୍ବତ
ଯହୁଁ ବିଶଲ୍ୟକରଣି ନେଲେ ହନୁମନ୍ତ । ୪୫ ।
ମାରକଣ୍ଡ ସାତକଳସ ହେଲେ ଯେଉଁ ଭୂମି
ମନୁଷ୍ୟଙ୍କ ଗତାଗତ ତହିଁ ନାହିଁ ସ୍ୱାମୀ । ୪୬ ।

ଋଷ୍ୟମୂକ ପଞ୍ଚବଟୀ ଚିତ୍ରକୂଟ ବନ
ବାଗାନଳ କଳାପ ଯେ ବନ ମଧୁବନ । ୪୭ ।
ନନ୍ଦା ଆଦି ସମକୋଣ ଉତ୍ତର ଦଣ୍ଡକା
ଗୋରେଖ ମଙ୍ଗଳପୁର ଦେଶ ଯାଜନକା । ୪୮ ।
ଅନଳ ଅନଳପୁର କାମ ବିରୂପାକ୍ଷ
ଭୂମିକ ଅନ୍ଧକ ପୁଣି ସମରାଷ୍ଟ୍ର ବସ୍ତ୍ର । ୪୯ ।
ଋଷିବଟ ବାଞ୍ଛାବଟ ହଟ ଯେ ଗୋଧିକା
ମଙ୍ଗଳା ଯେ ମାଙ୍ଗଳିକପୁର ସୁଗନ୍ଧିକା । ୫୦ ।
ବୃନ୍ଦାହୋଳ ଭୂରୁ ପରି ଅବନ୍ତ୍ୟାଦି ପୁରୀ
ସମସ୍ତ ଦେଖିଲୁ ନାଥ ଭିନ୍ନ ଭିନ୍ନ କରି । ୫୧ ।
ପଶ୍ଚିମେ ପଞ୍ଚାଶସହସ୍ର ନବଲକ୍ଷ ରଥ
ଏତେକ ପଥ ଭ୍ରମିଲୁ ଦେବ ରଘୁନାଥ । ୫୨ ।
ସ୍ତ୍ରୀରୂପ ବାଳୁତ ରୂପ ସ୍ଥାନେ ସ୍ଥାନେ ହେଲୁଁ
ପାଣ୍ଡବଙ୍କ ଚିହ୍ନବର୍ତ୍ତୀ କାହିଁ ନ ପାଇଲୁଁ । ୫୩ ।

(ବିରାଟପର୍ବ, ରାଧାରମଣ ପ୍ରେସ, ୧୯୫୭ ପୃ-୮୭-୮୮) ।

ଏହି ଦୀର୍ଘ ବିବରଣୀ ଖଣ୍ଡିତ ହୋଇ ସ୍ୱର୍ଗତ ମହାନ୍ତିଙ୍କ ନୂତନ ସଂସ୍କରଣରେ ନିମ୍ନୋକ୍ତ ମତେ ପ୍ରକାଶିତ ହୋଇଛି ।

ମହାସମୁଦ୍ର ଆସ୍ଥାନେ ବିଜୟେ ମାନଗୋବିନ୍ଦ ସ୍ୱାମୀ
ଦକ୍ଷିଣନଗର ଗୃହ ଯାଇଁ ଆସ୍ଥାନେ ପରଣାମୀ । ୫ ।
ସ୍ୱାମୀ ସ୍ତ୍ରୀ ରୂପ ବାଳୁତ ରୂପ ଅନେକ ଧଇଲୁ
ପାଣ୍ଡବଙ୍କର ବର୍ତ୍ତି ଚିହ୍ନ ଖୋଜି ତ ନ ପାଇଲୁ । ୬ ।

(ବିରାଟ ପର୍ବ, ସାଂସ୍କୃତିକ ବ୍ୟାପାର ବିଭାଗ-ସଂସ୍କରଣ, ପୃ-୩୬୩)

ଉଦ୍ଧୃତାଂଶ ମାନଙ୍କରୁ ଦେଖାଯିବ ଯେ ଉଭୟ ପୁସ୍ତକରେ ଏହି ଦୀର୍ଘ ବର୍ଣ୍ଣନାର ଆରମ୍ଭ ଓ ଶେଷ ଏକାପରି ହୋଇଛି, ମାତ୍ର ସ୍ୱର୍ଗତ ମହାନ୍ତିଙ୍କ ସଂସ୍କରଣରେ ତେପନ ପଦ ବିଶିଷ୍ଟ ଏହି ବର୍ଣ୍ଣନାର କେବଳ ପ୍ରଥମ ଓ ଶେଷପଦକୁ ହିଁ ରଖାଯାଇଛି । ଯେଉଁ ପଦମାନଙ୍କରେ ଭୌଗୋଳିକ ବିବରଣୀ ରହିଛି, ସେଗୁଡ଼ିକୁ ଏକାବେଳକେ ବାଦ୍ କରି ଦିଆଯାଇଛି । କଷ୍ଟ ସ୍ୱୀକାର କରି ବିଭିନ୍ନ ସମୟରେ ବିଭିନ୍ନ ପ୍ରେସରୁ ପ୍ରକାଶିତ ସାରଳା ମହାଭାରତ ପୁସ୍ତକମାନ ପଢ଼ି ଦେଖିଲେ ଯେ, ସମସ୍ତ ପୁସ୍ତକରେ

ବିରାଟ ପର୍ବର ଏକ ଭୌଗୋଳିକ ବିବରଣୀ ରହିଛି । ଯେତେଖଣ୍ଡ ପୁରୁଣା ପୋଥି ପାଇଲି ସେ ସମସ୍ତଙ୍କୁ, ଏପରିକି ସ୍ୱର୍ଗତ ମହାନ୍ତି ଯେଉଁ ପୋଥିମାନଙ୍କ ଉପରେ ବେଶି ନିର୍ଭର କରି ନୂତନ ସଂସ୍କରଣ କରିଛନ୍ତି, ସେ ସମସ୍ତଙ୍କୁ ମଧ୍ୟ ପଢ଼ି ଦେଖିଲି ଯେ, ଏହି ଦୀର୍ଘ ଭୌଗୋଳିକ ବିବରଣୀ ସବୁଥିରେ ଅଛି । ଅବଶ୍ୟ ଏ ସମସ୍ତ ପୁସ୍ତକ ଓ ପୋଥିରେ ସ୍ଥାନେ ସ୍ଥାନେ ପାଠାନ୍ତର ରହିଛି, କିନ୍ତୁ ଏପରି କୌଣସି ପୋଥି ବା ଛପା ପୁସ୍ତକ ନାହିଁ, ଯେଉଁଥିରେ କି ସାରଳାଦାସଙ୍କ ବିରାଟପର୍ବର ଏହି ଅନନ୍ୟ ସାଧାରଣ ଦୀର୍ଘ ଭୌଗୋଳିକ ବିବରଣୀ ନାହିଁ । କହିବା ବାହୁଲ୍ୟ ଯେ ସାରଳା ଦାସଙ୍କ ଛଡ଼ା ପରବର୍ତ୍ତୀ କୌଣସି ଲେଖକଙ୍କ ଲେଖନୀରୁ ଏପରି ଭୌଗୋଳିକ ବିବରଣୀ ପ୍ରକାଶ ପାଇବା ସମ୍ଭବପର ନୁହେଁ । ତଥାକଥିତ ଶୁଦ୍ଧ ସଂସ୍କରଣରେ ସାରଳା ସାହିତ୍ୟର ଏ ଯେଉଁ ନିର୍ମମ ଅଙ୍ଗଚ୍ଛେଦ କରାଯାଇଛି, ତାହାର ପ୍ରମାଣ ଅବଶିଷ୍ଟ ପଦ ଦୁଇଟିରେ ହିଁ ରହିଛି । ଦୁର୍ଯ୍ୟୋଧନ ଗୃଣିଦିଗକୁ ଗୃର ପଠାଇଥିଲେ, ମାତ୍ର ତଥାକଥିତ ଶୁଦ୍ଧ ସଂସ୍କରଣରେ କେବଳ ଦକ୍ଷିଣଦିଗର ଗୃର ତାଙ୍କୁ ପ୍ରଣାମ କରି କାମ ଶେଷ କରିଦେଇଛି । ବାକି ତିନିଦିଗର ଦୂତ ଯାହା କହିଥିଲେ, ତାହାର ଆଭାସ ମଧ୍ୟ ନାହିଁ । ସାରଳାଦାସ ଯେଉଁଠାରେ ସୁବିଧା ପାଇଛନ୍ତି, ସେଠାରେ ଭୌଗୋଳିକ ବିବରଣମାନ ପ୍ରକାଶ କରିଛନ୍ତି, ମାତ୍ର ଦୁର୍ଯ୍ୟୋଧନଙ୍କ ଗୃରିଦିଗର ଗୃର ମୁଖରେ ଯେ ସେ କୌଣସି ଭୌଗୋଳିକ ନାମ ପ୍ରକାଶ କରିନାହାନ୍ତି, ଏ କଥା କେହି ବିଶ୍ୱାସ କରିବେ ନାହିଁ । ଇଂରାଜୀରେ ଗୋଟିଏ କଥା ଅଛି 'Murder speaks itself' ସ୍ୱର୍ଗତ ମହାନ୍ତିଙ୍କ ସମ୍ପାଦିତ ସାରଳା ମହାଭାରତରେ ସାରଳା ସାହିତ୍ୟକୁ ଯେ ହତ୍ୟା କରାଯାଇଛି, ତାହାର ପ୍ରମାଣ ଏହି ପଦ ଦୁଇଟିରୁ ହିଁ ମିଳିଯାଉଛି ।

ସାରଳାଦାସଙ୍କ ଏହି ଅଙ୍ଗଚ୍ଛେଦ କେତେବେଳେ, କିଏ ଓ କାହିଁକି କରିଛନ୍ତି ? ଏ ସମସ୍ତ ପ୍ରଶ୍ନର ଉତ୍ତର ମୁଁ ଦେଇପାରିବି ନାହିଁ । ସ୍ୱର୍ଗତ ମହାନ୍ତିଙ୍କ ମୃତ୍ୟୁର ପ୍ରାୟ ଦଶବର୍ଷ ପରେ ତାଙ୍କ ଦ୍ୱାରା ସମ୍ପାଦିତ ସାରଳା ମହାଭାରତ ପ୍ରକାଶିତ ହୋଇଥିଲା । ଏଣୁ ସେ ଯେ ଏହି ଅଙ୍ଗଚ୍ଛେଦ ପାଇଁ ଦାୟୀ ଏହା ନିଶ୍ଚିତ ଭାବରେ କୁହାଯାଇ ପାରିବ ନାହିଁ । ତେବେ ଏହା ନିଶ୍ଚିତ ଯେ ଝଙ୍କାରରେ ପ୍ରକାଶିତ "ସାରଳାସାହିତ୍ୟର ଐତିହାସିକ ତଥ୍ୟ" ଶୀର୍ଷକ ମୋର ପ୍ରବନ୍ଧମାନ ଯେଉଁମାନେ ପଢ଼ୁଥିଲେ, ସେମାନଙ୍କ ମଧ୍ୟରୁ କେହି ଜଣେ 'ମୂଳ୍ପ ମାଇଲେ ଯାଏ ସରି' ନୀତିରେ ଏହି ଦୀର୍ଘ ଭୌଗୋଳିକ ବିବରଣୀକୁ ସ୍ୱର୍ଗତ ମହାନ୍ତିଙ୍କ ସମ୍ପାଦିତ ସାରଳା ମହାଭାରତରୁ ବାଦ୍ କରିଦେଇଛନ୍ତି । କାରଣ ଏହି ଦୀର୍ଘ ବିବରଣୀକୁ ମୁଁ ମୋର ପ୍ରବନ୍ଧମାନଙ୍କରେ ବହୁବାର ବ୍ୟବହାର କରିଛି । ତଥାକଥିତ ଶୁଦ୍ଧ ସଂସ୍କରଣର ମଧ୍ୟପର୍ବରେ ଥିବା କୋଣାର୍କ ଚଣ୍ଡୀଙ୍କ ସ୍ତବକୁ ଏକାବେଳକେ ବାଦ୍ କରି ଦିଆଯାଇଛି ଏବଂ ବିରାଟପର୍ବରେ ଥିବା ସୂର୍ଯ୍ୟ ସ୍ତବକୁ ଓ

ସମ୍ପର୍କର କେତେକ ଅଂଶକୁ ମଧ୍ୟ ପରିବର୍ତ୍ତିନ କରାଯାଇଛି । ଏସବୁ ଅଙ୍ଗଚ୍ଛେଦର କାରଣ ଏହି ଯେ, ମୁଁ ଏସବୁକୁ ମୋର ପ୍ରବନ୍ଧମାନଙ୍କରେ ବ୍ୟବହାର କରିଛି । ମୋର କେବଳ ଏତିକ ଆଶା ଯେ, ଭବିଷ୍ୟତର ସାରଳା ସାହିତ୍ୟର ଗବେଷକମାନେ ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ସାରଳା ମହାଭାରତକୁ ଏକାବେଳକେ "ଶୁଦ୍ଧ" ବୋଲି ଧରିନେବେ ନାହିଁ । ମୋ ପରି ଜଣେ ଅକିଞ୍ଚନ ଲୋକକୁ ଆଖି ଆଗରେ ରଖି, କମ୍ବା ଆଲୋଚନାର ପୃଷ୍ଠପୋଷକ ଝଙ୍କାରର ସୁଯୋଗ୍ୟ ମୁଖ୍ୟ ସମ୍ପାଦକ ଡକ୍ଟର ମହତାବଙ୍କୁ ଆଖି ଆଗରେ ରଖି, କୂଟକପଟ ପ୍ରୟୋଗ ଦ୍ୱାରା ତଥାକଥିତ ଶୁଦ୍ଧ ସଂସ୍କରଣରେ ସାରଳା ମହାଭାରତର ମୌଳିକ ଲେଖାର ବହୁ ସ୍ଥାନରେ ଅଙ୍ଗଚ୍ଛେଦ ଓ ଅଙ୍ଗବୃଦ୍ଧି କରାଯାଇଛି ।

ମୁଁ ୧୯୫୬ ମସିହାରୁ ଓଡ଼ିଶାର ଭଣ୍ଡପାଣ୍ଡିତ୍ୟ ବିରୁଦ୍ଧରେ ଅଭିଯାନ ଚଳାଇ କ୍ଷତବିକ୍ଷତ ହୋଇଛି, ମାତ୍ର ବର୍ତ୍ତମାନ ସୁଦ୍ଧା ଏଥିରୁ ବିରତ ହେବାର କୌଣସି କାରଣ ଦେଖୁନାହିଁ; ମୋର ଅଭିଯାନ ପୁରସ୍କାର ବା ତିରସ୍କାର ଦ୍ୱାରା ବନ୍ଦ ହେବନାହିଁ, ବନ୍ଦ ହେବ କେବଳ ମୋର ମୃତ୍ୟୁରେ । ଏ ରାଜ୍ୟରେ ଭଣ୍ଡ ପାଣ୍ଡିତ୍ୟ ବହୁ ରୂପ ଧାରଣ କରିଛି । ଏହା ଜାଲଉପାଦାନଭିତ୍ତିକ, ଜାତିଭିତ୍ତିକ, ଆଞ୍ଚଳିକତାଭିତ୍ତିକ, ରାଜନୀତିଭିତ୍ତିକ, ଅହମିକାଭିତ୍ତିକ, ଦ୍ୱେଷଭିତ୍ତିକ, ଭଣ୍ଡ ଓଡ଼ିଶା-ପ୍ରୀତିଭିତ୍ତିକ ହୋଇ ଓଡ଼ିଶାକୁ ନବଯୁଗର ଆଲୋକରୁ ବଞ୍ଚିତ କରିଛି । ନବଯୁଗ ଓଡ଼ିଶାର ଦ୍ୱାରଦେଶରେ କରାଘାତ କରିଯାଇଛି, ମାତ୍ର ଦ୍ୱାରଦେଶର ରୁଦ୍ଧ ପାଷାଣ କବାଟ ଫିଟିନାହିଁ । ସାଂସ୍କୃତିକ କ୍ଷେତ୍ରରେ ଓଡ଼ିଶା ଭାରତର ସମସ୍ତ ରାଜ୍ୟ ସହିତ ପାଦ ପକାଇ ଚାଲିପାରିନାହିଁ । ସମସ୍ତ ଅପକର୍ମରେ ଓଡ଼ିଶା ଅଦ୍ୟାପି ଅଗ୍ରଣୀ ହେଉଛି । ଖାଦ୍ୟ ଓ ଖାଦ୍ୟେତର ପଦାର୍ଥର ଅପମିଶ୍ରଣରେ, ସ୍ୱାଧୀନତା ସଂଗ୍ରାମୀ ରୂପେ ଜାଲ ସାର୍ଟିଫିକେଟ ଦାଖଲ କରିଥିବା ଅଭିଯୋଗରେ, ପ୍ରାଚୀନ ମୂର୍ତ୍ତି-ଚୋରିରେ, ଜାଲ ଐତିହାସିକ ଉପାଦାନ ସୃଷ୍ଟି କରିବାରେ ଓଡ଼ିଶା ଅଗ୍ରଣୀ ହୋଇଛି । ଓଡ଼ିଶାର ଜନସଂଖ୍ୟା ଭାରତର ଜନସଂଖ୍ୟାର ପ୍ରାୟ ପଚାଶ ଭାଗରୁ ଭାଗେ, ମାତ୍ର ଅପକର୍ମରେ ଭାରତରେ ଏହାର ଭାଗ ସର୍ବୋଚ୍ଚ । ଏହା ଅନୁଧ୍ୟାନ କଲା ପରେ ମୋ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ, ତାହା ହିଁ ଏହି ଅଭିଯାନ ଚଳାଇବା ପାଇଁ ମୋତେ ଉଦ୍‌ବୁଦ୍ଧ କରିଥାଏ ।

ପରିଶେଷରେ ପ୍ରଜାତନ୍ତ୍ର ପରିସରରେ ଅନୁଷ୍ଠିତ ଷଡ଼ବିଂଶ ବିଷୁବମିଳନର ବାର୍ଷିକ ଅଧିବେଶନରେ ମୁଖ୍ୟଅତିଥି ରୂପେ ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରାଚ୍ୟବିଦ୍ୟା ଅଧ୍ୟାପକ ଡକ୍ଟର ଜନ୍ ବୋଲ୍‌ଟନ୍‌ଙ୍କ ପ୍ରଦତ୍ତ ଅଭିଭାଷଣରୁ କେତେକ ଅଂଶ ଉଦ୍ଧାର କରି ପରିଶିଷ୍ଟର ଉପସଂହାର କରୁଛି :—

"ସାରଳା ଦାସଙ୍କ ସମୟରେ ସାହିତ୍ୟ ଶବ୍ଦ କହିଲେ ଆକ୍ଷରିକ ଭାବରେ ସହିତତା ବୁଝାଉଥିଲା । ସାହିତ୍ୟ ଥିଲା ଗୋଟିଏ ବିଶେଷ ଧରଣର କଥାବାର୍ତ୍ତା ସ୍ତର । ମା' ସାରଳାଙ୍କ ଦ୍ୱାରା ଅନୁପ୍ରାଣିତ ହେଲେ ସାରଳା ଦାସ ଓ ଶ୍ରୋତାମାନଙ୍କ ଭିତରେ ଏ ବିଶେଷ ଧରଣର କଥାବାର୍ତ୍ତା ଘଟୁଥିଲା । ସାହିତ୍ୟ ଓ ସାକ୍ଷରତା ଭିତରେ ପ୍ରାୟ କୌଣସି ସମ୍ପର୍କ ନ ଥିଲା । ଠିକ୍ Shakespeare ତାଙ୍କ ନାଟକ ଲେଖିଥିବା ଭଳି ପ୍ରଥମରୁ ସାରଳା ଦାସ ତାଙ୍କ କାବ୍ୟ ଲେଖିଥିବେ ସତ୍ୟ, କିନ୍ତୁ ପରେ ଅଭିନୀତ ଓ ଆବୃତ୍ତ ହୋଇଥିବାରୁ ଏଇ ନାଟକ ଓ କାବ୍ୟ ବଦଳି ଯାଇଥିବା ସ୍ୱାଭାବିକ । ଅଭିନେତା ଓ ଶ୍ରୋତାମାନଙ୍କ ଭିତରେ ଏବଂ ଆବୃତ୍ତିକାରୀ ଓ ଶ୍ରୋତାମାନଙ୍କ ଭିତରେ ସମ୍ପର୍କଟି ଥିଲା ମୌଖିକ, ପ୍ରତ୍ୟକ୍ଷ ଓ ମୁହାଁମୁହିଁ । ସେମାନଙ୍କ ଭିତରେ ଉଦ୍ଦୀପନା ଓ ପ୍ରତିକ୍ରିୟା ଆଦାନପ୍ରଦାନ ଚାଲୁଥିଲା । ଅଭିନେତା ଓ ଆବୃତ୍ତିକାରୀଙ୍କ କଥା ଶ୍ରୋତାମାନଙ୍କ ମନ ଛୁଉଁଥିଲା ଏବଂ ଶ୍ରୋତାମାନଙ୍କ ଉପରେ ସେମାନଙ୍କ କଥାର ପ୍ରଭାବ ଦେଖି ଓ ଶୁଣି ଅଭିନେତା ଓ ଆବୃତ୍ତିକାରୀମାନେ ଉତ୍ସାହିତ ହେଉଥିଲେ । ଶ୍ରୋତା ନ ଥିଲେ ରସ ଦିଆ-ଦେଇ ହୁଏନା । କେହି କେଉଁଠି ନ ହସିଲେ, ହାସ୍ୟରସର ସାର୍ଥକତା କାହିଁ ? ଅନେକ ଅନେକ ବର୍ଷ ଧରି ସଫଳ ରଙ୍ଗମଞ୍ଚ ଦ୍ୱାରା ପ୍ରକାଶିତ ହେବା ପରେ ଯାଇ Shakespeareଙ୍କ ନାଟକ ଛପା ହେଲା । ଶ୍ରୋତାମାନଙ୍କ ସାମନାରେ ସଫଳ ଭାବରେ ରଙ୍ଗମଞ୍ଚିତ ହେଲେ ହିଁ ନାଟକ, ନାଟକ ପଦବାଚ୍ୟ ହୁଏ । ଠିକ୍ ସେହିପରି ସାରଳା ଦାସଙ୍କ ସମୟରେ ସଫଳ ଭାବରେ ଆବୃତ୍ତ ନ ହେବା ପର୍ଯ୍ୟନ୍ତ କାବ୍ୟକୁ କାବ୍ୟ କୁହାଯାଉ ନ ଥିଲା ।

ଦେଶ, କାଳ, ପାତ୍ର ସବୁକିଛି ବଦଳାଇ ଦେଇପାରେ । ଯେପରି ଭିନ୍ନ ଭିନ୍ନ ଚରିତ୍ର ବିଷୟରେ ଭିନ୍ନ ଭିନ୍ନ ଅଭିନେତାର ଧାରଣା ଭିନ୍ନ ଭିନ୍ନ ଭୂମିକା ବଦଳାଇ ଦିଏ, ଠିକ୍ ସେହିପରି ଅଲଗା ଅଲଗା ଶ୍ରୋତାମାନଙ୍କ ଅଲଗା ଅଲଗା ପ୍ରତିକ୍ରିୟାରେ ନାଟକ କ୍ରମେ କ୍ରମେ ବଦଳିଯାଏ । ସାରଳା ଦାସଙ୍କ ମହାଭାରତ ଉପରେ ଭିନ୍ନ ଭିନ୍ନ ଆବୃତ୍ତିକାରୀ ଓ ଭିନ୍ନ ଭିନ୍ନ ଶ୍ରୋତାମାନଙ୍କ ପ୍ରଭାବ ବିଷୟରେ ଏହି ଯୁକ୍ତି ଖାଟିବ । ତେଣୁ ଯେପରି ନାଟକର ଭିନ୍ନ ଭିନ୍ନ ସଂସ୍କରଣ ହେବାର ସମ୍ଭାବନା ଅଛି, ଗୋଟିଏ ନାଟ୍ୟ-କାରଙ୍କଦ୍ୱାରା କଳ୍ପିତ ଆଉ ଗୋଟିଏ ନିର୍ଦ୍ଦେଶକଙ୍କଦ୍ୱାରା କଳ୍ପିତ; ପୁଣି ଆଉ କେତେ ଗୁଡ଼ିଏ ଭିନ୍ନ ଭିନ୍ନ ପରିସ୍ଥିତିରେ, ଭିନ୍ନ ଭିନ୍ନ ସମୟରେ ଏବଂ ଭିନ୍ନ ଭିନ୍ନ ଦର୍ଶକମାନଙ୍କ ଦ୍ୱାରା ଦୃଷ୍ଟ—, ଠିକ୍ ସେହିପରି ସାରଳା ସାହିତ୍ୟର ଭିନ୍ନ ଭିନ୍ନ ସଂସ୍କରଣ ହୋଇଥିବା ସ୍ୱାଭାବିକ । ଏ ପରିସ୍ଥିତିରେ ଆଧୁନିକ ସମାଲୋଚକଙ୍କ ପକ୍ଷରେ ସାରଳା ଦାସଙ୍କ ମହାକାବ୍ୟ ସମ୍ପାଦନା କରିବାର ଚେଷ୍ଟା ଦୁଃସାହସ ଛଡ଼ା ଆଉ କ'ଣ ହୋଇପାରେ ? ସେ ମହାକାବ୍ୟର ଗୋଟିଏ ମାତ୍ର ସର୍ବସମ୍ମତ ସଂସ୍କରଣ ଆଉ ସମ୍ଭବ ନୁହେଁ । ସୀମାବଦ୍ଧ

ଗୁଣାନ୍ୱିତ ଆଧୁନିକ ସମାଲୋଚକଙ୍କ ପକ୍ଷରେ ସାରଳାଦାସଙ୍କ ପରି ପ୍ରତିଭାନ୍ୱିତ ମନରେ ପଶି ସବୁକିଛି ବୁଝିପାରିବା ଓ। ସମ୍ଭବ ହେଲେ ବି ଓଡ଼ିଶାର ଭିନ୍ନ ଭିନ୍ନ ପ୍ରାନ୍ତରର ଭିନ୍ନ ଭିନ୍ନ କାଳର ଆବୃତ୍ତିକାରୀ ଯେ କେମିତି ସେମାନଙ୍କ ନିଜ ନିଜ ଶ୍ରୋତାମାନଙ୍କୁ ଆବେଦନ କରୁଥିଲେ, ସେସବୁ ବୁଝିବା କ'ଣ ତାଙ୍କଂପକ୍ଷରେ ସମ୍ଭବ ହୁଅନ୍ତା ? ସେ ବିଷୟରେ ଘୋର ସନ୍ଦେହର ଅବକାଶ ରହୁଛି । ଦୁର୍ଭାଗ୍ୟକ୍ରମେ ଆମ ଦେଶ ପରି ଏ ଦେଶରେ ବି ସମାଲୋଚକଙ୍କ ମନଯୋଗ କେବଳ ପାଠ ଉପରେ ସୀମାବଦ୍ଧ । ଅଭିନେତା ଓ ଆବୃତ୍ତିକାରୀଙ୍କ ପାଖରୁ ଯେ କିଛି ଶିଖିବାର ଅଛି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଭୁଲିଗଲେଣି । ତେଣୁ Tennessee Willamsଙ୍କ କିଛି କିଛି ନାଟକର ଯଦି ଦୁଇଟି ସଂସ୍କରଣ ହେବା ସମ୍ଭବ, ସାରଳାଦାସଙ୍କ ମହାକାବ୍ୟର ଭିନ୍ନ ଭିନ୍ନ ଗ୍ରୁପ ସଂସ୍କରଣ ନ ହେବ କାହିଁକି ? ଗଞ୍ଜାମୀ ସାରଳା, କଟକୀ ସାରଳା, ବାଲେଶ୍ୱରୀ ସାରଳା ଇତ୍ୟାଦି ହେଉ । କାହିଁକି ନା, ସାରଳାଦାସଙ୍କ ମହାଭାରତ ସୃଷ୍ଟିକୁ ଏ ବିଭିନ୍ନ ଅଞ୍ଚଳର ଲୋକମାନଙ୍କର ଅବଦାନ ବି ଥିଲା । ଇଂଲଣ୍ଡରେ ପ୍ରତିବର୍ଷରେ ନୂଆ ନୂଆ ନିର୍ଦ୍ଦେଶକ, ନୂଆ ନୂଆ ଅଭିନେତା, ନୂଆ ନୂଆ ଶ୍ରୋତା Shakespeareଙ୍କୁ ନୂଆ କରି ସୃଷ୍ଟି କରନ୍ତି । ବର୍ତ୍ତମାନ Shakespeareଙ୍କ ସର୍ବସମ୍ମତ ସଂସ୍କରଣ ବାହାର କରିବାକୁ ନିଜେ Shakespeareଙ୍କ ଦୁଃସାହସ ହେବ କି ନାହିଁ ସନ୍ଦେହ ।

(ଝଙ୍କାର, ୨୭ଶ ବର୍ଷ ୨ୟ ସଂଖ୍ୟା, ମଇ, ୧୯୭୫, ପୃ-୧୭୭-୭୮)

ସାରଳା ସାହିତ୍ୟର ଐତିହାସିକ ଚରିର ଆଲୋଚନାରେ କିଛିଦୂର ଅଗ୍ରସର ହେବାପରେ ମୁଁ ମଧ୍ୟ ଅନୁଭବ କରିଥିଲି ଯେ, ସାରଳାଦାସଙ୍କ ନିଜ ହାତଲେଖା ପୋଥି କୌଣସିଠାରେ ମିଳି ନ ଥିବାରୁ, ଆଜିକାଲି ମିଳୁଥିବା ପୋଥିଗୁଡ଼ିକୁ ତାଙ୍କ ମହାଭାରତର ଅବିକଳ କପି ବୋଲି ଧରିଯାଇ ପାରିବ ନାହିଁ। ମୁଁ ପରିଷ୍କାର ଭାବରେ ଲେଖିଛି ଯେ, ବହୁ ଆଲୋଚନା ଓ ଗବେଷଣା କଲେ ହୁଏତ ମୌଳିକ ସାରଳା ମହାଭାରତରର ଷୋଳପଣରୁ ଦଶପଣ ମାତ୍ର ମିଳିପାରିବ ! ମୋର ଏ କଥାକୁ କର୍ଣ୍ଣପାତ ନ କରି "ଶୁଦ୍ଧ ସଂସ୍କରଣ"ର ଆଳ ଦେଖାଇ କେତେକ ପଣ୍ଡିତ ଯେଉଁ ଅସୂୟାପୂର୍ଣ୍ଣ ଆଲୋଚନା କଲେ, ସେପରି ଆଲୋଚନା ପୃଥିବୀର କୌଣସି ଦେଶରେ ହୁଏ ବୋଲି ମୋର ମନେ ହେଉନାହିଁ । ଯେଉଁମାନେ "ଶୁଦ୍ଧ ସଂସ୍କରଣ" ଉପରେ ଏତେ ବେଶି ଗୁରୁତ୍ୱ ଆରୋପ କରୁଥିଲେ ସେମାନେ ଡକ୍ଟର ବୋଲଟନ୍‌ଙ୍କ ପରି ଜଣେ ଆନ୍ତର୍ଜାତିକ-ଖ୍ୟାତିସମ୍ପନ୍ନ ମହାନ ପଣ୍ଡିତଙ୍କ "ଶୁଦ୍ଧସଂସ୍କରଣ" ସମ୍ବନ୍ଧୀୟ ଅଭିମତକୁ ଖଣ୍ଡନ କରୁନାହାନ୍ତି କାହିଁକି ? କୌଣସି ବା କେତେକ ତାଳପତ୍ର ପୋଥି ଲେଖାରେ ଥିବା ସାରଳା ମହାଭାରତରେ କୌଣସି ବା କେତେକ

ପଣ୍ଡିତଙ୍କ ହାତର ସ୍ପର୍ଶ୍ଚିହ୍ନ ବାଜଗଲେ ଯେ ତାହା ସାରଳାଦାସଙ୍କ ମୌଳିକ ଲେଖା ହୋଇଯିବ, ଏପରି ଧାରଣା ମୋର ମୂଳରୁ ନ ଥିଲା । ଏ ରାଜ୍ୟରେ ପୋଥିସର୍ବସ୍ୱ ପାଣ୍ଡିତ୍ୟ ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରୁଛି । ଓଡିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ସାରଳାମହାଭାରତ ଏହି ଗ୍ରନ୍ଥର ବହୁ ସଂସ୍କରଣ ମଧ୍ୟରୁ ଗୋଟିଏ ସଂସ୍କରଣ ହୋଇ ରହିବ; କିନ୍ତୁ ଏହାକୁ "ଶୁଦ୍ଧସଂସ୍କରଣ" ବୋଲି କୁହାଯାଇ ପାରିବ ନାହିଁ । ସରକାରୀ ସଂସ୍କରଣର ଗୋଟିଏ ବିଶେଷତ୍ୱ ଏହି ଯେ ସମସ୍ତ ଛାପା ସଂସ୍କରଣ ଓ ସମସ୍ତ ତାଳପତ୍ର ପୋଥିରେ ଥିବା ସାରଳା ମହାଭାରତର କେତେକ ଗୁରୁତ୍ୱପୂର୍ଣ୍ଣ ଅଂଶକୁ କୂଟକପଟ ପ୍ରୟୋଗ ଦ୍ୱାରା ଏଥିରୁ ବାଦ୍ କରି ଦିଆଯାଇଛି କିମ୍ବା ବଦଳାଇ ଦିଆଯାଇଛି । ଏହି ପରିଶିଷ୍ଟର ପ୍ରାରମ୍ଭରେ ସେଥିରୁ ଗୋଟିଏ ଉଦାହରଣ ଦେଇଛୁ । ଅଧିକ ଉଦାହରଣ ଦେଲେ ଆଉ ଗୋଟିଏ ଗ୍ରନ୍ଥ ହୋଇଯିବ ।

———

ପ୍ରଜାତନ୍ତ୍ର ପ୍ରେସ, କଟକ-୨